# ମୋ ପୁଲିସ ଜୀବନ

ବଟକୃଷ୍ଣ ତ୍ରିପାଠୀ



ଗ୍ରନ୍ଥାଳୟ
ଭୁବନେଶ୍ୱର – ୯

# ମୋ ପୁଲିସ ଜୀବନ

*ଲେଖକ :*
**ବଟକୃଷ୍ଣ ତ୍ରିପାଠୀ**

*ପ୍ରକାଶକ :*
**ଗ୍ରନ୍ଥାଳୟ**
ଅଶୋକ ନଗର
ଭୁବନେଶ୍ୱର -୭୫୧୦୦୯

ପ୍ରଥମ ସଂସ୍କରଣ : ୨୦୦୧

*ପ୍ରଚ୍ଛଦ ଶିଳ୍ପୀ :*
**ବିଜୟ କୁମାର ପ୍ରଧାନ**

*ମୁଦ୍ରଣ :* କ୍ରିଏଟିଭ୍, କଟକ - ୧୨

*ମୂଲ୍ୟ :* ୧୨୦/-

**MO POLICE JIBANA**

*Author :*
**BATAKRUSHNA TRIPATHY**

*Published by :*
**GRANTHALAYA**
Ashok Nagar
Bhubaneswar : 751009

*First Edition :* 2001

*Cover Design :*
**Bijaya Kumar Pradhan**

*Printed at :*
***CREATIVE***
Badambadi, Cuttack - 12

ISBN - 81- 86894 -09 - 8

PRICE : Rs. 100.00 (Paperback)
**Rs. 120.00 (Bound)**

# ଉତ୍ସର୍ଗ

ଯେଉଁ ପୁଲିସ୍ ବନ୍ଧୁମାନଙ୍କ ସହ, ଜୀବନର ଦୀର୍ଘକାଳ ବିତାଇ ଦେଇଥିଲି, ''ମୋ ପୁଲିସ୍ ଜୀବନ'' ସେଇମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କଲି ।

ବିନୀତ ଲେଖକ

**ବଟକୃଷ୍ଣ ତ୍ରିପାଠୀ**

# ପୂର୍ବାଭାସ

ଓଡ଼ିଆରେ ଗୋଟିଏ ଢ଼ଗ ଅଛି, ''ଦଇବ ଦଉଡ଼ି ମଣିଷ ଗାଈ-ଯେଣିକି ଓଟାରେ ତେଣିକି ଯାଇ'' । ମୋ ଚାକିରୀ ଜୀବନରେ ଏହା ବହୁଳ ଭାବେ ସତ୍ୟ । ମୁଁ ପୁଲିସ୍ ବିଭାଗରେ ଚାକିରୀ କରିବି, ଏ ଆଶା କେବେ ପୋଷଣ କରିନଥିଲି । ପିଲାଦିନୁ ପୁଲିସ୍ ପ୍ରତି ମୋର ଧାରଣା ଥିଲା ଅଲଗା ପ୍ରକାର । ଗାଁ ସ୍କୁଲରେ ପଢ଼ିଲାବେଳେ ଥରେ ଆମ ଥାନାର ବଡ଼ବାବୁ ଗାଁକୁ ଆସିଥିବା କଥା ମୋର ମନେ ପଡ଼େ । ସେତେବେଳେ ତାଙ୍କର ବୟସ ପଇଁଚାଳିଶ ହେବ । ପେଟ ବାହାରି ପଡ଼ିଥାଏ । ଖାକି ହାପ୍ ପ୍ୟାଣ୍ଟ, ସାର୍ଟ ଉପରେ ସାମ୍ବରମ୍ ବେଲ୍ଟ, ମୁଣ୍ଡରେ ସୋଲ ଟୋପି । ଗାଁ ଦାଣ୍ଡରେ ଗଲାବେଳେ, ତାଙ୍କ ପଛେ ପଛେ, ଜଣେ କନେଷ୍ଟବଲ, ଆଠ ଦଶଜଣ ଚଉକିଆ, ଦଫାଦାର ସାଙ୍ଗରେ ଗାଁର ମାମଲତ୍‌କାରମାନେ ଚାଲିଥାନ୍ତି । ଥାନାବାବୁଙ୍କ ରହିବାର ବନ୍ଦୋବସ୍ତ ହୋଇଥାଏ ଆମ ଗାଁ ସ୍କୁଲଘରେ । ବଡ଼ବାବୁ ପହଞ୍ଚିଲା ପରେ ଆମର ଛୁଟି ହୋଇଗଲା । ପୁଲିସ୍‌ବାଲା ଗାଁ ଦାଣ୍ଡରେ ଗଲାବେଳେ ସ୍ତ୍ରୀଲୋକ, ଛୁଆମାନେ ଘରେ ପଶି କବାଟ ଦେଉଥିଲେ । ପୁଲିସ୍ ବାନ୍ଧିନିଏ, ମାଡ଼ ଦିଏ, ମାମୁଁ ଘରକୁ ପଠାଇ ଦିଏ । ଥାନା, ଡାକ୍ତରଖାନାକୁ ପିଲାଦିନରୁ ଡ଼ର । ପରେ ୧୯୬୪ ମସିହାରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଛାତ୍ର ସଂସଦର ସଂପାଦକ ଥାଏ । ସେଇବର୍ଷ ସାରା ଓଡ଼ିଶାରେ ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇ ବିଭିନ୍ନ ସ୍ଥାନରେ ନାହିଁ ନଥିବା ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଥିଲା । ବାଣୀବିହାର ଛାତ୍ର ସଂସଦର ସଂପାଦକ ଭାବେ, ଛାତ୍ର ଆନ୍ଦୋଳନକୁ ନେତୃତ୍ୱ ଦେଉଥିବା କେତେକ ଛାତ୍ର ନେତାଙ୍କ ମଧ୍ୟରେ ମୁଁ ଥିଲି ଜଣେ । ଆନ୍ଦୋଳନ ସମୟରେ ବାଣୀବିହାର ମୁଖ୍ୟ ଫାଟକ ସାମ୍ନା ରାସ୍ତା ଉପରେ ବସି ୧୪୪ ଧାରା ଭାଙ୍ଗିବାବେଳେ ଛାତ୍ରମାନଙ୍କ ଉପରେ ପୁଲିସ୍‌ର ଲାଠି, ଗୋଇଠା, ବୁଟ୍ ମାଡ଼ ଖାଇଥିଲି, ଦେଖିଥିଲି । ଭୁବନେଶ୍ୱର ଜେଲ୍‌ର ସେତେବେଳେ ନିର୍ମାଣ କାର୍ଯ୍ୟ ଚାଲିଥାଏ, ସେଠାକୁ କେତେଥର ଯାଇଛି । ଛାତ୍ର ଆନ୍ଦୋଳନ ବେଳେ ପୁଲିସ୍‌ର ଅମାନୁଷିକ କାର୍ଯ୍ୟକଳାପ, ଛାତ୍ରମାନଙ୍କ ଉପରେ ଅତ୍ୟାଚାର ବିରୁଦ୍ଧରେ ମଧ୍ୟ ସ୍ୱର ଉତ୍ତୋଳନ କଲାବେଳେ, ପୁଲିସର ଲାଠି, ଗୁଳିମାଡ଼ ଖାଇଥିଲି । କାପିଟାଲ ଥାନା ସାମ୍ନାରେ ପୁଲିସ୍ ଗୁଳିରେ ମୋର ଜଣେ ଛାତ୍ର ବନ୍ଧୁ ମରୁ ମରୁ ବଞ୍ଚିଗଲେ ।

ବାଣୀବିହାରରୁ ଏମ୍.ଏ. ପାଶ କରି ସାରିଲାପରେ ଚାକିରୀ କରିବି ବୋଲି ପରୀକ୍ଷା ଦେଲି । ଗାଁ ସ୍କୁଲରେ ପାଠ ପଢ଼ିଲାବେଳେ, ଆମଗାଁ ସ୍କୁଲ ମାଷ୍ଟ୍ରେ ମୋ ଜନ୍ମ ତାରିଖ ତାଙ୍କ ସୁବିଧା ଅନୁସାରେ ଲେଖିଥିଲେ । ମୁଁ ସ୍କୁଲକୁ ଗଲାବେଳେ ମୋର ବୟସ ଚାରି ବର୍ଷ ଥିଲା, ମାତ୍ର ପାଞ୍ଚବର୍ଷ ନ ହେଲେ, ନାଁ ଲେଖାଇ ପାରିବିନି ବୋଲି କହିଲାରୁ ବୋଉ ମାଷ୍ଟ୍ରଙ୍କୁ କହିଲା 'ଲେଖିଦିଅ ମାଷ୍ଟ୍ରେ-ଯାହା ଭାବୁଛ' । ମାଷ୍ଟ୍ରେ ଲେଖିଦେଲେ ପାଞ୍ଚବର୍ଷ ଚାରିମାସ ଆଠଦିନ । ମୋର ଜନ୍ମ ତାରିଖ ମୋ ଜାତକରେ ଯାହାଥିଲା, ତାଠାରୁ ବର୍ଷେ ୪ ମାସ ଅଧିକ ହୋଇଗଲା । ଏମ୍.ଏ. ପାଶ୍ କଲାପରେ ବୁଝିଲି ସବୁ ପରୀକ୍ଷା, ଚାକିରୀ ପାଇଁ ବୟସର ଆବଶ୍ୟକତା କେତେ ।

ତେଣୁ ସର୍ବଭାରତୀୟ ପରୀକ୍ଷା ଦେବାପାଇଁ ମୋର ମାତ୍ର ଗୋଟିଏ ଚାନ୍ସ ଥିଲା (ସେତେବେଳେ ବୟସସୀମା ଥିଲା ୨୪ ବର୍ଷ) । ସେଇ ଚାନ୍ସ ନେଇ ପରୀକ୍ଷାର ଗୋଟିଏ ପେପର ରେଭେନ୍ସା କଲେଜରେ ଦେଇ ଫେରିଲା ବାଟରେ ଛାତ୍ର ଆନ୍ଦୋଳନରେ ଭାଗ ନେଇଥିବା ଯୋଗୁ ଆରେଷ୍ଟ ହୋଇ ପରୀକ୍ଷାରୁ ବଂଚିତ ହେଲି । ଅବଶ୍ୟ ତାର ପୂର୍ବବର୍ଷ ମୁଁ ଓ.ଏ.ଏସ୍. ପରୀକ୍ଷା ଦେଇଥିଲି ମାତ୍ର କମ୍ ନମ୍ବରରେ କଟୁଥିବା ଯୋଗୁ ମୋତେ ସେଇ ପରୀକ୍ଷାରୁ ସେଲ୍‌ଟାକ୍ସ ଇନିସ୍‌ପେକ୍ଟର ଭାବେ ନିଯୁକ୍ତିପତ୍ର ଆସିଲା । ଏଥି ମଧ୍ୟରେ ମୁଁ ଏମ.ଏ. ପରୀକ୍ଷା ଦେଇ ସାରିଥାଏ । ଏମ୍.ଏ. ପରୀକ୍ଷା ଫଳ ବାହାରିବା ପୂର୍ବରୁ ମୁଁ ଖୋର୍ଦ୍ଧା ମୁକୁନ୍ଦପ୍ରସାଦ ବାଣିଜ୍ୟକର ଚେକ୍ ଗେଟ୍‌ରେ ବାଣିଜ୍ୟକର ଇନ୍‌ସପେକ୍ଟର ଭାବେ ଜଏନ୍ କରି ସେଇ ଚେକ୍‌ଗେଟ୍‌କୁ ଆରମ୍ଭ କଲି । ଏମ୍.ଏ. ଫଳ ବାହାରିଲା ପରେ, ସରକାରୀ କଲେଜକୁ ଅସ୍ଥାୟୀ ଭାବେ ପୋଷ୍ଟିଂ ଆସିଲା । ମୋର ବଲାଙ୍ଗୀର ରାଜେନ୍ଦ୍ର କଲେଜକୁ ପୋଷ୍ଟିଂ ହୋଇଥାଏ । ମୁଁ ଯିବି କି ନଯିବି ଭାବିଲା ବେଳକୁ, ମୋର ଓ.ଏ.ଏସ୍ ପରୀକ୍ଷାଫଳ ବି ବାହାରିଲା । ମୋର ସିରିୟଲ୍ ନମ୍ବର ଥାଏ ୨୯ । ମୁଁ ଆଶା କରୁଥିଲି ମୋତେ ଡେପୁଟୀ କଲେକ୍ଟର ପୋଷ୍ଟିଂ ମିଳିବ ମାତ୍ର ମୋ ଉପର ସିରିୟଲ ପର୍ଯ୍ୟନ୍ତ ସିନିୟର ଲେବୁଲ୍‌ରେ ଗଲା । ମୁଁ ସବ୍ ଡେପୁଟୀ କଲେକ୍ଟର ଭାବେ କେଉଁଝର ଜିଲ୍ଲାରେ ଜଏନ୍ କଲି । କେଉଁଝର ଜିଲ୍ଲାରେ ଛଅ ମାସ ଟ୍ରେନିଂ ପରେ, ହିରାକୁଦ୍ ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ ଟ୍ରେନିଂ ସ୍କୁଲକୁ ଛମାସିଆ ଟ୍ରେନିଂ ପାଇଁ ଗଲି । ଆମ ଦଳରେ, ସେ ବର୍ଷ ୧୬ ଜଣ ଟ୍ରେନିଂ ଅଫିସର ଥାନ୍ତି । ସେମାନ୍ଙ୍କ ମଧ୍ୟରୁ ତିନିଜଣ ଡେପୁଟି କଲେକ୍ଟର, ବାକି ସମସ୍ତେ ସବ୍ ଡେପୁଟୀ କଲେକ୍ଟର । ଆମ ଆଗରୁ ଆମ ବ୍ୟାଚ୍‌ରୁ, ଆଉ ଦଳେ ଟ୍ରେନିଂ ସାରି ଜିଲ୍ଲା ଟ୍ରେନିଂ କରୁଥାନ୍ତି ।

ଓ.ଏ.ଏସ୍ ପରୀକ୍ଷା ସିରିଆଲ୍ ଲିଷ୍ଟର ଉପରେ ମୋର ଥିଲା ଯୁଗଳ ମିଶ୍ର । ସେ ମୋର ସହପାଠୀ । ତା ଉପରକୁ ଥିଲେ ମହମ୍ମଦ ହାରୁନ୍ । ଏ ଦୁହେଁ ପୁଲିସ୍ ଟ୍ରେନିଂ ପାଇଁ ଅନୁଗୁଳରେ ଜଏନ୍ କରିଥାନ୍ତି । ମହମ୍ମଦ ହାରୁନ୍ ବର୍ଷେ ଟ୍ରେନିଂ ପୂର୍ଣ୍ଣକରି ଏ.ଏମ୍.ପିରେ ଟ୍ରେନିଂ ନେଲାବେଳେ, ତାଙ୍କ ସାନ ଭାଇ, ଯେକି ଡେପୁଟୀ କଲେକ୍ଟର ଥିଲେ, ସେ ଆଇ.ପି.ଏସ୍. ପାଇଲେ । ସେତେବେଳେ ତାଙ୍କ ବାପା ଦକ୍ଷିଣାଞ୍ଚଳର ଆର୍.ଡି.ସି. ଥାନ୍ତି । ସାନପୁଅ ଆଇ.ପି.ଏସ୍. ପାଇବା ଯୋଗୁ, ମିଃ ହାରୁନ୍, ପୁଲିସ୍ ଚାକିରୀ ଛାଡ଼ି, ଆଡ୍‌ମିନ୍‌ଷ୍ଟ୍ରେଟିଭ୍ ସର୍ଭିସ୍‌କୁ ଗଲେ । ତାଙ୍କ ପରେ ଯୁଗଳମିଶ୍ର । ସେଇ ବର୍ଷ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ସେ ମୁଖ୍ୟମନ୍ତ୍ରୀ ହେଲାପରେ, ଯୁଗଳ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ଭାବେ ଜଏନ କଲା ଏବଂ ଓ.ପି.ଏସ୍.ରୁ ଓ.ଏ.ଏସ୍.କୁ ଚାଲିଗଲା । ତେଣୁ ଓ.ପି.ଏସ୍.ରେ ଗୋଟିଏ ସ୍ଥାନ ଖାଲି ପଡ଼ିଲା । ଯେହେତୁ ତଳ ସିରିୟଲରେ ମୁଁ ଥିଲି, ମୁଁ ସେଇ ସିନିୟର ପୋଷ୍ଟ କ୍ଲେମ୍ କଲି ଏବଂ ମୁଁ ବର୍ଷେରୁ ଅଧିକ ସବ୍‌ଡିନେଟ୍ ଆଡ୍‌ମିନିଟ୍ରେଟିଭ୍ ସରଭିସ୍‌ରେ ଥିବାଯୋଗୁ ମୋତେ ଏ.ଏସ.ଏସ୍. ପୋଷ୍ଟ ଦିଆଯାଉ ବୋଲି ଅନୁରୋଧ କରିଥିଲି । ମାତ୍ର ମୋତେ ପୁଲିସ୍‌ରେ ହିଁ ଜଏନ୍ କରିବାକୁ ନିର୍ଦ୍ଦେଶ ଆସିଲା । ଏହି ନିର୍ଦ୍ଦେଶନାମା ଅକ୍ଟୋବର ୧୯୬୭ ମସିହାରେ ମୋ ପାଖେ ପହଞ୍ଚିବା ପରେ, ମୁଁ ସବ୍ ଡେପୁଟୀ କଲେକ୍ଟରରୁ ଅବ୍ୟାହତ ନେଇ ନୂତନ ପୋଷ୍ଟିଂରେ ଜଏନ୍ କରିବାକୁ ଚାହିଁଲି, ମାତ୍ର ରେଭିନ୍ୟୁ ଡିପାଟ୍‌ମେଣ୍ଟ ମୋତେ ରିଲିଫ୍ କରିବାକୁ ଆଦେଶ ଦେଲାନି । ତତ୍କାଳୀନ ଘରୋଇ

ସଚିବ ଏବଂ ରାଜସ୍ୱ ସଚିବଙ୍କ ମଧ୍ୟରେ ପଡୁନଥିବା ଯୋଗୁ, ରାଜସ୍ୱ ସଚିବ, ମୁଁ ବାରମ୍ବାର ଅନୁରୋଧ କରିବା ସତ୍ତ୍ୱେ ମଧ ମୋତେ ରିଲିଭ୍ ଆଦେଶ ଦେଲେନି । ସେତେବେଳକୁ ମୁଁ କେଉଁଝରରେ ଇଲେକସନ୍ ଅଫିସର ଭାବେ କାମ କରୁଥାଏ । ମୋ ରିଲିଭ୍ ପାଇଁ ମୁଁ ତତ୍କାଳୀନ ରାଜସ୍ୱମନ୍ତ୍ରୀ, ସୁରେନ୍ଦ୍ର ପଟ୍ଟନାଏକ, ରାଷ୍ଟ୍ରମନ୍ତ୍ରୀ ହିମାଂଶୁ ଶେଖର ପାଢ଼ୀଙ୍କୁ କହିଲେ ମଧ କିଛି ଫଳ ହେଲାନି । ଶେଷରେ ସି.ଜି. ସୁମେୟାଙ୍କ ସାହାଯ୍ୟରେ, ମୁଁ ମୁଖ୍ୟ ଶାସନ ସଚିବ ମିଃ ବ୍ୟାରେନ୍ ପାଖକୁ ଗଲାପରେ ଏପ୍ରିଲ୍‌ମାସ ୧୯୬୮ ମସିହାରେ ରିଲିଭ୍ ଆଦେଶ ଆସିଲା ଏବଂ ମୁଁ କେଉଁଝରରୁ ରିଲିଭ୍ ହୋଇ ଅନୁଗୁଳ ପୋଲିସ୍ ଟ୍ରେନିଂ କଲେଜରେ ମେ ମାସ ୩ ତାରିଖରେ ଜଏନ୍ କଲି । ଯଦିଓ ପ୍ରଥମେ ମୁଁ ଭାବିଥିଲି ପୁଲିସ୍ ଚାକିରୀରେ ଜଏନ୍ କରି ଭୁଲ୍ କଲି ମାତ୍ର ପରବର୍ତ୍ତୀ ପୁଲିସ୍ ଜୀବନରେ ଦେଖିଲି ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳପାଇଁ । ପୁଲିସ୍ ସେବା ସଂସ୍ଥାଠାରୁ ଅଧିକ ସେବା କରିବା ସଂସ୍ଥା ମୋ ମତରେ ବହୁତ କମ୍ ଅଛି । ମୋ ପୁଲିସ୍ ଜୀବନର କେତେକ ଘଟଣାକୁ ନେଇ ''ମୋ ପୁଲିସ ଜୀବନ'' । ପୁଲିସ୍ ବିଭାଗରେ କାମ କରୁଥିବା ସମୟରେ ସେ ସମୟର ରାଜନୈତିକ ଘଟଣାବଳୀ କେଉଁପରି ଭାବେ ପୁଲିସ୍ ବିଭାଗକୁ ପ୍ରଭାବିତ କରୁଥିଲା, ଯେତିକି ଦରକାର – ସେତିକି ଉଲ୍ଲେଖ କରିଛି । ପୁଲିସ୍ ଚାକିରୀ କାଳରେ କଟକ, ପୁରୀ, ଭୁବନେଶ୍ୱରରେ ପ୍ରାୟ ୨୫ ବର୍ଷ କଟାଇଛି । କଟକ, ପୁରୀ, ଭୁବନେଶ୍ୱର ଏସ୍.ପି. ହେବାବେଳେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଭାବେ କାମ କରିଛି । ଏଥିପାଇଁ କେତେକ ସହକର୍ମୀ ଅସୂୟା ଭାବ ପ୍ରଦର୍ଶନ କରିଥିଲେ ମଧ, ମୋର କୌଣସି ସହକର୍ମୀ, ଉପର ଅଫିସର କିମ୍ବା ମୋ ପାଖରେ ଯେଉଁ ସବଡ଼ିନେଟ୍ ଅଫିସରମାନେ କାମ କରିଛନ୍ତି କାହା ସହିତ ମୋର ମନୋମାଳିନ୍ୟ ନଥିଲା । କେହି ମୋର ଶତ୍ରୁ ନଥିଲେ । ରାଉରକେଲାରେ ଅତିରିକ୍ତ ଏସ.ପି. ଥିଲାବେଳେ, ଜଣେ ପୁଲିସ୍ ସବ୍‌ଇନ୍‌ସିପେକ୍ଟର, ମୁଁ ରାଉରକେଲାରୁ ବଦଳି ହୋଇଆସିଲା ପରେ ମୋତେ ମିଶାଇ ଚାରିଜଣ ଅଫିସରଙ୍କ ନାମରେ ପିଟିସନ ପକାଇଥିଲା । ଅବଶ୍ୟ ଏଇ ଅଫିସର ଜଣକ ସୁପରିସିଡେଡେ ହୋଇଯାଇଥିବା ଯୋଗୁ ତାଙ୍କୁ ମୁଁ, ଏସ୍.ପି. ସୁବ୍ରତ ଦାସ ବହୁତ ସାହାଯ୍ୟ କରିଥିଲୁ । ସେ ଆମ ବିରୁଦ୍ଧରେ ପିଟିସନ ପକାଇବା ମୋ ଚିନ୍ତା ବାହାରେ ଥିଲା । ମୁଁ ରାଉରକେଲାରୁ ଆସିବାର ବର୍ଷକ ପରେ ଭୁବନେଶ୍ୱର ଏସ୍.ପି. ଥିଲାବେଳେ, ସେଇ ଅଫିସର ଜଣକ ଦିନେ ସକାଳୁ ମୋ ବସାକୁ ଆସିଥିଲେ । ତାଙ୍କୁ ଦେଖି ମୁଁ ଭାବିଲି ବୋଧେ ମୁଁ ଭୁବନେଶ୍ୱରରେ ଥିବାରୁ କିଛି ସାହାଯ୍ୟ ପାଇଁ ଆସିଛି । ସେ ଚୁପ୍ ହୋଇ ଠିଆ ହେବାର ଦେଖି, ମୁଁ ତାକୁ ପଚାରିବାରେ ସେ କହିଲା ''ସାର୍, ମୁଁ ଗୋଟିଏ କଥା ଆପଣଙ୍କ ପାଖରେ କହିବାକୁ ଆସିଛି ।'' ସେ କହିଲା ଯେ ଯେଉଁ ପିଟିସନ୍ ଆମେ ରାଉରକେଲା ଛାଡ଼ିଲାପରେ ପକାଯାଇଥିଲା ସେ ସେ ସେଇ ପିଟିସନ ଲେଖିଥିଲା । ଆମ ନାମରେ ପିଟିସନ ପଡ଼ିବା କଥା ମୋତେ ରାଉରକେଲା ଡି.ଆଇ.ଜି. ଶଙ୍କର ସେନ୍ କହିଥିଲେ ଏବଂ ପିଟିସନ୍‌ରେ କ'ଣ ସବୁ ଲେଖାଥିଲା ତା' ମଧ ପଢ଼ି ଶୁଣାଇ ଦେଇଥିଲେ । ତା କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ଆମବେଳେ ସେ ସବୁ ସାହାଯ୍ୟ ପାଇଛି, ତଥାପି ସେ କାହିଁକି ମିଛ କଥା ଲେଖି ପିଟିସନ ପକାଇଲା ବୋଲି ପଚାରିବାରେ ସେ କହିଲା, ''ସାର୍, କାହା ବୋଲରେ ପଡ଼ି, ମୁଁ ଏ ପିଟିସନ୍ ଲେଖିଥିଲି । ଆଉ ଦୟା କରି

ପଚାରୁଚୁନି । ମୁଁ ଏଇ ପାପ କାମ କରିଥିଲି । ଆପଣଙ୍କୁ କହିଦେବା ଦ୍ୱାରା ମୋ ମନ ଶାନ୍ତି ପାଇଲା ।''

''ମୋ ପୁଲିସ୍ ଜୀବନ''ରେ ଯେଉଁ କେତେଜଣ ବିବାଦମାନ ପୁରୁଷ ଦେଖା ଦେଇଥିଲେ, ମୁଁ ଜାଣି ଜାଣି ସେମାନଙ୍କୁ କିମ୍ବା ତାଙ୍କ କାର୍ଯ୍ୟକଳାପକୁ, ପୁସ୍ତକ ଭିତରେ ସ୍ଥାନ ଦେଇନି । କୌଣସି କାରଣରୁ କିଏ ଯଦି, ଏଇ ପୁସ୍ତକ ପଢ଼ିଲା ପରେ ମନରେ ଆଘାତ ପାଏ, ମୁଁ ତାଙ୍କ ପାଖରୁ କ୍ଷମା ମାଗି ନେଉଛି, କାରଣ ମୁଁ କୌଣସି ଉଦ୍ଦେଶ୍ୟ ନେଇ ସେ ଘଟଣା ଲେଖିନି, ଘଟଣାକ୍ରମରେ ତାହାହିଁ ଲେଖାଯାଇଛି ।

''ବନ୍ଧୁ, ଯେଉଁମାନେ ବି, ଏ ପୁସ୍ତକର ଚରିତ୍ର, ସେମାନଙ୍କ ପାଖରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।''

''ମୋ ପୁଲିସ ଜୀବନ'' ଲେଖିବାପାଇଁ ମୋର କଲେଜ ସାଥୀ ବନ୍ଧୁ ରମାକାନ୍ତ ମହାପାତ୍ର, ବହୁଦିନରୁ ମୋତେ କହି ଆସିଥିଲେ । ଚାକିରୀରୁ ଅବସର ନେବା ପୂର୍ବରୁ ଲେଖିବି ବୋଲି ତାଙ୍କୁ କହିଥିଲି । ତାଙ୍କ ପ୍ରେରଣାରେ ଏ ପୁସ୍ତକ ପ୍ରକାଶ ପାଇବାକୁ ସକ୍ଷମ ହୋଇଛି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ତାଙ୍କ ପାଖରେ ମୁଁ ଚୀର କୃତଜ୍ଞ ''ମୋର ପୁଲିସ୍ ଜୀବନ ।''

*ଲେଖକ*



# ମୋ ପୁଲିସ ଜୀବନ

## ପୁଲିସ ଟ୍ରେନିଂ :

ଊଣେଇଶ ଶହ ଅଢ଼ଷଠି ମସିହା ମେ ମାସ ଦୁଇ ତାରିଖ ଦିନ, ଅନୁଗୁଳ ପୁଲିସ ଟ୍ରେନିଂ କଲେଜରେ ଟ୍ରେନିଂ ପାଇଁ ଜଏନ୍ କରିବାକୁ ଅନୁଗୁଳ ବସ୍‌ଷ୍ଟାଣ୍ଡରେ ପହଞ୍ଚିଲି । ବସଷ୍ଟାଣ୍ଡରୁ ରିକ୍ସା ନେଇ ସେଲ୍‌ଟାକ୍ସ କଲୋନୀରେ ରହୁଥିବା ମୋର ପୂର୍ବ ପରିଚିତ ବନ୍ଧୁ ଯଦୁ ମିଶ୍ରଙ୍କ ଘରକୁ ଯାଇଥିଲି । ମୁଁ ମୁକୁନ୍ଦପ୍ରସାଦ ସେଲ୍‌ଟାକ୍ସ ଚେକ୍‌ଗେଟ୍‌ରେ ସେଲ୍‌ଟାକ୍ସ ଇନସ୍‌ପେକ୍ଟର ଥିଲାବେଳେ ଯଦୁମିଶ୍ରେ ଖୋର୍ଦ୍ଧା ସର୍କଲ ଅଫିସରେ ଇନସ୍‌ପେକ୍ଟର ଥିଲେ । ପରେ ବଦଳି ହୋଇ ଅନୁଗୁଳ ଆସିଥାନ୍ତି । ତାଙ୍କ ବସାରେ ପହଞ୍ଚିଲା ପରେ ଶୁଣିଲି ମୋ ଉପରକ୍ଲାସରେ ବାଣୀବିହାରରେ ପଢୁଥିବା ଶଶିଭୂଷଣ ମିଶ୍ର ମଧ ସେଠାରେ ଏ.ସି.ଟି.ଓ. ଅଛନ୍ତି । ମେ ମାସରେ ଅନୁଗୁଳ ସହରରେ ପ୍ରଚଣ୍ଡ ଗରମ ପଡ଼ିଥାଏ । ପାଣି କଷ୍ଟ ସବୁଆଡ଼େ । ଗୋଟେ ବାଲ୍ଟି ପାଣିକୁ ଆଠଅଣା ପଇସା । ସନ୍ଧ୍ୟାବେଳେ ଯଦୁମିଶ୍ରଙ୍କ ଘରେ ଗାଧୁଆ ପାଧୁଆ କାମ ସାରିଲାପରେ ଭାବିଲି ଟ୍ରେନିଂରେ ଜଏନ୍ କରିବା ପୂର୍ବରୁ, ଟ୍ରେନିଂ କଲେଜର ଅଧକ୍ଷଙ୍କୁ ଦେଖା କରିବି । କଟକରୁ ଅଇଲାବେଳେ ମୋର ବନ୍ଧୁ ଏବଂ ବାଣୀ ବିହାରର ସହପାଠୀ ଗୋପାଳ ବୋଷ କହିଥିଲା, ଆଗ ଅଧକ୍ଷଙ୍କୁ ଦେଖା କରିବୁ । ସେ ତାଙ୍କୁ ଟେଲିଫୋନ୍ କରି ମୋ ଯିବା କଥା କହିଥିବ । ସେଲ୍‌ଟାକ୍ସ କଲୋନୀରୁ ଅଧକ୍ଷଙ୍କ ବଙ୍ଗଳା ବାଟ ଗୋଟେ କିଲୋମିଟର । ଯଦୁ ମିଶ୍ରଙ୍କ ସାଇକେଲ ଧରି ସନ୍ଧ୍ୟା ସାତଟା ପରେ ଅଧକ୍ଷଙ୍କ ବଙ୍ଗଳା ଆଡ଼େ ବାହାରିଲି । ସନ୍ଧ୍ୟା ପରେ, ଅନୁଗୁଳ ସହରରେ ଗରମ ଟିକିଏ କମିଥାଏ । ସାଇକେଲରେ ତାଙ୍କ ବଙ୍ଗଳା ଗେଟ୍ ପାଖେ ପହଞ୍ଚିଲା ପରେ, ଦେଖିଲି ଛାପି ଛାପିକିଆ ଅନ୍ଧାର ଆଲୁଅ ଭିତରେ ଦୁଇଟି ଭୟଙ୍କର ଆଲସିସିୟାନ୍ କୁକୁର ପ୍ରଚଣ୍ଡ ରଡ଼ିକରି ଗେଟ୍ ପାଖକୁ ମାଡ଼ିଆସି ଗେଟ୍ ସେପଟେ ଠିଆ ହୋଇ ଭୁକିବାରେ ଲାଗିଲେ । ସେତିକିରେ ମୁଁ ଯେଉଁ ଗେଟ୍ ପାଖକୁ ଯାଇ ଠିଆ ହୋଇଥିଲି, ଗେଟ୍ ଛାଡ଼ି ପଛକୁ ଫେରି ଠିଆହେଲି । ଗେଟ୍ ଖୋଲି ଭିତରକୁ ଯିବାର ସାହାସ ନଥାଏ । କିଛି ସମୟ ଠିଆ ହେଲାପରେ ଜଣେ ପୁଲିସ ପୋଷାକ ପିନ୍ଧିଥିବା ଅର୍ଡ଼ଲି ଆସି ଗେଟ୍ ଖୋଲି, କୁକୁର ଦୁଇଟିଙ୍କୁ ଆୟତ୍ତ କଲାପରେ, ଭୟମିଶ୍ରିତ ଅବସ୍ଥାରେ ମୁଁ ବଙ୍ଗଳା ଭିତରକୁ ପ୍ରବେଶ କଲି ।

ଅଧକ୍ଷଙ୍କ ଏଇ ବଙ୍ଗଳା ବହୁ ପୁରାତନ । ବ୍ରିଟିଶ୍ ସରକାରଙ୍କ ସମୟରେ ଅନୁଗୁଳ ଜିଲ୍ଲା ଥିଲାବେଳେ, ଏଇ ବଙ୍ଗଳା ଅନୁଗୁଳ ଜିଲ୍ଲା ପୁଲିସ୍ ସାହେବଙ୍କ ବଙ୍ଗଳା ଥିଲା । ଅନୁଗୁଳ ଜିଲ୍ଲା ଭାଙ୍ଗିଗଲା ପରେ ସେଇ ବଙ୍ଗଳା ଏବେ ପୁଲିସ ଟ୍ରେନିଂ କଲେଜ ଅଧକ୍ଷଙ୍କ ବଙ୍ଗଳା ହୋଇଛି । ପ୍ରାୟ ପାଞ୍ଚ, ଛ ଏକର ଜମିର ମଝିରେ ପୁରୁଣାକାଳିଆ ଚାଳ ଛପର

ଘର । ଚାରିପଟେ ନାନା ରକମର ଗଛ । ଆମ୍ବ, ପଣସ, ବରଗଛ ଠାରୁ ଆରମ୍ଭ କରି ଶାଳ, ପିଆଶାଳ, ଶାଗୁଆନ ଗଛରେ ବଙ୍ଗଳା ପରିସର ପରିପୂର୍ଣ୍ଣ ଥାଏ । ମଝିରେ ବିରାଟ ବଙ୍ଗଳା । ସାମ୍ନାରେ ସିମେଣ୍ଟ ଚଟାଣ । ଘର ସାମ୍ନାରେ ପହଞ୍ଚି ଦେଖିଲି ଅଧକ୍ଷ ଶ୍ରୀଯୁକ୍ତ ବି.କେ.ମହାପାତ୍ର ଘରସାମ୍ନା ସିମେଣ୍ଟ ଚଟାଣ ଉପରେ ଟିଣ ଚେୟାର ଟେବୁଲ ପକାଇ ଚିଲ୍ଡ୍ ବିୟର ପିଉଥାନ୍ତି । ଛାଇ ଆଲୁଅରେ ତାଙ୍କୁ ଖଣ୍ଡେ ଦୂରରୁ ଦେଖିବା କଷ୍ଟ । ଗରମ ଯୋଗୁ ସନ୍ଧ୍ୟା ପରେ ବାହାରେ ବସିଥିଲେ । ମୁଁ ପହଞ୍ଚି ତାଙ୍କୁ ମୋର ପରିଚୟ ଦେଲି । ବିୟର ଗ୍ଲାସରୁ ଗୋଟେ ସିପ୍ ନେଲାପରେ, ସେ ମୋତେ ତାଙ୍କ ସାମ୍ନାରେ ପଡ଼ିଥିବା ଗୋଟେ ଟିଣ ଚେୟାରରେ ବସିବାକୁ କହି, ମୋ ବିଷୟରେ ଜାଣିବାକୁ ଚାହିଁଲେ । ଆଗରୁ ସେ ମୋତେ ଜାଣି ନଥିଲେ, ଯଦିଓ ମୁଁ ତାଙ୍କୁ ୧୯୬୪ ମସିହା ଛାତ୍ର ଆନ୍ଦୋଳନ ବେଳେ ଭଲ ଭାବରେ ଜାଣିଥିଲି । ୧୯୬୪ ମସିହା ଛାତ୍ର ଆନ୍ଦୋଳନରେ ମୁଁ ବାଣୀବିହାର ଛାତ୍ର ସଂସଦର ସଂପାଦକ ଭାବେ ଆନ୍ଦୋଳନରେ ମୁଖ୍ୟ ଭାଗ ନେଇଥିଲାବେଳେ, ସେ କଟକ ଜିଲ୍ଲାର ପୁଲିସ୍ ଏସ.ପି. ଥିଲେ । ଛାତ୍ର ଆନ୍ଦୋଳନ କଟକ ସହରକୁ କେନ୍ଦ୍ରକରି ସାରା ଓଡ଼ିଶାକୁ ବ୍ୟାପିଥିଲା ଏବଂ କଟକ ସହର ଏହାର କେନ୍ଦ୍ରବିନ୍ଦୁ ଥିଲା । ତେଣୁ ତାଙ୍କୁ ମୁଁ ସେଇ ସମୟରୁ ଜାଣିଥିଲି । ତା ଛଡ଼ା ମିଃ ମହାପାତ୍ର, ଏକମାତ୍ର ଏସ.ପି., ଯେ କି କଟକ ଜିଲ୍ଲାରେ ସାତବର୍ଷରୁ ଊର୍ଦ୍ଧ୍ୱକାଳ ଧରି ଏସ.ପି. ଥିଲେ । ମୋର ପରିଚୟ ଦେଲାବେଳେ ମୁଁ ଯେତେବେଳେ କହିଲି ପୁଲିସ୍‌କୁ ଆସିବା ପୂର୍ବରୁ ମୁଁ ମାଜିଷ୍ଟ୍ରେଟ୍ ଭାବେ ଦେଢ଼ବର୍ଷରୁ ଊର୍ଦ୍ଧ୍ୱ ସମୟ କାମ କରିଥିଲି ସେ ବିୟର ଗ୍ଲାସ ଛାଡ଼ି ମୋ ଆଡ଼େ କିଛି ସମୟ ପାଇଁ ଚାହିଁଲେ । କିଛି ସମୟ ପରେ ଗ୍ଲାସରୁ ଆଉ ଗୋଟିଏ ସିପ୍ ନେଇ କହିଲେ ''ମାଜିଷ୍ଟ୍ରେଟ୍ ଥିଲ-ଭଲ ଥିଲ-ପୁଲିସରେ ଜଏନ୍ କରିବାକୁ କାହିଁକି ଆସିଲ ? ତୁମ ପାଇଁ ମାଜିଷ୍ଟ୍ରେଟ୍ ଚାକିରି ବୋଧେ ଭଲ-ବରଂ ଫେରିଯାଇ ସେଇଥିରେ ରୁହ ।'' ତାଙ୍କ କଥା ଶୁଣି ମୁଁ ମନେ ମନେ ପ୍ରମାଦ ଗଣିଲି । ପ୍ରଥମତଃ ମୁଁ ପୁଲିସ ଚାକିରିରେ ଆସିବାକୁ ଇଚ୍ଛୁକ ନଥିଲି, ପରେ ରେଭେନ୍ୟୁ ସେକ୍ରେଟାରୀଙ୍କ ସଙ୍ଗେ କଳିକରି ସେ ବିଭାଗରୁ କୌଣସିମତେ ଛମାସ ପରେ ରିଲିଭ ହୋଇ ଏଠାକୁ ଆସିଲି । ଜଏନ୍ କରିବାକୁ ଆସିଲାପରେ ଅଧକ୍ଷ ଏକଥା କହୁଛନ୍ତି । ମୁଁ ଚୁପ୍‌ଚାପ୍ ବସିଥାଏ । ସେ ଆଉ କେତେକଥା କହିଲେ ମାତ୍ର ସେ ସବୁକଥା ମୋର ଗୋଟେ କାନରେ ପଶି ଅନ୍ୟ କାନରେ ବାହାରିଯାଉଥାଏ । ବସି ବସି ଭାବୁଥିଲି, କାହିଁକି ଦେଖା କରିବାକୁ ଆସି ଏ ଅବସ୍ଥାରେ ପଡ଼ିଲି ।

ମୋତେ ଚୁପ୍ ହୋଇ ବସିବାର ଦେଖି, ସେ ପୁଣି କହିଲେ ''ମୁଁ କାହିଁକି ଏକଥା କହିଲି ତୁମେ ବୁଝି ପାରିନଥିବ । ତୁମ ପୂର୍ବରୁ ଯେଉଁ ଅଫିସର ଏଠି ଟ୍ରେନିଂ ନେଉଥିଲେ, ସେମାନଙ୍କ ବ୍ୟବହାରରେ ମୁଁ ଅତ୍ୟନ୍ତ ଲଜ୍ଜିତ । ଜଣେ ଡାଇରେକ୍ଟ ଓ.ପି.ଏସ୍ ଅଫିସର ନିକଟରୁ ଏପରି ନିମ୍ନମାନର ବ୍ୟବହାର ଆଶା କରାଯାଏ ନାହିଁ । ସେମାନେ ତୁମ ପରି ମାଜିଷ୍ଟ୍ରେଟ୍ ଥିଲେ । ତାକୁ ଛାଡ଼ି ପୁଲିସ୍‌ରେ ଜଏନ୍ କଲେ । ମୋ ଆଖିରେ ସେମାନେ ପୁଲିସ ପାଇଁ ଉପଯୁକ୍ତ ନୁହଁନ୍ତି । ବରଂ ମାଜିଷ୍ଟ୍ରେଟ ହିସାବରେ ଭଲରେ ଥା'ନ୍ତେ । ତେଣୁ ମୁଁ କହୁଛି ପୁଲିସ୍‌ରେ ଯଦି

ଅଫିସର ଭାବେ କାର୍ଯ୍ୟ କରିବ, ତା ହେଲେ ତୁମର ବ୍ୟବହାର, କାର୍ଯ୍ୟକାରିତା, ଅଫିସରୋଚିତ ହେବା ଉଚିତ । ମୁଁ ସବୁବେଳେ ଭାବେ, ଜଣେ ଡାଇରେକ୍ଟ ଓ.ପି.ଏସ ଅଫିସର ଆଉ ଜଣେ ଡାଇରେକ୍ଟେ ଆଇ.ପି.ଏସ, ଅଫିସର ମଧ୍ୟରେ ବିଶେଷ କିଛି ତଫାତ୍ ନାହିଁ । କେବଳ ଭାଗ୍ୟ ଜଣକୁ ଏପଟକୁ ଟାଣି ଆଣିଲା ବେଳେ, ଅନ୍ୟଜଣେ ପଛରେ ପଡ଼ିଗଲା । ତେଣୁ ଓ.ପି.ଏସ୍ ଅଫିସର ଭାବେ  ଜଏନ୍ ଯଦି କ୍ୱରିବ, ତୁମର କାର୍ଯ୍ୟ କଳାପ, ବ୍ୟବହାର ସେଇପରି ହେବା ଉଚିତ । ଯଦି  ନକରି ପାରିବ ବରଂ ମାଜିଷ୍ଟ୍ରେଟ୍ ହୋଇ ରହିବାଭଲ''  । ମୁଁ ସେଇପରି ଶୁଣୁଥାଏ । ପାଟିରୁ କଥା ବାହାରୁ ନଥାଏ । କ'ଣ କହିବି । ମନେ ମନେ  ଭାବୁଥିଲି । କାହିଁକି ଆସିଲି ।

ଅଧକ୍ଷ, ମିଃ ମହାପାତ୍ର କିଛି ସମୟ ପରେ କହିଲେ ''ମୁଁ ମଧ୍ୟ ଜଣେ ଡାଇରେକ୍ଟ ଡି.ଏସ୍.ପି. ଭାବେ ଜଏନ୍ କରିଥିଲି । କେବେ ହେଲେ, ମୁଁ ନିଜକୁ ଅନ୍ୟ ଅଫିସରଙ୍କ ତୁଳନାରେ କମ୍ ବୋଲି ଭାବିନି । ଯେତେବେଳେ ଡାଇରେକ୍ଟ ଅଫିସରମାନଙ୍କର କାର୍ଯ୍ୟକଳାପ, ବ୍ୟବହାର ନିମ୍ନ ମାନର ଦେଖେ, ମୁଁ ତାହା ସହ୍ୟ କରିପାରେନି'' । ସେ ଏତକ କହିଲା ବେଳେ, ସେଇ ଛାଇ ଆଲୁଅ ଭିତରେ ମୁଁ ଲକ୍ଷ୍ୟ କରୁଥିଲି ତାଙ୍କ ମୁହଁରେ ଏକ ବିଷାଦର ଛାୟା । ମୋ ପୂର୍ବରୁ ଟ୍ରେନିଂ ନେଇଥିବା ଡାଇରେକ୍ଟ ଓ.ପି.ଏସ୍. ଅଫିସରମାନଙ୍କ ବ୍ୟବହାରରେ ସେ  ମର୍ମାହତ, ଯାହାକି ତାଙ୍କ ହୃଦୟକୁ କଷ୍ଟ ଦେଇଥିଲା । ତାଙ୍କ ମନଭିତରେ ଟିକିଏ ସହାନୁଭୂତିର ସଂକେତ ଦେଖିଲା ପରେ ମୁଁ ମୁହଁଖୋଲି କହିଥିଲି ''ସାର ମୋର ବ୍ୟବହାର, କାର୍ଯ୍ୟକଳାପରେ, ଆପଣ କେବେହେଲେ ତ୍ରୁଟି ଦେଖିବେନି । ମୁଁ  ଚେଷ୍ଟା କରିବି, ଆପଣଙ୍କ ମନରେ କେବେହେଲେ କଷ୍ଟ ନ ଦେବାପାଇଁ '' । ମୋ ପାଟିରୁ ଏତକ ଶୁଣିଲା ପରେ, ସେ ମୁହଁ ଟେକି ମୋ ଆଡ଼େ ଚାହିଁଲେ ଏବଂ କହିଲେ ''ହଉଯାଅ- କାଲି ସକାଳେ ଜଏନ୍ କର'' ।

ମେ ମାସ ତିନି ତାରିଖ ସକାଳ ୧୦.୩୦ ମିନିଟ୍‌ରେ ମୁଁ ଟ୍ରେନିଂ କଲେଜରେ ଅଫିସର ଟ୍ରେନିଂ  ଭାବେ ଜଏନ୍ କଲି । ଅନୁଗୁଳରେ ଟ୍ରେନିଂ କଲେଜ ୧୯୪୭ ମସିହା ପରେ କାର୍ଯ୍ୟ କରିବା ଆରମ୍ଭ କରିଥିଲା । ତା ଆଗରୁ ୧୯୧୪ ମସିହାରେ କଟକର ଚାଉଳିଆଗଞ୍ଜ ଠାରେ କନେଷ୍ଟବଳ ଟ୍ରେନିଂ ସ୍କୁଲ ଖୋଲି ଓଡ଼ିଶାର ପୁଲିସ୍ କନେଷ୍ଟବଳମାନଙ୍କୁ ଟ୍ରେନିଂ ଦିଆ ଯାଉଥିଲା । ୧୯୧୯ ମସିହା ବେଳକୁ ତତ୍ କାଳୀନ ବିହାର ଓଡ଼ିଆ ଆଇ.ଜି ସରକରଙ୍କୁ ପରାମର୍ଶ ଦେଲେ ଯେ, ପୁଲିସ୍ ଟ୍ରେନିଂରେ ଖର୍ଚ୍ଚ କମ୍ କରିବା ପାଇଁ କଟକ କନେଷ୍ଟବଳ ଟ୍ରେନିଂ ସ୍କୁଲକୁ ବନ୍ଦ କରିଦେଇ, ଓଡ଼ିଶାର କନେଷ୍ଟବଳମାନଙ୍କୁ ବିହାରର ନାଥନଗରଠାରେ ଥିବା ଟ୍ରେନିଂ ସ୍କୁଲରେ ଟ୍ରେନିଂ ଦେବାରେ କିଛି ଅସୁବିଧା ହେବନି । ତାଙ୍କର ପରାମର୍ଶ ଅନୁସାରେ, କଟକ ଟ୍ରେନିଂ ସ୍କୁଲକୁ ବନ୍ଦ କରିଦିଆଗଲା । ୧୯୩୬ ମସିହା, ଏପ୍ରିଲ୍ ପହିଲାରେ ଓଡ଼ିଶା ବିହାରଠାରୁ ଅଲଗା ହୋଇ ସ୍ୱତନ୍ତ୍ର ପ୍ରଦେଶ ହେଲାପରେ, ଓଡ଼ିଶାରେ ପୁଲିସ୍ ଟ୍ରେନିଂ ସ୍କୁଲ ଖୋଲିବାକୁ ପ୍ରସ୍ତାବ ଦିଆଗଲା କାରଣ ଓଡ଼ିଶାରୁ ଯାଉଥିବା କନେଷ୍ଟବଳମାନଙ୍କର ଟ୍ରେନିଂ ଖର୍ଚ୍ଚ ଓଡ଼ିଶା ସରକାର ବହନ କରୁଥିଲେ । ତେଣୁ ୧୯୩୭ ମସିହା ସେପ୍ଟେମ୍ବର ମାସ ପହିଲାରୁ

ଅନୁଗୁଳଠାରେ ପରିତ୍ୟକ୍ତ ପୁଲିସ୍ ବ୍ୟାରେକ୍‌ରେ କନେଷ୍ଟବଳ ଟ୍ରେନିଂ ସ୍କୁଲ ଆରମ୍ଭ ହେଲା ଏବଂ ଏହାର ଅଧକ୍ଷ ଜଣେ ଡି.ଏସ୍.ପି. ମିଃ ଏଫ୍. ମୋରଗାନ୍ ରହିଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ସର୍ଜେଣ୍ଟ ମେଜର,ଚାରିଜଣ ସବ୍ ଇନସ୍‌ପେକ୍ଟର ପାଞ୍ଚଜଣ ହାବିଲ୍ ଦାର ଏବଂ ଜଣେ ଆକାଉଟାଣ୍ଟ ମୃତୟନ ହେଲେ । ପୁଲିସ୍ କନେଷ୍ଟବଳମାନଙ୍କ ପାଇଁ ଟ୍ରେନିଂ ସ୍କୁଲ ହେଲା ବେଳେ, ଓଡ଼ିଶାର ପୁଲିସ ସବ୍.ଇନ୍‌ସପେକ୍ଟର ମାନେ, ବିହାରର ହଜାରୀବାଗ୍ ପୁଲିସ୍ ଟ୍ରେନିଂ କ୍ଲେଜକୁ ଟ୍ରେନିଂ ପାଇଁ ଯାଉଥିଲେ । ସେତେବେଳର କେତେକ ଦେଶୀୟ ରାଜ୍ୟ, ସେମାନଙ୍କର ପୁଲିସ୍ ଅଫିସରଙ୍କୁ ହାଜାରୀବାଗ୍‌କୁ ଟ୍ରେନିଂ ପାଇଁ ପଠାଉଥାନ୍ତି । ୧୯୪୭ ମସିହା ପରେ, ଅନୁଗୁଳ ପୁଲିସ୍ ଟ୍ରେନିଂ ସ୍କୁଲ ପୁଲିସ୍ ଟ୍ରେନିଂ କଲେଜରେ ପରିଣତ ହେଲା ଏବଂ ସେଇଦିନଠାରୁ ଏଠାରେ କନେଷ୍ଟବଳଙ୍କ ଠାରୁ ଓ.ପି.ଏସ ଅଫିସରମାନେ ଏବଂ ଆଇ.ପି.ଏସ୍.ଅଫିସରମାନେ ମାଉଣ୍ଟଆବୁରୁ ଟ୍ରେନିଂ ସାରି, ଏଠାରେ ତିନିମାସ ଟ୍ରେନିଂ ନେଉଥିଲେ ।

ଜଏନ କଲାବେଳେ ମୁଁ ଏକମାତ୍ର ଅଫିସର ଟ୍ରେନିଂ ନେଉଥାଏ । ଅବଶ୍ୟ ଟ୍ରେନିଂ କଲେଜରେ ସେତେବେଳେ ସବ୍-ଇନିସ୍‌ପେକଟର, କନେଷ୍ଟବଳମାନେ ଟ୍ରେନିଂ ନେଉଥାନ୍ତି । ମାତ୍ର ଅଫିସର ହିସାବରେ ମୁଁ ଏକା । ମୋର ରହିବା ବନ୍ଦୋବସ୍ତ ମିଶନ ବଙ୍ଗଳା-ଅଫିସର ମେସ୍‌ରେ ହୋଇଥାଏ । ''ମିଶନ ବଙ୍ଗଳା'' ଅନୁଗୁଳ ସହର ମଧଭାଗରେ । ମିଶନାରୀମାନେ ଏଇ ବଙ୍ଗଳାକୁ ସେମାନେ ଅନୁଗୁଳ ଛାଡ଼ିଯିବା ପୂର୍ବରୁ ସରକାରଙ୍କୁ ଦେଇଥିବା ଯୋଗୁ ଏହା ମିଶନ ବଙ୍ଗଳା ନାମରେ ପରିଚିତ । ପାଞ୍ଚ ଏକର ଜମିର ମଝିରେ ଏଇ ବଙ୍ଗଳା । ଚାରିପଟେ ବଡ଼ ବଡ଼ ଶାଳ ଗଛ । ବଙ୍ଗଳାକୁ ଲାଗି ଏକ ବିରାଟ ଅଶ୍ୱତ୍‌ଥ ଗଛ । ଶାଳଗଛ, ଛଡ଼ା ଆମ୍ବ ଗଛ ମଧ ବହୁତଥାଏ । ବଙ୍ଗଳାରେ ତିନିଟା ବଡ଼ ରୁମ୍, ଦୁଇଟି ଛୋଟ କଣ ରୁମ୍, ମଝିରେ ବଡ଼ ଡ୍ରଇଁ ରୁମ୍ ପାଖକୁ ଲାଗି ଡାଇନିଂ ହଲ । ସାମ୍ନା ଏବଂ ପଛରେ ଦଶ, ବାରଫୁଟ୍ ଓସାରର ଚଉଡ଼ା ବାରଣ୍ଡା । ସେତେବେଳେ ବଙ୍ଗଳାକୁ ବିଜୁଳୀ କରଣ କରାଯାଇନଥାଏ । ଖଣ୍ଡେ ତାରରେ ବିଜୁଳୀବତୀ ଲଗାହୋଇ ଝୁଲାଯାଏ । ବଙ୍ଗଳାର ବାଉଣ୍ଡାରୀକୁ ଲାଗି ଗୋଟେ ପଟେ ମୁର୍ଦ୍ଦାର କାଟିବା ଘର ଅନ୍ୟ ପଟେ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ, ସାମ୍ନାରେ ରାସ୍ତା । ବିଙ୍ଗଳାଟି ଏକଦମ୍ ନିଛାଟିଆ । ରୋଷେଇ କରିବା ପାଇଁ ବଙ୍ଗଳା ପଛପଟ ଖଣ୍ଡେ ଦୂରରେ ଗୋଟେ ଚାଳ ଘର । ଜଏନ୍ କଲାଦିନ ଉପର ବେଳା ଠାରୁ, ମୋତେ ବଙ୍ଗଳାରେ ଆସି ରହିବାକୁ ହେଲା । ଯଦୁବାବୁ, ରିକ୍ସାରେ ମୋ ବେଡ଼ିଂ ଖଣ୍ଡିକ ଆଣି ବଙ୍ଗଳାରେ ଦେଇଗଲେ । ମୁଁ ବଙ୍ଗଳାକୁ ଆସିଲାପରେ, ବଡ଼ରୁମ୍‌ରେ ନ ରହି ଉତ୍ତରପଟର କଣ ଛୋଟ ରୁମ୍‌ଟିରେ ରହିଲି । ରହିବା ରୁମ୍‌କୁ ଲାଗି ଗାଧୁଆ ଘର । ଗାଧୁଆ ଘରେ କମୋଟ ପାଇଖାନା । ସକାଳୁ ଝାଡ଼ା ଗଲାପରେ ଯଦି ସୁଇପର ଆସି କମୋଟ ସଫା ନ କଲେ, ତାହେଲେ ଆଉଥରେ ଝାଡ଼ାଯାଇ ହେବନି । ମୋ ପାଇଁ ରୋଷେଇ କରିଦେବାକୁ ଜଣେ ବୁଢ଼ା ରୋଷେଇଆ ଦେଇଥାନ୍ତି । ସନ୍ଧ୍ୟା ସାତଟା ବେଳକୁ ରୋଷେଇ ସାରି ଦେଇ, ସେ ମୋ ଖାଇବା ଡାଇନିଂ ଟେବୁଲ ଉପରେ ଥୋଇ ଦିଏ । ନିଜେ

ଦୁଇ, ଚାରିଦମ୍ ଗଞ୍ଜେଇ ଟାଣି ଶୋଇପଡ଼େ । ମୁଁ ମୋର ସୁବିଧା ଦେଖି ଖାଇଦିଏ । ମୋର ଡ୍ରେସ୍ ପତ୍ର ଦେଖିବା ପାଇଁ ଜଣେ ପୁରୁଣା କନେଷ୍ଟବଲକୁ ଦାୟିତ୍ୱ ଦେଇଥାନ୍ତି । ସେ ସକାଳୁ ଆସି, ମୁଁ କିପରି ପ୍ୟାରେଡ଼େ ବୁଟ୍ ଉପରେ ଠିକ୍‌ଭାବେ ପଟି ପକାଇ ଯାଇ ପାରିବି, ମୋତେ ଶିଖାଇ ଦିଏ । ସେ ତା କାମ ସାରି ସନ୍ଧ୍ୟା ବେଳକୁ ଚାଲିଯାଏ । ଏତେ ବଡ଼ ବଙ୍ଗଳାରେ ରାତିଟାପାଇଁ ମୁଁ ଏକୁଟିଆ । ବଙ୍ଗଳାର ବିଜୁଳିକରଣ ହୋଇ ନ ଥିବା ଯୋଗୁ ଖଣ୍ଡେ ବିଜୁଳି ତାର ଖୁଣ୍ଟରୁ ଟାଣି ଗୋଟେ ବଲ ବାରଣ୍ଡାରେ ଝୁଲୁଥାଏ । ଲାଇନ୍ ଆସିଥିଲେ ମଧ ପ୍ରାୟ ସବୁଦିନ ସନ୍ଧ୍ୟାପରେ ଅନୁଗୁଳରେ ଲାଇନ୍ ନଥାଏ । ତେଣୁ ଲଣ୍ଠନ ହିଁ କାମ କରେ । ଛୁଟିଦିନକୁ ଛାଡ଼ି ଦେଲେ ଅନ୍ୟ ଦିନମାନଙ୍କରେ ସକାଳ ପାଞ୍ଚଟା ପଇଁଚାଳିଶ୍ ମିନିଟ୍‌ରୁ ପ୍ୟାରେଡ଼୍ କ୍ଲାସ ଆରମ୍ଭ ହୋଇ ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ ଚାଲେ । ସନ୍ଧ୍ୟା ପରେ ବଙ୍ଗଳାକୁ ଫେରିଲେ ଟିକିଏ ବିଶ୍ରାମ ନେବାକୁ ସମୟ ମିଳେ । ମୁଁ ଏଠାରେ ଏକୁଟିଆ ରହୁଥିବା ଯୋଗୁ, ପ୍ରାୟ ପ୍ରତ୍ୟେକ ଦିନ ସନ୍ଧ୍ୟାବେଳକୁ ଯଦୁ ମିଶ୍ରେ, ଶଶିବାବୁ ଏମାନେ ଆସନ୍ତି । ଘଣ୍ଟାଏ ଦେଢ଼ ଘଣ୍ଟା ବସି ଗପସପ କରି ଯାଆନ୍ତି । ସମୟ କଟିଯାଏ । ମୁଁ ଜଏନ୍ କରିବାର ମାତ୍ର ୧୦ ଦିନ ପରେ, ପି.ଟି.ସି ୧୫ ଦିନ ପାଇଁ ଗ୍ରୀଷ୍ମକାଳୀନ ଛୁଟିପାଇଁ ବନ୍ଦ ରହିଲା । ଯେଉଁମାନେ ଟ୍ରେନିଂ ନେଉଥିଲେ, ସେମାନେ ଛୁଟି ହେଲା ମାତ୍ରକେ, ଅନୁଗୁଳ ଛାଡ଼ି ଚାଲି ଯିବାକୁ ବାଟ ପାଇଲେନି । ପ୍ରଥମତଃ ଟ୍ରେନିଂର କଷ୍ଟ, ଦ୍ୱିତୀୟରେ ଅନୁଗୁଳରେ ମେ ମାସର ଅସହ୍ୟ ଗରମ ସାଙ୍ଗକୁ ପାଣିର ଅଭାବ । ମୁଁ ୧୫ ଦିନ ପାଇଁ ବରହମପୁର ଚାଲିଗଲି । ସେତେବେଳେ ମୋ ଶ୍ୱଶୁର ରାମଚନ୍ଦ୍ର ନନ୍ଦ ବରହମପୁରରେ କମରସିଆଲ୍ ଟାକ୍ସ ଅଫିସର ଥା'ନ୍ତି ଏବଂ ମୋ ସ୍ତ୍ରୀ ନୀରଦପ୍ରଭା ତାଙ୍କରି ପାଖରେ ରହୁଥାଏ । ମୁଁ ବରହମପୁରରେ ପହଞ୍ଚିଲା ପରେ, ଅନୁଗୁଳରେ ପୁଲିସ୍ ଟ୍ରେନିଂର କଷ୍ଟ କହିଲି । ମୋ କଥାଶୁଣି ପୁଣିଥରେ ମୋତେ ପୁଲିସ୍ ବିଭାଗରୁ ଫେରାଇ ଆଣିବାକୁ ଚେଷ୍ଟା କରାଗଲା । ମାତ୍ର ତାହା ହେଲାନାହିଁ । ବରହମପୁରରୁ ଭୁବନେଶ୍ୱର ଯିବାଆସିବା ମଧରେ ପନ୍ଦର ଦିନ ଚାହୁଁ ଚାହୁଁ କଟିଗଲା । କାମ କିଛି ହେଲାନି, ଖାଲି ଦଉଡ଼ିବା ସାର ହେଲା । ପନ୍ଦର ଦିନ ପରେ, ଫେରିଲି ପୁଲିସ୍ ଟ୍ରେନିଂର କଲେଜକୁ । ସେତେବେଳକୁ ମୋର ପ୍ୟାରେଡ୍, ପିଟିଡ୍ରେସ ସବୁ ଠିକ୍ ହୋଇ ଯାଇଥାଏ । ତେଣୁ ଗ୍ରୀଷ୍ମ ଅବକାଶ ପରେ ପୂରାମାତ୍ରାରେ ମୋର ଟ୍ରେନିଂ ଆରମ୍ଭ ହୋଇଗଲା ।

## ଟ୍ରେନିଂ କଲେଜରେ ଗୁଣିଆ :

ମୁଁ ଏକୁଟିଆ ଟ୍ରେନିଂ ନେଉଥିବା ସମୟରେ, ଜୁନ୍ ମାସରେ ଓଡ଼ିଶା ଆଡ୍‌ମିନ୍‌ଷ୍ଟ୍ରେଟିଭ ଟ୍ରେନିଂ ସ୍କୁଲ୍, ହୀରାକୁଦରୁ ଦଳେ ଓ.ଏ.ଏସ୍ ଅଫିସର, ପୁଲିସି ଟ୍ରେନିଂ କଲେଜକୁ ଟ୍ରେନିଂ ପାଇଁ ଆସିଥାନ୍ତି । ପ୍ରତ୍ୟେକ ଓ.ଏ.ଏସ୍ ବ୍ୟାଚ୍ ଅନୁଗୁଳକୁ ସାତଦିନ ଟ୍ରେନିଂ ପାଇଁ ଆସନ୍ତି । ପୁଲିସ୍-ମାଜିଷ୍ଟ୍ରେଟ ସହଯୋଗ, ଆଇନ୍ ଶୃଙ୍ଖଳା ସମୟରେ ପୁଲିସ-ମାଜିଷ୍ଟ୍ରେଟଙ୍କ କାର୍ଯ୍ୟପ୍ରଣାଳୀ ଏବଂ ଉଇପନ୍ ଟ୍ରେନିଂ ସେମାନଙ୍କୁ ଏଠାରେ ଦିଆଯାଇଥାଏ । ସେଇ ବ୍ୟାଚ୍‌ରେ

ମୋର କେତେଜଣ ସହପାଠୀ ମଧ୍ୟ ଟ୍ରେନିଂ ପାଇଁ ଆସିଥାନ୍ତି । ଦିନେ ସନ୍ଧ୍ୟାବେଳେ ପ୍ରିନିସ୍‌ପାଲଙ୍କ ଅନୁମତି ନେଇ ମୁଁ ସେମାନଙ୍କୁ ''ଚା'' ପିଇବା ପାଇଁ ମିଶନ ବଙ୍ଗଳାକୁ ଡାକିଥାଏ । ପ୍ରିନିସ୍‌ପାଲ ଏବଂ ସେମାନଙ୍କ ସଙ୍ଗେ ଆସିଥିବା ଅଫିସରମାନେ ମଧ୍ୟ ସନ୍ଧ୍ୟା ଚା ପାଇଁ ନିମନ୍ତ୍ରିତ ହୋଇଥାନ୍ତି । ପ୍ରାୟ ୫ଟାରୁ ଚା ପାନ ବ୍ୟବସ୍ଥା ଆରମ୍ଭ ହେଲା ଏବଂ ସନ୍ଧ୍ୟା ବେଳକୁ ସେମାନେ ବଙ୍ଗଳାରୁ ବିଦାୟ ନେଲେ । ସେମାନେ ଗଲା ପରେ ମୁହଁ ଅନ୍ଧାର ଭିତରେ ମୁଁ ହଠାତ୍ ବଙ୍ଗଳା ପଛ ପଟେ ଗୋଟିଏ ପିଲାର ପାଟି ଶୁଣିଲି । କ'ଣ ହେଲା ବୋଲି ପଛପଟକୁ ଗଲାପରେ ଦେଖିଲି, ବଙ୍ଗଳା ସୁଇପରର ପାଞ୍ଚ ଛ ବର୍ଷର ଛୋଟ ପୁଅଟି ପଛପଟ ବାରଣ୍ଡା ଉପରେ ବସି ଥରୁଥାଏ । ସୁଇପର ପାଖରେ ଠିଆ ହୋଇ ବଡ଼ ପାଟିରେ କହିଲା ଯେ, ତା ପୁଅ ରୋଷେଇ ଘର ଆଡୁ ହାତରେ ଗୋଟେ ମିଠା ଧରି ଆସୁଥିଲାବେଳେ ଏଇ ଓସ୍ତଗଛ ମୂଳରେ କାହାକୁ ଦେଖି ଚମ୍‌କି ପଡ଼ି ସେତିକିବେଳୁ ଥରୁଛି । ଆହୁରି କହିଲା ଯେ, ସେଇ ଓସ୍ତଗଛରେ ଗୋଟେ ସାହେବ ଭୂତ ଅଛି । ବେଳେ ବେଳେ ଦେଖାଦିଏ । ଯେତେବେଳେ ମିଶନାରୀମାନେ ଏଇ ବଙ୍ଗଳାରେ ରହୁଥିଲେ ସେତେବେଳେ ଜଣେ ଗୋରା ସାହେବ ଏଇ ବଙ୍ଗଳାରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଥିଲା । ସେଇ ଦିନରୁ ତାର ଅତୃପ୍ତ ଆତ୍ମା ପ୍ରେତଭାବେ ଏଇ ବଙ୍ଗଳାରେ ବୁଲେ । ସେ ମଧ୍ୟ କହିଲା, ସେ ବହୁଥର ତାକୁ ଦେଖିଛି । ମାଙ୍କଡ଼ ପରି ଗଛରେ ଚଢ଼ିଯାଏ । ରୋଷେଇଆ ତା କଥାକୁ ସମର୍ଥନ କରି ସେଇକଥା କହିଲା । ସେତେବେଳ ପର୍ଯ୍ୟନ୍ତ ପିଲାଟି ଥରୁଥାଏ । ଏ ସବୁ ଦେଖି ମୁଁ ରୋଷେଇଆକୁ କହିଲି ସାତ କେରା ଦୁବ, ହଳଦି ଗୁଣ୍ଡ ଆଉ ଗୋଟା ଶୋରିଷ କିଛି ଆଣିବାକୁ । ସେ ସଙ୍ଗେ ସଙ୍ଗେ ଦଉଡ଼ି କରି ଗୋଟାଶୋରିଷ, ହଳଦୀଗୁଣ୍ଡ ନେଇ ଆସିଲା । ସୁଇପର ପାଖରୁ ଦୁବ ସାତକେରା ଆଣିଲା । ମୁଁ ଦୁବକୁ ହଳଦୀ ପାଣିରେ ଧୋଇ, ଗୁଣୁଗୁଣୁ କରି ମନ୍ତ୍ର ପାଠ କରି ସେ ପିଲାକୁ ଦୁବ କେରାକରେ ଝାଡ଼ି ଦେଲି । ଝାଡ଼ିଲା ବେଳେ ମନ୍ତ୍ର ପାଠ କରୁଥାଏ । ସମସ୍ତେ ଶୁଣୁଥାନ୍ତି । କିଛି ସମୟ ପରେ, ପିଲାଟିର ଥରା ବନ୍ଦ ହୋଇଗଲା, ସେ ଉଠି ଠିଆ ହୋଇ କହିଲା ଯେ ରୋଷେଇ ଘରଆଡୁ ଅନ୍ଧାରରେ ଆସୁଥିଲା ବେଳେ ଏଇ ଓସ୍ତଗଛ ଉପରକୁ କିଏ ଗୋଟେ ଚଢ଼ିଗଲାରୁ ସେ ଡରିଗଲା । ଯାହା ହେଉ, ସେ ଭଲ ଭାବେ କଥା କହିଲା ପରେ, ତାକୁ ଆଉ ଗୋଟେ ମିଠା ଓ ସିଙ୍ଗଡ଼ା ଖାଇବାକୁ ଦେଲି ଏବଂ ରୋଷେଇଆ ଆଣିଥିବା ଗୋଟା ଶୋରିଷକୁ ସମସ୍ତଙ୍କ ସାମ୍ନାରେ ମନ୍ତ୍ରଣ କରି, ତାକୁ ଦେଇ କହିଲି ବଙ୍ଗଳାଘର ଚାରିପଟେ ବୁଣିଦେ । ଶୋରିଷ ବୁଣି ଦେଲା ପରେ, ସାହେବ ପ୍ରେତାତ୍ମା କେବେ ବଙ୍ଗଳା ଭିତରକୁ ପ୍ରବେଶ କରିବନି । ସେମାନେ ସେଇ କଥା କଲେ ଏବଂ ମୁଁ ଅନୁଭବ କଲି, ତାଙ୍କ ମନରୁ ଭୟ ବହୁଅଂଶରେ ଦୂର ହୋଇଗଲା ।

ପରଦିନ ମୁଁ ପ୍ୟାରେଡ଼େ କ୍ଲାସ ସାରି କାଣ୍ଟିନ୍ ପାଖେ ପହଞ୍ଚିଲା ବେଳକୁ ଶୁଣିଲି ଯେ, ମୁଁ ମନ୍ତ୍ର ଜାଣିଥିବା ଯୋଗୁ ଏକୁଟିଆ ମିଶନ ବଙ୍ଗଳାରେ ରହିପାରୁଛି । ନ ହେଲେ କେବେ ଠାରୁ ସାହେବ ଭୂତ ମୋତେ ସେଠାରୁ ବିଦାୟ କରି ଦେଇ ସାରନ୍ତାଣି । ଡ୍ରିଲ ସବ୍‌ଇନିସ୍‌ପେକ୍ଟର ମିଃ ସାମଲ ଏକଥା କହିଲା ପରେ, ସାରା ପି.ଟି.ସିରେ ପ୍ରଚାର ହୋଇଗଲା ଯେ ମୁଁ ଜଣେ

ତାନ୍ତ୍ରିକ, ଗୁଣି ଗାରେଡ଼ି ଜାଣେ । ଏଇ ଘଟଣାର ଚାରିଦିନ ପରେ, ପି.ଟି.ସିର ଆକାଉଟାଣ୍ଟ ସକାଳୁ ସକାଳୁ ପ୍ୟାରେଡ଼ ପଡ଼ିଆ ପାଖେ ମୋତେ ଅପେକ୍ଷା କରି ଠିଆ ହୋଇଥିଲେ । ମୁଁ ପ୍ୟାରେଡ୍ କ୍ଲାସ ସାରି ଫେରିଲା ପରେ, ଡ୍ରିଲ ସବ୍ ଇନିସ୍‌ପେକ୍ଟର ସାମଲବାବୁ ତାଙ୍କୁ ଧରି ମୋ ପାଖେ ପହଞ୍ଚି କହିଲେ ତାଙ୍କର ଦୁଧିଆଳୀ ଗାଈଟି ସେତେବେଳକୁ ତିନିଦିନ ଧରି କୁଆଡ଼େ ଯାଇଛି, ମିଳୁନି । ସେମାନେ ବହୁତ ଖୋଜା ଖୋଜି କଲେଣି, ମାତ୍ର କିଛି ସନ୍ଧାନ ପାଉନାହାଁନ୍ତି । ଗାଈଟି କିପରି ଫେରିବ, ତାର ବ୍ୟବସ୍ଥା କରିବାକୁ ସେମାନେ ମୋତେ ଅନୁରୋଧ କଲେ । ତାଙ୍କ ଠାରୁ ଶୁଣିଲା ପରେ, ମୁଁ କିଛି ଜାଣିନି, କି, ଏ ବିଷୟରେ ମୁଁ କିଛି କହି ପାରିବିନି ବୋଲି କହିଲି, ମାତ୍ର ସେମାନେ ମୋ କଥାକୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ । ମୁଁ ଜାଣି ଜାଣି ମନା କରୁଛି ବୋଲି ସେମାନେ ଭାବି, ମୋତେ ବାରମ୍ବାର ଅନୁରୋଧ କଲେ । ସେମାନଙ୍କ ବିଶ୍ୱାସ ଦେଖି ଏବଂ ବିଦାୟ କରିବାକୁ, ମୁଁ କହିଲି ''ହଉ ଠିକ୍ ଅଛି- ଗୋଟିଏ ଫୁଲର ନାଁ କୁହ । ସେ କହିଲେ । ତା'ପରେ କହିଲି, ଠାକୁରଙ୍କ ନାଁ କୁହ । ସେ କହିଲେ । କିଛି ସମୟ ପାଇଁ ମାଟି ଉପରେ ଖଣ୍ଡେ କାଠିରେ ଗାରକାଟି ମୁଁ ତାଙ୍କୁ କହିଲି ଯେ ''ଯାଅ, ଗାଈ ଆଜି ଉପର ବେଳା ପୂର୍ବ ଦିଗଆଡୁ ମନକୁ ଘରକୁ ଆସିବ । ଯଦି ଆଜି ନ ଆସେ, ଆଉ ତା ଆଶା ରଖିବନାହିଁ'' । ସେମାନେ ମୋ କଥାକୁ ବିଶ୍ୱାସ କରି ଚାଲିଗଲେ । ସତକୁ ସତ ସେଇଦିନ ଉପର ବେଳକୁ ତାଙ୍କ ଗାଈ ଘରକୁ ଫେରିଲା । ଆକାଉଟାଣ୍ଟ ମିଠା ବାଣ୍ଟିଲେ ଏବଂ ମୁଁ ଯେ ଜଣେ ପ୍ରକୃତ ଗୁଣିଆ, ତାର ପ୍ରଚାର ଆରମ୍ଭ କରିଦେଲେ ।

ମୁଁ ତନ୍ତ୍ର ମନ୍ତ୍ର ଜାଣେ ବୋଲି, ମୋ ଅର୍ଦ୍ଦଳି କନେଷ୍ଟବଳ ମଧ ତାଙ୍କ ଗାଁରେ କହିଲା । ତା ଘର ଅନୁଗୁଳ ଠାରୁ ପନ୍ଦର କିଲୋମିଟର, ଜଙ୍ଗଲ ପାଖ ଗାଁ । ଗୋଟେରବିବାରଦିନ ସେ, ଦି'ଜଣ ଗାଉଁଲୀ ବାଣୁଆଙ୍କୁ ଧରି ବଙ୍ଗଳାରେ ହାଜର । ବାଣୁଆ ଦି'ଜଣ ଦିଇଟା ଖୁନ୍ଦା ବନ୍ଧୁକ କନାରେ ଗୁଡ଼ାଇ କରି ଆଣିଥାନ୍ତି । ମୋ ଅର୍ଦ୍ଦଳି କହିଲା ''ସାର୍ ତାଙ୍କ ବନ୍ଧୁକକୁ ଟିକିଏ ମନ୍ତ୍ରଣ କରି ଦିଅନ୍ତୁ । ଜନ୍ତୁ ପାଖରେ ଥାଇ, ଗୁଳି ମାରିଲେ ମଧ,ଗୁଳି ବାଜୁନି'' । ମୁଁ ଆଶ୍ଚର୍ଯ୍ୟ ହେଲି । କି କଥା- ବନ୍ଧୁକରୁ ଗୁଳି ବାଜୁନି, ଜନ୍ତୁ ମରୁନି, ମୁଁ କ'ଣ କରିବି ? ଯେତେ ଯାହା କହିଲେ ମଧ, ସେମାନେ କିଛି ଶୁଣିବାକୁ ନାରାଜ । ସେମାନଙ୍କ ମନ ବୋଧ କରିବାକୁ, ମୁଁ ତାଙ୍କ ବନ୍ଧୁକକୁ ହଳଦୀପାଣି, ଆଉ ଦୁବ ଘାସ ପାଣିରେ ମନ୍ତୁରାଇ ଧୋଇ ଦେଲି । ସେମାନେ ଖୁସିରେ ଫେରିଲେ । ତାର ଚାରି ପାଞ୍ଚଦିନ ପରେ ସେମାନଙ୍କ ମଧରୁ ଜଣେ ପ୍ରାୟ ଦୁଇ କେଜି କୁଟୁରା ମାଂସଧରି ବଙ୍ଗଳାରେ ହାଜର । ସେ କହିଲା ଯେ ବନ୍ଧୁକକୁ ମନ୍ତୁରା ପାଣିରେ ମନ୍ତ୍ରଣକଲା ପରେ, ସେ ଶିକାରକୁ ଯାଇଥିଲା । ଏକ ଗୁଳିକେ ଗୋଟେ କୁଟୁରା ମାରିଲା । କିଛି ମାଂସ ମୋ ପାଇଁ ଆଣିଛି । କେବଳ କଥାଟି ସେଇଠି ରହିଲା ନାହିଁ, ଏପରିକି ପୁଲିସ୍ ଲାଇନ୍‌ରେ କାହାକୁ ଜର ହେଲା, କିଏ ଡରିଲା, ସମସ୍ତେ ଆସିଲେ ମୋ ପାଖକୁ । ଥରେ ଜଣେ ମୁସଲମାନ ହାବିଲ୍‌ଦାରଙ୍କ ତେର, ଚଉଦ ବର୍ଷର ଝିଅକୁ ଭୀଷଣ ଜର ହୋଇଥିଲା । ଜର ଏବଂ ଅସହ୍ୟ ଗରମଯୋଗୁ ସେ ପ୍ରଳାପ କରିବାକୁ ଲାଗିଲା । ପି.ଟି.ସି. ଡାକ୍ତର ଶୈଳେଶ୍ୱର ନନ୍ଦ ତାକୁ

ଦେଖି, ଔଷଧ ଲେଖିଦେଇଥିଲେ ଏବଂ ସେ ମଧ ସେ ଔଷଧ ଖାଉଥିଲା, ମାତ୍ର ଜ୍ୱର ଛାଡ଼ିବାକୁ ସମୟ ଲାଗିବ । ସେ ଦି ଦିନ ତଳେ ସନ୍ଧ୍ୟାବେଳେ ଝାଡ଼ା ଯାଇଥିଲା ବେଳେ, ଡରିକରି ଜ୍ୱରରେ ପଡ଼ିଛି, ବାଉଳା ଚାଉଳା ହେଉଛି, ଡାକ୍ତରଙ୍କ ଔଷଧ କିଛି କାମ ଦେଉନି । ସେ ହାବିଲ୍‌ଦାର ଆସି ମୋ ପାଖେ ପହଞ୍ଚିଲା । ମୁଁ ଯେତେ ତାକୁ କହିଲି ଯେ, ଡାକ୍ତର ପାଖକୁ ଯାଇ ଚିକିତ୍ସା କରିବାକୁ ସେ ସେଥିରେ ରାଜି ହୋଇଥିଲେ ମଧ, ମୁଁ ଟିକିଏ ଝାଡ଼ି ଦେଲେ, ସେ ଭଲ ହୋଇଯିବ ବୋଲି ମୋତେ ଯିବାକୁ ବାଧ କରୁଥାଏ । ମୋତେ ଟ୍ରେନିଂ ଦେଉଥିବା ଓସ୍ତାଦ୍ ହାବିଲଦାର ପି.ଏନ୍.ପଟ୍ଟନାୟକ ମଧ ତାଙ୍କ ସାଙ୍ଗରେ ଆସିଥାନ୍ତି । ଶେଷକୁ ବାଧ ହୋଇ ଗଲି ଏବଂ ସେମିତି ହଳଦୀ ପାଣି, ଦୁବଘାସରେ ଝାଡ଼ି ଦେଲି ଏବଂ ମୁଣ୍ଡରେ ପାଣି ପଟି ଦବାକୁ କହି ଫେରିଲି । ତାର ପରଦିନ ଜ୍ୱର କମିଗଲା । ଅବଶ୍ୟ ମୁଁ ଭଲଭାବେ ଜାଣିଥିଲି ଡାକ୍ତର ଶୈଳେଶ୍ୱର ନନ୍ଦଙ୍କ ଚିକିତ୍ସା ଯୋଗୁ ସେ ଭଲହେଲା, ମାତ୍ର ସମସ୍ତେ କହିଲେ, ମୁଁ ଝାଡ଼ି ଦେଲାପରେ, ତା ଦେହରୁ ଡାହାଣୀ ଓହ୍ଲେଇ ଗଲା । ଗୁଣିଆହୋଇ ମୁଁ ଏତେ ଅସୁବିଧାର ସମ୍ମୁଖୀନ ହେଲି ଯେ, ପରେ ବାଧ ହୋଇ ମୁଁ ଯିବାକୁ ମନା କଲି । ତଥାପି ମଝିରେ ମଝିରେ ଜଙ୍ଗଲ ମାଂସ ଆସୁଥାଏ । ବନ୍ଧୁକ ମନ୍ତ୍ରଣ ପାଇଁ ଲୋକ ଆସୁଥାନ୍ତି । ଆମ ଲୋକମାନଙ୍କର ତନ୍ତ୍ରମନ୍ତ୍ର ଉପରେ ବିଶ୍ୱାସ କେତେ ମାତ୍ରାରେ ମୁଁ ଏଇ କେତେ ଘଟଣାରୁ ଜାଣିପାରିଲି । ସେଥିଲାଗି ଆମ ଦେଶରେ ବାବା କଲ୍‌ଚର ବଢ଼ିବାରେ ଲାଗିଛି । ସବୁଠାରୁ ସୁବିଧା ବ୍ୟବସାୟ ହେଲା ''ବାବା'' ବ୍ୟବସାୟ, ଖାଲି କହି ଜାଣିଲେ ରହିବାକୁ କି ରୋଜଗାର କରିବାରେ କିଛି ଅସୁବିଧା ନାହିଁ । ପରବର୍ତ୍ତୀ ପୁଲିସ୍ ଜୀବନରେ କେତେ ଠକ ବାବାଜି ଧରିବା ପାଇଁ ମୋତେ ମୋର ଟ୍ରେନିଂ ସମୟର ଗୁଣିଆଗିରି କିଛି ଶିକ୍ଷା ଦେଇଥିଲା ।

## ଅର୍ଦ୍ଧରାତ୍ରିର ଆଗନ୍ତୁକ :

ଜୁନ୍ ମାସ ଶେଷ ବେଳକୁ ଜିଆ ଉଦ୍ଦିନ୍ ଅହମଦ୍ ଓଡ଼ିଶା ଫାଇନାନ୍ସ ଚାକିରୀ ଛାଡ଼ି ଓ.ପି. ଏସ୍ ରେ ଜଏନ୍ କରି ଟ୍ରେନିଂ ପାଇଁ ଆସିଲା । ପରେ ପରେ ଜୁଲାଇ ପ୍ରଥମ ସପ୍ତାହରେ ବାବୁ କୁଳମଣି ଦେଓ ସରକାରୀ କଲେଜରୁ ଲେକ୍‌ଚରର ଚାକିରୀ ଛାଡ଼ି ପୁଲିସ୍ ଟ୍ରେନିଂରେ ଜଏନ୍ କଲେ । ସେ ଆଗରୁ ସେଇ ଅନୁଗୁଳ କଲେଜରେ ଲେକ୍‌ଚରର ଥିଲେ । ମୁଁ ଏକୁଟିଆ ଥିଲି ଏବେ ତିନି ଜଣ ହେଲୁ । ଆମ ଭିତରୁ ଅହମଦ୍ ତା ପରିବାର ସହ, ମିଶନ ବଙ୍ଗଳା ପଛପଟେ ଜଣଙ୍କ ଘରେ ଭଡ଼ା ନେଇ ରହିଥାଏ । ସମସ୍ତଙ୍କର ଜାଣିବା ପାଇଁ ଗୋଟେ ରୁମ୍‌ର ଖଟ ଉପରେ ତାର ଖଣ୍ଡେ ବେଡ଼ସିଟ୍, ତକିଆ ପକାଇ ଦେଇଥାଏ । ପ୍ରିନିସ୍‌ପାଲ, କେବେ ବଙ୍ଗଳାଆଡ଼େ ଆସିଲେ ଆମେ ରୋଷେଇଆ ହାତରେ ଖବର ଦେଲେ ସେ ସଙ୍ଗେ ସଙ୍ଗେ ଚାଲିଆସେ । ମୁଁ ଉତ୍ତର ପଟ କଣ ଘରେ ରହିଲା ବେଳେ, ବାବୁ କୁଳମଣି ଦକ୍ଷିଣ ପଟ କଣ ଘରେ ରହୁଥାଏ । ଦୁଇ ରୁମ୍ ମଝିରେ ବିରାଟ ଲମ୍ବା ବାରଣ୍ଡା । ଆମ ତିନିଜଣଙ୍କ ଟ୍ରେନିଂ ଚାଲିଥାଏ । ମିଆଁ ଭାଇ (ଅହମଦ୍) ବଢ଼ିଆ ଲୋକ । ଯେତେ ଯାହା କହିଲେ ବି ମନଦୁଃଖ

କରେନି । ଦରକାର ପଡ଼ିଲେ ପ୍ୟାରେଡ଼ ପଡ଼ିଆ ମଧ୍ୟରେ ଠିଆରେ ଠିଆରେ ବନ୍ଧୁକ ଧରି ଶୋଇଯାଏ । ସକାଳ ରୋଲକଲ୍ ଏବଂ ଫଲଇନ୍ ମଧ୍ୟରେ ପ୍ରାୟ ୧୦ ମିନିଟ୍ ଟାଇମ୍ ଲାଗେ । କାରଣ ଡି. ଏସ୍. ପି. ଙ୍କ ଠାରୁ ଆରମ୍ଭ କରି କନେଷ୍ଟବଳ ପର୍ଯ୍ୟନ୍ତ ସମସ୍ତଙ୍କର ରୋଲକଲ୍ ଏକା ସମୟରେ ହୁଏ । ଥରେ ମିଆଁ ଠିଆରେ ଠିଆରେ ପ୍ୟାରେଡ଼ ପଡ଼ିଆରେ ଅଣ୍ଟାରେ ବନ୍ଧୁକ ଢେରା ଦେଇ ଘୁମେଇ ପଡ଼ିଥାଏ । ହଠାତ୍ ଆର୍, ଆଇର ସାବ୍ଧାନ ଆଦେଶରେ ପ୍ୟାରେଡ଼ ଯେତେବେଳେ ସାବଧାନ ପୋଜିସନ୍‌କୁ ଆସିଲା ମିଆଁ ବନ୍ଧୁକ ସହିତ ଦୁମ୍ କିନା ତଳେ ପଡ଼ିଗଲା । ତାକୁ ଦେଖି କୁଳମଣି କହିଲା ''ସେମିତି ପଡ଼ିଥାବେ ମିଆଁ''- ନ ହେଲେ ବନ୍ଧୁକ ଧରି ଚାରି ଚକର ମାରିବୁ । ମିଆଁ ସେମିତି ପଡ଼ିଥାଏ । ଆର. ଆଇ. ଦଉଡ଼ିକରି ଆସିଲେ । ମିଆଁ କହିଲା ତା ମୁଣ୍ଡ ବୁଲାଇ ଦେଲା, ଦେହଖରାପ । ସେଦିନ ତାକୁ ପ୍ୟାରେଡ୍‌ରୁ ମାଫ୍ କରାଗଲା । ସେ ମାଗାଜିନ୍ ଘରେ ଘଣ୍ଟାଟିଏ ଶୋଇବାକୁ ସମୟ ପାଇଲା । ଆମେ ଟ୍ରେନିଂ ନବାର କିଛି ଦିନ ପରେ ଅନୁଗୁଳ ପୁଲିସ୍ ଟ୍ରେନିଂ କଲେଜରେ ଏକ ସାଂସ୍କୃତିକ ସପ୍ତାହ ଆରମ୍ଭ ହେଲା । ଏଥିରେ କନେଷ୍ଟବଲ୍ ଟ୍ରେନିଂ ମାନଙ୍କ ଠାରୁ ଆରମ୍ଭ କରି ସମସ୍ତେ ଭାଗ ନେଉଥାନ୍ତି । ସପ୍ତାହର ଶେଷ ଦୁଇଦିନ ଗୋଟିଏ ପୂର୍ଣ୍ଣାଙ୍ଗ ନାଟକ ହେବାର ପ୍ରସ୍ତାବ ହେଲା ଏବଂ ଏଇ ନାଟକରେ ମୁଁ ଏବଂ ଜିଆ ଉଦ୍ଦିନ୍ ଭାଗ ନେଇଥିଲୁ । କୁଳମଣି ପ୍ରମ୍‌ଟିଂ କରୁଥାଏ । ନାଟକରେ ମିଆଁକୁ ଜଣେ ମର୍ଡ଼ର କରିବାର ଦୃଶ୍ୟ ଥାଏ । ମିଆଁ ଟିକିଏ ମୋଟା, ପେଟଟି କମିନଥାଏ । ମର୍ଡ଼ର କରିବା କଳାକାର ଷ୍ଟେଜ୍ ଉପରେ ତାର ଡାଇଲଗ୍ ଉଚ୍ଚସ୍ୱରରେ ମାରି ଗୋଟେ ଛୁରୀ ମିଆଁ ପେଟକୁ ମାରିଲା ବେଳେ ମିଆଁ ସତକୁ ସତ ମାରିଦେବ ଭାବି ହାତ ଉଠାଇ ତାକୁ ଧରିନେବ ବୋଲି ଭାବିଲା ବେଳକୁ ପ୍ରମ୍‌ଟର ବାବୁ କୁଳମଣି ତାକୁ ଷ୍ଟେଜ ଉପରେ ମରି ପଡ଼ିବାକୁ କହିଲା । ହଠାତ୍ ସବୁ କଥା ଭୁଲି ଯାଇ ମିଆଁ କହିଲା, 'କ'ଣ ମରିବି ?'' କୁଳମଣି ତାକୁ ମ୍ୟାନେଜ କରି କହିଲା ତଳେ ପଡ଼ିଯା । ମିଆଁ ମଲାଭଳି ଷ୍ଟେଜ୍‌ରେ ପଡ଼ିଗଲା ପରେ ଅନ୍ୟମାନଙ୍କର ଡାଇଲକ୍ ଥାଏ । ଅନ୍ୟମାନେ କହିଲା ବେଳେ ମିଆଁ ବେଳେ ବେଳେ ମୁଣ୍ଡ ଟେକିବାକୁ ଉଠିଲା ବେଳେ କୁଳମଣି ଭିତରୁ ତା ପାଦ ଉପରେ ଗୋଡ଼ ପକାଇ ମଲାପରି ପଡ଼ିବାକୁ ସଂକେତ ଦେଉଥାଏ । ସିନ୍ ପଡ଼ିଲା ପରେ ମିଆଁ ଉଠି କହିଲା ଶଳା ମୋତେ ମାରି ଦେଇଥାନ୍ତା ବେ'' ।

ମିଶନ ବଙ୍ଗଳାରେ କୁଳମଣି ଆଉ ମୁଁ ଦୁଇଜଣ ଥାଉ । ଦିନେ ରାତ୍ରିରେ ଏକ ଅଦ୍ଭୁତ ଘଟଣା ଘଟିଲା । ଶ୍ରାବଣ ମାସ ମେଘ ଅନ୍ଧାର । ଝିପ୍ ଝିପ୍ ବର୍ଷା ସାଙ୍ଗକୁ ବେଳେ ବେଳେ ଘଡ଼ଘଡ଼ି ଶବ୍ଦରେ କାନ ଅତଡ଼ା ପଡୁଥାଏ । ମିଶନ ବଙ୍ଗଳାରେ ଆଲୁଅ ନଥିବା ହେତୁ ଶାଳ ଜଙ୍ଗଲ ମଧ୍ୟରେ ଏଇ ବର୍ଷଣ ମୁଖର ରାତ୍ରିରେ ବଙ୍ଗଳାଟି ଗୋଟିଏ ହଣ୍ଟେଡ଼େ ହାଉସ୍ ପରି ଜଣା ପଡୁଥାଏ । ପ୍ରକୃତରେ କହିବାକୁ ଗଲେ ମିଶନ ବଙ୍ଗଳା ଗୋଟେ ହଣ୍ଟେଡ଼େ ହାଉସ ।

ଶ୍ରାବଣ ମାସର ଅନ୍ଧାର ରାତ୍ରି ସାଥିକୁ ଶାଳ ବଣର ସେଇ ବଙ୍ଗଳା ପରିସରକୁ ହଜାର ହଜାର ଜୁଳୁଜୁଳୁଆ ପୋକ ସତେ ଯେପରି ଆଲୋକିତ କରିବାକୁ ଚେଷ୍ଟା କରୁଥାନ୍ତି । ରାତ୍ରି

ଦଶଟା ବେଳକୁ ଆମେ ଖାଇପିଇ ଶୋଇ ଯାଇଥାଉ । ଦିନଟା ଯାକର ଶାରୀରିକ ପରିଶ୍ରମ ପରେ ଶେଯରେ ପଡ଼ିଲେ ନିଦ ଘୋଟିଆସେ । ସେ ଦିନ ଝିପ୍ ଝିପ୍ ବର୍ଷା ମେଘୁଆ ପାଗ ଯୋଗୁ ନିଦ ଲାଗି ଯାଇଥାଏ । ମିଶନ ବଙ୍ଗଳାର ଶାଳ ଗଛଡ଼ାଳରେ ବେଳେ ବେଳେ ରାତ୍ରିଚର ପକ୍ଷୀମାନେ ଶବ୍ଦ କରୁଥାନ୍ତି । ପ୍ରାୟ ଅର୍ଦ୍ଧରାତ୍ରି ପରର ଘଟଣା । ଶେଯରେ ପଡ଼ି ନିଦୁଆ ଆଖିରେ ମୁଁ ଶାଳ ବଣ ଭିତରୁ ''ଝୁମ୍ ଝୁମ୍'' ଶବ୍ଦ ଶୁଣିଲି । ପ୍ରଥମେ ଭାବିଥିଲି ବୋଧେ ସ୍ୱପ୍ନ ଦେଖୁଛି । ଆସ୍ତେ ଆସ୍ତେ ନିଦଟା ଭାଙ୍ଗି ଆସିଲା । ଉତ୍ତର ପଟ ଶାଳ ବଣରୁ ସେଇ ଝୁମ୍ ଝୁମ୍ ପାଦ ଶବ୍ଦ ଆସ୍ତେ ଆସ୍ତେ ପାଖେଇ ଆସୁଥାଏ । ମଝିରେ ମଝିରେ ଘଡ଼ ଘଡ଼ି ଶବ୍ଦ, ଝିପ୍ ଝିପ୍ ବର୍ଷା ଚାଲିଥାଏ । ସେଇ ଝୁମ୍ ଝୁମ୍ ଶବ୍ଦଟି ରୁଣୁଝୁଣ ଶବ୍ଦ ପରି ଲାଗି ମୋ ଉତ୍ତର ପଟ ଦ୍ୱାର ଆଡ଼କୁ ଆସିବା ପରି ଜଣାଗଲା । ମୁଁ ସେମିତି ଖଟ ଉପରେ ପଡ଼ିଥାଏ । ପାଖରେ ଆଲୁଅ ନଥାଏ ଲଗାଇବାକୁ । ଉଠିବାକୁ କିମିତି ଭୟ ଲାଗୁଥାଏ । ଅନ୍ଧାର ଭିତରେ ମୋ ଦେହରୁ ଝାଳ ବୋହିବାକୁ ଆରମ୍ଭ କଲା । ଶେଜରେ ପଡ଼ି ମୋର ସୁଇପର କଥା ମନେ ପଡ଼ିଲା । ଏଇ ବଙ୍ଗଳାରେ ସାହେବର ପ୍ରେତାତ୍ମା ବୁଲେ । ମାତ୍ର ପରମୁହୂର୍ତ୍ତରେ ଭାବିଲି ସାହେବ ପ୍ରେତାତ୍ମା କ'ଣ ଏମିତି ଝୁମ୍‌ଝୁମ୍ ଶବ୍ଦ କରି ବୁଲେ ? ବୁଲୁ ଥାଇ ପାରେ । ଏମିତି ଭାବନା ଭିତରେ ପଡ଼ିଥିଲା ବେଳେ ସେଇ ରୁଣ ଝୁଣ ଶବ୍ଦଟି ମୋ ରୁମ୍‌ର ଉତ୍ତର ପଟ କବାଟ ପାଖେ ବନ୍ଦ ହୋଇଗଲା ପରି ଅନୁଭବ କଲି । ଶେଯ ଉପରେ କାନ ପାରି ଶୁଣିବାକୁ ଚେଷ୍ଟା କଲି, ମାତ୍ର କିଛି ଶୁଭୁ ନଥାଏ । ହଠାତ୍ କବାଟରେ ଠକ୍ ଠକ୍ ଶବ୍ଦ ମୋ ଦେହରେ ଏକ ବିଜୁଳୀ ତରଙ୍ଗ ଖେଳାଇ ଦେଲା । କିଛି ସମୟ ରହି ପୁଣି ସେଇ ଠକ୍ ଠକ୍, ସତେ ଯେପରି ଅତ୍ୟନ୍ତ ସଂଭ୍ରମତାର ସହିତ ସେଇ ଶବ୍ଦ କରାଯାଇ ମୋତେ ଉଠାଇବାକୁ ଚେଷ୍ଟା କରାଯାଉଛି । ମୁଁ ଉଠି ମୋ ଶେଯ ଉପରେ ବସି ପଡ଼ି ଟର୍ଚ୍ଚଲାଇଟ୍ ଖୋଜି ଘର ଭିତରେ ଲାଇଟ୍ ପକାଇଲି । ଘର ଭିତରେ ଟର୍ଚ୍ଚଲାଇଟ୍‌ର ଆଲୁଅ ପଡ଼ିବା ପରେ ବାହାର ପଟ କବାଟ ପାଖେ ମଣିଷର ଶବ୍ଦ ଶୁଣିଲି ''ଖୋଲନ୍ତୁ' ମୁଁ ଭିତରୁ କିଏ ବୋଲି ପଚାରିବା ସଙ୍ଗେ ସଙ୍ଗେ ଦୁଆର ମୁହଁ ପାଖକୁ ଯାଇ କବାଟ ଖୋଲି ଦେଲି । ଅବଶ୍ୟ ସେତେବେଳେକୁ ଜଣେ ମଣିଷର ପାଟି ବୋଲି ଧରିନେଇଥିଲି । ଟର୍ଚ୍ଚ ଆଉ ଥରେ ପକାଇ ଦେଖିଲି, ମୁଁ କବାଟ ଖୋଲିବା ମାତ୍ରେ ଜଣେ ଯୁବତୀ ମହିଳା ମୋ ରୁମ୍ ମଧ୍ୟକୁ ସିଧା ପଶି ଆସିଲେ । ମହିଳା ଜଣକ ଘର ଭିତରକୁ ପ୍ରବେଶ କଲାପରେ ନିଜ ଶାଢ଼ୀରୁ ବର୍ଷା ପାଣି ଝାଡୁ ଝାଡୁ କହିଲେ କବାଟ ଖୋଲିବାକୁ ଏତେ ଡେରି କଲେ କାହିଁକି ? ଡରିଗଲେକି ? ମୁଁ ଭୂତ କି ପ୍ରେତ ନୁହେଁ ଜଣେ ମଣିଷ, ଦେଖନ୍ତୁ । ସେ ପର୍ଯ୍ୟନ୍ତ ମୁଁ ଟର୍ଚ୍ଚ ସୁଇଚ୍ ଚିପି ଠିଆ ହୋଇଥାଏ । ମହିଳାଙ୍କ ବୟସ ତିରିଶ ମଧ୍ୟରେ । ପିନ୍ଧିଥାନ୍ତି ଖଣ୍ଡେ ନାଲି ରଙ୍ଗର କସ୍ତା ଶାଢ଼ୀ । ଦାମ୍ କମ୍ ହେଲେବି ସଫା ଏବଂ ଇସ୍ତ୍ରୀ ଦିଆ ପରି ଜଣା ପଡୁଥାଏ । ହାତରେ ଖଣ୍ଡେ ଧଳା ଛୋଟ ଟରକିସ୍ ଟାଉଲ୍ ଆଉ ତିନିସେଲିଆ ଟର୍ଚ୍ଚ । ଶ୍ୟାମଳ ବର୍ଣ୍ଣ, ଦେଖିବାକୁ ଅସୁନ୍ଦର ଆଦୌ ନୁହଁନ୍ତି ।

ନିଜ ଲୁଗାରୁ ବର୍ଷା ପାଣି ଝାଡି ଦେଇ ସେ ତାଙ୍କ ଟର୍ଚ୍ଚ ମାରି ଉତ୍ତର ପଟ କବାଟ ପାଖକୁ ଯାଇ ସାଙ୍ଗରେ ଆଣିଥିବା ଛତାଟିକୁ ବନ୍ଦ କରି କବାଟ ଆଉଜାଇ ଆଣି ମୋ ରୁମ୍‌ରେ

ପଡ଼ିଥିବା ବେତ ଚେୟାରରେ ବସି ପଡ଼ିଲେ । ଟର୍ଚ୍ଚ ଆଲୁଅ ମଝିରେ ଲିଭିଗଲା ପରେ ମୁଁ ପୁଣି ଥରେ ସୁଇଚ୍ ଟିପି ଆଲୁଅ ପକାଇଲା ବେଳକୁ ସେ କହିଲେ, ''ଏତେ କାହିଁକି ଆଲୁଅ ପକାଉଛନ୍ତି ! ଏ ମେଘ ଅନ୍ଧାର ଶ୍ରାବଣୀ ରାତ୍ରି କ'ଣ ଭଲ ଲାଗୁନି ?'' ସେତେବେଳକୁ ମୋ ଦେହ ଝାଳରେ ବୁଡ଼ି ଗଲାଣି । ତଣ୍ଟି ଅଠା ଅଠା ହୋଇ ଯାଇଥାଏ । କ'ଣ କରିବି କିଛି ଭାବିପାରୁ ନଥାଏ । ଜଣେ ପ୍ରୋବେସନାରୀ ଅଫିସରଙ୍କ ରୁମ୍‌ରେ ଅର୍ଦ୍ଧରାତ୍ରିରେ ଏପରି ମହିଳାଙ୍କ ଆର୍ବିଭାବ ବିଷୟରେ କିଏ ଯଦି ଜାଣେ ତା ହେଲେ ମୋର ଅବସ୍ଥା କ'ଣ ହେବ ସେଇ କଥା ହିଁ ମୁଁ ଭାବୁଥାଏ । ମୁଁ ତାଙ୍କୁ କେବେ ଦେଖିନି । ପ୍ରକୃତରେ ସେ ଜଣେ ମହିଳା କି ପ୍ରେତାତ୍ମା, ମହିଳା ରୂପରେ ମୋ ଶୟନ କକ୍ଷକୁ ପ୍ରବେଶ କରିଛି, ମୁଁ ସେ ଅବସ୍ଥାରେ ଠିକ୍ କରିପାରୁ ନଥାଏ ।

ସେ ପର୍ଯ୍ୟନ୍ତ ମୋ ପାଟିରୁ କଥା ବାହାରି ନଥାଏ । ମୋତେ ମୂକ ପରି ଠିଆ ହେବାର ଦେଖି ସେ ପୁଣି କହିଲେ, ''ଆପଣ ନୂଆ ହୋଇ ଏବେ ଟ୍ରେନିଂ ପାଇଁ ଆସିଛନ୍ତି, ଏଇଟା ମୁଁ ଦୁଇମାସ ହେଲା ଲକ୍ଷ୍ୟ କରୁଛି । ନୂଆ ହୋଇ ଆସିଛନ୍ତିତ - ସେଇଥି ପାଇଁ ଡର ଛାଡ଼ିନି । ଆପଣ ଏକା ନୁହଁନ୍ତି । ପ୍ରଥମେ ପ୍ରଥମେ ସମସ୍ତଙ୍କ ଅବସ୍ଥା ଏଇ ପ୍ରକାର ହୋଇଥାଏ । ଯଦି ମନରୁ ଡର ଛାଡୁନି, ଅଛି ଯଦି ଦି ପେଗ ହ୍ୟୁଇସ୍କି କି ରମ୍ ପିଇ ଦିଅନ୍ତୁ, ବେଶ୍ ମନ ଭିତରୁ ଡର ଚାଲିଯିବ; ଶ୍ରାବଣୀ ରାତ୍ରିର ମୋହ ଲାଗି ଆସିବ ।'' ଏତକ କହି ସେ ତାଙ୍କ ମୁହଁ ଉପରେ ଆହ୍ୱାନ ସୂଚକ ହସରେଖାଟିଏ ଟାଣି ଆଣିଲେ । ମାତ୍ର ମୋ ମୁହଁରୁ କଥା ପଦେ ନବାହାରିବା ଦେଖି ସେ ପୁଣି କହିଲେ, ''ହଉ ଠିକ୍ ଅଛି । ଆଜି ରାତ୍ରିଟି ବେଶ୍ ସୁନ୍ଦର ରାତ୍ରିଟିଏ ଥିଲା । କୁହନ୍ତୁ ତ ଏମିତି ବର୍ଷା ଘଡ଼ ଘଡ଼ି, ମଝିରେ ମଝିରେ ବିଜୁଳୀର ଝଲକ ଶାଳବଣ ମଧରେ ହଜାର ଜୁଳୁଜୁଳିଆ ପୋକଙ୍କର ଆଲୁଅ କେବେ ଆପଣ ଉପଭୋଗ କରିଛନ୍ତି । ମୁଁ ମନେ ମନେ ଭାବିଲି ମହିଳା କଣ ଜଣେ କବି ନା ସାହିତ୍ୟିକା । ତାହେଲେ ଏଠିକି କ'ଣ ପାଇଁ ଆସିଲେ, କିଏ ଏ ଅଜଣା ମହିଳା ? ମନରେ ସନ୍ଦେହ, ମୁଁ କିଛି କହିବାକୁ ବାହାରିଲା ବେଳକୁ ସେ କହିଲେ ''ଆଜି ଏତିକି, ପହିଲି ମୁଲାକାତ୍ । ମୁଁ ଏଇ ପାଖରେ ରୁହେ । ପୁଣି କେବେ ଦେଖାହୋଇପାରେ ।'' ଏତିକି କହି ସେ ମୋ ରୁମ୍‌ରୁ ବାହାରି, ତାଙ୍କ ଛତା ଧରି, ଉତ୍ତର ପଟ ବାଉଣ୍ଡରୀ ପାର ହୋଇ ବାଳିକା ବିଦ୍ୟାଳୟ ପରିସରଆଡ଼େ ଗଲେ । ମୁଁ କବାଟ ଦରଆଉଜା କରି, ତାଙ୍କର ବାଟକୁ ଲକ୍ଷ୍ୟ କରିଥିଲି । ମଝିରେ ମଝିରେ ଟର୍ଚ୍ଚ ଆଲୁଅ, ତାଙ୍କର ଗତିପଥକୁ ଜଣାଇ ଦେଉଥିଲା । ତାଙ୍କର ଯିବାଟା ସଂପୂର୍ଣ୍ଣଭାବେ ଅଦୃଶ୍ୟ ହେଲାପରେ, ମୁଁ କବାଟ ଦେଇ, ମୋ ଶେଯକୁ ଆସିଲି । କିଛି ସମୟ ପାଇଁ ଭାବିବାକୁ ଲାଗିଲି ''ଏ ଅର୍ଦ୍ଧରାତ୍ରର ଆଗନ୍ତୁକା କିଏ ହୋଇ ପାରନ୍ତି ? କିଛି ଠିକ୍ କରିପାରିଲିନି । ପରବର୍ତ୍ତୀ ସମୟରେ ମୁଁ ତାଙ୍କୁ ଦେଖିବାକୁ ଚେଷ୍ଟା କରିମଧ ପାଇନଥିଲି । କିଛି ଦିନ ପର୍ଯ୍ୟନ୍ତ, ମୁଁ ଏକଥା କାହା ଆଗେ କହିନଥିଲି, ମାତ୍ର କିଛିଦିନ ପରେ ଏଇ ଘଟଣା କୁଳମଣିକୁ କହିଲା ପରେ, ସେ କହିଥିଲା, ''କିଏ ଜଣେ ରୂପଜିବୀ ହୋଇ[illegible] ରେ । ଏମିତି ନିଶୁନ୍ ବଙ୍ଗଳାକୁ ରୂପଜିବୀ ଯେ ଆସୁନଥିବେ କିଏ କହିବ ?''

ଅନୁଗୁଳରେ ଟ୍ରେନିଂ ନେଲାବେଳେ, ଆମ ସାଙ୍ଗରେ ପାଞ୍ଚଜଣ ଆଇ.ପି.ଏସ୍. ଅଫିସର

ତିନିମାସିଆ ଟ୍ରେନିଂ ପାଇଁ ଆସିଥିଲେ । ସେମାନେ ହେଲେ, ବି.ବି.ମିଶ୍ର, ପି.କେ. ସେନାପତି, ମିଃ ସହେଦ୍, ମିଃ ଏଲ.ସି. ଅମର ନାଥନ୍ ଏବଂ ମିଃ ସତିନ୍ଦର ସିଂହ । ସେମାନେ ଆସିଲାପରେ, ମିଶନ ବଙ୍ଗଳାର ପ୍ରତ୍ୟେକ ରୁମ୍ ପୂର୍ଣ୍ଣ ହୋଇଯାଇଥିଲା ଏବଂ ପ୍ରତ୍ୟେକ ଶନିବାର, ରବିବାର ଦିନ କିଛି ନା କିଛି କାର୍ଯ୍ୟକ୍ରମ ହେଉଥିଲା । ତତ୍‌କାଳୀନ୍ ଆଇ.ଜି ମିଃ ଆର୍.କେ.ପାଢୀ ଗୋଟିଏ ସନ୍ଧ୍ୟାରେ ଆମର ଅତିଥି ହୋଇଥିଲେ ।

ଜୁଲାଇ ମାସ (୧୯୬୯) ଆଠ ତାରିଖରେ, ମୋର ଅନୁଗୁଳ ଟ୍ରେନିଂ କଲେଜରୁ ଟ୍ରେନିଂ ସାରିଲା ପରେ, କୋରାପୁଟ୍ ତୃତୀୟ ବାଟେଲିୟାନ୍‌କୁ ଦୁଇମାସ ପାଇଁ ଟ୍ରେନିଂ ପଡ଼ିଲା । ମୁଁ ଅନୁଗୁଳରୁ ବରହମପୁର ଏବଂ ବରହମପୁର ଠାରୁ ଟ୍ରେନ୍‌ରେ ବିଜୟ ନଗରମ୍ ଯାଇ ସେଠାରୁ କୋରାପୁଟ ଆସିଥିଲି । ସେତେବେଳେ ବରହମପୁରରୁ ରାୟଗଡ଼ା ଦେଇ ବସ୍ ବାଟନଥାଏ । ମୁଁ ପହଞ୍ଚିଲାବେଳେ କୋରାପୁଟ୍‌ରେ ବର୍ଷା ଲାଗିଥାଏ । ସବୁବେଳେ ଝିପ୍‌ଝିପ୍ ବର୍ଷା । ଟ୍ରେନିଂ ପାଇଁ ବାହାରେ କେବେହେଲେ ସୁବିଧା ମିଳିଲାନି । ପ୍ୟାରେଡ଼, ପିଟି, ଅସ୍ତ୍ରଶସ୍ତ୍ର ଶିକ୍ଷା, ସବୁ ବାଟେଲିୟାନ୍ ହଲ୍‌ରେ ହେଉଥାଏ । ମୋତେ ରହିବା ପାଇଁ ଗୋଟେ କନେଷ୍ଟବଳ କ୍ୱାଟର ଦେଇଥାନ୍ତି । ସେତେବେଳେ କମାଣ୍ଡାଣ୍ଟ, ଡେପୁଟୀ କମାଣ୍ଡାଣ୍ଟଙ୍କୁ ଛାଡ଼ି ଦେଲେ, ଅନ୍ୟ ଅଫିସରମାନେ ସମସ୍ତେ ଏଫ୍ ଟାଇପ୍ କ୍ୱାଟରରେ ରହୁଥିଲେ । ଜଣେ ଜଣେ ଦୁଇଟି ଏଫ୍ ଟାଇପ୍ କ୍ୱାଟରକୁ ଭାଙ୍ଗି ଗୋଟିଏ କରି, ପରିବାର ସହିତ ରହୁଥାନ୍ତି । ସବୁବେଳେ ବର୍ଷା ଲାଗିରହିବା ଯୋଗୁଁ, ସପ୍ତାହକେ ଦିନେ ବି ଘଣ୍ଟାଏ ଦୁଇଘଣ୍ଟାଲାଗି ସୂର୍ଯ୍ୟ ଦେଖିବାକୁ ମିଳନ୍ତିନି । ତେଣୁ ରୋଷେଇ କରିବା ପାଇଁ, ''କାଠକୋଇଲା'' କିଣିଥିଲୁ । ଆଦିବାସୀମାନେ ସେଇ ଝିପ୍‌ଝିପ୍ ବର୍ଷାରେ ପ୍ରତ୍ୟେକଦିନ ଭାର ଭାର କାଠ କୋଇଲା ଆଣି ବିକୁଥିଲେ । ମୁଁ ଟ୍ରେନିଂ ପାଇଁ ଗଲାବେଳେ, ତୃତୀୟ ବାଟେଲିୟାନ୍‌ର କମାଣ୍ଡାଣ୍ଟ ଥା'ନ୍ତି ଅମୀୟ ଭୂଷଣ ତ୍ରିପାଠୀ । ମୁଁ କିଛିଦିନ ଟ୍ରେନିଂ ନେଲାପରେ, ସେଠାର ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ଗୁରୁ ପ୍ରସାଦ ମିଶ୍ର, ବାଟେଲିୟାନ୍‌ରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କଲେ । ମୁଁ ସେଇ ଏକାଙ୍କିକାରେ ମଧ ଭାଗ ନେଇଥିଲି । ସେଦିନ ସନ୍ଧ୍ୟାବେଳେ ଦେଖିଲି ମିସେସ୍ ତ୍ରିପାଠୀଙ୍କୁ । ସେ ମୋ ତଳ କ୍ଲାସରେ ବି.ଜେ.ବି କଲେଜରେ, ପରେ ବାଣୀ ବିହାରରେ ପଢୁଥିଲେ । କୋରାପୁଟ୍ ମୁଁ ଆଗରୁ ଦେଖିନଥିଲି । ଶୁଣୁଥିଲି ଯେ, ଏଠାକୁ ଯେ ଆସେ ତାକୁ କଳାଜର ହୁଏ । ବାଘ ଭାଲୁର ରାଜ୍ୟ । ବ୍ରିଟିଶରମାନେ କୋରାପୁଟ କ୍ଲାଇମେଟକୁ ''ହୋମ୍ କ୍ଲାଇମେଟ୍'' ବୋଲି କହୁଥିଲେ । ପ୍ରକୃତରେ ସେତେବେଳେ କୋରାପୁଟର ଜଳବାୟୁ, ଲଣ୍ଡନ ଜଳବାୟୁ ପରି ଥିଲା । ପରବର୍ତ୍ତୀ କାଳରେ ମୁଁ ଲଣ୍ଡନରେ କିଛିଦିନ ରହିଲାବେଳେ, ମୋ ଟ୍ରେନିଂ ସମୟର କୋରାପୁଟ କଥା ମନେ ପକାଇଥିଲି । ଠିକ୍ ସେଇପରି ତୀର୍ଯ୍ୟକ୍ ଝିପ୍ ଝିପ୍ ବର୍ଷା । ଧଳା ବଉଦ, ଛୋଟ ପାହାଡ଼ ମୁଣ୍ଡିଆ ଉପରେ ଭାସି ଯାଉଥିବ । କିଛି ସମୟ ପାଇଁ, ମେଘୁଆ ଆକାଶରେ ସୂର୍ଯ୍ୟ ଦେଖାଦେଇ ପୁଣି ଲୁଚିଯିବେ । କୋରାପୁଟ୍‌ରେ ଜଳବାୟୁ ଠିକ୍ ସେଇଆ ଥିଲା– ସେଇଥିଲାଗି, ବ୍ରିଟିଶରମାନେ ତାର ଜଳବାୟୁକୁ ''ହୋମ୍ କ୍ଲାଇମେଟ୍'' ବୋଲି କହୁଥିଲେ ।

## ଜିଲ୍ଲାଟ୍ରେନିଂ :

କୋରାପୁଟ ବାଟେଲିୟାନ୍ ଟ୍ରେନିଂ ପରେ, ବର୍ଷକପାଇଁ ମୋର ବଲାଙ୍ଗିର ଜିଲ୍ଲାରେ ଜିଲ୍ଲା ଟ୍ରେନିଂ ପଡ଼ିଲା । ମୁଁ କୋରାପୁଟରୁ ପୁଣି ବରହମପୁର ବାଟ ଦେଇ ବଲାଙ୍ଗିର ଗଲି । ୧୯୬୯ ମସିହା ଅକ୍ଟୋବର ପହିଲା ଦିନ, ଆଠଟା ବେଳେ, ବରହମପୁର-ବଲାଙ୍ଗିର ବସରେ ଯାଇ ବଲାଙ୍ଗିର ବସଷ୍ଟାଣ୍ଡରେ ପହଞ୍ଚିଲି । ମୁଁ ଆଗରୁ ବଲାଙ୍ଗିର ଦେଖି ନଥାଏ । ବଲାଙ୍ଗିର ସରକାରୀ ବସ୍‌ଷ୍ଟାଣ୍ଡରେ ପହଞ୍ଚି ଦେଖିଲି, ସେଠି ଗୁର୍ଖା ପୁଲିସ୍ ଲାଠିଧରି ପଇଁତିରା ମାରୁଥାନ୍ତି । ସଦ୍ୟ ପୁଲିସ୍ କାର୍ଯ୍ୟାନୁଷ୍ଠାନର ଲକ୍ଷଣମାନ ଦିଶୁଥାଏ । ବସଷ୍ଟାଣ୍ଡଯାକ ଟେକା ପଥରରେ ଭର୍ତ୍ତି ହେଲାବେଳେ, ଗୋଟେ ଦିଇଟା ଠିଆ ହୋଇଥିବା ବସ୍‌ର, କାଚ ଭାଙ୍ଗି, କାଚଗୁଣ୍ଡମାନ ପଡ଼ିଥାଏ । ଶୁଣିଲି ସହରରେ ଛାତ୍ର ଆନ୍ଦୋଳନ ଚାଲିଛି । ବଲାଙ୍ଗିରର ପୂର୍ବତନ ମହାରାଜା–ରାଜେନ୍ଦ୍ର ନାରାୟଣ ସିଂହଦେଓ, ସେତେବେଳେ ସ୍ୱତନ୍ତ୍ର- ଜନକଂଗ୍ରେସ ମନ୍ତ୍ରୀମଣ୍ଡଳରେ ମୁଖ୍ୟମନ୍ତ୍ରୀ । ଅଳ୍ପଦିନ ପୂର୍ବରୁ, ସେ ବଲାଙ୍ଗିର ଗସ୍ତରେ ଆସିଥିବା ସମୟରେ ବିରୋଧିଦଳ କଂଗ୍ରେସର ପ୍ରରୋଚନାରେ କେତେକ ଛାତ୍ରଙ୍କ ଦାବୀକୁ କେନ୍ଦ୍ରକରି ତାଙ୍କ ଗସ୍ତ ସମୟରେ, ଛାତ୍ର ପୁଲିସ୍‌ଙ୍କ ମୁହାଁମୁହିଁରୁ ଛାତ୍ରମାନଙ୍କ ଉପରେ ଲାଠି ଚାଳନା ହୋଇଥିଲା । ମୁଖ୍ୟମନ୍ତ୍ରୀ ଗଲାପରେ, ସେଇ ଆନ୍ଦୋଳନ ବଡ଼ଧରଣରେ ମୁଣ୍ଡ ଟେକିଥାଏ । ବଲାଙ୍ଗିର ରାଜେନ୍ଦ୍ର କଲେଜର ଛାତ୍ରନେତା ଜଗନ୍ନାଥ ପଟ୍ଟନାଏକ୍ ଏହାର ନେତୃତ୍ୱ ନେଇ ସଦର ଥାନା ସାମ୍ନାରେ ଅନଶନରେ ବସିଥାନ୍ତି । ବସ୍‌ଷ୍ଟାଣ୍ଡରୁ ଖଣ୍ଡେ ରିକ୍ସା ଧରି ମୁଁ ସଦରଥାନାରେ ପହଞ୍ଚିଲି । ଯଦିଓ ଆଗରୁ ବେତାର ମାଧମରେ, ମୋ ଆସିବା ଖବର ବଲାଙ୍ଗିର ଏସ୍. ପି.ଙ୍କୁ ଜଣାଇଥିଲି, ଆଇନ୍ ଶୃଙ୍ଖଳା ପରିସ୍ଥିତି ଯୋଗୁ କେହି ବସ୍‌ଷ୍ଟାଣ୍ଡକୁ ମୋତେ ନେବା ପାଇଁ ଆସିନଥିଲେ ।

ସଦରଥାନା ପରିସରରେ ପହଞ୍ଚି ଦେଖିଲି, ପ୍ରାୟ ଚାରି ପାଞ୍ଚ ପ୍ଲାଟୁନ୍ ଫୋର୍ସ, ତମ୍ବୁ ପକାଇ କ୍ୟାମ୍ପ କରୁଥାନ୍ତି । ଗୋଟିଏ ପ୍ଲାଟୁନ୍ ବନ୍ଧୁକ, ଲାଠିଧରି ଠିଆ ହୋଇଥାଏ । ଥାନା ପଛପଟ ବାରଣ୍ଡାରେ, ମୋ ବେଡିଂ, ସୁଟ୍‌କେସ୍ ଦୁଇଖଣ୍ଡ ଥୋଇ, ମୁଁ ଆଗପଟ ବାରଣ୍ଡାକୁ ଗଲି । ଥାନା ସାମ୍ନା ବାରଣ୍ଡାରେ, ଜିଲ୍ଲା ଏସ୍.ପି. ମିଃ ରସୁଲ୍, ଜିଲ୍ଲାପାଳ ମିଃ ତିଓ୍ୱାରୀ, ଏବଂ ଅନ୍ୟ ଅଫିସରମାନେ ବସିଥାନ୍ତି । ମୁଁ ମୋର ପରିଚ୍ୟ ଦେଲାପରେ ଏସ୍.ପି. ମିଃ ରସୁଲ କହିଲେ "ତା ହେଲେତ ଭଲ ହେଲା । ଠିକ୍ ବେଳାରେ ଆସି ପହଞ୍ଚିଗଲ । ଏବେ ଡ୍ରେସ୍ ବଦଳାଇ, ଆଇନ୍ ଶୃଙ୍ଖଳା ପରିସ୍ଥିତି କିପରି ନିୟନ୍ତ୍ରଣ କରାଯାଉଛି, ଶିଖ । ସେ ପର୍ଯ୍ୟନ୍ତ ମୁଁ ମୋର ସକାଳ ନିତ୍ୟକ୍ରମ କିଛି ସାରି ନଥାଏ । ଏସ୍.ପି.ଙ୍କ ଆଦେଶ ଶୁଣିଲା ପରେ, ପାଖରେ ଠିଆ ହୋଇଥିବା ସଦରଥାନା ଅଫିସର ଇନ୍‌ଚାର୍ଜ ମିଃ ବିଶ୍ୱନାଥ ମିଶ୍ର, ମୋତେ ପାଖରେ ରହୁଥିବା, ଦୁଇଜଣ ଅଫିସର୍‌ଙ୍କ ରୁମ୍‌କୁ ନେଇଗଲେ । ମୁଁ ସେଇଠି, ସକାଳ ନିତ୍ୟକର୍ମ ସାରି ପୋଷାକ ବଦଳାଇ ଅଧଘଣ୍ଟାକ ମଧ୍ୟରେ ଏସ.ପି.ଙ୍କୁ ସଦର ଥାନାରେ ରିପୋର୍ଟ କଲି । ସଙ୍ଗେ ସଙ୍ଗେ, ଏସ୍.ପି. ମୋତେ ଜଣେ ମାଜିଷ୍ଟ୍ରେଟ୍‌ଙ୍କ ସହ, ଟାଉନ୍ ଆଡ଼େ ବୁଲି ଆସିବାକୁ କହିଲେ ।

ଗୋଟିଏ ଜିପ୍‌ରେ ମୁଁ, ମାଜିଷ୍ଟ୍ରେଟ୍ ଗୌର ମୋହନ ଷଡ଼ଙ୍ଗୀ ଏବଂ ଚାରିଜଣ ଗୁର୍ଖା ବନ୍ଧୁକଧାରୀ ସିପାହୀଙ୍କୁ ନେଇ ଟାଉନ୍ ଆଡ଼େ ପେଟ୍ରୋଲିଂ ପାଇଁ ଗଲୁ । ବଲାଙ୍ଗିର ଟାଉନ୍‌ଟି ଗୋଟିଏ ଛୋଟିଆ ରାଜୁଡ଼ା ଅମଳର ଟାଉନ୍ । ଆଗରୁ ରାଜାଙ୍କର ଦେୱାନଙ୍କ ଅଫିସ୍, ଏବେ କଲେକ୍ଟରଙ୍କ ଅଫିସ୍ । ଏସ.ପି ଅଫିସ୍ ସେଇଠି ହେଉଥାଏ । କଲେକ୍ଟରଙ୍କ ଅଫିସ୍ ସାମ୍ନାରେ ସଦର ଥାନା । କଲେକ୍ଟରେଟ୍‌କୁ ଲାଗି ପୁରୁଣା ରାଜବାଟୀ । ସେଇ ପାଖାପାଖି ବଜାର, ସିନେମାହଲ । ଆମେ ଜିପ୍‌ରେ ବାହାରି କେତେକ ପୁଲିସ୍ ପେଟ୍ରୋଲିଂ ଏବଂ ପିକେଟ୍ ଚେକ୍ କରି, ହଟଲି ପାଖରେ ପହଞ୍ଚିଲା ବେଳେ ଦେଖିଲୁ, ଦଳେ ଲୋକ ପାଖରେ ଥିବା ପୁଲିସ୍ ପିକେଟ୍ ଉପରକୁ ଟେକା ପଥର ଫୋପାଡୁଥାନ୍ତି । ମୁଁ ଜିପ୍‌ରୁ ଓହ୍ଲାଇ, ସାଙ୍ଗରେ ଆଣିଥିବା ଗୁର୍ଖା ଫୋର୍ସଙ୍କୁ ଧରି, ସେମାନଙ୍କୁ ଘଉଡ଼ାଇ ଦେଲି । ସେମାନେ ଗଲାପରେ, ଫେରି ଦେଖିଲି, ପିକେଟ୍ ପୁଲିସ୍ ଜଣେ ଯୁବକଙ୍କୁ ଧରି ମାଡ଼ପିଟି କରିବାକୁ ବସିଛନ୍ତି । ତାଙ୍କୁ କହୁଥାନ୍ତି ଯେ ସେ ଅନ୍ୟମାନଙ୍କ ସଂଗେ ମିଶି ଟେକା ପକାଇଥିଲା । ମାତ୍ର ଭଦ୍ରଲୋକ କହୁଥାନ୍ତି– ସେ ଜଣେ ପ୍ରୋବେସନାରୀ ଜୁଡ଼ିସିଆଲ୍ ମାଜିଷ୍ଟ୍ରେଟ୍ । ଘରୁକ ଆସିଛନ୍ତି ଛୁଟିରେ । ପ୍ରକୃତ ଘଟଣା ବୁଝିଲାବେଳକୁ, ସେ ଜଣେ ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍ । ଟେକା ପଥର ଫିଙ୍ଗୁଥିବା ଦିଗରୁ, ସେ ବାହାରି ବଜାର ଆଡ଼େ ଯାଉଥିବାବେଳେ ପୁଲିସ୍ ଅଟକାଇଥିଲା । ବର୍ତ୍ତମାନ ସେ ଜିଲ୍ଲା ଜଜ୍ । ଯେଉଁଠି ଦେଖନ୍ତି କହନ୍ତି ଭାଇ ସେ ଦିନ ତୁମେ ନଥିଲେ, ଗୁର୍ଖା ବାଲା ମୋତେ ଛାଡ଼ିନଥାନ୍ତେ ।'' ଟେକାପଥର ପକାଉଥିବା ଲୋକମାନଙ୍କୁ ଗୋଡ଼ାଇ ଗଲା ବେଳେ, ଗୋଟେ ପଥର ଖଣ୍ଡ ମୋ ମୁଣ୍ଡରେ ବାଜି, ସାମାନ୍ୟ ରକ୍ତ ବହୁଥିଲା । ପୋଟ୍ରୋଲିଂ କରି, ସଦର ଥାନାକୁ ଫେରିଲା ପରେ, ଏସ୍.ପି ମୋ ମୁଣ୍ଡରେ ରକ୍ତର ଦାଗ ଦେଖି କହିଲେ ''ଯାହା ହେଉ ପ୍ରଥମ ଦିନରେ ରକ୍ତ ବହିଲା । ଭବିଷ୍ୟତରେ ଜଣେ ଦକ୍ଷ ଆଇନ୍ ଶୃଙ୍ଖଳା ରକ୍ଷାକାରୀ ପୁଲିସ୍ ଅଫିସର ହେବ ।'' ସେ ଏତିକି କହିଲା ଭିତରେ ପୁଲିସ୍ ହସପିଟାଲର କମ୍ପାଉଣ୍ଡର, ମୋତେ ଫାଷ୍ଟଏଡ଼ ଦେଇଥିଲା । ସେଦିନ ସନ୍ଧ୍ୟାବେଳକୁ ଆଞ୍ଚଳିକ ସମ୍ବାଦରେ ମୋତେ ମାଡ଼ହେବା କଥା କହିଲା ଏବଂ ପରେ ପରେ ନୁନା ପାଖରୁ, ଗାଁରୁ ବୋଉ ପାଖରୁ ଚିଠି ପରେ ଚିଠି ଆସି ପହଞ୍ଚିଥିଲା । ସେଦିନ ପ୍ରାୟ ସନ୍ଧ୍ୟା ଆଠଟା ପର୍ଯ୍ୟନ୍ତ, ମୁଁ ପେଟ୍ରୋଲିଂ ଡିଉଟି କରିଥିଲି । ମଧ୍ୟାହ୍ନରେ, ସେଇ ଥାନା ବାରଣ୍ଡାରେ ଖାଇବା ମଗାଇ ଖାଇ ନେଇଥିଲି । ରାତ୍ରିରେ କେଉଁଠି ରହିବି ବୋଲି ପଚାରିବାରେ ଜାଣିଲି, ମୋ ପାଇଁ ରେଭିନ୍ୟୁ ବଙ୍ଗଳାରେ ଗୋଟିଏ ରୁମ୍ ରହିବା ପାଇଁ ବନ୍ଦୋବସ୍ତ କରାଯାଇଛି । ରାତ୍ରି ଆଠଟା ବେଳକୁ, ସେଇ ଜିପ୍‌ରେ ମୋର ବେଡ଼ ହୋଲଡ଼ର, ସୁଟ୍‌କେସ୍ ନେଇ ରେଭିନ୍ୟୁ ବଙ୍ଗଳାକୁ ଗଲି ।

ରେଭିନ୍ୟୁ ବଙ୍ଗଳାଟି ସହର ଭିତରେ । ଡି.ଏସ୍.ପି ବଙ୍ଗଳା ପାଖରୁ ଅଳ୍ପଦୂର । ଦୁଇ ବଖରିଆ ଛୋଟ ପୁରୁଣା ବଙ୍ଗଳା । ଚାରିପାଖେ ତିନିଫୁଟିଆ ପାଚେରୀ । ପରିସର ମଧ୍ୟରେ ଚଉକିଦାର ରହୁଥାଏ ତା'ର ପରିବାର ସହିତ । ସାମ୍ନା ବାରଣ୍ଡା ଚଉଡା । ମୁଁ ମୋ ରୁମ୍ ଖୋଲି, ବେଡ଼ ହୋଲଡ଼ର ନେଇ ଗୋଟେ ପୁରୁଣା ଅଧା ଛିଣ୍ଡା ଫିତା ଖଟିଆ ଉପରେ ପକାଇଲି । କବାଟ ଖୋଲୁ ଖୋଲୁ, ଦୁଇ ଚାରୋଟି ଚେମେଣୀ ଫଡ୍‌ଫଡ୍ କରି ଉଡ଼ିଗଲେ । ବୋଧେ, ସେ

ରୁମ୍‌ରେ ଚାରିମାସ ହେଲା କେହି ରହିନଥିଲେ । ରୁମ୍ ମଧ୍ୟରୁ ଏକପ୍ରକାର ଓଦାଳିଆ ଗନ୍ଧ ବାହାରୁଥିଲା । ଚଉକିଦାର ବୁଢ଼ା ଗୋଟେ ଲଣ୍ଠନ ଜାଳି ଦେଇ ଚାଲିଗଲା । ମୋ ସାଙ୍ଗରେ ଆସିଥିବା, ଜିପ୍ ଡ୍ରାଇଭର ମୋ ବେଡ଼ ହୋଲଡ଼ରକୁ ଖଟ ଉପରେ ବିଛେଇ ଦେଲା ପରେ ମୁଁ ଲଣ୍ଠନ ଧରି, ଗାଧୁଆ ଘରକୁ ଗଲି । ଗାଧୁଆ ଘର କାନ୍ଥରେ ଏକ ବିରାଟ ଫାଟ । ସେଇ ଫଟା କାନ୍ଥରେ ବାହାର ଆଲୁଅ ଦିଶୁଥାଏ । ଉଠା ପାଇଖାନା । ଗୋଟିଏ କଣକୁ କିଛି ବାଲି ଉପରେ, ଗୋଟେ ମାଟି ମାଠିଆ । ଚାରି ଦେହରେ ପାଣି । ବୋଧେ ମାସକତଳେ ·ସେ ପାଣି ଥୁଆ ହୋଇଥିଲା କି କ'ଣ, ମାଠିଆ ମୁହଁ ଉପରେ ଅଳନ୍ଧୁ ଏବଂ ପାଣି ଉପରେ ଏକପରସ୍ତ ଘର ପଡ଼ିଥାଏ । ବାଲି ଉପରେ ଦୁଇଟି ବେଙ୍ଗ ବସି, ମୋ ଆଡ଼େ ଏକା ଆଖିରେ ଚାହିଁଥାନ୍ତି । ଭଙ୍ଗା କାନ୍ଥ ଉପରେ ଏବଂ ଛପରଲି ତଳେ ଦୁଇଟି ପାରା ଦମ୍ପତି ଛୁଆ ଦେଇଥାନ୍ତି । ମୋ ପରି ଜଣେ ଜବରଦଖଲକାରୀଙ୍କୁ ତାଙ୍କ ଅଞ୍ଚଳରେ ପ୍ରବେଶ କରିବାର ଦେଖି ସେମାନେ ରାଗରେ ଗୁମୁରିବାରେ ଲାଗିଲେ । ପାଇଖାନା ଦେଖି ଫେରିଲା ବେଳକୁ, ଜିପ୍ ଡ୍ରାଇଭର ମୋ ପାଇଁ ଖାଇବା ଆଣିବା ପାଇଁ ଚାଲିଗଲାଣି । ଜଲ୍‌ଦି ନ ଆଣିଲେ ଦୋକାନ ବଜାର ବନ୍ଦ ହୋଇଯିବ । ମୁଁ ଚଉକିଦାରକୁ ଡକାଇ ଦୁଇ ବାଲ୍‌ଟି ପାଣି ମଗାଇ ସେଇ ବାଥ୍‌ରୁମ୍‌ରେ ଗାଧୋଇଲି । ଗାଧୋଇ ସାରି, ରୁମ୍‌ରେ ଲୁଗା ବଦଳାଇଲା ବେଳକୁ ଡ୍ରାଇଭର ଗୋଟେ ଟିଫିନ୍ କାରିୟରରେ ଚାରିଖଣ୍ଡ ଶୁଖିଲା ରୁଟି, କିଛି ଚଣାଡ଼ାଲି, ଡବଲ୍ ଆମଲେଟ୍ ଧରି ପହଞ୍ଚି ବଙ୍ଗଳାର ତରିଶବର୍ଷ ତଳର ପୁରୁଣା ପ୍ଲେଟ୍‌ରେ ଖାଇବା ବାଢୁଥାଏ । ଦିନଟା ଯାକର କ୍ଲାନ୍ତି ଏବଂ ଗଲା ରାତ୍ରିରେ ବସରେ ବସି ବସି ବରହମପୁରରୁ ଆସିଥିବାର କଷ୍ଟ, ଖାଇସାରିଲା ପରେ ଜଣାପଡ଼ିଲା । ଖଟ ଉପରେ ପଡୁ ପଡୁ ନିଦ ମାଡ଼ିଆସିଲା । ମଶୁରୀ ଟାଣି ମୁଁ ଶୋଇଗଲି ।

ପରଦିନ ସକାଳୁ ସକାଳୁ ରୁମ୍‌ର ମଝି ଦରଜାରେ ଖଟ୍ ଖଟ୍ ଆବାଜ୍ ଶୁଣି ମୋ ନିଦ ଭାଙ୍ଗିଗଲା । ମଝିକବାଟ ଖୋଲିଲା ପରେ ଦେଖିଲି ମାଜିଷ୍ଟ୍ରେଟ୍ ଷଡଙ୍ଗୀ ବାବୁ । ସେ ଆର ରୁମ୍‌ରେ ରହୁଥାନ୍ତି । ମୋତେ ଦେଖି ସେ ଆରମ୍ଭକଲେ, ''ସକାଳୁ ସକାଳୁ ସିନେମାହଲ୍ ପାଖେ ଟେକାପଥର ଆରମ୍ଭ ହୋଇଗଲାଣି । ବାହାରନ୍ତୁ ଯିବା ।'' ମୁଁ ସଙ୍ଗେ ସଙ୍ଗେ ରେଡ଼ି ହେବା ପାଇଁ ବାହାରିପଡ଼ିଲି । ସଦର ଥାନାରେ ପହଞ୍ଚିଲାବେଳକୁ ପୁଲିସଫୋର୍ସ ଗାଡ଼ିରେ ବସୁ ଥାଏ । ସିନେମାହଲ ପାଖେ ଟେକାପଥର ସାଙ୍ଗକୁ ଦୁଇଦଳ ମଧ୍ୟରେ ମାଡ଼ପିଟି ଆରମ୍ଭ ହୋଇଗଲା । ଛାତ୍ର ଆନ୍ଦୋଳନ ଆସ୍ତେ ଆସ୍ତେ ରାଜନୈତିକ ଆନ୍ଦୋଳନରେ ପରିଣତ ହୋଇ, ବଲାଙ୍ଗିର ଜିଲ୍ଲାର ଅନ୍ୟ ସବ୍‌ଡ଼ିଭିଜନକୁ ବ୍ୟାପିବାକୁ ଲାଗିଲା । ପାଟଣା ସବ୍‌ଡ଼ିଭିଜନରେ ମଧ୍ୟ ଛାତ୍ରମାନେ ବିରୋଧି ରାଜନୈତିକ ନେତାମାନଙ୍କ ଦ୍ୱାରା ପ୍ରରୋଚିତ ହୋଇ ସେଠାରେ ଆଇନ୍ ଶୃଙ୍ଖଳା ବ୍ୟାହତ କଲେ । ଆନ୍ଦୋଳନ ବ୍ୟାପିବା ଖବର ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲା ଏବଂ ସ୍ଥାନୀୟ ପ୍ରଶାସନ ଏହାକୁ ମୁକାବିଲା କରିପାରୁ ନାହିଁ ବୋଲି ମଧ୍ୟ ସ୍ୱତନ୍ତ୍ର ଦଳର ସ୍ଥାନୀୟ ନେତାମାନେ ମୁଖ୍ୟମନ୍ତ୍ରୀଙ୍କୁ କହିଲେ । ଦିନକ ପରେ ସ୍ୱତନ୍ତ୍ର ଦଳ ଏଇ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ପାଟଣାଗଡ଼ଠାରେ ଗୋଟିଏ ବିରାଟ ପ୍ରସେଶନ ବାହାର କରିବାକୁ ପ୍ରସ୍ତୁତ ହେଲେ । ତାହାର

ନେତୃତ୍ୱ ସେଠାକାର ସ୍ୱତନ୍ତ୍ର ଦଳର ଏମ୍. ଏଲ୍. ଏ. ଶ୍ରୀ ଅଇଁଠୁ ସାହୁ ନେଉଥାନ୍ତି । ସେମାନେ ଶୋଭାଯାତ୍ରାରେ ବନ୍ଧୁକ, ଖଣ୍ଡା, ବର୍ଚ୍ଛାଧରି ବାହାରିବାକୁ ନିଷ୍ପତ୍ତି କରିଥାନ୍ତି । ଜିଲ୍ଲା ପ୍ରଶାସନ ଏପରି ଅସ୍ତ୍ରଶସ୍ତ୍ରଧାରି ଶୋଭାଯାତ୍ରାକୁ ଲାଇସେନ୍ସ ଦେବାକୁ ମନା କରିଦେଲେ । ଏଣେ ଛାତ୍ରମାନେ କଂଗ୍ରେସଦଳର ସାହାଯ୍ୟରେ ସ୍ୱତନ୍ତ୍ର ଦଳର ଲୋକମାନେ ମାରଣାସ୍ତ୍ର ଧରି ଶୋଭାଯାତ୍ରା କଲେ, ସେମାନେ ମଧ୍ୟ ଅନୁରୂପ ଶୋଭାଯାତ୍ରା କରିବେ ବୋଲି ଧମକ ଦେଲେ । ଜିଲ୍ଲା ପ୍ରଶାସନ ଉଭୟଙ୍କୁ ତାଗିଦ୍ କରିଥିଲା ମାତ୍ର ସ୍ୱତନ୍ତ୍ର ଦଳ ତାହାକୁ ନମାନି ମାରଣାସ୍ତ୍ର ଧରି ଶୋଭାଯାତ୍ରା ବାହାର କଲେ । ଜିଲ୍ଲା ଏସ୍.ପି ତାଙ୍କୁ ବନ୍ଦ କରିବାକୁ ଆଦେଶ ଦେଇଥିଲେ । ମାତ୍ର ସେମାନେ ନମାନିବାରୁ ମିଃ ସାହୁଙ୍କୁ ଆରେଷ୍ଟକରି କୋର୍ଟ ହାଜତକୁ ପଠାଇ ଦେଲେ । ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଦଳର ନେତାମାନେ ଜିଲ୍ଲା ଏସ୍.ପି, କଂଗ୍ରେସ ଦଳକୁ ସାହାଯ୍ୟ କରୁଛି କହି ତାଙ୍କର ବଦଳି ଦାବୀ କଲେ ଏବଂ ଅକ୍ଟୋବର ଚାରି ତାରିଖ ସକାଳୁ ଆମେ ସଦରଥାନାରେ ବସିଥିବା ଅବସ୍ଥାରେ ତାଙ୍କର ବଦଳି ଆଦେଶ ଟେଲିଫୋନ ଯୋଗେ ଆସି ପହଞ୍ଚିଲା । ଦୁଇଦିନ ମଧ୍ୟରେ ତାଙ୍କ ରିଲିଭର ଏସ୍.ପି. ମିଃ ଏସ୍.ବି. ଜଏନ୍ ଆସି ବଲାଙ୍ଗିରରେ ପହଞ୍ଚି ଜିଲ୍ଲାର ଦାୟିତ୍ୱ ନେଲେ । ମିଃ ରସୁଲୁ, ନିୟମ ଅନୁସାରେ କାମ କରୁଥିଲେ । କୌଣସି ଦଳର କଥାକୁ ଶୁଣୁନଥିବା ଯୋଗୁ ତାଙ୍କର ଚବିଶ ଘଣ୍ଟା ମଧ୍ୟରେ ବଦଳି ହେଲା ।

ନୂଆ ଏସ.ପି ଜଏନ୍ କଲାପରେ, ସେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଅନୁଧ୍ୟାନ କରିବାରେ ଲାଗିଲେ । ଏଣେ କଲେକ୍ଟର ମଧ୍ୟ ପ୍ରମାଦ ଗଣୁଥାନ୍ତି । ମିଃ ଅଇଁଠୁ ସାହୁଙ୍କୁ ଗିରଫ କରିବାରେ ଯେ କେବଳ ଏସ୍.ପି. ଦାୟୀଥିଲେ ଏକଥା ନୁହେଁ । ଜିଲ୍ଲା ପ୍ରଶାସନ ଏହାକୁ ନିଷ୍ପତ୍ତି କଲାପରେ, ତାଙ୍କୁ ଗିରଫ କରାଯାଇଥିଲା । ମିଃ ତିୱାରୀ, କଳାହାଣ୍ଡି ରାଜୁଡ଼ା ଜିଲ୍ଲାର ଲୋକଥିବା ହେତୁ, ତାଙ୍କର ବଦଳି ହେବନି ବୋଲି ଧରି ନେଇଥିଲେ । କିନ୍ତୁ ଏସ.ପି ବଦଳି ହେବାର ଦୁଇଦିନ ପରେ ସେ ଟିଟିଲାଗଡ଼ ଗସ୍ତରେ ଥିବା ବେଳେ ତାଙ୍କ ବଦଳି ଆଦେଶ ଆସିଲା ଏବଂ ସେ ମଧ୍ୟ ଚବିଶ ଘଣ୍ଟା ମଧ୍ୟରେ ଜିଲ୍ଲା ଛାଡ଼ିଲେ । ତାଙ୍କ ସ୍ଥାନରେ ମିଃ ୱାଇ.ଏସ୍. ରାଓ ଜିଲ୍ଲାପାଳ ଭାବେ ଜଏନ୍ କଲେ ।

ମିଃ ରାଓ ଜଏନ୍ କଲାପରେ, ରେଞ୍ଜ ଡି.ଆଇ.ଜି. ଆଇନ୍ ଶୃଙ୍ଖଳା ତଦାରଖ କରିବା ପାଇଁ ଆସିବେ ବୋଲି ବେତାର ଖବର ଆସି ପହଞ୍ଚିଲା । ସମ୍ବଲପୁରରେ ଡି.ଆଇ.ଜି.ଙ୍କ ରେଞ୍ଜ ହେଡ୍ କ୍ୱାଟର ଏବଂ ମିଃ ଘନଶ୍ୟାମ ଦାସ, ସେତେବେଳେ ଉତ୍ତରାଞ୍ଚଳ ଡି.ଆଇ.ଜି. । ସେ ଅପରାହ୍ନରେ ବାହାରିବେ ବୋଲି ଖବର ଆସିଥାଏ । ତେଣୁ ମୁଁ ପ୍ରୋବେସନାରୀ ଡ଼ି.ଏସ୍.ପି.ଭାବେ, ଆଗରୁ ତାଙ୍କୁ ଦେଖିନଥିବା ଯୋଗୁଁ ପୋଷାକ ପିନ୍ଧି ଅପେକ୍ଷା କରିଥାଏ । ଏସ୍.ପି. କଲେକ୍‌ଟର ସମସ୍ତେ ଥାନା ପରିସର ମଧ୍ୟରେ ଥା'ନ୍ତି । ମାତ୍ର ରାତ୍ରି ଦଶଟା ପର୍ଯ୍ୟନ୍ତ ତାଙ୍କର ଆସିବା ଖବର କିଛି ନମିଳିବାରୁ, ସେମାନେ ମୋତେ ଛାଡ଼ି ରେସିଡ଼େନ୍ସକୁ ଗଲେ । କେତେ ପୁଲିସ ବାଲା କହୁଥାନ୍ତି ଡି.ଆଇ.ଜି. ଆଉ ଆସିବେନି । କିଛି ଗୋଟେ ଅଶୁଭ ସଙ୍କେତ ଦେଖିଛନ୍ତି । ନହେଲେ ସମ୍ବଲପୁରରୁ ଏଠାକୁ ଆସିବାକୁ ଏତେ ସମୟ

ଲାଗିନଥାନ୍ତା । ମିଃ ଦାସ, ଗସ୍ତରେ କିମ୍ବା କୌଣସି କାମରେ ବାହାରିବା ପୂର୍ବରୁ ଶୁଭ ମୂହୂର୍ତ୍ତଦେଖି ବାହାରନ୍ତି - ବାଟରେ ଯଦି କିଛି ଅଶୁଭ ସଂକେତ ପାଇଲେ ବାଟରୁ ଫେରିଯିବେ ପଛେ ଆଗକୁ ଆଗେଇବେନି ବୋଲି ପୁରୁଣା ପୁଲିସ୍ ବାଲାଏ କହୁଥାନ୍ତି । ମୁଁ ଶୁଣୁଥାଏ, ପ୍ରାୟ ରାତ୍ରି ସାଢ଼େ ଏଗାରଟା ବେଳକୁ ଗୋଟିଏ ପୁଲିସ ଡଜ୍ ପିକପ ଗାଡ଼ି ଥାନା ଭିତରକୁ ପ୍ରବେଶ କଲା । ମୁଁ ବାରଣ୍ଡାରେ ବସି ଭାବିଲି ବୋଧେ ଆଉ ଗୋଟେ ପ୍ଲାଟୁନ ଫୋର୍ସ ଆସିଲା । ମାତ୍ର ଗାଡ଼ି ଆସି ଥାନା ସାମ୍ନାରେ ଠିଆ ହେବା ପରେ, ଗାଡ଼ି ପଛ ପଟୁ, ଡି.ଆଇ.ଜି.ଙ୍କ ଅର୍ଡ଼ଲି ପିଅନ ଗାଡ଼ିରୁ ଡେଇଁ ପଡ଼ି ଚାପାକଣ୍ଠରେ କହିଲା ଡି.ଆଇ.ଜି. । ମୁଁ ତଳକୁ ଓହ୍ଲାଇ, ଗାଡ଼ି ସାମ୍ନାକୁ ଗଲି । ସାମ୍ନା ସିଟିରେ ସାଧା ପୋଷାକରେ ଡି.ଆଇ.ଜି. ବସିଛନ୍ତି । ମୋତେ ଦେଖି କହିଲେ "ହୁ ଆର୍ ଇଉ" । ମୁଁ ମୋ ପରିଚୟ ଦେଲା ପରେ, ସେ ସେଇ ଗାଡ଼ିରେ ବସି, ମୁଁ କେବେ ଜଏନ୍ କଲି, କ'ଣ କ'ଣ ଟ୍ରେନିଂ ନେଲିଣି, ପ୍ରତ୍ୟେକ ଦିନର ଡାଇରୀ ସବୁ ଦେଲଣି କି ନାହିଁ, ପଚାରି ଗଲେ । କିଛି ସମୟ ପଚାରିବା ପରେ, ସହର ଆଇନ୍ ଶୃଙ୍ଖଳା କଥା ପଚାରି ସେ ସିଧା ସର୍କିଟ୍ ହାଉସକୁ ଗଲେ । ତାଙ୍କ ଗାଡ଼ି ପଛପଟେ ସେ ଗୋଟେ ସେକ୍ସନ୍ ଫୋର୍ସ ସମ୍ବଲପୁରରୁ ଆଣିଥାନ୍ତି ।

ଜିଲ୍ଲାର ଆଇନ୍ ଶୃଙ୍ଖଳା ପରିସ୍ଥିତି ଆଠ ଦଶଦିନ ମଧ୍ୟରେ ଶାନ୍ତ ପଡ଼ିଗଲା । ଜିଲ୍ଲାର ଏସ୍.ପି, କଲେକ୍ଟର ବଦଳି ଯାଇଥାନ୍ତି । ଆଇନ୍ ଶୃଙ୍ଖଳା ଶାନ୍ତ ହେଲା ପରେ, ନୂଆ ଏସ୍.ପି. ଜିଲ୍ଲା ପୁଲିସ୍ ପ୍ରଶାସନ ଉପରେ ନଜର ଦେଲେ । ସେତେବେଳକୁ ଜିଲ୍ଲାରେ ବହୁତ କେସ୍ ବାକିଆ ପଡ଼ିଥାଏ । ସେ ପ୍ରାୟ ଆଠଜଣ ଥାନାର ଅଫିସରଙ୍କୁ ସଂଗେ ସଂଗେ ସସ୍‌ପେଣ୍ଡ କରି ତାଙ୍କୁଆଣି ସଦର ଥାନା ପରିସର ମଧ୍ୟରେ ତମ୍ବୁ ପକାଇ କେସ୍ ଡାଇରୀ ଲେଖିବାକୁ କହିଲେ ଏବଂ ସେମାନେ ଲେଖିଲେ । ଜିଲ୍ଲାରେ ଆତଙ୍କ ଖେଳିଗଲା । ଏସ୍.ପି.ଜଏନ୍ ସାହେବ ନାଁ ଶୁଣିଲେ, ପୁଲିସ ବାଲା ଖଣ୍ଡ ମଣ୍ଡଳ ଛାଡ଼ି ପଳେଇବାକୁ ବାହାରିଲେ । ମୋର ଟ୍ରେନିଂ ପ୍ରୋଗ୍ରାମ ସେ ନିଜେ ଦେଖୁଥିଲେ ଏବଂ ପ୍ରତ୍ୟେକ ଦିନ ରାତ୍ରିରେ ତମ୍ବାତାର ଚୋରୀ ବନ୍ଦ କରିବାପାଇଁ, ରାସ୍ତାରେ ପେଟ୍ରୋଲିଂ କରିବାକୁ ମୋତେ ନିର୍ଦ୍ଦେଶ ଦେଲେ । ସେତେବେଳେ ଟେଲିଫୋନ ତାର ସବୁ ଶହେ ପରସେଣ୍ଟ ତମ୍ବା ତାରଥିଲା । ଏଇ ତାରକୁ କାଟି ନେବା ଅତି ସହଜ ଏବଂ ଚୋରମାନେ ତମ୍ବା ତାର କାଟି ବିକିବାରେ ବହୁତ ଲାଭବାନ ହେଉଥିଲେ । ସେତେବେଳେ ତମ୍ବାତାର ଚୋରୀ ସବୁ ସ୍ୱତନ୍ତ୍ର ରିପୋର୍ଟ ମାମଲା । ବଲାଙ୍ଗିରର ରାସ୍ତା କଡ଼ ଟେଲିଫୋନ୍ ଖୁଣ୍ଟ ଜଙ୍ଗଲ ଏବଂ ନିକାଞ୍ଚନ ରାସ୍ତା ଦେଇ ଯାଇଥିବା ଯୋଗୁଁ ପ୍ରାୟ ପ୍ରତ୍ୟେକ ଦିନ ତମ୍ବାତାର ଚୋରୀ ଖବର ଆସୁଥାଏ । ମୁଁ ପ୍ରତ୍ୟେକ ଦିନ ଜିପ୍ ଏବଂ ଜିପ୍‌ରେ ସର୍ଚ ଲାଇଟ୍ ଲଗାଇ ସାଙ୍ଗରେ ବନ୍ଧୁକ ଧରି ପେଟ୍ରୋଲିଂରେ ଯାଏ । ମୋ ସଙ୍ଗରେ ସଦର ଇନସ୍‌ପେକ୍ଟର, ବେଳେ ବେଳେ ଅନ୍ୟମାନେ ଯାଉଥାନ୍ତି । ମାସକ ମଧ୍ୟରେ ତିନୋଟି ଦଳ ଚୋର, ଦୁଇଟି ଆମ୍ବାସଡ଼ର ଗାଡ଼ି ଧରିବାରେ ଚୋରୀ କିଛି ଦିନ ବନ୍ଦ ହୋଇଗଲା । ରାତ୍ରିରେ ପେଟ୍ରୋଲିଂ କଲାବେଳେ, ବଲାଙ୍ଗିର-ଟିଟିଲାଗଡ଼ ରାସ୍ତାରେ ବହୁଥର କଲରାପତିଆ ବାଘ ହାବୁଡ଼େ ପଡ଼ିଛୁ । ଥରେ ନୁହେଁ,

ବହୁଥର କୁଟୁରା, ହରିଣ ମଧ ମାରିଛୁ । ସେତେବେଳେ ଶିକାର କରିବାର ନିଷେଧ ନଥିଲା । ତମ୍ପାତାର ଚୋରୀ କମିବାରେ ଏସ.ପି ବେଶ୍ ଖୁସିଥିଲେ, ଆଉ ପ୍ରତ୍ୟେକ ଦିନ ରାତ୍ରିରେ ଶିକାର କରିବାରେ ମୁଁ ବି ବେଶ୍ ଆନନ୍ଦ ପାଉଥିଲି ।

ମୋର ଟ୍ରେନିଂ ସଦରରୁ ସରିଲାପରେ, ତରଭା ଥାନାରେ ମାସକଲାଗି ଡିଉଟି ପଡ଼ିଥାଏ । ତରଭାକୁ ଓଲଟା ଭାରତ ବୋଲି କୁହନ୍ତି । ଯାଗାଟି ଛୋଟ ହେଲେ କ'ଣ ହେଲା, ଏଠି ସବୁପ୍ରକାର କାମ ଚାଲେ । ବଡ଼ ଗାଁଟିଏ । ଏଠି ବହୁତ ପ୍ରକାର ବ୍ୟବସାୟୀ ଥା'ନ୍ତି ଏବଂ ଏମାନଙ୍କ ବ୍ୟବସାୟ ସାରା ଦେଶରେ ଚାଲୁଥାଏ । ମୋର ଏଇଠି ଟ୍ରେନିଂ ପଡ଼ିଥିବା ସମୟରେ ଆଇ.ଜିଙ୍କ ବଲାଙ୍ଗିର ଜିଲ୍ଲା ପରିଦର୍ଶନ ପଡ଼ିଲା ।

## ଆଇ.ଜିଙ୍କ ପରିଦର୍ଶନ :

ଶ୍ରୀଯୁକ୍ତ ବି.ବି.ମିଶ୍ର ଦିଲ୍ଲୀରୁ ଫେରି ଓଡ଼ିଶା ପୁଲିସ୍ ବିଭାଗର ଆଇ.ଜି. ହୋଇଥିଲେ । ମିଃ ମିଶ୍ର ଜଣେ ଦକ୍ଷ ପୁଲିସ ଅଫିସର, ଏକଥା ସମସ୍ତ ପୁଲିସ୍ ଅଫିସରଙ୍କୁ ଜଣାଥିଲା । ତା ଛଡ଼ା ସେ ଦିଲ୍ଲୀରୁ ଆସିବା ପୂର୍ବରୁ ଦିଲ୍ଲୀ ପୁଲିସ୍‌ର ଆଇ.ଜି. ଥିଲେ ଏବଂ ଦିଲ୍ଲୀ ପୁଲିସ୍ ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରି ସାରା ଦେଶରେ ନାଁ କମାଇଥିଲେ । ପୁଲିସ ପ୍ରଶାସନ ଉପରେ ତାଙ୍କର ଯେତିକି ଦକ୍ଷତା, ପ୍ୟାରେଡ଼ ଏବଂ ପୁଲିସ ଆଇନ୍‌କାନୁନରେ ମଧ ତାଙ୍କର ସେତିକି ଜ୍ଞାନ । ତେଣୁ ସେ ଓଡ଼ିଶାର ଆଇ.ଜି. ଭାବେ ଜଏନ୍ କଲାପରେ ସାରା ପୁଲିସ୍ ବିଭାଗରେ ଏକ ଶିହରଣ ଖେଳିଯାଇଥାଏ । ସେ ଜଏନ୍ କରିବାର ମାତ୍ର ମାସକ ମଧରେ ପ୍ରଥମେ ବଲାଙ୍ଗିର ଜିଲ୍ଲା ପରିଦର୍ଶନରେ ଆସିବାକୁ ଠିକ୍ କରି ପ୍ରୋଗ୍ରାମ ଦେଲେ । ଏସ୍.ପି. ତାଙ୍କ ଇନ୍‌ସ୍‌ପେକସନ୍ ପ୍ରୋଗ୍ରାମ ପାଇଲା ପରେ ପରେ, ସବୁ ଅଫିସରମାନଙ୍କୁ ଡାକି ଥାନା ଠାରୁ ଆରମ୍ଭ କରି ରିଜର୍ଭଲାଇନ୍ ପର୍ଯ୍ୟନ୍ତ, ସବୁ ଯେପରି ଟିପ୍‌ଟପ୍ ଅବସ୍ଥାରେ ରୁହେ, ତାର ଆଦେଶ ଦେଲେ । ସାରା ଜିଲ୍ଲା ଆଇ.ଜିଙ୍କ ପରିଦର୍ଶନ ପାଇଁ ଅପେକ୍ଷା କରିଥାନ୍ତି । ପରିଦର୍ଶନ ଆଠଟା ଦିନ ଥାଏ, ମୋ ପାଖକୁ ଖବର ଗଲା, ଏସ୍.ପିଙ୍କୁ ଆସି ହେଡ଼କ୍ବାଟରରେ ଦେଖା କରିବା ପାଇଁ । ମୁଁ ତରଭାରୁ ଆସି ତାଙ୍କୁ ଦେଖାକଲି । ଏସ.ପି. କହିଲେ, ଆଇ.ଜି.ଙ୍କ ପରିଦର୍ଶନ ପରେ ସନ୍ଧ୍ୟାବେଳକୁ ଘଣ୍ଟିକିଆ ସାଂସ୍କୃତିକ ପ୍ରୋଗ୍ରାମ ହେବ । ମୁଁ ତାର ଦାୟିତ୍ୱରେ ରହିବି । ଏସ.ପି.ଙ୍କ ଆଦେଶ ପାଇଲା ପରେ, ମୁଁ ବଲାଙ୍ଗିର ହେଡ଼କ୍ବାଟରରେ କିଛି ଦିନ ପାଇଁ ରହିଲି । ସେତେବେଳକୁ ମୁଁ ରମାଇ ଟକିଜ୍ ସାମ୍ନା ଗଳିରେ ଗୋଟିଏ ୧୦୦ ବର୍ଷର ପୁରୁଣା ଦୋମହଲା କୋଠା ଘରକୁ ସିଫ୍ଟ କରିଥାଏ । ୧୦୦ ବର୍ଷ ତଳେ, ବଲାଙ୍ଗିର ରାଜା ତାଙ୍କର ଜଣେ ରାଣୀଙ୍କୁ, ରାଣୀ ମହଲରୁ ବାଛନ୍ଦ କରି ଏଇ ଘରେ ରଖିଥିଲେ । ଚାରିପଟେ ଛୋଟ ପାଚେରୀ । ଦୁଆର ମଝିରେ ରୋଷେଇ ଘର । ଉଠା ପାଇଖାନା ସାଂଗକୁ ବାଡ଼ିପଟେ ଗୋଟେ କୁଅ । ବେଶ୍ ଭଲ ଘର ଯଦିଓ ଭଙ୍ଗାରୁଜା ପ୍ରାୟ । ସ୍ୱାଧୀନତା ପରେ, ଡି.ଆଇ.ଜି ଅଫିସର୍ ଏଠାରେ ରହୁଥିଲେ । ଖାଲିଥିବା ଯୋଗୁଁ ମୋତେ ସେ ଘରଟି ଦେଇଥାନ୍ତି ।

ଆଇ.ଜି.ଙ୍କ ସାଂସ୍କୃତିକ ସନ୍ଧ୍ୟା କାର୍ଯ୍ୟକ୍ରମ ପାଇଁ, ମୁଁ ଘଣ୍ଟିକିଆ ପ୍ରୋଗ୍ରାମ ପ୍ରସ୍ତୁତ କଲି । ଏଥିରେ ଆବାହନ ସଙ୍ଗୀତ ଠାରୁ ଆରମ୍ଭ କରି ଗୋଟିଏ ଛୋଟିଆ ହାସ୍ୟରସ ଏକାଙ୍କିକା ମଧ ଥାଏ । ଦୁଇଜଣ ସର୍ଜେଣ୍ଟ, ଓ୍ୟାରଲେସ୍ ସବ୍ଇନିସପେକ୍ଟର ମିଃ ମହାନ୍ତି, ସଦର ଇନସ୍ପେକ୍ଟର ଦେ, ସମସ୍ତେ ଏକାଙ୍କିକାରେ ଭାଗ ନେଇଥାନ୍ତି । ପ୍ରତ୍ୟେକ ଦିନ ସନ୍ଧ୍ୟାରେ ରିହରସାଲ୍ ହୁଏ । ସକାଳୁ ତରଭା ଟ୍ରେନିଂ ପାଇଁ ଯାଏ, ଉପରବେଳା ଫେରି, ରିହର୍ସାଲ୍ ଦେଖେ । ଆଇ.ଜି.ଙ୍କ ଆସିବା ପ୍ରୋଗ୍ରାମ ପହଞ୍ଚିଗଲା । ସେ ଠିକ୍ ଦିନ ଚାରିଟାବେଳେ, ବଲାଙ୍ଗୀର ସର୍କିଟ୍ ହାଉସ୍‌ରେ ପହଞ୍ଚିବେ ବୋଲି ଜଣାଇଥାନ୍ତି । ଦୁଇଦିନ ଆଗରୁ, ଉତ୍ତରାଞ୍ଚଳ ଡି.ଆଇ.ଜି ମିଃ ଦାସ ମଧ  ପୁଲିସ୍ ଅଫିସ୍ ପରିଦର୍ଶନ କରିଥିଲେ । ତେଣୁ ସମସ୍ତେ ପରିଦର୍ଶନ ଲାଗି ବ୍ୟସ୍ତରେ ଥା'ନ୍ତି । ଆଇ.ଜି. ଆସିବା ଦିନ ଦୁଇଜଣ ସର୍ଜେଣ୍ଟ ଦୁଇଟି ମଟର ସାଇକେଲ୍‌ରେ, ଆଉଟ୍ ରାଇଡ଼ର କାମ କରିବା ପାଇଁ ବଲାଙ୍ଗିର ସହର ଠାରୁ ପାଞ୍ଚ କିଲୋମିଟରେ ଦୂରରେ ଅପେକ୍ଷା କରି ରହିଲେ । ସହରକୁ ପ୍ରବେଶ କଲା ମାତ୍ରକେ, ଡି.ପି.ଓ. ବିଲ୍ଡିଂ ଉପରେ ଜଣେ ବିଗୁଲ୍‌ର ବିଗୁଲ ଧରି ରହିଲେ । ଆଇ.ଜି.ଙ୍କ ଗାଡ଼ି ସେଇବାଟେ ଗଲାବେଳେ, ସେ ଉପରୁ ବିଗୁଲ୍ ଦେଇ ସମ୍ମାନ ପ୍ରଦର୍ଶନ କରିବେ । ତାଛଡ଼ା ଗୋଟେ ପାଇଲଟ୍ ଜିପ୍ ଆଗରେ ପାଇଲଟିଂ କରିନେବା ପାଇଁ ବନ୍ଦୋବସ୍ତ ହୋଇଥାଏ । ମୁଁ ଦିନ ତିନିଟାବେଳକୁ ସରକିଟ୍ ହାଉସ୍‌ରେ ପହଞ୍ଚିଥିଲି । ମୋ ପଛେ ପଛେ ମିଃ ମିଶ୍ର  ହେଡ଼କ୍ବାଟରେ ଡି.ଏସ.ପି. ପହଞ୍ଚିଲେ । ମିଃ ମିଶ୍ରଙ୍କ ଘର ସମ୍ବଲପୁରରେ । ସେ ବଲାଙ୍ଗିର ରାଜାଙ୍କ ସମୟରେ ତାଙ୍କ ରାଜ୍ୟରେ ଫରେଷ୍ଟ ଗାର୍ଡ଼ ଥିଲେ । ତାଙ୍କର ଖଣ୍ଡେ ବନ୍ଧୁକ ଥିଲା ଏବଂ ସେ ଥରେ ରାଜାଙ୍କର ପାଟିଆଲା ରାଜ୍ୟରୁ ଆସିଥିବା ବନ୍ଧୁମାନଙ୍କ ସାଙ୍ଗରେ ବାଘ ଶିକାର କରିବାକୁ ଯାଇଥିଲେ । ବାଘ ଶିକାର କରିବାରେ ସେ ରାଜାଙ୍କର ବନ୍ଧୁମାନଙ୍କୁ ଉତ୍ତମ ରୂପେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ବନ୍ଧୁକ୍ ଗୁଳିଖିଆ ବାଘ ମୁହଁରୁ ବଞ୍ଚାଇଥିବା ଯୋଗୁଁ, ରାଜା ତାଙ୍କ କାର୍ଯ୍ୟରେ ଖୁସି ହୋଇ ଫରେଷ୍ଟଗାର୍ଡ଼ରୁ ପୁଲିସ୍ ସବ୍ ଇନିସ୍‌ପେକ୍ଟର କରି ଦେଇଥିଲେ । ସ୍ୱାଧୀନତା ପରେ ସେ ଇନିସ୍‌ପେକ୍ଟର ପରେ ଡି.ଏସ୍.ପି. ହୋଇଥାନ୍ତି । ଛ'ଫୁଟ ଉଚ୍ଚ ମାତ୍ର ଓଜନ ଚାଳିଶ୍ କେଜିରୁ କମ୍ । ପୁଲିସ୍ ବାଲା କହନ୍ତି ଝିଟିପିଟି ଡି.ଏସ୍.ପି. । ତାଙ୍କର ସଙ୍ଗୀତରେ ବହୁତ ସଉକ୍ । ଦରକାର ବେଳେ ହାରମୋନିୟମ୍ ଧରି, ଅଧଘଣ୍ଟା ଗୀତ ଶୁଣାଇବାକୁ  ପଛାନ୍ତିନି । ସବୁବେଳେ ପାନାମା ସିଗାରେଟ୍ ଖଣ୍ଡେ ପାଟିରେ ଥିବ । ଆମେ ପହଞ୍ଚିବା ଆଗରୁ, ଆର୍.ଆଇ. ମିଃ ଗୁରୁ ସରକିଟ୍ ହାଉସ୍ ସାମ୍ନା ପୋର୍ଟିକୋରେ ଚୂନରେ ଗୋଟେ ଧଳା ଗାର ଟାଣି, ସେଇଠି ଗୋଟିଏ ଲାଇନ୍‌ରେ ଠିଆ ହେବାକୁ ଠିକ୍ କରିଥାନ୍ତି । ହେଡ଼କ୍ବାଟର ଡି.ଏସ୍.ପି. ପହଞ୍ଚି ସେଇ ଗାରଟିକୁ ଦେଖିଲେ, ଠିକ୍ ଅଛି କି ନାହିଁ । ସାଢ଼େ ତିନି ବେଳକୁ ଏସ୍.ପି. ଆସି ପହଞ୍ଚିଲେ । ସେ ମଧ ସେଇ ଧଳା ଗାରକୁ ନିଜେ ଆଉଥରେ ଦେଖିନେଇ ଆମକୁ ଠିକ୍ ଭାବେ ଠିଆ ହେବାକୁ କହିଲେ । ସେ ନିଜେ ରିହରସାଲ୍ ନେଲାବେଳକୁ ସରକିଟ୍ ହାଉସ୍‌ରୁ ଡି.ଆଇ.ଜି. ବାହାରି ପଡ଼ି, ସେ ମଧ ଆମ ସମସ୍ତଙ୍କୁ ଆଉ ଥରେ ସେଇ ଗାର ଉପରେ ଠିଆ କରି, ଆମର ପୋଜିସନ୍ ପରିଦର୍ଶନ କରିନେଲେ । ଏତିକିବେଳକୁ ଟାଉନ୍

ଆଡ଼େ ବିଗୁଲ୍ ଶବ୍ଦ ଶୁଭିଲା । ଡି.ଆଇ.ଜିଙ୍କ ସମେତ ଆମେ ସମସ୍ତେ ସେଇ ଧଳା ଗାର ଲାଇନ୍ ଉପରେ ଠିଆ ହେଲୁ । ପ୍ରାୟ ପାଞ୍ଚ ମିନିଟ୍ ପରେ ଦେଖିଲୁ, ଆଇ.ଜି. ସାହେବଙ୍କ ଇମ୍ପାଲା ଗାଡ଼ି (ସେତେବେଳେ ପୁଲିସ୍ ଆଇ.ଜି.ଙ୍କର ଗୋଟେ ସରକାରୀ ଇମ୍ପାଲା ଗାଡ଼ି ଥିଲା) ଆସ୍ତେ ଆସ୍ତେ ଗେଟ୍ ଦେଇ ସର୍କିଟ ହାଉସ ପରିସରକୁ ପ୍ରବେଶ କଲା । ଆସ୍ତେ ଆସ୍ତେ ଗାଡ଼ି ଆସି ସର୍କିଟ୍ ହାଉସର ପୋର୍ଟିକୋ ପାଖେ ରହିଲା ପରେ ଆଇ.ଜି., ସୁଟ୍ ଏବଂ ମୁଣ୍ଡରେ ହ୍ୟାଟ୍ ଥାଇ ଓହ୍ଲେଇଲେ । ହାତରେ ଖଣ୍ଡେ ବାଡ଼ି । ମୁହଁରେ ପାଇପ୍ । ସେ ଆସି ଆମେ ଠିଆ ହୋଇଥିବା ଲାଇନ୍‌ରେ ଜଣ ଜଣଙ୍କ ଡ୍ରେସ୍‌କୁ ଦେଖିଲେ । ମୋତେ କହିଲେ ଟାଇ ନଟ୍‌କୁ ଠିକ୍ କରିବା ପାଇଁ । ଆଇ.ଜି.ଙ୍କ ସାଙ୍ଗରେ ମିସେସ୍ ମିଶ୍ର, ତାଙ୍କ ପୁଅ ମଧ୍ୟ ଆସିଥାନ୍ତି । ସମ୍ମାନ ଗାର୍ଡ଼ ପରିଦର୍ଶନ ପରେ, ଆମେ ସମସ୍ତେ ସର୍କିଟ୍ ହାଉସ୍ ବାରଣ୍ଡାରେ ବସିଲୁ ଏବଂ ସଙ୍ଗେ ସଙ୍ଗେ କଫି ଆସିଗଲା । ବିସ୍କୁଟ୍ କଫି ପିଇଲା ବେଳେ, ଆଇ.ଜି. ସାହେବଙ୍କ କଥାବାର୍ତ୍ତା ସମସ୍ତେ ଏକ ଧ୍ୟାନରେ ଶୁଣୁଥିଲେ । ପ୍ରାୟ ଘଣ୍ଟାଏ ଚାଲିଗଲା । ଦିଲ୍ଲୀଠାରୁ କଟକ ପର୍ଯ୍ୟନ୍ତ ସବୁକଥା ପଡ଼ିଥାଏ । ସେ କହୁଥାନ୍ତି, ଆମେ ଶୁଣୁଥାଉ । ଘଣ୍ଟାକ ପରେ, ଏସ.ପି. କହିଲେ, "ସାର୍, ଆଉ ଗୋଟେ କପ୍ କଫି ହେଲେ, କିପରି ହୁଅନ୍ତା" । ଆଇ.ଜି. ସଙ୍ଗେ ସଙ୍ଗେ କହିଲେ, "ହଉ ଠିକ୍ ଅଛି, ଆଣ" । ଏସ୍.ପି., ଡି.ଏସ୍.ପିଙ୍କୁ କହିଲେ କଫି ବରାଦ କରି ଶୀଘ୍ର ଆଣିବା ପାଇଁ । ଡି.ଏସ୍.ପି., ପଛପଟକୁ ଯାଇ ସଦର ଇନ୍‌ସ୍‌ପେକ୍ଟର ଦେଙ୍କୁ କହିଲେ, "କଫି ଆଣିବାକୁ" । ଦେଓ ରୋଷେଇ ଘର ଆଡ଼େ ଗଲେ । ଡି.ଏସ୍.ପି. ମିଶ୍ର ପଛ ପଟ ବାରଣ୍ଡାରେ ଠିଆ ହୋଇ ଖଣ୍ଡେ ସିଗାରେଟ୍ ଟାଣିଲାବେଳେ, ମିଃ ଦେ ଆସି କହିଲେ, କଫି ପାଇଁ କ୍ଷୀର ପ୍ରଥମ ରାଉଣ୍ଡ କଫି ପରେ ବଳିଥିଲା, ତାକୁ ଆଇ.ଜି.ଙ୍କ ସଙ୍ଗେ ଆସିଥିବା ଦେହରକ୍ଷୀ ପିଇ ଦେଇଛନ୍ତି । ଏତେବେଳେ କ୍ଷୀର ମିଳିବ କୁଆଡୁ । ସର୍କିଟ୍ ହାଉସ୍ ଠାରୁ ବଜାର ଚାରି କିଲୋମିଟର ଦୂର । ଡେରି ହେବା ଦେଖି, ଏସ୍.ପି. ପୁଣି ଥରେ, ପଛପଟକୁ ଯାଇ ଡି.ଏସ୍.ପିଙ୍କ ଠାରୁ ଏ ଖବର ଶୁଣି ଇନିସ୍‌ପେକ୍ଟର ଦେଙ୍କୁ ସସ୍‌ପେଣ୍ଡ କରିବା ପାଇଁ ଧମକ ଦେଇଥାନ୍ତି । ଏତିକିବେଳେ ଆର୍.ଆଇ. ଗୁରୁ ପଛ ପଟୁ ଆସୁଥିବାର ଦେଖି, ଏସ୍.ପି. ତାଙ୍କୁ ଡ଼ାକି ଚାପା ଗଳାରେ ଆଦେଶ ଦେଲା ପରି କହିଲେ ଶୀଘ୍ର ଯାଇ କ୍ଷୀର ଯେଉଁଠୁ ହେଲେ ଯୋଗାଡ଼ କରି ଆଣ । ଆର.ଆଇ. ଗୁରୁ ବି ଫୁଲ୍ ଇଉନିଫର୍ମରେ ଟ୍ୟୁନିକ୍ ପିନ୍ଧିଥିଲେ । ଏସ୍.ପି.ଙ୍କ ନିର୍ଦ୍ଦେଶ ଶିରୋଧାର୍ଯ୍ୟ । ନାହିଁ କରିବାକୁ ବାଟ ନାହିଁ । ଅଗତ୍ୟା କିଛି ଉପାୟ ନଦେଖି ଆର୍.ଆଇ. ଗୁରୁ, ସର୍କିଟ ହାଉସ ପାଖରେ ଥିବା ପୁଲିସ୍ ରିଜର୍ଭ ଲାଇନ୍‌ରେ ତାଙ୍କ ଘର ଆଡ଼କୁ ଗଲେ । ଏସ.ପି. ପଛ ପଟୁ ଫେରି ଆସିଲା ପରେ ମୁଁ ଉଠି ପଛପଟକୁ ଗଲି । ଡି.ଏସ.ପି. ମୋତେ ଖଣ୍ଡେ ପାନାମା ସିଗାରେଟ୍ ଦେଇ କହିଲେ, "ଦେଖବୋ, ତୁଚ୍ଛାଟାରେ ଗାଳି ଖାଇଲି ।" ମୁଁ ପାନାମା ସିଗାରେଟ୍‌ରେ ନିଆଁ ଧରାଇ ଦିଦମ୍ ଟାଣି ସାରିଲାପରେ ଦେଖିଲି, ଦୁଇ ଜଣ ପୋଷାକ ପିନ୍ଧା ପୁଲିସ୍ କନେଷ୍ଟବଲ ପୁଲିସ୍ ପଡ଼ିଆରେ ଗୋଟେ ଗାଈ ପଛେ ପଛେ ଗୋଡ଼ାଇଥାନ୍ତି । ଦିନ ବୁଡ଼ି ନଥାଏ । ଗାଈ ଘରକୁ ଆସିବା ସମୟ ହୋଇନଥାଏ । ଗାଈଟା ପଡ଼ିଆ ମଝିରେ ଡିଆଁ

ମାରୁଥାଏ । ଏଣେ ଆର.ଆଇ. ଗୁରୁ ତାଙ୍କ ଘର ଗେଟ୍ ଦୁଆର ମୁହଁରେ ଠିଆ ହୋଇ, କନେଷ୍ଟବଳଙ୍କୁ ଦୋ ଅକ୍ଷରୀରେ ଶୋଧୁବା ସଙ୍ଗେ ସଙ୍ଗେ ଗାଈଟିକୁ ଧରିବାକୁ ନିର୍ଦ୍ଦେଶ ଦେଉଥାନ୍ତି । ଗେଟ୍ ପାଖରେ ନିଜେ ବାହୁରୀର ପଘାକୁ ଧରି ପୁରା ଡ୍ରେସରେ ଠିଆ ହୋଇଥାନ୍ତି । ସର୍କିଟ ହାଉସ୍‌ର ପଛପଟ ପିଣ୍ଡା ଉପରୁ ଠିଆ ହୋଇ ମୁଁ ଏସବୁ ଦେଖୁଥାଏ । ଡି.ଏସ.ପି. ମିଃ ମିଶ୍ର, ଖଣ୍ଡକ ପରେ ଖଣ୍ଡେ ପାନାମା ସିଗାରେଟ୍ ଲଗାଉଥାନ୍ତି । କିଛି ସମୟ ପରେ, ଏସ୍.ପି. ଆଇ.ଜିଙ୍କ ପାଖରୁ ଉଠି ଆସି ଚାପା ଅଥଚ କଡ଼ା ସ୍ୱରରେ କହିଲେ, ''ଡି.ଏସ୍.ପି. କ'ଣ କରୁଚ'' ? ଏତିକିରେ ମିଃ ମିଶ୍ରଙ୍କ ମୁହଁରୁ ପାନାନା ସିଗାରେଟ୍‌ଟି ଖସି ପଡ଼ିଲା । ତାଙ୍କୁ ଦେଖି, ଏସ୍.ପି. କହିଲେ ''ଯାଅ - ସେ ବୁଢ଼ି ଆର୍.ଆଇ. କ'ଣ କରୁଛି ଦେଖ ।'' ତାଙ୍କ ଆଦେଶରେ ଡି.ଏସ୍.ପି. ପିଣ୍ଡା ତଳକୁ ଡେଇଁ ପଡ଼ି ମାର୍ଚ୍ଚିଂ ଅର୍ଡ଼ରରେ ଚାଲିବାକୁ ଲାଗିଲାବେଳେ, ଏସ୍.ପି. ପୁଣି ଚାପା ଅଥଚ କଡ଼ା ସ୍ୱରରେ କହିଲେ ''ଷ୍ଟପ୍ ଡି.ଏସ.ପି. ଷ୍ଟପ୍'' । ଟେକ୍ ଏ ଜିପ୍ ଆଣ୍ଡ ଗୋ'' । ସଙ୍ଗେ ସଙ୍ଗେ ଡି.ଏସ୍.ପି. ମିଶ୍ର ପିଛେ ମୁଡ଼ ଢଙ୍ଗରେ ପଛକୁ ବୁଲି, ଆଇ.ଜି.ଙ୍କ ପରିଦର୍ଶନ ପାଇଁ ରହିଥିବା ଖୋଲା ଜିପ୍ ଉପରେ ବସି ନିଜେ ଚଳେଇ ସିଧା ଆର.ଆଇ କ୍ୱାଟର ଗେଟ୍ ପାଖରେ କଡ଼ା ବ୍ରେକ୍ ଦେଲେ । ସେଠାରେ ପହଞ୍ଚିବା ପର ଘଟଣା, ଆର୍.ଆଇ. ଗୁରୁଙ୍କ ଠାରୁ ଶୁଣିଥିଲୁ ବହୁତ କଷ୍ଟରେ କନେଷ୍ଟବଲ ଦୁଇଜଣ, ଆର୍.ଆଇଙ୍କ ଦୁହାଁଳିଆ ଗାଈକୁ ପଡ଼ିଆ ମଧ୍ୟରୁ ଘଉଡ଼େଇ ଆଣି, ତାଙ୍କ ଗୁହାଳରେ ପୂରାଇଲା ପରେ,  ଆର୍.ଆଇ ପୋଷାକ ବଦଳାଇବା ପାଇଁ ସମୟ ଅଭାବରୁ, ସେରେମୋନିଆଲ୍ ଡ୍ରେସ୍‌ରେ ଥାଇ, ନିଜେ ଗୋଟିଏ ସିଲଭର ଡେଗେଚି ଧରି, ଗାଈ ଦୁହିଁବା ଆରମ୍ଭ କରିଥାନ୍ତି । ଏଇ ସମୟରେ ଡ଼ି.ଏସ୍.ପି. ମିଶ୍ର ଗାଡ଼ିରୁ ବ୍ରେକ୍ ଦେଇ ତାଙ୍କ ଗେଟ୍ ପାଖେ ପହଞ୍ଚିଲା ପରେ, ଖଣ୍ଡେ ସିଗାରେଟ୍ ବାହାର କରି, ନିଆଁ ଲଗାଇ, ଆର୍.ଆଇ ଗାଈ ଦୁହୁଁଥିବା, ଗୁହାଳକୁ ଆସି, ''ଜଲ୍‌ଦି ଦୁହାଁବୋ '' ବୋଲି କହିଥିଲେ । ସେ ଜଲ୍‌ଦି ଦୁହଁ - ଦି' ହାତ ଚଲାଅ' କହିବା ଭିତରେ, ତାଙ୍କ ଅଜାଣତରେ, ସେ ଡ଼ାହାଣ ହାତରେ ଧରିଥିବା ଜଳନ୍ତା ସିଗାରେଟ୍ ଗାଈର ପିଚାରେ ଚେଙ୍କି ହୋଇଗଲା । ନିଆଁ ଚେଙ୍କା ଖାଇ, ଗାଈ ପଛୁଆ ଗୋଟେ ଚଉକସିଆ ନାତ ଦେଲା । ସେଇ ନାତରେ ଦୁଧ ହାଣ୍ଡିରୁ ଅଧେ ଦୁଧ ଢାଳି ହେଲାବେଳେ, ନାତ ଯୋଗୁ ମୃତ ଗୋବରର ଗୋଟିଏ ଲମ୍ବା ଦାଗ ଡି.ଏସ.ପି.ଙ୍କ ଟିଉନିକ୍ ଉପରେ ପଡ଼ିଗଲା । ଡି.ଏସ.ପି., ପାଟିକରି ଉଠିଲେ, ''ଶାଲା- ଦୁଧ୍ ଖାଇଲା..... କଫି ପିଉଶାଲା - ମୁଁ ଆଉ ନହିଁ ଯାଏ । ଆର.ଆଇ., ତୁଇ ନେଇଯା ।'' ଆର୍.ଆଇ, ତାଙ୍କୁ ବୁଝାସୁଝା କରି, ଅଧା ଡେଗେଚିରେ କ୍ଷୀର ଧରି ଆସି ପହଞ୍ଚିଲା ପରେ, କଫି ତିଆରି ହୋଇ ଆଇ.ଜି.ଙ୍କ ପାଇଁ ଗଲା । ସେଦିନ କଫି ପର୍ବ ସରିଲା ପରେ, ପରଦିନ ରିଜର୍ଭଲାଇନ୍ ପରିଦର୍ଶନ । ସମସ୍ତେ ପୂରା ଦମ୍‌ରେ ଲାଗିଥାନ୍ତି । କଫି ପର୍ବ ଶେଷ କରି ଉଠିଲାବେଳକୁ ଆଇ.ଜି. ମିଶ୍ର, ଡି.ଆଇ.ଜିଙ୍କୁ ଲକ୍ଷ୍ୟ କରି କହିଲେ, ''ଦାସେ, ମୁଁ ଗଲାବାଟରେ ତୁମ ଅଫିସ୍ ଦେଖିବି । ପାର ଯଦି ଆଜି ଚାଲିଯାଅ ।'' ତାଙ୍କ କଥା ଶୁଣି ଡି.ଆଇ.ଜିଙ୍କ ମୁହଁ ଶୁଖିଗଲା । ସେ ସଙ୍ଗେ ସଙ୍ଗେ ବେଡ଼ିଂ ପତ୍ର ଗୁଡ଼ାଇ, ସମ୍ବଲପୁର ଅଭିମୁଖେ ବାହାରି ପଡ଼ିଲେ ।

ମୁଁ ସର୍କିଟ୍ ହାଉସ୍‌ରୁ ଫେରିଲାବେଳେ, ଏସ୍.ପି.ଙ୍କି କହିଥିଲି ଯେ, ସେଦିନ ସମ୍ପୂର୍ଣ୍ଣ ଭାବେ ଷ୍ଟେଜ୍ ରିହର୍‌ସାଲ ହେବ, ଏସ୍.ପି. ଯଦି ଦେଖିନିଅନ୍ତେ, ଭଲ ହୁଅନ୍ତା । ମାତ୍ର ସେ ମନା କଲେ, କହିଲେ ମୁଁ ଯାହା କରୁଛି ଠିକ୍ କରୁଛି ।

ପରଦିନ ସକାଳୁ ରିଜର୍ଭ ଲାଇନ୍ ପରିଦର୍ଶନ, ପ୍ୟାରେଡ୍ ଚାଲିଥାଏ । ମୁଁ କେବଳ ପ୍ୟାରେଡ୍ ଆଟେଣ୍ଡ କରି ପଳାଇ ଆସି, ବାକି କାମ ଦେଖୁଥାଏ । ଆଇ.ଜି.ଙ୍କ ପରିଦର୍ଶନ ଠିକ୍ ପାଞ୍ଚଟାବେଳକୁ ଶେଷ ହେଲା । ସେତେବେଳକୁ ମୁଁ ହଲରେ ସିନ୍ ବାନ୍ଧୁଥାଏ । ଏଠାରେ କେହି ସିନ୍ ବାନ୍ଧିବା ଜାଣି ନଥାନ୍ତି । ତେଣୁ ଷ୍ଟେଜ୍ ଉପରେ ବସି ସିନ୍ ବାନ୍ଧୁଥିବା ବେଳେ, ହଠାତ୍ ଏସ୍.ପି. ଆର୍.ଆଇ. ଗୁରୁ, ହଲ୍ ଭିତରକୁ ପଶି ଆସିଲେ । କାହାକୁ ନ ଦେଖି ଏସ୍.ପି. ପାଟି କଲେ । ମୁଁ ଷ୍ଟେଜ୍ ଉପରୁ ଖଣ୍ଡେ ବାଉଁଶ ଦେଇ ଖସି ଆସିବା ଦେଖି, ସେ ଆହୁରି ରାଗିଯାଇ କହିଲେ, ସେ ସେଇ ମୁହୂର୍ତ୍ତରେ ଷ୍ଟେଜ୍ ରିହରସଲ୍ ଦେଖିବେ । ମୁଁ କହିଲି, ଆଉ ମାତ୍ର ଘଣ୍ଟାଏ ସମୟ ବାକି । ସାତଟା ବେଳକୁ କାର୍ଯ୍ୟକ୍ରମ ଆରମ୍ଭ ହେବ । କଳାକାର, ପ୍ରମ୍ପଟର୍ କେହି ଆସିନାହାନ୍ତି । ମାତ୍ର ସେ ଶୁଣିବାକୁ ରାଜି ନଥିଲେ । ସେ ଧମକ୍ ଦେଇ କହିଲେ ଯଦି ସେ ଷ୍ଟେଜ୍ ରିହରସାଲ୍ ନ ଦେଖିବେ, ତେବେ ସେ ଆଇ.ଜି.ଙ୍କୁ ପ୍ରୋଗ୍ରାମ ପାଇଁ ଆଣିବେନି । ମୁଁ ଷ୍ଟେଜ୍ ଉପରେ ଥାଇ ଏକଥା ଶୁଣି କଣ କରିବି ବୋଲି ଭାବିଲାବେଳକୁ, ମିଁ. ମହାନ୍ତି, ଯେ କି ଜଣେ ପୁରୁଣା ସିନେମା ଅଭିନେତା, ସଙ୍ଗେ ସଙ୍ଗେ ଗୋଟେ ହୁ୍ୟସିଲ୍ ମାରି ନିଜେ ଡ୍ରପ୍ ଟାଣିଦେଲେ । ମତେ କହିଲେ, ''ସାରଙ୍କୁ କୁହନ୍ତୁ ବସିବେ । ଆମେ ଷ୍ଟେଜ୍ ରିହରସାଲ ଆରମ୍ଭ କରିବା ।'' ମୁଁ କହିଲି, ''କେହି ନାହାଁନ୍ତି କ'ଣ କରିବା ।'' ମି.ମହାନ୍ତି କହିଲେ ''ଆପଣ ଅଛନ୍ତି ମୁଁ ଅଛି ଆରମ୍ଭ କରିଦେବା ଦେଖିବା କ'ଣ ହେଉଛି ।'' ମୁଁ ଏସ୍.ପି.ଙ୍କୁ କହିଲି, ''ସାର୍ ସଙ୍ଗେ ସଙ୍ଗେ ଆରମ୍ଭ କରୁଛି ।' ସେ କହିଲେ, ''ଦୁଇ ମିନିଟ୍ ଟାଇମ୍ ଦେଲି ।'' ମୁଁ ଷ୍ଟେଜ୍ ଉପରକୁ ଆସିଲା ପରେ, ମି. ମହାନ୍ତି ଖୁବ୍ ଜୋର୍‌ରେ ହୁ୍ୟସିଲ୍ ଦେଇ ପରଦା ଟାଣି ଦେଲେ । ଷ୍ଟେଜ୍ ଉପରେ ସେ ଆଉ ମୁଁ । ଦୁଇ ଜଣ ଯାକ ଡାଇଲଗ୍ ଆରମ୍ଭ କରିଦେଲୁ । ଏଇ ସମୟରେ ସର୍ଜେଣ୍ଟ ସରସ୍ୱତୀ, କାଖରେ ଖଣ୍ଡେ ଛତା ଧରି ଷ୍ଟେଜ ପଛ ପଟେ, ଡ୍ରେସିଂ ରୁମ୍‌କୁ ଗଲାବେଳେ ମି. ମହାନ୍ତି ତାକୁ ଷ୍ଟେଜ୍‌କୁ ଟାଣି ଆଣି, ତାଙ୍କ ଉପରେ ଡାଇଲଗ୍ ଆରମ୍ଭ କରିଦେଲେ । ସରସ୍ୱତୀ, ଆଗରେ ଏସ୍.ପି. ଆଉ ଗୁରୁଙ୍କୁ ଦେଖି ସେ ବି ଅଭିନୟ ଆରମ୍ଭ କଲେ । କିଛି ସମୟ ପରେ ଏସ୍.ପି. କହିଲେ, ''ଭେରି ଗୁଡ୍ ।'' ଠିକ୍ ସାତଟାରେ ଆରମ୍ଭ କରିବ '' କହି ସେ ଚାଲିଗଲେ । ସେ ଗଲାପରେ ଆମେ କିଛି ସମୟ ପାଇଁ ଥକ୍କା ମାରି ବସିଲୁ, ହସିଲୁ ଆଉ ଠିକ୍ ସାତଟାରେ ପ୍ରୋଗ୍ରାମ ଆରମ୍ଭ କଲୁ । ସେଦିନ ପ୍ରୋଗ୍ରାମ ବହୁତ ଭଲ ହେଲା । ଆଇ.ଜି. ନିଜେ, ସମସ୍ତ କଳାକାରମାନଙ୍କୁ ଡାକି ଧନ୍ୟବାଦ ଦେଲେ । ଏସ୍.ପି. ବହୁତ ଖୁସି ହୋଇଗଲେ । ପରେ, ମୁଁ ପୁରୁଣା ଅଫିସରମାନଙ୍କୁ ଠାରୁ ଶୁଣିଥିଲି, ଆଗର ଆଇ.ଜି.ମାନେ ପୁଲିସରେ ସାଂସ୍କୃତିକ କାର୍ଯ୍ୟକ୍ରମକୁ ଗୁରୁତ୍ୱ ଦେଉଥିଲେ । ମିଃ. ବି.ବି. ମିଶ୍ରଙ୍କ ସମୟରେ ସେ ବାର୍ଷିକ ପୁଲିସ୍

ଆଥେଲେଟିକ୍ ମିଟ୍ ସମୟରେ ପ୍ରତ୍ୟେକ ଜିଲ୍ଲାରୁ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଦଳ ଅଣାଇ ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା କରି ପୁରସ୍କାର ଦେଇଥିଲେ ।

ମୋର ତରଭା ଟ୍ରେନିଂ ପରେ, ମାସକ ଲାଗି ସୋନପୁର, ସର୍କଲ ଇନିସ୍‌ପେକ୍ଟରଙ୍କ ଅଫିସରେ ଟ୍ରେନିଂ ପଡ଼ିଲା । ସେଠାରୁ ଟ୍ରେନିଂ ସାରିଲା ପରେ, ତିନିମାସ ଲାଗି ମୋର ମଫସଲ ପୁଲିସ ଷ୍ଟେସନ ସିନ୍ଧେଇକେଲାରେ ଟ୍ରେନିଂ ପଡ଼ିଲା । ମୋତେ ସେଠାରେ ଅତିରିକ୍ତ ଅଫିସର ଇନ୍-ଚାର୍ଜ ଭାବେ କାମ କରିବାକୁ ହେବ । ସିନ୍ଧେଇକେଲା ବଲାଙ୍ଗିର ସଦର ମହକୁମାଠାରୁ ପ୍ରାୟ ୮୦ କିଲୋମିଟର ଦୂର । ବର୍ଷକେ ୪ ମାସ, ସେଠାକୁ କୌଣସି ବସ୍ କିମ୍ବା ଅନ୍ୟ ଗାଡ଼ି ଯାଇପାରେନି । ମୋର ପୋଷ୍ଟିଂ ହେଲାବେଳକୁ, ସେଠାକୁ ବସ୍-ସର୍ଭିସ ଚାଲି ନଥାଏ । ତେଣୁ ନୂଆ ବଲାଙ୍ଗିରରେ, ମୋତେ ମିଳିଥିବା ଘରେ ରହିଲାବେଳେ, ମୁଁ ଏକୁଟିଆ ଟିଟିଲାଗଡ଼ ଦେଇ ସିନ୍ଧେଇକେଲା ଗଲି । ଟିଟିଲାଗଡ଼ର ସର୍କଲ ଇନିସ୍‌ପେକ୍ଟର ମିଃ ଯୁଧିଷ୍ଠିର ବାବୁ । ସେ ମୋତେ ତାଙ୍କ ଜିପ୍‌ରେ ସେଠାରେ ଛାଡ଼ିଦେଲେ ।

ସିନ୍ଧେଇକେଲା ଥାନାଟି ରାଜୁଡ଼ା ଅମଳର ଥାନା । ଏହାର ଲୋକ ସଂଖ୍ୟାର ଷାଠିଏ ଭାଗ ଆଦିବାସୀ । କିଛି ଅଂଶ ଜଙ୍ଗଲ ମଧ୍ୟରେ ଅବସ୍ଥିତ । ସାଧାରଣ ଲୋକମାନେ ଅତ୍ୟନ୍ତ ଗରିବ ଏବଂ ମୁଖ୍ୟତଃ ଚାଷ ଉପରେ ନିର୍ଭରଶୀଳ । ଗୋଟିଏ ବଡ଼ ଗାଁର ମୁଣ୍ଡରେ ଏଇ ଥାନା ଘର । ମାଟିକାନ୍ଥ ଉପରେ ଟାଳ ଛପର । କାନ୍ଥ ମାଟିରେ ତିଆରି ହେଲାବେଳେ, ଚଟାଣ ସବୁ ସିମେଣ୍ଟରେ । ଥାନା ଘର ସାମ୍ନାରେ ବିରାଟ ଲମ୍ବା ବାରଣ୍ଡା ଏବଂ ବାରଣ୍ଡାର ଗୋଟିଏ କଣକୁ ଗୋଟେ ୩୦ ଫୁଟରେ ୨୦ ଫୁଟିଆ ଘର । ସେଇ ରୁମ୍‌ଟି ଥାନାର ପରିଦର୍ଶନ ଗୃହ । ଆଗେ ଯେଉଁ ପରିଦର୍ଶନକାରୀ ଅଫିସରମାନେ ଆସୁଥିଲେ, ସେମାନେ ଏଇଠି ରହୁଥିଲେ । ମୁଁ ଟ୍ରେନିଂ ପାଇଁ ଜଏନ୍ କଲାପରେ ଏଇ ରୁମ୍‌ରେ ରହିଲି । ରୁମ୍‌କୁ ଲାଗି ଗାଧୁଆ ଆଉ ପାଇଖାନା ଘର । ପଶ୍ଚିମପଟକୁ ଆଉ ଗୋଟେ ରୋଷେଇ ଘର । ରହିବାପାଇଁ ସବୁ ସରଞ୍ଜାମ ଥାଏ । ପୁରୁଣା ବ୍ରିଟିଶ୍ ସମୟର କପ୍, ପ୍ଲେଟ୍ ଠାରୁ ଆରମ୍ଭ କରି ପୁରୁଣା ରାଜୁଡ଼ା ଅମଳର ଶିଶୁ କାଠର ପଲଙ୍କ, ଡ୍ରେସିଂ ଟେବୁଲ ଇତ୍ୟାଦି । ମୋ ପାଇଁ ରୋଷେଇ କରିଦେବା ଲାଗି ଅଫିସର ଇନ୍-ଚାର୍ଜ ଜଣେ ଲୋକକୁ ଠିକ୍ କରି ଦେଲେ । ଏଠାରେ ସେତେବେଳେ ଖାଇବା ଜିନିଷ ପତ୍ର ମଧ୍ୟ ବହୁତ ଶସ୍ତା ଥାଏ । ଟଙ୍କାରେ ଅଢ଼େଇ କିଲୋ ସୁନ୍ଦର ବାସନା ସରୁ ଚାଉଳ, ସେଇପରି ଟଙ୍କାରେ ଦୁଇକେଜି ହରଡ଼ ଡାଲି । ବିଲାତି ବାଇଗଣ ଟଙ୍କାରେ ଆଠ କେଜି ଏବଂ କ୍ଷୀର ଲିଟରକୁ ଆଠ ଅଣା ଇତ୍ୟାଦି ।

ସିନ୍ଧେଇକେଲା ଗାଁର ଲୋକ ସଂଖ୍ୟା ପ୍ରାୟ ତିନିଶହ ହେବେ । ସେଥିମଧ୍ୟରୁ ମାରୁଆଡ଼ି ପରିବାର ପ୍ରାୟ ପନ୍ଦର ଘର ହେଲାବେଳେ ଚାରି ପାଞ୍ଚ ଘର କୁମୁଟି । ବାକି ସବୁ ଓଡ଼ିଆ ଲୋକଙ୍କ ଘର । ଗାଁ ମଝିରେ ଜମିଦାରଙ୍କ ଘର । ସେ ପାଟଣା ରଜାଙ୍କ ଜମିଦାରୀ । କେଉଁ କାଳରୁ ଏଇ ଅଞ୍ଚଳର ଜମିଦାର ଭାବେ ଅଛନ୍ତି । ଏଠାରେ ରାଜୁଡ଼ା ଅମଳରୁ ଥାନା ହେବାର କାରଣ ହେଲା, ଏହି ଅଞ୍ଚଳ କଳାହାଣ୍ଡିର ସୀମାରେ ଅବସ୍ଥିତ । ଆଗେ ଜଙ୍ଗଲରୁ କାଠ ବହୁ

ପରିମାଣରେ ବିକ୍ରୟ ହେଉଥିଲା ବେଳେ ବର୍ଷାଦିନେ ଏଠି ଭଲ ଧାନ ହୁଏ । ଏଇ ଥାନା ଇଲାକାରେ ପ୍ରସିଦ୍ଧ ''ରାଣୀପୁର, ଝରିଆଲ୍'' ''ଚଉଷଠୀ ଯୋଗିନୀ'' ମନ୍ଦିର ଅବସ୍ଥିତ । 'ଭାରତର ତିନି ଚାରୋଟି ଚଉଷଠୀ ଯୋଗିନୀ ପୀଠ ମଧ୍ୟରୁ ରାଣୀପୁର ଝରିଆଲ ପୀଠ ପ୍ରସିଦ୍ଧ ।

ମୁଁ ସିନ୍ଧେଇକେଲାରେ ଜଏନ୍ କଲାପରେ, ଚଉଷଠୀ ଯୋଗିନୀ ମନ୍ଦିର ଦେଖିବାକୁ ଯାଇଥିଲି । ଟ୍ରେନିଂ ଅଫିସର ହିସାବରେ, ନିଜ ଅଞ୍ଚଳର ଐତିହାସିକ ପୀଠ ଇତ୍ୟାଦି ଦେଖିବା ସଙ୍ଗେ ତାର ସୁରକ୍ଷା ଦିଗରେ ପଦକ୍ଷେପ ନେବା କଥା । ଥାନାରୁ ରାଣିପୁର-ଝରିଆଲ୍ ଗାଁଟି ସାତ କିଲୋମିଟର । ଶଗଡ଼ ସରି ରାସ୍ତା । ସାଇକେଲ୍‌ରେ ମୁଁ ଏବଂ ଥାନା ବାବୁ ଗଲୁ । ଚଉଷଠୀ ଯୋଗିନୀ ପୀଠଟି-ରାଣୀପୁର ଝରିଆଲ୍ ଗାଁ ମୁଣ୍ଡର ଗୋଟିଏ ମୁଣ୍ଡିଆ ପାହାଡ଼ ଉପରେ ଅବସ୍ଥିତ । ପାଞ୍ଚଫୁଟ୍ ଉଚ୍ଚ ଗୋଲାକାର ପଥରଘେର ମଧ୍ୟରେ ୬୪ଟି ଯୋଗିନୀ ମୂର୍ତ୍ତି ଅଛନ୍ତି । କେତେକ ମୂର୍ତ୍ତିଙ୍କର ଦେହ ଖଣ୍ଡିଆ । ଲୋକ ମୁଖରୁ ଶୁଣାଯାଏ, ଯୋଗିନୀଙ୍କ ଦେହ ମଧ୍ୟରେ ସୁନା ଅଛି ବୋଲି, କେତେକ ଦୁର୍ବୃତ୍ତ ତାଙ୍କ ବକ୍ଷ, ହସ୍ତ, ଇତ୍ୟାଦିକୁ ଭାଙ୍ଗି ଦେଇଛନ୍ତି । ଏହା ସତ୍ୟ ହୋଇପାରେ, ନ ହୋଇ ପାରେ । ପ୍ରତ୍ୟେକ ମୂର୍ତ୍ତିର ଉଚ୍ଚତା ପ୍ରାୟ ଦୁଇ ଫୁଟ ପାଖାପାଖି ଏବଂ ମୂର୍ତ୍ତିଗୁଡ଼ିକ ଖଣ୍ଡ ଲାଇଟ୍ ପଥରରେ ନିର୍ମିତ । ଏହାର ରକ୍ଷଣାବେକ୍ଷଣ, ଯେପରି ହେବା କଥା ସେପରି ହେଉ ନାହିଁ । ଯୋଗିନୀ ପୀଠ ତଳକୁ, ସପ୍ତମ-ଅଷ୍ଟମ ଶତାବ୍ଦୀର ଇଟାରେ ତିଆରି ମହାଦେବ ମନ୍ଦିର । ପ୍ରାୟ ଭଗ୍ନ ଅବସ୍ଥାରେ । ମନ୍ଦିର ଉପରେ ବରଗଛ ଉଠିଥାଏ ତାକୁ ସଫା କରାଯାଇନଥାଏ । ଜଗୁଆଳୀ ଭାବେ ଥିବା ଏ.ଏସ.ଆଇର ଲୋକଙ୍କୁ ଏକଥା କୁହାଗଲା । ମହାଦେବଙ୍କ ମନ୍ଦିର ପାଖକୁ ଲାଗି, ଇଟା-ପଥର ଦିଆ ବଡ଼ ପୁଷ୍କରିଣୀଟିଏ । ଏଇଟି ମଧ୍ୟ, ସେଇ ସପ୍ତମ ଶତାବ୍ଦୀର ପୁଷ୍କରିଣୀ ପରି ଜଣାପଡ଼େ । ଚଉଷଠୀ ଯୋଗିନୀ ପୀଠର ଅବସ୍ଥିତି, ଏ ଅଞ୍ଚଳରେ ପଞ୍ଚମ ଶତାବ୍ଦୀରୁ ୧୦ମ ଶତାବ୍ଦୀ ପର୍ଯ୍ୟନ୍ତ ଏବଂ ଏହା ପରେ ମଧ୍ୟ, ମହାଯାନପନ୍ଥୀ ବୌଦ୍ଧ ଧର୍ମର ପ୍ରସାର ଘଟିଥିବାର ସୂଚନା ଦିଏ । ବୌଦ୍ଧତନ୍ତ୍ର ପୂଜା ମଧ୍ୟ କେତେକ ସ୍ଥାନରେ ଦେବାଦେବୀଙ୍କୁ ନେଇ ଏଠାରେ ପରିଲକ୍ଷିତ ହୁଏ । ସିନ୍ଧେଇକେଲା ଗାଁ ମୁଣ୍ଡରେ ଗୋଟିଏ ପୋଖରୀ ଉପର ତେନ୍ତୁଳୀ ଗଛ ମୂଳେ ଦୁଆରସୁଣୀ ଠାକୁରାଣୀ ପୂଜା ପାଆନ୍ତି । କାମାକ୍ଷାପୀଠ ପରି ଏଠାରେ ମଧ୍ୟ ଦେବୀ ''ଯୋନୀ'' ଆକାର ପୂଜା ପାଆନ୍ତି, ଯାହାକି ତନ୍ତ୍ର ପୂଜାର ପ୍ରତୀକ ।

ମନ୍ଦିର ପରିସର ବୁଲିଲା ପରେ ଥାନାବାବୁ, ମୋତେ ରାଣୀପୁର ଗାଁକୁ ନେଲେ । ପୁରୁଣା କନ୍ଧ ଗାଁ । ଗାଁରେ ସେଇ ବର୍ଷ ଚଇତ୍ର ମାସରେ ମେରିଆ ପର୍ବ ପାଳନ କରୁଥାନ୍ତି । ଗାଁର ମୁଖିଆକୁ ବଡ଼ବାବୁ କହିଲା ପରେ, ସେମାନେ ମୋତେ ପର୍ବ ଦେଖିବା ପାଇଁ ଆସିବାକୁ ନିମନ୍ତ୍ରଣ କଲେ । କିଛି ସମୟ ଗାଁରେ ବସିଲାବେଳେ ଗାଁର ଲୋକ ମୋତେ କିଛି ମୁଢ଼ି, ତା ଦେହରେ ଚିନାବାଦାମ ମଞ୍ଜି ପକାଇ ଖାଇବାକୁ ଦେଲେ । ସେମାନଙ୍କର ଅନାବିଳ ସ୍ନେହ ମୋତେ ମୁଗ୍ଧ କରିଥିଲା । କିଛି ସମୟ ଗାଁରେ କାଟିଲା ପରେ ଥାନାକୁ ଫେରିଲି ।

ସିନ୍ଧେଇକେଲା ଥାନାରେ ବର୍ଷକୁ ୩୦ରୁ ୪୦ଟି ମାମଲା ହୁଏ । ସେପରି କିଛି ବଡ଼ ଧରଣର ନୁହଁ । ବେଳେବେଳେ ହତ୍ୟାକାଣ୍ଡ ଘଟେ – ନ ହେଲେ ସବୁ ଛୋଟ କାଠଚୋରୀ, ବଳଦଚୋରୀ ମାମଲା । ଦିନେ ମୁଁ ଥାନା ବାରଣ୍ଡାରେ କାମ କଲାବେଳେ, ଜଣେ ୫୦ ବର୍ଷର ଲୋକ ମୋତେ ଦେଖା କଲା । ସେ ସେଇ ଗାଁର ଲୋକ । ବେଶ୍ ଖୁନ୍ଦିଲା ଖୁନ୍ଦିଲା ଦେହ । ଶୁଣିଲି ସେ ଜଣେ ଭଲ ଶିକାରୀ । ସେ ମୋତେ ପାଖ ଜଙ୍ଗଲକୁ ଶିକାର କରିବା ପାଇଁ କହିଲା । ଜାନୁଆରୀ ମାସ ବେଳକୁ, ବଲାଙ୍ଗିରରୁ ନୁନା ଆସି ଏଠାରେ ମୋ ପାଖରେ ରହୁଥାଏ । ମୋ ଝିଅ, ଛୋଟ । ଦିନେ ଦିନେ ମୁଁ ସେଇ ଶିକାରୀ ସାଙ୍ଗେ, ଜଙ୍ଗଲ ପାଖ ଗାଁ ଆଡ଼େ ବୁଲିଯାଏ । ଶିକାର ହଉ ନ ହଉ, ପାଖ ଆଖ ଗାଁ ବୁଲିବା, ଲୋକମାନଙ୍କ ସଙ୍ଗେ ପରିଚିତ ହେବାରେ ବେଶ୍ ସୁବିଧା ହେଲା । ପ୍ରଥମେ ପ୍ରଥମେ ଲୋକମାନଙ୍କୁ ଦିଆଯାଉଥିବା ଧାରଣା , ମୁଁ ଜଣେ ବଡ଼ ପୁଲିସ୍ ଅଫିସର ଆସିଛି, ଏକଥା ଆସ୍ତେ ଆସ୍ତେ ଲୋକମାନେ ଭୁଲି ମୋ ପାଖକୁ ଆସିବାକୁ ଆରମ୍ଭ କଲେ । ଦିନେ ସନ୍ଧ୍ୟାରେ ଆମେ ସିନ୍ଧେଇକେଲା ଠାରୁ ପ୍ରାୟ ୧୫ କିଲୋମିଟର ଗୋଟିଏ ପାହାଡ଼ ତଳ ଗାଁକୁ ଯାଇଥିଲୁ । ଗାଁଟି ଯାକର ଲୋକ ଆସି ଆମକୁ କହିଲେ ଯେ, ଜଙ୍ଗଲରୁ ଗୋଟେ ମହାବଳ ବାଘ ଆସି ତାଙ୍କ ଗାଈ ଗୋରୁ ମାରି ଦେଉଛି । ତାକୁ ମାରିଦେବାକୁ ଅନୁରୋଧ କଲେ । ମୁଁ ଏକଥା ଏସ୍.ପି., କଲେକ୍ଟରଙ୍କୁ ଲେଖିଲି ଏବଂ ଦିନେ ଟିଟିଲାଗଡ଼ର ଜଙ୍ଗଲ କଣ୍ଟ୍ରାକ୍ଟର ''ଘଣାବାଲା''ର ଟ୍ରକରେ ବସି ସେ ବାରିକ ବୁଢ଼ା ସାଙ୍ଗେ, ମହାବଳ ଗୃହପାଳିତ ପଶୁ ମାରୁଥିବା ଜଙ୍ଗଲକୁ ଗଲୁ । ମାତ୍ର ମହାବଳର ସନ୍ଧାନ ମିଳି ନଥିଲା । ପରେ ମଧ୍ୟ ସେ ପାଖ ଆଖ ଗାଁରେ ଗୋରୁ-ଗାଈ ମାରିବା ବନ୍ଦ ହୋଇଗଲା । ଲୋକମାନଙ୍କ ବିଶ୍ୱାସ ହେଲା, ଆମେ କୁଆଡ଼େ ତାକୁ ମାରିଦେଲୁ । ବାରିକ ବୁଢ଼ା ପ୍ରଚାର କଲେ ଯେ ମୁଁ ଜଣେ ଭଲ ଶିକାରୀ । ମହାବଳ ବାଘ ମାରିଛି । ଗ୍ରାମରକ୍ଷୀମାନେ କନେଷ୍ଟବଲମାନଙ୍କଠାରୁ ଶୁଣି ଏକଥା ତାଙ୍କ ଗାଁ ମାନଙ୍କରେ କହିଲେ । ମହାବଳ ବାଘର ଅନ୍ତର୍ଦ୍ଧାନ ସେମାନଙ୍କ ଧାରଣାକୁ ଆହୁରି ଦୃଢ଼ କରିଦେଲା । ଦିନେ ଗୋଟେ ଜଙ୍ଗଲ ପାଖ ଗାଁରୁ ସାତ ଆଠ ଜଣ ଲୋକ ଆସି ଅନୁରୋଧ କଲେ, ତାଙ୍କର କନ୍ଦମୂଳ ବାଡ଼ିକୁ ଗୋଟେ ଦନ୍ତା ବାର୍‌ହା ଆସି ନଷ୍ଟ କରୁଛି । ସେମାନେ ଯାହା କଲେବି - ମାନୁନି । ତାକୁ କିପରି ମରାଯାଉ । ଶୀତଦିନେ ପାହାଡ଼ ତଳ ଝରଣା, ନଈ କୂଳରେ କନ୍ଦମୂଳ, ସୋରିଷ, ଚିନାବାଦାମ ସାଙ୍ଗକୁ ଗୋଟେ ଗୋଟେ ଗାଁରେ ଆଖୁ କରନ୍ତି । ଜଙ୍ଗଲ ଜନ୍ତୁ, ବାର୍‌ହା, କୁଟୁରା, ଭାଲୁମାନେ ବେଳେ ବେଳେ ତାଙ୍କ ଫସଲ ନଷ୍ଟ କରିଥାନ୍ତି ।

ସେମାନଙ୍କ କହିବା ଅନୁସାରେ, ମୁଁ ତାଙ୍କ ଗାଁର ଗ୍ରାମରକ୍ଷୀକୁ ଧରି ଦିନେ ସନ୍ଧ୍ୟାବେଳେ ସେ ଗାଁରେ ସାଇକେଲ୍‌ରେ ପହଞ୍ଚିଲି । ଲୋକେ ଖଣ୍ଡେ ଦଉଡ଼ିଆ ଖଟିଆ ପକାଇ ମୋତେ ମୁଢ଼ି, ଚିନାବାଦାମ୍ ଦେଲେ ଏବଂ ମୋ ସାଙ୍ଗରେ ଦୁଇଜଣ ଯୁବକ ଲୋକଙ୍କୁ ବାର୍‌ହା ଖାଉଥିବା କନ୍ଦମୂଳ କିଆରୀକୁ ଦେଖାଇ ଦେବାକୁ ଯିବେ ବୋଲି ଠିକ୍ କଲେ । ଜହ୍ନ ସେଦିନ ରାତି ଦିଘଡ଼ି ପରେ ଆସିବା କଥା । ଆମେ ତିନିଜଣ, ଗାଁରୁ ଜହ୍ନ ପାହାଡ଼ ମୁଣ୍ଡିଆ ଉପରକୁ ଉଠିବା ପୂର୍ବରୁ ସେଇ କନ୍ଦମୂଳ କିଆରୀ ପାଖରେ ପହଞ୍ଚିଲୁ । ପାହାଡ଼ ତଳକୁ ଲାଗି ତଇଲାରେ କନ୍ଦମୂଳ

କିଆରୀ । ପାଖରେ ଗୋଟେ ଛୋଟ ଝରଣା ବହିଯାଇଛି । କିଆରୀର ଉତ୍ତର ପଶ୍ଚିମ କଣରେ, ଗୋଟେ କେନ୍ଦୁ ଗଛ, ପାଖକୁ ଲାଗି ବଡ଼ ହୁଙ୍କା । ମୁଁ ସେଇ କେନ୍ଦୁ ଗଛ ମୂଳରେ ଛପି ରହିବାକୁ ଠିକ୍ କଲି । ଯୁବକ ଦୁଇଜଣ ହାତରେ ଜଣେ ଗୋଟେ ଟାଙ୍ଗିଆ, ଆଉ ଜଣେ ଗୋଟେ ଧନୁଶର ଧରି ମୋ ପାଖରେ ବସିଲେ । ମୋ ହାତରେ ବାରିକ ବୁଢ଼ାର ଦୋନଳୀଆ ବନ୍ଧୁକ । ଚାରିଆଡ଼େ ନିସ୍ତବ୍ଧ । ଆସ୍ତେ ଆସ୍ତେ ପାହାଡ଼ ମୁଣ୍ଡିଆ ଉପରେ ଜହ୍ନ ଉଠିଲା । ଚାରିଆଡ଼ ଫର୍ଚ୍ଚା ହୋଇଗଲା । ମୋର ଗୋଟିଏ ଲକ୍ଷ୍ୟ ବାର୍‌ହା କେଉଁ ପଟୁ ଆସିବ । କିଛି ସମୟ ପରେ, ପାହାଡ଼ ଉପରେ ପଥର ଖସିବାର ଶବ୍ଦକୁ ଲକ୍ଷ୍ୟ କରି କନ୍ଧ ଯୁବକ ଦୁଇଜଣ ମୋ ଦେହରେ ହାତ ମାରି ସେଇ ଦିଗକୁ ଦେଖାଇ ଦେଲେ । ମୁଁ ବନ୍ଧୁକ ଧରି ପ୍ରସ୍ତୁତ ହେଲି । ବାର୍‌ହାକୁ ଲାଇଟ୍ ପକାଯାଏ ନାହିଁ ବୋଲି ମୋତେ ବାରିକ୍ ବୁଢ଼ା କହିଥିଲା । ତେଣୁ ମୁଁ ଲାଇଟ୍ ଆଣିଥିଲେ ମଧ୍ୟ ପାଖରେ ରଖିଥାଏ । ବନ୍ଧୁକ ମାଛି ଦେହରେ ଚୂନ ଦାଗ ଲଗାଇ ଦେଇଥାଏ, ଯେପରି ଲକ୍ଷ୍ୟ କଲାବେଳେ ଠିକ୍ ଦିଶିବ । କିଛି ସମୟ ପରେ, ସତକୁ ସତ ଗୋଟେ ବିରାଟ ଦନ୍ତା ବାର୍‌ହା, କନ୍ଦମୂଳ କିଆରୀରେ ପଶି କନ୍ଦମୂଳ ତାଡ଼ି ଖାଇଲା । ତା ଖାଇବା ଶବ୍ଦ ମଧ୍ୟ ମୋତେ ପରିଷ୍କାର ଶୁଭୁଥାଏ । ମାତ୍ର ଟିକିଏ ଦୂରରେ ଥିବା ଯୋଗୁ, ମୁଁ ମାରିବାକୁ ନଯାଇ, ଆଉ ଅଳ୍ପ ପାଖକୁ ଆସିଲେ ମାରିବି ବୋଲି ଠିକ୍ କରିଥାଏ । କିନ୍ତୁ କନ୍ଧ ଯୁବକ ଦୁଇଜଣ ଏକ ଦମ୍ ଅସ୍ଥିର । ସବୁବେଳେ ଇଙ୍ଗିତ ଦଉଥାନ୍ତି - ମାରନ୍ତୁ ବୋଲି । ବାର୍‌ହା ଟିକିଏ ପାଖକୁ ଆସିଛି, ମୁଁ ଲକ୍ଷ୍ୟ ନେଇ ଗୁଳି ଫୁଟାଇ ଦେଲି । ଗୁଳିଟି ବୋଧେ ଠିକ୍ ସ୍ଥାନରେ ବାଜିଲାନି । ଗୋଟିଏ ମୁହୂର୍ତ୍ତରେ, ସେ ବାର୍‌ହା ଗର୍ଜନ କରି କନ୍ଦମୂଳ କିଆରୀରୁ, ହୁଙ୍କା ଆଡ଼କୁ ମାଡ଼ି ଆସିଲା । ବାର୍‌ହା ମାଡ଼ି ଆସୁଥିବାର ଦେଖି, ଯୁବକ ଦିଜଣ, ଧନୁତୀର ଫୋପାଡ଼ି ଡିଆଁ ମାରି ଛୁ । ବାର୍‌ହା ଗର୍ଜନରେ ମୋ ହାତରୁ ବନ୍ଧୁକ ଖସି ପଡ଼ିଲା । ମୁଁ ଆଉ ବାଟ ନ ପାଇ, ସେଇ କେନ୍ଦୁଗଛ ଡାଳକୁ ଧରି ଓହଳି ପଡ଼ି ଗଛ ଉପରକୁ ଚଢ଼ି ଗଲି । ବାର୍‌ହା ରାଗରେ ଉଇ ହୁଙ୍କାକୁ ତାଡ଼ି ଗଛମୂଳେ ଗର୍ଜନ କରୁଥାଏ । ପାଞ୍ଚମିନିଟ୍ ପର୍ଯ୍ୟନ୍ତ ସେ ବାର୍‌ହା ସେଇଠି ଗର୍ଜନ କଲା । ଗୁଳିମାଡ଼ ଶୁଣି ଗାଁ ବାଲାଏ ବାର୍‌ହା ମାରିଛି ବୋଲି ଦଉଡ଼ି କରି ଆସିଲେ । ଲୋକମାନଙ୍କ ପାଟି ଶୁଣି ବାର୍‌ହା ପାହାଡ଼ ଉପରକୁ ଚଢ଼ିଗଲା । କିଛି ସମୟ ପରେ, ସେମାନେ ସମସ୍ତେ ଆସି ଗଛ ମୂଳେ ପହଞ୍ଚିଲେ । ମୁଁ ଗଛରୁ ଡେଇଁ ତଳକୁ ଆସିଲି । ମୋର କିଛି ଅସୁବିଧା ହୋଇନି ଜାଣି ସେମାନେ ସାଙ୍ଗରେ ଗାଁକୁ ନେଲେ । ସେଇଠୁ ଆମେ ଥାନାକୁ ଫେରିଲୁ ।

ଚୈତ୍ର ମାସ ବେଳକୁ ରାଣିପୁର ଝରିଆଲ ଗାଁରେ କନ୍ଧମାନଙ୍କର ମେରୀଆ ପୂଜା ପର୍ବ ପଡ଼ିଲା । ଏଇ ପର୍ବ ଏକ କୃଷିଭିତ୍ତିକ ପର୍ବ । ବର୍ଷା ପୂର୍ବରୁ କନ୍ଧ ତାର ଧରିତ୍ରୀ ମାକୁ ପୂଜା କରେ । ଫସଲ କରିବା ପାଇଁ ସାଇତି ରଖିଥିବା ବିହନ ପୁଡ଼ିଆ ଆଣି ମେରିଆ ପାଖରେ ଥୁଏ । ସେଇଠି ତାର ଜାନି, ତାକୁ ପୂଜା କରେ । ଧରିତ୍ରୀ ମାତାକୁ ବଳି ଦେ, ଖୁସି କରେ, କନ୍ଧମାନଙ୍କ ଏ ଗୋଟିଏ ବଡ଼ ପର୍ବ । ସବୁ ଗାଁରେ ସବୁ ବର୍ଷ ଏଇ ପର୍ବ ପାଳନ ହୁଏନି । ଗୋଟେ ଗୋଟେ ଗାଁରେ ଏମାନେ ବର୍ଷକେ ଥରେ ପର୍ବ ପାଳନ କରନ୍ତି । ପର୍ବ ସମୟରେ

ଗୋଟେ ଅଣ୍ଡିରା ମଇଁଷିକୁ ବଳି ଦିଅନ୍ତି । ଏସବୁ କଥା ମୁଁ ଶୁଣିଥିଲି । ଦେଖିନଥିଲି । ତେଣୁ ଝରିଆଲରେ ମେରୀଆ ପର୍ବ ଦେଖିବାକୁ ମୋର ଆଗ୍ରହ ଜନ୍ମିଥିଲା । ତାଛଡ଼ା ଏଇ ପର୍ବ ସମୟରେ ଶାନ୍ତି ଭଙ୍ଗର ଆଶଙ୍କା ଥିବା ଦୃଷ୍ଟିରୁ ସେଠାରେ ମଧ୍ୟ ପୁଲିସ୍ ବନ୍ଦୋବସ୍ତ ହୁଏ । ମୁଁ ଯେତେବେଳେ ଥାନାର ଦାୟିତ୍ୱରେ ଅଛି, ତେଣୁ ମୋର ଯିବାର କଥା ।

ପର୍ବର ପନ୍ଦର ଦିନ ଆଗରୁ, ଦିନେ ସକାଳୁ ସକାଳୁ, ମୁଁ ଥାନା ବାରଣ୍ଡାରେ ବସିଥିଲା ବେଳେ, ଝରିଆଲ୍ ଗାଁର ଦୁଇ ଜଣ ଲୋକ, ଗାଁର ମୁଖିଆ ସାଙ୍ଗେ ଆସି ଥାନା ପରିସର ମଧ୍ୟରେ ଗୋଟେ ମେଣ୍ଢା ବାନ୍ଧି ଦେଲେ । ମୁଁ ପ୍ରଥମେ ଭାବିଥିଲି, ବୋଧେ ଚୋରୀ ମେଣ୍ଢା, ଧରି କରି ଥାନାରେ କେସ୍ କରିବାପାଇଁ ଆସିଛନ୍ତି । ମାତ୍ର ପରେ ଗାଁର ମୁଖିଆ କହିଲେ ଯେ, ସେ ଥାନାକୁ ନିମନ୍ତ୍ରଣ କରିବାକୁ ଆସିଛନ୍ତି । ମେରିଆ ପର୍ବକୁ ଥାନାବାବୁ ଯିବା ପାଇଁ, ନିମନ୍ତ୍ରଣ ସମୟରେ ମେଣ୍ଢାଟି ଥାନା ଠାକୁରାଣୀଙ୍କ ପାଇଁ ଆଣିବା ଗୋଟିଏ ପରମ୍ପରା । ଗଡ଼ଜାତ ଅଞ୍ଚଳରେ ପ୍ରତ୍ୟେକ ଥାନା ମଧ୍ୟରେ ଦୁର୍ଗା କିମ୍ବା କୌଣସି ଦେବୀ ମୂର୍ତ୍ତି ପୂଜା ପାଆନ୍ତି । ଥାନାରେ ଦଶହରା ପୂଜା ପାଳନ ସମସ୍ତେ କରନ୍ତି । ବଳି ପଡ଼ିବା ପ୍ରଥା ମଧ୍ୟ କେତେକ ଥାନାରେ ଅଛି । ସିନ୍ଧେଇକେଲା ଥାନାରେ ଦୁର୍ଗା ଠାକୁରାଣୀ ପୂଜା ପାଆନ୍ତି । ପ୍ରତ୍ୟେକ ଦିନ ସକାଳୁ ଜଣେ ବ୍ରାହ୍ମଣ ଫୁଲ, ଚନ୍ଦନ ଦେଇ ଠାକୁରାଣୀଙ୍କୁ ପୂଜା କରେ । ତେବେ, ଠାକୁରାଣୀଙ୍କ ପାଇଁ ପର୍ବ ପୂର୍ବରୁ ମେଣ୍ଢା ଆସିବା କଥା ମୁଁ ଶୁଣିନଥିଲି । ମୁଁ ସେମାନଙ୍କୁ ଯେତେ ବୁଝାଇ, ମେଣ୍ଢା ଫେରାଇ ନେବାକୁ କହିଥିଲେ ମଧ୍ୟ ସେମାନେ ମେଣ୍ଢାକୁ ଫେରାଇ ନେବାକୁ ରାଜି ହେଲେନି । ବରଂ ମୋ କହିବାଟା ତାଙ୍କ ପ୍ରତି ଅପମାନସୂଚକ ବୋଲି ଭାବିଲେ । ଏଇ ସମୟରେ ସିନ୍ଧେଇକେଲା ଜମିଦାର ପହଞ୍ଚିଗଲେ । ସେ ମୋତେ କହିଲେ ଥାନାରେ ବଳି ନ ପକାଇଲେ ମଧ୍ୟ, ସେ ମେଣ୍ଢାକୁ ଥାନାରେ ରଖିବାକୁ ହେବ । ଫେରାଇ ଦେଲେ ଗାଁବାଲାମାନେ ଅପମାନିତ ହେବେ । ତେଣୁ ମେଣ୍ଢାକୁ ରଖାଗଲା ମାତ୍ର ମୋ ଥିବା ପର୍ଯ୍ୟନ୍ତ ତାକୁ ବଳି ଦେବାକୁ ଦିଆଯାଇନଥିଲା ।

ପର୍ବ ଦିନ, ମୁଁ ସନ୍ଧ୍ୟା ପୂର୍ବରୁ ଗାଁରେ ପହଞ୍ଚିଲି । ଆଗରୁ ଥାନାବାବୁ, ପୁଲିସ୍, କନେଷ୍ଟବଲ୍ ନେଇ ଯାଇଥାନ୍ତି । ଗାଁଟି ବେଶ୍ ବଡ଼ ଗାଁ । ସମସ୍ତେ କନ୍ଧ ଲୋକ । ଗାଁର ଦୁଇ ପଟେ ଘର ମଝିରେ ଗାଁ ଦାଣ୍ଡ । ଦାଣ୍ଡ ମଝିରେ, ଗୋଟେ ଖୁମ୍ବ ପୋତା ହୋଇଥାଏ । ଏଇ ଖୁମ୍ବ ଚାରିପଟେ ଛୋଟ ଛୋଟ ବିହନ ଓଳିଆମାନ ପୂଜା ପାଇଁ ଥୁଆ ହୋଇଥାଏ । ସନ୍ଧ୍ୟାବେଳକୁ ଗାଁର (ପୂଜକ) ଜାନୀ, ଗାଧୁଆପାଧୁଆ କରି, ଏଇ ଖୁମ୍ବ ପାଖରେ ମନ୍ତ୍ର ବୋଲି, ପୂଜା ଆରମ୍ଭ କଲେ । ମୋ ପାଇଁ ଗାଁ ଲୋକମାନେ ଏଇ ପୂଜା ସ୍ଥାନରୁ ଦଶ ହାତ ଦୂରରେ ଚାରୋଟି ଶାଳ ଖୁମ୍ବ ଉପରେ ଗୋଟେ ମଞ୍ଚ ତିଆରି କରି ସେଇ ମଞ୍ଚା ଉପରେ ବସି ପୂଜା କାର୍ଯ୍ୟକ୍ରମ ଦେଖିବାର ବନ୍ଦୋବସ୍ତ କରିଥାନ୍ତି । ସେଦିନ ଗାଁର ଝିଅ, ବୋହୂମାନେ ନୂଆ ଲୁଗା ପିନ୍ଧି, ଦେହରେ ହଳଦୀ ଲଗାଇ, ନିଜକୁ ପର୍ବ ପାଇଁ ସଜେଇଥାନ୍ତି । କେବଳ ଗାଁ ଝିଅ, ବୋହୂ ନୁହଁନ୍ତି ଅନ୍ୟ ଗାଁରୁ ଝିଅ, ବୋହୂମାନେ ନିମନ୍ତ୍ରିତ ହୋଇ ଆସିଥାନ୍ତି । ସମସ୍ତଙ୍କର ପର୍ବ । ପ୍ରତ୍ୟେକଙ୍କ ଦୁଆର ମୁହଁ ଲିପାପୋଛା ହୋଇ ପରିଷ୍କାର ହୋଇଥାଏ । ଗାଁର ଯୁବକମାନେ, ପୂଜାସ୍ଥାନ ପାଖରେ

ଢୋଲ ମହୁରୀ, ମାଦଳ ଏବଂ ଅନ୍ୟ ବାଦ୍ୟମାନ ବଜାଉଥାନ୍ତି । ମୁଁ ଆସିଲାପରେ ଗାଁର ମୁଖିଆ ମୋତେ ଗୋଟେ ନିଶୁଣି ସାହାଯ୍ୟରେ ସେ ମଞ୍ଚା ଉପରକୁ ଚଢ଼ାଇ ଦେଲେ । ମୁଁ ଡ୍ରେସ୍ ପିନ୍ଧି ସେଇଠି ବସିଲି । ରାତି ବଢ଼ିବା ସଙ୍ଗେ ସଙ୍ଗେ ଜହ୍ନ ମୁଣ୍ଡ ଉପରକୁ ଉଠିଲା । ଗାଁଟିଯାକର ଝିଅ, ବୋହୂ, ଯୁବକ, ଯୁବତୀ, ବୁଢ଼ାବୁଢ଼ୀ ସେଇ ପୂଜାସ୍ଥଳିରେ ରୁଣ୍ଡ ହେଲେ । ଝିଅମାନେ ବାଦ୍ୟର ତାଳେ ତାଳେ ଗୀତ ବୋଲି ନୃତ୍ୟ ଆରମ୍ଭ କଲେ । ଯୁବକମାନେ ମଧ୍ୟ ସେମାନଙ୍କ ସଙ୍ଗେ ତାଳ ଦେଇ ନାଚିଲେ ।

ଋତୁରାଜ ବସନ୍ତର ଜହ୍ନ ରାତି । ରତି-ଫୁଲ ପରି ଜହ୍ନ, ଏଇ ପାହାଡ଼ ତଳ ଗାଁଟି ଉପରେ ବିଛାଇ ହୋଇ ପଡ଼ିଥାଏ । ପାଖ ଜଙ୍ଗଲରୁ ମହୁଆ ଫୁଲର ବାସ୍ନା ଚଇତିଆଳି ପବନ ସଙ୍ଗେ ଗାଁଟି ଉପରେ ବହି ଯାଉଥାଏ । ଗାଁ ଭିତରେ ନାନା ରଙ୍ଗ ବେରଙ୍ଗର କସ୍ତା ଶାଢ଼ୀ ପିନ୍ଧି କନ୍ଧ ଯୁବତୀମାନଙ୍କର ମାଦକଭରା ନୃତ୍ୟ, ଯୁବକମାନଙ୍କର ମାଦଳ, ଢୋଲକିର ତାଳ ମଝିରେ ଯାନୀର ସେଇ ଅବୁଝା ମନ୍ତ୍ର ପାଠ, ପରିବେଶକୁ ମୋ ପାଇଁ ଏକ ଅବିସ୍ମରଣୀୟ ଘଟଣା ଭାବେ ତୋଳି ଦେଇଥିଲା । ମଞ୍ଚ ଉପରେ ବସି, ମୁଁ ସେଇ ଦୃଶ୍ୟ ବିଭୋର ହୋଇ ଦେଖୁଥିଲି । ପ୍ରାୟ ଅର୍ଦ୍ଧରାତ୍ରି ବେଳକୁ ଗୋଟିଏ ବର୍ଷିକିଆ ନିଖୁଣ ମଇଁଷି ପୋଢ଼, ପୂଜା ସ୍ଥାନକୁ ଅଣାଗଲା । ବର୍ଷକ ଆଗରୁ ଏଇ ପୋଢ଼ଟିକୁ ମେରିଆ ଉତ୍ସବର ''ବଳୀ'' ପାଇଁ ଗାଁ ତରଫରୁ କିଣା ହୋଇ ରଖା ଯାଇଥିଲା । ବର୍ଷକ ଯାକ ସେ ବନ୍ଧା ହୋଇନଥିଲା । କିମ୍ବା ତାର ଇଚ୍ଛା ମୁତାବକ ଖାଇବାରେ ବାଧା ଦିଆଯାଇନଥିଲା । ମଇଁଷି ପୋଢ଼ଟିକୁ ଯାନୀ ହଳଦୀ ତେଲ ଲଗାଇ ଗାଧୋଇ ଦେଲା ପରେ, ତା ମୁଣ୍ଡରେ ସିନ୍ଦୂର ଏବଂ ବେକରେ ଫୁଲ ମାଳ ପିନ୍ଧାଇ ଦିଆଯାଇ, ମେରିଆ ପାଖରେ ବାନ୍ଧିଦିଆଗଲା । ଯାନୀ, ତାକୁ ମନ୍ତ୍ର ପଢ଼ି ପୂଜା ମଧ୍ୟ କରିଥିଲେ । ରାତି ଅଧ ବେଳକୁ, ଅନ୍ୟ ଗାଁରୁ ନିମନ୍ତ୍ରିତ ଲୋକମାନେ ସେମିତି ମାଦଳ, ଧରି ନାଚିନାଚି ଆସି ଏ ଗାଁର ଲୋକମାନଙ୍କ ସଙ୍ଗେ ଯୋଗଦେଲେ । ସେମାନଙ୍କ ମଧ୍ୟରୁ ଜଣେ ଜଣେ ହାତରେ ଖଣ୍ଡା, ଧନୁ ମଧ୍ୟ ଧରି ଥା'ନ୍ତି । ପ୍ରାୟ ସମସ୍ତେ ମଦ ପିଇ ମସ୍‌ଗୁଲ୍ । ରାତିଯାକ ପୂଜା ଚାଲିଲା । ନାଚ, ଗୀତ ବାଦ୍ୟ ମଧ୍ୟ ଚାଲିଥାଏ । ଶେଷ ଆଡ଼କୁ ମୋତେ ନିଦ ଲାଗି ଯାଇଥିଲା । ରାତ୍ରିର ଶେଷ ପ୍ରହରର ଥଣ୍ଡା ପବନ ଯୋଗୁଁ, ମୁଁ ସେଇ ନାଚ, ଗୀତର ଘନଘଟା ମଧ୍ୟରେ ମଧ୍ୟ ଘୁମେଇ ପଡ଼ିଥିଲି । ହଠାତ୍ ଥାନାବାବୁଙ୍କ ପାଟିରେ ମୋ ନିଦ ଭାଙ୍ଗିଗଲା । ସେତେବେଳକୁ ପ୍ରାୟ ସକାଳ ହୋଇ ଆସିଥାଏ । ଯାନୀ ମେରି ଆଗରେ, ପୋଢ଼ ବଳୀ ଦେଇ ସାରିଥାନ୍ତି । ସେଠାରେ ଉପସ୍ଥିତ ଥିବା ଲୋକମାନେ, ସେଇ ପୋଢ଼ ଦେହରୁ ଖଣ୍ଡେ ଖଣ୍ଡେ ମାଂସ କାଟି, ନିଜ ନିଜର ବିହନ ଓଳିଆ ଧରି, ଯିବାକୁ ଆରମ୍ଭ କରି ଦେଇଥାନ୍ତି । ସେମାନେ ଏଇ ରକ୍ତ ଲଗା ମାଂସ ନେଇ ତାଙ୍କ ବିଲରେ ପୋତିଦେବେ । ତାଙ୍କର ଧାରଣା ଏଇ ବଳୀ ମାଂସ ଦେଲେ ଧରିତ୍ରୀ ମାତା ଭଲ ଫସଲ ଦେବ । ମେରିଆ ପର୍ବଟି ସୁରୁଖୁରୁରେ ସରିଲା । ଥାନାବାବୁ ବଡ଼ ଆଶଙ୍କାରେ ଥିଲେ କାରଣ ତା ପୂର୍ବ ବର୍ଷ ଅନ୍ୟ ଗାଁରେ ଏଇ ପର୍ବ ସମୟରେ ଦୁଇଟି ହତ୍ୟାକାଣ୍ଡ ଘଟି ଯାଇଥିଲା । ସକାଳୁ ସକାଳୁ ଆମେ ସାଇକେଲ ଧରି ଥାନାକୁ ଫେରିଲୁ । ପାଖ ଗାଁରୁ ଆସିଥିବା,

ଲୋକମାନେ ମଧ୍ୟ ନିଜ ନିଜ ଗାଁକୁ ଫେରୁଥାନ୍ତି । ମୋର ସିନ୍ଧେଇକେଲା ଥାନା ଟ୍ରେନିଂ ସରିବାକୁ ଆଠଦିନ ଥାଏ । ଡି.ଆଇ.ଜି. ମୋ ଥାନା ପରିଦର୍ଶନ କରିବେ ବୋଲି ଖବର ଆସିଲା । ସେତେବେଳକୁ ମି. ଘନଶ୍ୟାମ ଦାସ ବଦଳି ହୋଇ ବି.କେ. ମହାପାତ୍ର ଯେ, ମୋର ପି.ଟି ସି.ରେ ପ୍ରିନିସ୍‌ପାଲ ଥିଲେ, ସେ ସମ୍ବଲପୁର ଡି.ଆଇ.ଜି. ହୋଇ ଆସିଥାନ୍ତି । ମୁଁ ଥାନାର କାଗଜପତ୍ର ଠିକ୍ କରିନେଲି । ନିର୍ଦ୍ଧାରିତ ଦିନ ଡି.ଆଇ.ଜି. ମିଃ. ମହାପାତ୍ର ଆସି ଥାନାରେ ପହଞ୍ଚିଲେ । ସେ ଆଗରୁ ବଲାଙ୍ଗିର ଜିଲ୍ଲାର ଏସ୍.ପି. ଥିଲେ । ଜିଲ୍ଲା ବିଷୟରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା । ଥାନାରେ ସେ ମୋତେ ମୋ ଟ୍ରେନିଂ ବିଷୟରେ ବିଭିନ୍ନ କଥା ପଚାରି ସାରି ମୁଁ ଇନ୍‌ଭେଷ୍ଟିଗେସନ କରିଥିବା କେସ୍‌ର କାଗଜପତ୍ର ଦେଖି ସାରିଲାପରେ, କହିଲେ ଯେ ସେ ଏସ୍.ପି.ଙ୍କୁ ମୋତେ ଏଇ ଥାନାରେ ପୋଷ୍ଟିଂ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କ ମତରେ ଡି.ଏସ୍.ପି., ଏ.ଏସ୍.ପି. ଟ୍ରେନିଂ ଅଫିସରମାନେ ମଫସଲ ଥାନାମାନଙ୍କରେ ରହି, ମଫସଲ ଅଞ୍ଚଳର ପୁଲିସ ବ୍ୟବସ୍ଥା ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ଉଚିତ୍ । ମୋ ଠାରୁ କେତେଗୁଡ଼ିଏ ଗାଁ ନାଁ, ସେଠାକାର ଦାଗୀ, ଗାଁ ମୁଖିଆମାନଙ୍କ ନାଁ ଶୁଣି ସେ ଖୁସି ହେଲେ । ଅବଶ୍ୟ, ମୋର ଶିକାର କରିବା ଇଚ୍ଛା ହିଁ, ଏସବୁ ଗାଁର ନାମ ମନେ ରଖିବାର ମୂଳ ।

ମୁଁ ସିନ୍ଧେଇକେଲା ପରେ, ପୁଣି ବଲାଙ୍ଗିର ହେଡ୍‌କ୍ୱାଟରକୁ ଫେରିଲି । ସେତେବେଳେ ମୋର ଦୁଇଜଣ ସାଙ୍ଗ ପ୍ରେମାନନ୍ଦ ରାଏ ଓ ପୂର୍ଣ୍ଣଚନ୍ଦ୍ର ଦେହୁରୀ ସେଠାରେ ଥା'ନ୍ତି । କିଛି ଦିନ ବଲାଙ୍ଗିର ହେଡ୍‌କ୍ୱାଟରରେ ରହି ମୋର ପରବର୍ତ୍ତୀ ପୋଷ୍ଟିଂ ପାଇଁ ଅପେକ୍ଷା କରିଥାଏ । ଟ୍ରେନିଂ ପିରିୟଡ୍ ସରିଗଲା । ଏବେ ରେଗୁଲାର ପୋଷ୍ଟିଂ ଆସିବ । ଅପେକ୍ଷା କରିଥିବା ମଧ୍ୟରେ ମୋର ଝାରସୁଗୁଡ଼ା ଦ୍ୱିତୀୟ ବାଟେଲେୟାନ୍‌କୁ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ଭାବେ ପୋଷ୍ଟିଂ ଆଦେଶ ଆସିଲା ।

## ଝାର୍‌ସୁଗୁଡ଼ା ଦ୍ୱିତୀୟ ବାଟେଲିୟାନ୍‌ରେ ବର୍ଷେ :

୧୯୭୦ ମସିହା ସେପ୍ଟେମ୍ବର ମାସ ନଅ ତାରିଖରେ ମୁଁ ଦ୍ୱିତୀୟ ବାଟେଲିୟାନ୍‌ରେ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ଭାବେ ଜଏନ୍ କଲି । ସେତେବେଳେ ବାଟେଲିୟାନ୍‌ର କମାଣ୍ଡାଣ୍ଟ ଥା'ନ୍ତି ବି.ପି. ଶାହା । ପ୍ରତ୍ୟେକ ଦିନ ସକାଳୁ ପ୍ରତ୍ୟେକ ଅଫିସର ପ୍ୟାରେଡ୍ ଗ୍ରାଉଣ୍ଡରେ ଯୋଗ ଦେବା ପାଇଁ ନିର୍ଦ୍ଦେଶ ଥାଏ । ତାହାଛଡ଼ା ପ୍ରତ୍ୟେକ ସୋମବାର ଦିନ ସେରିମୋନିୟାଲ ପ୍ୟାରେଡ୍‌କୁ ଜଣେ ଜଣେ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ, କମାଣ୍ଡ କରୁଥାନ୍ତି । ଅଫିସ୍ କାମ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଅଫିସରଙ୍କୁ ସକାଳେ ପ୍ୟାରେଡ୍, ଅପରାହ୍ଣରେ ପିଟି କ୍ଲାସ ସବୁ ଆଟେଣ୍ଡ କରିବାକୁ ହୁଏ । ତାଛଡ଼ା ମିଃ ଶାହାଙ୍କ ବ୍ୟବହାରରେ ବହୁ ଅଫିସର ଖୁସି ନଥାନ୍ତି । ସେମାନେ କୁହନ୍ତି, ଅନ୍ୟକୁ ହଇରାଣ କରିବାରେ ମିଃ ଶାହା ଆନନ୍ଦ ପାଆନ୍ତି । ଛୋଟ ଛୋଟ କଥାରେ କଇଫତ୍ ମାଗିବା, ପନିସ୍‌ମେଣ୍ଟ ଦେଲାବେଳେ ସବୁବେଳେ ନାଲିଆଖି ଦେଖାଇ ତଳିଆ କର୍ମଚାରୀମାନଙ୍କୁ ଧମକେଇ ରଖିଥାନ୍ତି । ମୁଁ ଜଏନ୍ କଲାପରେ, ମୋତେ କ୍ୱାଟରମାଷ୍ଟର ସେକସନ ଦେଖିବାକୁ ଆଦେଶ ହେଲା । ମୁଁ ସମସ୍ତଙ୍କ ପରି ପ୍ୟାରେଡ୍ ଆଟେଣ୍ଡ କଲାବେଳେ,

କ୍ୱାଟର ମାଷ୍ଟର ସେକସନ୍‌ର କାର୍ଯ୍ୟ ଦେଖୁଥାଏ । ମିଃ. ଶାହା ଆସିଲାପରେ, ବାଟେଲିୟାନ୍‌ରେ ଅଫିସରମାନଙ୍କ ପାଇଁ କ୍ଲବ୍ ଖୋଲିଥାନ୍ତି । ସନ୍ଧ୍ୟାବେଳକୁ ସବୁ ଅଫିସର ସେଇଠି ମିଶୁ । ଆମ୍ଭମାନଙ୍କୁ ଛାଡ଼ି ଦେଲେ, ଝାରସୁଗୁଡ଼ା ସହରରୁ ମଧ କେତେକ ଭଦ୍ର ଲୋକ କ୍ଲବକୁ ଆସୁଥିଲେ । ସେମାନଙ୍କ ମଧରେ ପାଞ୍ଚ ଛଅଜଣ ରସିଆନ୍ ପରିବାର ଥିଲେ । ସେମାନେ କୃଷି ଗବେଷଣାରେ ଓଡ଼ିଶାକୁ ସାହାଯ୍ୟ କରିବାପାଇଁ ଆସିଥାନ୍ତି ଏବଂ ଲକ୍ଷ୍ମଣପୁର ପୁଲିସ୍ ଷ୍ଟେସନ ଅଞ୍ଚଳରେ ଗୋଟିଏ କୃଷି ଫାର୍ମରେ ଟ୍ରେନିଂ ଦେଉଥାନ୍ତି । ସେମାନଙ୍କ ଛଡ଼ା ଝାରସୁଗୁଡ଼ା ଏୟାରପୋର୍ଟ ଅଫିସର, ରେଲୱେର କେତେକ ସିନିୟର ଅଫିସର, ଟାଉନ୍‌ର କେତେକ ଜଣାଶୁଣା ବଙ୍ଗାଳୀ ଭଦ୍ରଲୋକ ମଧ ପ୍ରାୟ ଦିନ କ୍ଲବକୁ ଆସନ୍ତି । ଆମ କ୍ଲବରେ ମଦ୍ୟ ବହୁତ ଶସ୍ତାରେ ମିଳୁଥିଲା । ଗୋଟେ ପେଗ୍ ଓଲଡ୍‌ମଙ୍କ୍ ରମ୍‌କୁ ୪୦ ପଇସା, ହ୍ୱିସ୍କିକୁ ୬୦ ପଇସା ଥିଲା । ତେଣୁ ସନ୍ଧ୍ୟାବେଳେ କ୍ଲବ ଜମେ । ରସିଆନ ମହିଳାମାନଙ୍କଠାରୁ ଆରମ୍ଭ କରି ଅନ୍ୟମାନେ ମଧ ନାଚରେ ଯୋଗ ଦିଅନ୍ତି । କେତେକ ପିଅନ୍ତି । ମୁଖ୍ୟତଃ ଝାରସୁଗୁଡ଼ା ରେଲୱେ କଲୋନୀର ଆଙ୍ଗ୍‌ଲୋ ଇଣ୍ଡିଆନ୍ ମହିଳାମାନେ ଏଥିରେ ମୁଖ୍ୟ ଭାଗ ନେଇଥାନ୍ତି । ମିଃ ଶାହା, କ୍ଲବରେ ଅନ୍ୟ ପ୍ରକାର ଲୋକ । ସମସ୍ତଙ୍କ ସାଙ୍ଗେ ଖୁସିରେ ମିଶିବା, କଥା ହେବା କିଛି ଉପଭୋଗ କରିବାରେ ତାଙ୍କର ଅସୁବିଧା ନଥାଏ । ମୁଁ ଆସିଲା ପରେ, ଏଇ କ୍ଲବ୍‌ରେ ଭଲ ଭାବେ ମିଶିଗଲି । ରସିୟାନ୍ ମହିଳାମାନଙ୍କ ମଧରୁ କେହି କ୍ଲବ୍‌ରେ ପିଉନଥିଲେ, ମାତ୍ର ଘଣ୍ଟା ଘଣ୍ଟା ଧରି ନାଚିବାରେ ତାଙ୍କର କିଛି ଅସୁବିଧା ନଥିଲା । ସେମାନଙ୍କ ମଧରୁ ଜଣେ, ଯାହାଙ୍କର ବୟସ ପଚିଶ୍, ଛବିଶ୍ ହେବ, ସେ କେବଳ ଇଂରାଜୀରେ ଅଳ୍ପ ଅଳ୍ପ କଥାବାର୍ତ୍ତା କରୁଥିଲେ । ଇଂରାଜୀରେ କଥାବାର୍ତ୍ତା କରୁଥିବା ଯୋଗୁଁ ତାଙ୍କ ସହିତ ମୋର ଭଲ ସମ୍ପର୍କ ଗଢ଼ି ଉଠିଲା । କିଛି ଦିନ ପରେ, ସେ ମୋତେ ତାଙ୍କ ଝାରସୁଗୁଡ଼ା ଭଡ଼ା ଘରକୁ ଯିବାପାଇଁ ନିମନ୍ତ୍ରଣ କଲେ । ସକାଳ ଆଠଟା ସୁଦ୍ଧା, ସବୁ ମେଲ୍ ମେମ୍ବର ଲକ୍ଷ୍ମଣପୁର କୃଷି ଫାର୍ମକୁ ଚାଲିଯାଆନ୍ତି, ଫେରନ୍ତି ସନ୍ଧ୍ୟା ୬ଟା ବେଳକୁ । ଦିନଯାକ, ମହିଳାମାନେ ଘରେ ଏକୁଟିଆ । ଯଦିଓ ପାଖାପାଖି ରୁହନ୍ତି, ଦିନବେଳେ କେହି କାହାଘରକୁ ଯାଆନ୍ତିନି । ମୁଁ ପ୍ରଥମ ଦିନ ଦ୍ୱିପ୍ରହର ବେଳା, ଏଇ ଭଦ୍ର ମହିଳା ଘରକୁ ଗଲାଦିନ, ସେ ମୋତେ ଜିନ୍ ପିଇବାକୁ ଦେଲେ ଏବଂ ନିଜେ ମଧ ପିଇଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି । ସେ ମୋତେ କନ୍‌ଫିଡ଼େନ୍ସିକୁ ନେଇ କହିଥିଲେ ଯେ, ତାଙ୍କ ମଧରେ କିଏ କେ.ଜି.ବି. ଏଜେଣ୍ଟ ଅଛନ୍ତି ସେ ଜାଣନ୍ତିନି । ତେଣୁ ବାହାରେ ପିଇବାକୁ ମନା । ଘରେ ସେମାନେ ପିଅନ୍ତି । ବହୁ ସମୟରେ ସେ ମୋଠାରୁ ଭାରତୀୟ ସଂସ୍କୃତି, ତଥା ଓଡ଼ିଶାର ସଂସ୍କୃତି, ଜାନିଯାତ୍ରା ଏବଂ ଓଡ଼ିଆ ମହିଳାମାନଙ୍କ ବିଷୟ ଜାଣିବାକୁ ଇଚ୍ଛା କରିଥାନ୍ତି । ଘରେ ଖାଇବାକୁ ଦିଅନ୍ତି । ମୁଁ ବାଟେଲିୟାନ୍ ଛାଡ଼ିବାର ଅଳ୍ପ ଦିନ ପୂର୍ବରୁ ସେ ସେଠାରୁ ବଦଳି ହୋଇ ରଷିଆ ଫେରିଗଲେ । କ'ଣ ପାଇଁ ଅବଶ୍ୟ ମୁଁ ଜାଣିନି ।

ମାର୍ଚ୍ଚ ମାସ ୧୯୭୦ ମସିହାରେ ମୋତେ ୧୦୯ କେସ୍‌ରେ ସୋନପୁର ଏସ୍.ଡ଼ି.ଏମ୍ କୋର୍ଟରେ ସାକ୍ଷୀ ଦେବାପାଇଁ ସମନ୍ ଆସିଥାଏ । ସେତେବେଳକୁ ମୁଁ ଗୋଟେ ନୂଆ ଲାମ୍ବ୍ରେଟା ସ୍କୁଟର କିଣିସାରିଥାଏ । ମୁଁ ବଲାଙ୍ଗିର ଯିବା ଜାଣି, ମିଃ.ଗଡ଼ନାୟକ ଆସିଷ୍ଟାଣ୍ଟ୍ କମାଣ୍ଡାଣ୍ଟ

ତାଙ୍କ ଭଉଣୀଙ୍କ ବାହାଘର, ପ୍ରେମାରାଏ ସଙ୍ଗେ ପକାଇବାକୁ କହିଥିଲେ । ମୁଁ ଝାରସୁଗୁଡ଼ାରୁ ସ୍କୁଟରରେ ବଲାଙ୍ଗିର ଗଲି । ବଲାଙ୍ଗିରରେ ପ୍ରେମାପାଖରେ ରହି, ସୋନପୁରରେ କୋର୍ଟ ଆଟେଣ୍ଡ କରି ଫେରିଲି । କଥା ହେଲା, ପର ଦିନ ସକାଳୁ, ପ୍ରେମାନନ୍ଦକୁ ସାଙ୍ଗରେ ଧରି ସ୍କୁଟରରେ ଆମେ ଝାରସୁଗୁଡ଼ା ଯିବୁ ସେ ଝିଅ ଦେଖିଲେ ବାହାଘର ଠିକ୍ ହେବ । ପରଦିନ ମୁଁ ଝାରସୁଗୁଡ଼ାରେ ପହଞ୍ଚିଲେ ବାଟେଲିୟାନ୍‌ରେ ଜାଗର ଅମାବାସ୍ୟା ପୂଜା ହେବା କଥା । ସକାଳୁ ସକାଳୁ ପ୍ରେମାନନ୍ଦକୁ ସ୍କୁଟର ପଛରେ ବସାଇ ବଲାଙ୍ଗିରରୁ ମାତ୍ର ଚାରିକିଲୋମିଟର ଯାଇଛି, ବାଟରେ ଦୁର୍ଘଟଣାର ସମ୍ମୁଖୀନ ହେଲୁ । ଆମେ ଦୁହେଁ ରାସ୍ତା ତଳକୁ ପଡ଼ିଗଲୁ, ମୋର ପେଲେଭିସ୍ ବୋନ୍ କ୍ରାକ୍ କରିଗଲା । ମାତ୍ର ପ୍ରେମା କେବଳ ଖଣ୍ଡିଆ ଖାବରା ହେଲା । ମୋତେ ବଲାଙ୍ଗିର ହସ୍‌ପିଟାଲରେ କୋଡ଼ିଏ ଦିନ ରହିବାକୁ ହେଲା । ବଡ଼ କଷ୍ଟକର ଅବସ୍ଥା । ୨୦ଦିନ ପରେ ପୁଣି ଗୋଟେ ଗାଡ଼ିରେ ବାଟେଲିୟାନକୁ ଆସି ମାସେ ବେଡ୍‌ରେ ପଡ଼ିରହିଲି । ସଂପୂର୍ଣ୍ଣଭାବେ ଭଲ ହେବାକୁ ମୋତେ ଦୁଇମାସ ଲାଗିଗଲା । ଆମ ଆସିବାବେଳେ ଦୁର୍ଘଟଣା ଯୋଗୁଁ, ପ୍ରେମାରାଏର ବାହାଘର ମଧ୍ୟ ବନ୍ଦହୋଇଗଲା । ଶୁଭ ଘଟଣାରେ ଅଶୁଭ ଘଟିଲା ।

ମୋ ଦେହ ସଂପୂର୍ଣ୍ଣଭାବେ ଭଲ ହେବାର ମାସକ ପରେ ୧୧.୬.୭୦ ମସିହା ଦିନ ସରକାରଙ୍କ ଠାରୁ ନିର୍ଦ୍ଦେଶ ଆସିଲା ଯେ ଆମ ବାଟାଲିୟନରୁ ତିନି କମ୍ପାନୀ କଲିକତା ନକ୍ସଲାଇଟ୍ ସମସ୍ୟା ପାଇଁ ଯିବେ । ସେତେବେଳେ ସମଗ୍ର ପଶ୍ଚିମବଙ୍ଗ, ମୁଖ୍ୟତଃ କଲିକତା ଅଞ୍ଚଳରେ ନକ୍ସଲ ଉପଦ୍ରବ ଖୁବ୍ ଜୋରରେ ଚାଲିଥାଏ । ପ୍ରତ୍ୟେକ ଦିନ ନକ୍ସଲପନ୍ଥୀଙ୍କ ଆକ୍ରମଣରେ ପୁଲିସ୍ କର୍ମଚାରୀ, ବ୍ୟବସାୟୀ,ସରକାରୀ କର୍ମଚାରୀ ମୃତ୍ୟୁବରଣ କରୁଥାନ୍ତି । ଅବଶ୍ୟ ସେତେବେଳକୁ ଆମ ଓଡ଼ିଶାର ଦକ୍ଷିଣ ଜିଲ୍ଲା କୋରାପୁଟ, ଗଞ୍ଜାମର କେତେକ ଅଞ୍ଚଳରେ ସେମାନଙ୍କ ଉପଦ୍ରବ ଆରମ୍ଭ ହୋଇଥିଲେ ମଧ୍ୟ ଏହା ଏତେ ତୀବ୍ର ହୋଇ ନ ଥିଲା । ନକ୍ସଲ୍ ଉପଦ୍ରବ ସାଙ୍ଗକୁ, ପୂର୍ବ ପାକିସ୍ତାନ (ବଙ୍ଗଳା ଦେଶ)ରେ ସେତେବେଳେ ଭୀଷଣ ଗଣ୍ଡଗୋଳ ଚାଲିଥାଏ । ମୁଜିବର୍ ରହମନଙ୍କୁ ପଶ୍ଚିମ ପାକିସ୍ତାନ ବନ୍ଦୀ କଲା ପରେ, ପୂର୍ବ ପାକିସ୍ତାନରେ ଆନ୍ଦୋଳନ ଚାଲିଲା । ଏଇ ଆନ୍ଦୋଳନକୁ ଦବାଇବାପାଇଁ, ପଶ୍ଚିମ ପାକିସ୍ତାନର ସୈନ୍ୟ ବାହିନୀ, ପୂର୍ବ ବଙ୍ଗଳାର ଆନ୍ଦୋଳନକାରୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିବା ଯୋଗୁଁ ହଜାର ହଜାର ନିରୀହ ଲୋକ ପୂର୍ବ ବଙ୍ଗ ଛାଡ଼ି ଭାରତ ଭିତରକୁ ଚାଲିଆସୁଥାନ୍ତି । ସେମାନଙ୍କ ମଧ୍ୟରୁ ଲକ୍ଷ ଲକ୍ଷ ଶରଣାର୍ଥୀ କଲିକତାର ଫୁଟ୍ ପାଥିରେ ଶୋଉଥିବାବେଳେ, ନୂଆ ହୋଇ ଗଢ଼ି ଉଠୁଥିବା ସଲ୍‌ଟ୍‌ଲେକ୍ ଅଞ୍ଚଳରେ ମଧ୍ୟ ବହୁ ଶରଣାର୍ଥୀଙ୍କ ପାଇଁ କ୍ୟାମ୍ପମାନ ପଡ଼ିଥାଏ । ବଙ୍ଗଳାର ଆଇନ୍ ଶୃଙ୍ଖଳା ପରିସ୍ଥିତି ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ଥାଏ । ଝାରସୁଗୁଡ଼ା ଦ୍ୱିତୀୟ ବାଟେଲିୟାନରୁ ଓଡ଼ିଶାରୁ ତିନି କଂପାନୀ ଯିବାର ସ୍ଥିର ହେଲା ପରେ କମାଣ୍ଡାଣ୍ଟ ମୋତେ ଆଦେଶ ଦେଲେ ଏହାର ନେତୃତ୍ୱ ନେଇଯିବା ପାଇଁ, ଆମକୁ ୧୩ ତାରିଖ ଦିନ ରାତ୍ରିରେ ଝାରସୁଗୁଡ଼ା ଛାଡ଼ିବାକୁ ପଡ଼ିବ । ଗୋଟିଏ ଦିନ ମଧ୍ୟରେ ମୁଁ ପ୍ରଥମେ ମୋ ସ୍ତ୍ରୀଙ୍କୁ ୧୨ ତାରିଖ ଦିନ ସକାଳୁ ବସ୍‌ରେ କଟକ ପଠାଇ ଦେଲି । ପରେ

ପରେ ଟ୍ରେନ୍‌ରେ ଦୁଇଟି ଜିପ୍, ୩ଟି ପିକ୍‌ଅପ୍ ଲୋଡ୍‌ର ବ୍ୟବସ୍ଥା କରି ରାତିରେ ପଠାଇବା ପାଇଁ ଠିକ୍ କଲି । ମୋ ସାଙ୍ଗରେ ଆଉ ଜଣେ ଆସିଟାଣ୍ଟ କମାଣ୍ଡାଣ୍ଟ ମିଃ. ରାମ୍ ଯିବାକୁ ସ୍ଥିର ହେଲା ଏବଂ ବଙ୍ଗଳାରେ ସ୍ୱାସ୍ଥ୍ୟ ପରିସ୍ଥିତି ସୁବିଧାନଥିବା ଦୃଷ୍ଟିରୁ ଜଣେ ଡାକ୍ତର ଯିବାର ଆଦେଶ ହେଲା । ବାଟେଲିୟନର ଡାକ୍ତର, ଡଃ. ଦୁବେ ଯିବା ପାଇଁ ଆଦେଶ ହେଲା ମାତ୍ର ସେ ଯିବାକୁ ମନା କଲେ । କିନ୍ତୁ ମିଃ ସାହା ଛାଡ଼ିବା ଲୋକ ନୁହଁନ୍ତି । ସେ ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକଙ୍କ ପାଖକୁ ବେତାର ବାର୍ତ୍ତା ଦେଲେ । ସ୍ୱାସ୍ଥ୍ୟ ବିଭାଗ ସଚିବ ଆଦେଶ ଦେଲେ ଯଦି ନଯାଉଛନ୍ତି, ତେବେ ଡକ୍ଟର ଦୁବେଙ୍କୁ ସଙ୍ଗେ ସଙ୍ଗେ ନିଲମ୍ବିତ କରିବା ପାଇଁ । ଏକଥା ଶୁଣି ଡାକ୍ତର ବାଧ ହୋଇ ଯିବାକୁ ବାହାରିଲେ । ୧୩ ତାରିଖ ଦିନ ରାତ୍ରି ସାତଟା ବେଳକୁ ପ୍ୟାରେଡ୍ ଗ୍ରାଉଣ୍ଡରେ ବିଗୁଲ୍ ଦିଆଗଲା ଫଲ୍‌ଇନ୍ ପାଇଁ । ଫଲଇନ୍ ବିଗୁଲପରେ ଗୁର୍ଖା ଦୁଇକମ୍ପାନୀ ଆସି ପହଞ୍ଚି, ଗାଡ଼ିରେ ବସିଲେ ଷ୍ଟେସନ ଯିବା ପାଇଁ ମାତ୍ର ଓଡ଼ିଆ କମ୍ପାନୀରୁ ଅଧେ ଫୋର୍ସ ଆସିଲା ବେଳେ ଆଉ ଅଧେ ତାଙ୍କ ଛୁଆ ପିଲାଙ୍କୁ ପଠାଇ ଦେଲେ ସେମାନଙ୍କ ସ୍ୱାମୀମାନଙ୍କୁ ନପଠାଇବା ପାଇଁ ଅନୁରୋଧ କରିବାକୁ । ପ୍ୟାରେଡ୍ ଗ୍ରାଉଣ୍ଡରେ କାନ୍ଦବୋବାଳି ପଡ଼ିଲା । ମାତ୍ର ମିଃ. ଶାହା କାହା କଥା ନଶୁଣି,ଯେଉଁ ଯବାନମାନେ ଆସିନଥିଲେ ସେମାନଙ୍କୁ ସସ୍‌ପେଣ୍ଡ କରିବା ଆରମ୍ଭ କଲେ । ସସ୍‌ପେଣ୍ଡ ଆଦେଶ ଶୁଣି କେତେଜଣ ଆସିଲେ, ମାତ୍ର ପନ୍ଦର, କୋଡ଼ିଏ ଜଣ ସସ୍‌ପେଣ୍ଡ ହେଲେ ପଛେ, କଲିକତା ନକ୍‌ସଲ ଡିଉଟିରେ ଯିବାକୁ ଆସିନଥିଲେ । ପ୍ୟାରେଡ୍ ପଡ଼ିଆରୁ ଫୋର୍ସମାନଙ୍କୁ ଷ୍ଟେସନକୁ ପଠାଇ ମୁଁ ପୁଲିସ୍ କ୍ଲବ୍‌କୁ ଆସିଲି । ମିଃସେସ୍ ଶାହା ମୋତେ ଗୋଟେ ପେଗ୍ ହ୍ୱାଇସ୍କି ଦେଇ, ମୋ ଯିବା ପାଇଁ ଶୁଭେଚ୍ଛା ଜଣାଇଲେ । କମାଣ୍ଡାଣ୍ଟ ମଧ ଗୋଟେ ପେଗ୍ ଦେଲେ । ଦୁଇଟି ପେଗ୍ ପିଇଲା ପରେ, ମୋ ମନ ଭିତରେ ଯେଉଁ ଭୟ ଥିଲା, ସେ ଉଭେଇ ଗଲା । ମୁଁ ଷ୍ଟେସନରେ ପହଞ୍ଚିଲା ବେଳକୁ ଡାକ୍ତର ଦୁବେ ତାଙ୍କର ସୁଟ୍‌କେସ୍ ଧରି ପହଞ୍ଚି ଯାଇଥାନ୍ତି । ସେଦିନ ଟ୍ରେନ୍ ଛାଡ଼ିଲା ରାତ୍ରି ୧୧.୫୦ ମିନିଟ୍‌ରେ । ମିଃ ଶାହା ସମସ୍ତଙ୍କୁ ବିଦାୟ ଦେଇ ଫେରିଲେ । ମୁଁ ମୋ କମ୍ପାଟ୍‌ମେଣ୍ଟରେ ପହଞ୍ଚି ଦେଖିଲି ଡାକ୍ତର ଦୁବେ, ଗୋଟାକ ପରେ ଗୋଟେ ସିଗାରେଟ୍ ଟାଣିବାରେ ଲାଗିଛନ୍ତି । ଆଗରୁ ତାଙ୍କୁ ସିଗାରେଟ୍ ପିଇବାର ମୁଁ ଦେଖିନଥିଲି । ସେ ବହୁତ ଟେନ୍‌ସନରେ ଥିଲେ । ପରଦିନ ସକାଳେ ଆମ ସ୍ୱତନ୍ତ୍ର ଟ୍ରେନ୍ ହାଓଡ଼ା ଷ୍ଟେସନରେ ପହଞ୍ଚିଲା । ଷ୍ଟେସନରୁ ଆମର ଗୋଟିଏ କମ୍ପାନୀ ସିଧା ଚବିଶ୍ ପ୍ରଗଣା ଜିଲ୍ଲାର ବାରାସତ୍ ସହରକୁ ଗଲା ବାକି ଦୁଇଟି କମ୍ପାନୀ, ଧରି ମୁଁ ଆସିଲି ବାରକପୁର । ଦୁଇଟି କମ୍ପାନୀ ବାର୍‌କପୁରରେ ଦୁଇଦିନ ରହିଲା ପରେ, ହାଓଡ଼ା ଜିଲ୍ଲାରେ କାମ କରିବା ପାଇଁ ନିର୍ଦ୍ଦେଶ ଆସିଲା । ହାଓଡ଼ା ଜିଲ୍ଲାର ମାଲିପାଛଗଡ଼ା ପୁଲିସ୍ ଷ୍ଟେସନ ଅଞ୍ଚଳରେ ଗୋଟେ ପୁରୁଣା ଚଟକଳ କମ୍ପାଉଣ୍ଡ ମଧରେ ଆମ କମ୍ପାନୀ ହେଡ୍‌କ୍ୱାଟର ରହିବାର ସ୍ଥିର ହେଲା । ସମସ୍ତେ ତମ୍ବୁ ପକାଇ ରହିଲେ । ଡାକ୍ତର ଏବଂ ମୋ ପାଇଁ ଗୋଟେ ଛୋଟ ବଖୁରିକିଆ ଘରଟେ ମିଳିଲା, ମାତ୍ର ପାଇଖାନା କମନ୍ । ବର୍ଷା ଯୋଗୁଁ ଚାରିଆଡ଼େ ପଚ୍‌ର ପଚ୍‌ର । ଉଠା ପାଇଖାନା, ଚାରିପଟ ଯାକ ଲାଙ୍ଗୁଡ଼ା ପୋକ ବୁଲୁଥାନ୍ତି । ବଡ଼ ଅସୁବିଧା ସ୍ଥାନ । ଅନ୍ୟସୁବିଧା ନଥିବା ଯୋଗୁଁ ସେଇଠି

ରହିବାକୁ ବାଧହେଲୁ । ଆମ ପାଖେଥିବା ଫୋର୍ସ ମଧ ପ୍ଲାଟୁନ୍ ପ୍ଲାଟୁନ୍ ହୋଇ, ବାଲି, ବାନ୍ତା, ସଲଟ୍ ଲେକ୍ ଅଞ୍ଚଳରେ ବାଣ୍ଟିହୋଇ ରହିଲେ । ପ୍ରତ୍ୟେକ ଦିନ ରାତ୍ରିରେ ଫୋର୍ସସବୁ ନକ୍ସଲ୍ ଉପଦ୍ରବ ଅଞ୍ଚଳକୁ ଘେରାଉ ଏବଂ ରେଡ୍ କରିବାକୁ ବଙ୍ଗଳା ପୁଲିସଙ୍କ ସାଙ୍ଗେ ଯାଆନ୍ତି । କିଛି ଦିନ ପରେ, ମୋତେ ମଧ ସେମାନଙ୍କ ସାଙ୍ଗରେ ଯିବାକୁ ହେଲା । ପଶ୍ଚିମ ବଙ୍ଗର ହାବୁଡ଼ା ଜିଲ୍ଲାର ଅତିରିକ୍ତ ଏସ୍.ପି. ସୁରୁଜିତ୍ ଘୋଷଙ୍କ ସଙ୍ଗେ ମୁଁ ପ୍ରାୟ ପ୍ରତ୍ୟେକ ରାତ୍ରି ଘେରାଉ ଏବଂ ରେଡ୍‌ରେ ଯାଏ । ତା ଛଡ଼ା, ଦିନେ ଦୁଇଦିନ ଅନ୍ତରରେ ଅନ୍ୟସ୍ଥାନରେ ଯେଉଁଠି ଆମ ଫୋର୍ସ ଅଛନ୍ତି, ସେମାନଙ୍କ ସୁବିଧା ଅସୁବିଧା ଦେଖିବାକୁ ମଧ ଯାଏ । ଆମ ଜିପ୍‌ର ଚାରିପଟେ ତାରର ଜାଲି ଦିଆଯାଇଥାଏ । କାରଣ ବାଟରେ ଗଲା ବେଳେ, ନକସ୍ ପନ୍ଥୀମାନେ ପୁଲିସ ଜିପ୍ ଉପରକୁ ବୋମା ପକାଇବା ବେଳେ ଗୁଳି ମଧ ମାରନ୍ତି । ଥରେ ଡାକ୍ତର ଦୁବେ, ମୁଁ, ଆମ କ୍ୟାମ୍ପରୁ ବାରସତ ଗଲା ବାଟରେ କଲିକତାର ଗୋଟେ ଗଳିମୁଣ୍ଡରେ ଆମ ଗାଡ଼ି ଉପରକୁ ବୋମା ମାଡ଼କଲେ । ପାଖରୁ ମଧ ଗୁଳି ଆସିଥିଲା । ସାଙ୍ଗରେ ଥିବା ଫୋର୍ସ ସେମାନଙ୍କ ଉପରକୁ ଗୁଳି କରିଥିଲେ । ଗାଡ଼ି ତାର ଜାଲ ଘେରା ହୋଇଥିବା ଯୋଗୁ ବୋମା ଗାଡ଼ିଭିତରକୁ ପଡ଼ିନଥିଲା । ତଥାପି ଦୁଇଜଣ ସିପାହୀ ଖଣ୍ଡିଆ ଖାବରା ହୋଇଥିଲେ । ମାଲିପାଛଗଡ଼ା କ୍ୟାମ୍ପରେ ସୁବିଧା ନଥିବା ଦୃଷ୍ଟିରୁ, ମୁଁ ବେଳେବେଳେ ବାରାସତ କ୍ୟାମ୍ପରେ ରହେ । ଏଠା କ୍ୟାମ୍ପଟି, ଗୋଟିଏ ପୁରୁଣା ଜମିଦାରଙ୍କ ପ୍ରମୋଦ ଉଦ୍ୟାନ ଘରେ ପଡ଼ିଥାଏ । ବହୁ ବର୍ଷର ପୁରୁଣାଘର । ପାଞ୍ଚ ଏକର ଜମି । ଚାରିପଟେ ତାର ବାଡ଼ । ମଝିରେ ଗୋଟେ ପଥର ବନ୍ଧା ପଦ୍ମ ପୋଖରୀ । ନାନା ରଙ୍ଗ ବେରଙ୍ଗର ଫଳ, ଫୁଲ ଗଛ । ପୁରୁଣା ଘର ମଧରେ ଆମ ଲୋକଥାନ୍ତି ଏବଂ ଏକମହଲା କୋଠା ଉପରେ ମେସିନ୍ ଗନ୍ ଫିଟ୍ କରି, ସେଠି ଜଣେ ସେଣ୍ଟ୍ରି ଡିଉଟି କରୁଥାଏଁ । ବାରସତରେ ଦିନେ ରାତିରେ ବଙ୍ଗଳା ପୁଲିସ୍ ସହିତ ମୁଁ ଘେରାଉ ଡିଉଟି ତଦାରଖ କରିବାକୁ ଯାଇଥିଲି । ଆର୍ମି, ସି.ଆର.ଏଫ୍, ପଶ୍ଚିମ ବଙ୍ଗ ପୁଲିସ ସମସ୍ତେ ଗୋଟିଏ ବଡ଼ ଅଞ୍ଚଳକୁ ଘେରାଉ କରି, ପ୍ରତ୍ୟେକ ଘରକୁ ତନ୍ନତନ୍ନ କରି ତଲାସ୍ କରି, ସନ୍ଦେହ ହେଉଥିବା ଯୁବକ, ଯୁବତୀମାନଙ୍କୁ ଥାନାକୁ ଭେରିଫିକେସନ୍ ପାଇଁ ଆଣୁଥାନ୍ତି । ସେ ଦିନ ରାତିରେ ଘେରାଉ ବେଳେ, ଜେସର୍ ମୁଖ୍ୟରାସ୍ତା ପାଖରେ ଜଣେ ନକସଲପନ୍ଥୀ ଯୁବକ ପୁଲିସ୍ ଉପରକୁ ବୋମା ପକାଇ ପଳାଇ ଗଲାବେଳେ ପୁଲିସ୍ ଗୁଳିରେ ମୃତ୍ୟୁବରଣ କରିଥିଲା । ଆଉ ଦୁଇ ଜଣ ଯୁବକ, ଜଣେ ଯୁବତୀ ମଧ ପୁଲିସ୍ ଗୁଳିରେ ଜଖମ୍ ହୋଇ ଥାନାକୁ ଆସିଥାନ୍ତି । ରାତ୍ରି ରେଡ୍ ପରେ, ସେ ଦିନ ସକାଳ ଏଗାରଟା ବେଳେ ମୁଁ ବାରାସତ୍ ଥାନାକୁ ଯାଇଥିଲି । ଦେଖିଲି, ଥାନା ପରିସର ସାରା ଲୋକାରଣ୍ୟ । ପଚାରି ବୁଝିଲି, ଗତ ରାତିରେ ଯେଉଁ ଚଢ଼ାଉ କରାଯାଇ ଯୁବକ, ଯୁବତୀମାନଙ୍କୁ ସତ୍ୟାପନ ପାଇଁ ଅଣାଯାଇଛି, ସେମାନଙ୍କର ବାପ, ମା, ସେମାନଙ୍କୁ ନବା ପାଇଁ ଥାନାକୁ ଆସିଥାନ୍ତି । କିଛି ସମୟ ଥାନାରେ ରହିଲା ମଧରେ, ମୁଁ କେତେଜଣଙ୍କ ସଙ୍ଗେ କଥାବାର୍ତ୍ତା ହେଲି । ସେମାନେ ଯାହା କହିଲେ, ମୁଁ ଶୁଣି କଷ୍ଟ ଅନୁଭବ କଲି । କେତେକ ଅଭିଭାବକ କହିଥିଲେ ଯେ, ସେମାନେ ତାଙ୍କ ପୁଅ, ଝିଅକୁ ଥାନାରୁ ମୁକୁଳାଇ ନେବା ପାଇଁ

ବହୁତ ପଇସା ଦେବାକୁ ପଡ଼ିବ । ଥାନାରେ ପଇସା ନଦେଲେ ତାଙ୍କ ପୁଅ ନକସ୍ଲ୍‌ପନ୍ଥୀ ବୋଲି କହି ଜେଲ ପଠାଇ ଦେବେ କିମ୍ୱା ମିଥ୍ୟା ମୁକାବେଲାରେ ମୃତ୍ୟୁ ବରଣକରିଛି ବୋଲି କହିବେ । ସେତେବେଳେ ପଶ୍ଚିମ ବଙ୍ଗଳା ଲୋକମାନେ ଶୁଣୁଥିଲେଯେ, ନକସଲପନ୍ଥୀମାନଙ୍କୁ ପୁଲିସ୍ ଧରି, ଗୁଳିକରି ମାରିଦେଉଛି । ଅଭିଭାବକମାନେ କହିବାର ଶୁଣିଲିଯେ ଗୋଟେ ଗୋଟେ ରାତ୍ରିର ଚଢ଼ାଉପରେ ପୁଲିସ୍‌ବାଲା ହଜାର ହଜାର ଟଙ୍କା ପାଉଛନ୍ତି । ମୋ ମନରେ କଷ୍ଟହେଲା,ଏତେ ପରିଶ୍ରମ କରି, ରାତ୍ରି ଅନିଦ୍ରା ହୋଇ ଚଢ଼ାଉ କରାଯାଉଛି, ଅଥଚ ଏମାନେ ଟଙ୍କାନେଇ ପୁଲିସ୍‌କୁ ବଦ୍‌ନାମ କରୁଛନ୍ତି । କାହାକୁ ବା କହିବି । ହାବୁଡ଼ା କ୍ୟାମ୍ପକୁ ଫେରିଲା ପରେ ମିଃ ଘୋଷଙ୍କୁ ମୋ ଶୁଣିବାକଥା କହିଥିଲି ।

ସେତେବେଳେ ପଶ୍ଚିମ ବଙ୍ଗଳାର ସଂମ୍ୱାଦ ପତ୍ରମାନଙ୍କର ନକ୍‌ସଲପନ୍ଥୀଙ୍କ କାର୍ଯ୍ୟକଳାପ, ଅତ୍ୟାଚାର ବିଷୟରେ ସେପରି କିଛି ପ୍ରକାଶ ପାଉ ନ ଥିଲା । ଜନସାଧାରଣ ଅତ୍ୟନ୍ତ ଅସହାୟ ମଣୁଥିଲେ । ନକ୍‌ସ୍ଲପନ୍ଥୀ କିମ୍ୱା ନକ୍‌ସ୍ଲପନ୍ଥୀଙ୍କ ନାମରେ ସ୍ଥାନୀୟ ଗୁଣ୍ଡାମାନେ ନିରିହ ଲୋକମାନଙ୍କ ଠାରୁ ନିର୍ଦ୍ଦୟଭାବେ ଚାନ୍ଦା ଆଦାୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ନିର୍ଯ୍ୟାତିତ କରୁଥିଲେ । ପୁଲିସ୍‌ର ସାହାଯ୍ୟକାରୀ କହି ସେମାନଙ୍କୁ ମଧ ହତ୍ୟା କରୁଥିଲେ । ତେଣୁ ସାଧାରଣ ଲୋକମାନେ ମଧ ଶାନ୍ତିରେ ନଥାନ୍ତି । ସେତେବେଳେ ବଙ୍ଗଳା ମୁଖ୍ୟମନ୍ତ୍ରୀ ସିଦ୍ଧାର୍ଥ ଶଙ୍କର ରାଏ, ନକ୍‌ସଲ୍‌ପନ୍ଥୀ ମାନଙ୍କୁ ଯେ କୌଣସୀ ଉପାୟରେ ଦମନ କରିବାକୁ ଆଦେଶ ଦେଇଥାନ୍ତି । ଚାରୁ ମଜୁମ୍ ଦାର, ସେ ପର୍ଯ୍ୟନ୍ତ ଆରେଷ୍ଟ ହୋଇ ନଥାନ୍ତି । ପୁଲିସ୍ ଉପରେ ସବୁବେଳେ ଚାପ ପକାଯାଉଥାଏ, ମଜୁମ୍ ଦାରଙ୍କୁ ଆରେଷ୍ଟ କରିବା ପାଇଁ । ଏଣେ ସି.ପି.ଏମ୍ କ୍ୟାଡ଼ର ନକ୍‌ସଲ୍‌ପନ୍ଥୀଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଥିବା ଯୋଗୁଁ ବହୁ ସମୟରେ, ତାଙ୍କ ମଧରେ ମଧ ଦଙ୍ଗା ହଙ୍ଗାମାହୋଇ,ବହୁ ଲୋକ ମରୁଥାନ୍ତି । ପ୍ରତ୍ୟେକ ଦିନ ମୋତେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯିବାକୁ ପଡୁଥାଏ । ପ୍ରଥମେ ପ୍ରଥମେ ଡର ଲାଗୁଥିଲା ମାତ୍ର ଅଳ୍ପଦିନ ପରେ ସେସବୁ ଉଭେଇ ଗଲା । ଥରେ ନୁହେଁ, କେତେଥର ମଧ ମୋ ଜିପ୍‌କୁ ଲକ୍ଷ୍ୟ କରି ଗୁଳି ମରାଯାଇଛି, ବମ୍ ଫୋପାଡ଼ିଛନ୍ତି, ମାତ୍ର ମୋର କିଛି ହୋଇନଥିଲା । କଲିକତାରେ ତିନି ମାସ ରହିଲୁ, ଦିନେ ହେଲେ ଗୋଟେ ସିନେମା ଦେଖିବାକୁ କିମ୍ୱା କାହା ପାଖକୁ ଯିବାପାଇଁ ନିଜର ସୁରକ୍ଷା ଏବଂ ସେମାନଙ୍କର ସୁରକ୍ଷା ଦୃଷ୍ଟିରୁ ଯାଇନଥିଲୁ । ଉପଦୃତ ଅଞ୍ଚଳରେ ସୁରକ୍ଷା ନିୟମ ଲଘଂନକଲେ, ନିଶ୍ଚିତ ବିପଦରେ ପଡ଼ିବ ।

ଆମେ ରହିବା ମଧରେ, କମାଡ଼ାଣ୍ଟ ମିଃ ଶାହା ଥରେ କଲିକତା ଆସି ବୁଲିଯାଇଥିଲେ । ଅବଶ୍ୟ ତାଙ୍କର ଶ୍ୱଶୁରଘର ଏଇଠି ଏବଂ ସେ ସେତେବେଳେ ସଲ୍ଟଲେକ୍ ଅଞ୍ଚଳରେ ନିଜର ଗୋଟିଏ ଛୋଟ ଘର କରି ଭଡ଼ା ଦେଇଥାନ୍ତି । ସେ ମୋ ସଙ୍ଗେ, ଆମ କ୍ୟାମ୍ପର ଅବସ୍ଥା, ଆମର ଦୈନନ୍ଦିନ କାର୍ଯ୍ୟ ସବୁ ଦେଖିଲେ । ମୁଁ କହିଲି ଯେ ଯଦି ଓଡ଼ିଶା ଫୋର୍ସ ଅଧିକା ଦିନ ରଖିବାକୁ ବଙ୍ଗଳା ସରକାର ଚାହାନ୍ତି, ତାହେଲେ ତିନି ଚାରିମାସ ପରେ ସେମାନଙ୍କୁ ବଦଳି କରି ଆଉ ତିନି କମ୍ପାନୀ ପଠାନ୍ତୁ । ତାହେଲେ ଫୋର୍ସ ଅସୁବିଧା ଅବସ୍ଥାରେ କାମକରିବାକୁ

ସକ୍ଷମ ହେବେ । ବେଶୀଦିନ ରହିଲେ ଠିକ୍ ଭାବେ କାମ କରିବାର ଧୈର୍ଯ୍ୟ ରହିବ ନାହିଁ । ସେ କ'ଣ କହିଲେ କି ନାହିଁ ମୁଁ ଜାଣିନି, ମାତ୍ର ଠିକ୍ ତିନିମାସ ପରେ, ଆମ ଫୋର୍ସ ଓଡ଼ିଶା ଫେରିଯିବାକୁ ନିର୍ଦ୍ଦେଶ ଆସିଲା । ଫୋର୍ସ ସମସ୍ତେ ଖୁସି ହେଲେ ଏତେଦିନ ପରେ ଫେରିବା ପାଇଁ । କଲିକତାରେ ସେ ସମୟରେ ଗୋଟିଏ ଦିନ କଟାଇବା ଗୋଟେ ଯୁଗ ପରି ଲାଗୁଥିଲା । ଡାକ୍ତର ଦୁବେ ଅତ୍ୟନ୍ତ ଖୁସିହେଲେ ।

ଆମ ମାଲିପାଛଗଡ଼ା କ୍ୟାମ୍ପ ପରିସରରେ କେତେଜଣ ପୁରୀ ସାଇଡ଼ର ଲୋକେ ଲେବର କାମ କରୁଥିଲେ । ସେମାନେ ଯେତେବେଳେ ଜାଣିଲେ, ଆମେ ଫେରିଯାଉଛୁ ବୋଲି, ତାଙ୍କ ମଧ୍ୟରୁ ଜଣେ ଆସି ସେଦିନ ସନ୍ଧ୍ୟା ବେଳକୁ ଦୁଇଟି ଟଙ୍କା ମାଗିଲା ଭାଙ୍ଗ କରି ପୂଜା କରିବା ପାଇଁ । ମୁଁ ତାକୁ ପାଞ୍ଚଟଙ୍କା ଦେଲି, ଭଲ କରି ଭାଙ୍ଗ କରି ପୂଜା କରିବାକୁ । ସନ୍ଧ୍ୟାପରେ ସେ ଭାଙ୍ଗ ଭଲ ଭାବେ କରି, ଦୁଇଗ୍ଲାସ ପଣା (କଦଳୀ, ମିଠା, ଖିସ୍‌ମିସ୍) ଆଣି ଆମକୁ ଦେଲା । ଡାକ୍ତର ଭଲ ହୋଇଛି ବୋଲି ଦିଗ୍ଲାସ ପିଇ ଦେଲେ । ସେଦିନ ଗୁର୍ଖା ସୁବେଦାରଙ୍କ ପୁଅ ପ୍ରମୋଶନ ପାଇଥିବା ଖବର ପାଇ ସୁବେଦାର ସାହେବ ଛୋଟକାଟିଆ ଭୋଜି କରୁଥାନ୍ତି । ରାତ୍ରି ନଅଟା ବେଳକୁ ସେ ପଲାଉ-ମାଂସ ଆଣି ଦେଲେ । ଡାକ୍ତର ଓ ମୁଁ, ଦୁହେଁ ଖାଇ ସାରି ଶୋଇଗଲୁ । ଠିକ୍ ରାତ୍ରି ୧୨ଟା ବେଳକୁ ଡାକ୍ତର ଉଠି ମୋତେ କହିଲେ "ଭାଙ୍ଗ ନିଶାଟି ଭଲ ହୋଇଛି" । ମୁଁ କହିଲି ଶୋଇପଡ଼ । ସେ ଶୋଇଗଲେ, ମାତ୍ର ଅଳ୍ପ ସମୟ ପରେ ମୋତେ ଉଠାଇ କହିଲେ ଯେ, ସେ ଭାଙ୍ଗ ଦେହରେ ପୁରୀଆ ଲୋକମାନେ ଧାତୁରାମଞ୍ଜି ପକାଇ ବାଟିଛନ୍ତି । ସେ ଡାକ୍ତର ହିସାବରେ ଧାତୁରା ବିଷର ସମସ୍ତ ପ୍ରତିକ୍ରିୟା ଜାଣି ସାରିଲେଣି । ହଠାତ୍ ମୋ ଖଟ ଉପରେ ବସିପଡ଼ି ସେ କହିଲେ, "ମୃତ୍ୟୁ ନିଶ୍ଚିତ - ବଞ୍ଚିବା କଷ୍ଟକର" । ମୋତେ ଯଦିଓ ସେପରି କିଛି ନିଶା ଜଣା ପଡୁ ନ ଥିଲା, ତାଙ୍କ କଥାରେ ମୋତେ ନିଶା ଯୋରରେ ଧରିଲା ପରି ଲାଗିଲା ଆଉ ମୁଁ ତାଙ୍କ କଥାକୁ ବିଶ୍ୱାସ କରିବାକୁ ବାଧ ହେଲି । ତାଙ୍କୁ ମୁଁ ପଚାରିଲି "ଏବେ କ'ଣ କରିବା" । ସେ କହିଲେ ବାନ୍ତି କରିବା ଛଡ଼ା ଆଉ ଉପାୟ ନାହିଁ । ବାନ୍ତି କିପରି କରିବୁ । ତାଙ୍କ ନିର୍ଦ୍ଦେଶରେ ଦି ଗ୍ଲାସ ଲୁଣ ପାଣି ପିଇଲି, ତଣ୍ଟି ପାଖେ ଆଙ୍ଗୁଠି ରଖି, ବାନ୍ତି କରିବାକୁ ଚେଷ୍ଟାକଲି, ମାତ୍ର ମୋର ବାନ୍ତି ହେଲାନି, ତାଙ୍କର ଅଳ୍ପ ଟିକିଏ ବାନ୍ତି ହେଲା । ଆମର ଏ ଅବସ୍ଥା ଜାଣି, କମ୍ପାଉଣ୍ଡର ଆସି ପହଞ୍ଚିଗଲେ । ସେ କହିଲେ, "ସାର୍ – ଶୋଇ ପଡନ୍ତୁ, କିଛି ହେବନି ।" ଡାକ୍ତର ତାଙ୍କୁ ବହେ ଶୋଧିଲେ । ସେ ଧାତୁରା ବିଷ ବିଷୟରେ କ'ଣ ଜାଣିଛି ବୋଲି ପ୍ରଶ୍ନ କଲେ । ପରେ ପରେ ନିକର ଚା ପିଆଗଲା । ମାତ୍ର ନିଶା କମିଲାନି । ମୁଁ ଡାକ୍ତରଙ୍କୁ ପୁଣି ଶୋଇପଡ଼ିବାକୁ କହିଲି । ଆମେ ଲାଇଟ ଲିଭାଇ ଶୋଇଲୁ । କିନ୍ତୁ ରାତ୍ରି ସାଢ଼େ ଗୋଟାକ ବେଳେ, ସେ ପୁଣି ଉଠି ତାଙ୍କ ଖଟ ଉପରେ ବସି କାନ୍ଦିବାକୁ ଆରମ୍ଭ କଲେ । କହିଲେ ସେ ନିଶ୍ଚିତ ଭାବେ ମୃତ୍ୟୁବରଣ କରିବେ । ଧାତୁରା ପଏଜନିଂର ସମସ୍ତ ଲକ୍ଷଣ ସେ ଜାଣି ସାରିଲେଣି । ଡାକ୍ତରଖାନା ଯିବା ଛଡ଼ା ଆଉ ବାଟ ନାହିଁ । ତାଙ୍କ କାନ୍ଦବୋବାକୁ ଦେଖି, ମୋତେ ଡର ଲାଗିଲା । ସତରେ ଯଦି ଧାତୁରା ପଏଜନିଂ ହୋଇଥିବ, ତାହେଲେ ଡାକ୍ତର କହିବା ଅନୁସାରେ ଥରେ ଶୋଇଲେ ଶୋଇଥିବ, ଆଉ ଚେତା ଫେରିବନି । ବଡ଼

ଅସୁବିଧାରେ ପଡ଼ିଲୁ । ଡକ୍ଟର ଦୁବେ ଖାଲି କହୁଥାନ୍ତି, ହାଓ୍ୱାରା ବଡ଼ ଡାକ୍ତରଖାନା ଯିବାକୁ । ଏଣେ ନକସଲପନ୍ଥୀଙ୍କ ଭୟରେ ସୁବେଦାର ଏତେ ରାତ୍ରିରେ ପୁଲିସଗାଡ଼ି ନେଇଯିବାଟା ନିରାପଦ ନୁହେଁ ବୋଲି କହୁଥାନ୍ତି । ମୁଁ ବଡ଼ ଅସୁବିଧାର ସମ୍ମୁଖୀନ ହେଲି । ଏଣେ ଡାକ୍ତରଖାନାକୁ ଗଲେ, ଓଡ଼ିଶା ପୁଲିସବାଲା ଭାଙ୍ଗଖାଇ ଡାକ୍ତରଖାନାରେ ପଡ଼ିବା ଖବର ପ୍ରଚାର ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ମାତ୍ର ଡାକ୍ତରଙ୍କ ଅବସ୍ଥା, କାନ୍ଦବୋବା ଦେଖି ମୁଁ ଶେଷକୁ ସୁବେଦାରଙ୍କୁ କହିଲି, ଜିପ୍ ବାହାର କରି ଡାକ୍ତରଖାନା ଯିବା ପାଇଁ । ସୁବେଦାର ନିଜେ ବାହାରିଲେ ଯିବେ ବୋଲି । ସେ ନିଜେ ଏବଂ ଚାରିଜଣ ଗୁର୍ଖା ସିପାହୀ, ବନ୍ଧୁକ ଧରି ଜିପରେ ବସିଲେ । ମୁଁ ମୋର ରିଭଲଭର ଧରି ଆଗରେ ବସିଲି । ଡାକ୍ତର ମୋ ପାଖରେ । ଆମ ଗାଡ଼ି କ୍ୟାମ୍ପରୁ ବାହାରି ମାତ୍ର ଗୋଟେ କିଲୋମିଟର ଯାଇଛି, ହଠାତ୍ ଗୋଟେ ଗଳି ମୁଣ୍ଡରେ ଆଗରୁ ପଛରୁ ଦୁଇପଟୁ ଆମ ଜିପ୍ ଉପରକୁ ବୋମା ମାଡ଼ ହେଲା । ସେତେବେଳକୁ ନକସଲପନ୍ଥୀ ଏବଂ ସେମାନଙ୍କ ବିରୋଧି ଦୁଇଦଳଙ୍କ ମଧରେ ବୋମା ଫୋପଡ଼ା ଫୋପଡ଼ି ହେଉଥାନ୍ତି । ଆମ ଗାଡ଼ି ସେଇ ଗଳି ମଧରେ ନଜାଣି ପଶିଗଲା । ବୋମା ମାଡ଼ ଦେଖି ସୁବେଦାର ପାଞ୍ଚ, ସାତ ରାଉଣ୍ଡ ଗୁଳି ତାଙ୍କ ଷ୍ଟେନଗନ୍‌ରୁ ଫୁଟାଇଦେଲେ । ହଠାତ୍ ଗୁଳି ଗୋଳାର ଶବ୍ଦ ଶୁଣି ମୋ ନିଶା ସବୁ ଛାଡ଼ିଗଲା । ମୁଁ ସୁବେଦାରଙ୍କୁ ପଚାରିଲି କ'ଣ ହେଲା । ସେ କହିଲେ ''ବମିଂ ହୋତାଏ ସାହେବ - ଚାରି ପାଞ୍ଚ ରାଉଣ୍ଡ ଫାୟାର କିଆ'' । ମୋ ନିଶା ଛାଡ଼ିଗଲା । ମୁଁ ପଚାରିଲି କିଏ ମରିଛି କି । ସେ କହିଲେ ନାହିଁ । ଆସ୍‌ମାନ୍ ସେ ଫାୟାର କିଆ ।'' ସେତେବେଳକୁ ଆମ ଗାଡ଼ି ମୋଡ଼ ବୁଲି ଯାଇଥାଏ ଏବଂ ପୁଲିସ ଗୁଳି ଶୁଣି, ଦୁଇଦଳ ମଧ ବୋମା ଫିଙ୍ଗା ବନ୍ଦ କରିଦେଇଥାନ୍ତି । ମୁଁ ଗାଡ଼ିରୁ ଓହ୍ଲାଇ କହିଲି - ''ଡାକ୍ତର ତୁମକୁ ଏଇଠି ଛାଡ଼ିଦେଇ, ଆମେ ଚାଲିଲୁ'' । ମୋ କଥା ଶୁଣି, ଡାକ୍ତର କହିଲେ ଯେ ତାଙ୍କର ନିଶା ଛାଡ଼ିଗଲାଣି - ଏବେ ଡାକ୍ତରଖାନା ନ ଯାଇ କ୍ୟାମ୍ପକୁ ଫେରିବା । ଆମେ ଗାଡ଼ି ବୁଲାଇ କ୍ୟାମ୍ପକୁ ଫେରିଲୁ । ଡାକ୍ତର କିଛି ନ କହି ସିଧା ତାଙ୍କ ଖଟରେ ଶୋଇଗଲେ । ପରଦିନ ସକାଳୁ ଉଠି, ମୋତେ କହିଲେ ''ବୁଝିଲେ ତ୍ରିପାଠୀ ସାହେବ - ଭାଙ୍ଗ ନିଶାଟି ଖୁବ୍ ମସଗୁଲ୍ କରି ଦେଇଥିଲା । ମୋର ଏବେ ଇଚ୍ଛା ହେଉଛି କବିତା ଲେଖିବାକୁ ।'' ମୁଁ ଆଉ କ'ଣ କହିଥାନ୍ତି । ସେ ଦିନ ସନ୍ଧ୍ୟାକୁ ଆମେ ଓଡ଼ିଶା ଫେରିଲୁ । ପରେ ପଶ୍ଚିମବଙ୍ଗ ସରକାର, ଆମ କାର୍ଯ୍ୟର ଉଚ୍ଚ ପ୍ରଶଂସା କରିଥିଲେ । କାରଣ ଓଡ଼ିଶା ଫୋର୍ସ ବହୁ ଅସୁବିଧା ସ୍ଥାନମାନଙ୍କରେ କାର୍ଯ୍ୟ କରିଥିଲେ ମଧ କୌଣସି ଠାରେ ନକସଲଙ୍କ ଆକ୍ରମଣରେ ମୃତ୍ୟୁବରଣ କରି ନ ଥିଲେ । ବଙ୍ଗଳା ସରକାରଙ୍କ ଚିଠି ପାଇ ଓଡ଼ିଶା ସରକାର ମୋତେ ପ୍ରଶସ୍ତି ପତ୍ର ଦେଇଥିଲେ । ଝାରସୁଗୁଡ଼ା ବାଟେଲିୟାନରୁ ମୋର ଏଗାର ମାସ ପରେ, କଟକ ଜିଲ୍ଲାକୁ ବଦଳି ହେଲା ।

## ପୁଲିସ, ରାଜନୀତି ଓ ପ୍ରଶାସନ :

ପୁଲିସ୍ ପ୍ରଶାସନ ଉପରେ, ତତ୍‌କାଳୀନ ରାଜନୈତିକ ଅବସ୍ଥାର ପ୍ରଭାବ ଯଥେଷ୍ଟ ପରିମାଣରେ ପଡ଼ିଥିଲା । ମୁଁ ପୁଲିସ୍‌ରେ ଜଏନ୍ କରିବା ପୂର୍ବରୁ, ଓଡ଼ିଶା ରାଜନୈତିକ କ୍ଷେତ୍ରରେ

ଏକ ଅସାଧାରଣ ଅସ୍ଥିରତା ଦେଖାଦେଇଥାଏ । ୧୯୬୪ ମସିହା ଛାତ୍ର ଆନ୍ଦୋଳନ ପରେ, କଂଗ୍ରେସ ସରକାରଙ୍କ ପତନ ଘଟିଲା । ଓଡ଼ିଶାର ଦକ୍ଷ, କୂଳବୃଦ୍ଧ ନେତା ଡକ୍ଟର ମହତାବ, କଂଗ୍ରେସରୁ ଅଲଗା ହୋଇ ଜନକଂଗ୍ରେସଦଳ ଗଠନ କରି, ୧୯୬୭ ମସିହା ସାଧାରଣ ନିର୍ବାଚନ ଲଢ଼ିଲେ । ଏଇ ନିର୍ବାଚନରେ ରାଜ୍ୟ ବିଧାନସଭାରେ ୧୪୦ ସ୍ଥାନରୁ କଂଗ୍ରେସ ଦର ୩୧ଟି, ସ୍ୱତନ୍ତ୍ର ୪୯, ଜନକଂଗ୍ରେସ ୨୬ ଆସନ ପାଇଲେ । ପ୍ରଜା ସୋସିଆଲିଷ୍ଟ ଦଳ ମଧ ବହୁ ସିଟ୍‌ରେ ବିଜୟ ଲାଭ କଲେ । ନିର୍ବାଚନ ପରେ ସ୍ୱତନ୍ତ୍ର ଜନ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କଲା ଏବଂ ସ୍ୱତନ୍ତ୍ର ଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେଲାବେଳେ ଜନକଂଗ୍ରେସରୁ ନେତା ପବିତ୍ରମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ପଦବୀରେ ରହିଲେ । ମହତାବ, ବାହାରେ ରହି ତ୍ରିଗୁଣରଜ୍ଜୁ ଧାରଣ କଲେ । ଜନ କଂଗ୍ରେସ-ସ୍ୱତନ୍ତ୍ର ମନ୍ତ୍ରୀମଣ୍ଡଳ ଆସିବାରେ ତତ୍‌କାଳୀନ ଆଇ. ଜି. ଶ୍ରୀକାନ୍ତ ଘୋଷଙ୍କୁ ବିଦାୟ କରି ଦିଆଗଲା । ସେ କଂଗ୍ରେସ ନେତା ବିରେନ୍ ମିତ୍ରଙ୍କ ଜଣାଶୁଣା ସମର୍ଥକ । ତେଣୁ ତାଙ୍କୁ ପୁଲିସ୍ ମୁଖ୍ୟ ପଦବୀରୁ ବାହାର କରି, ଶ୍ରୀଯୁକ୍ତ ରାମକୃଷ୍ଣ ପାଢ଼ୀଙ୍କୁ ୧୯୬୭ ମସିହା ମାର୍ଚ୍ଚ ମାସରେ ଆଇ. ଜି. କଲେ । ସେ ମାତ୍ର ୪ମାସ ରହିଲା ପରେ, ତାଙ୍କର ବଦଳି ହେଲା । ତାଙ୍କ ସ୍ଥାନରେ ଜେ.ସି. ଘୋଷଙ୍କୁ ପୁଲିସ୍ ମୁଖ୍ୟ କରି ଅଣାଗଲା । ଜେ.ସି. ଘୋଷ ସେତେବେଳେ ସିନିୟର ପୁଲିସ୍ ଅଫିସର ଥିଲେ । ସେ ମଧ ମାତ୍ର ୪ମାସ ରହିଲେ । ତାଙ୍କ ପରେ ପୁଣି ଆର.କେ. ପାଢ଼ୀଙ୍କୁ ଆଇ.ଜି. କରି ଅଣାଗଲା । ୧୪.୧.୬୮ ମସିହାରେ ଶ୍ରୀଯୁକ୍ତ ପାଢ଼ୀ ଆଇ.ଜି. ହୋଇ ଜଏନ୍ କଲେ । ସେଇ ସମୟରେ ଶ୍ରୀକାନ୍ତ ଘୋଷ, ଆଇ.ଜି. ଭିଜିଲାନ୍ସ ଭାବେ ପୋଷ୍ଟିଂ ହୋଇଥାନ୍ତି । ତାଙ୍କର ଡକ୍ଟର ମହତାବଙ୍କ ସଙ୍ଗେ ମଧ ଭଲ ସଂପର୍କ ବହୁ ଦିନରୁ ଥିଲା ଏବଂ ସେ ତାଙ୍କର ଆଗ ସଂପର୍କ ତା଼ଙ୍କ ସଙ୍ଗେ ରଖିଥାନ୍ତି । ରାଜେନ୍ଦ୍ର ନାରାୟଣ, ଏକଥା ଭଲ ଭାବେ ଜାଣିଥିଲେ । ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳ ପ୍ରଥମେ ପ୍ରଥମେ କେତେଗୁଡ଼ିଏ ଆଖିଦୃଶିଆ କାମ ଆରମ୍ଭ କରିଦେଲେ । ତାହା ମଧ୍ୟରୁ, ବିଜୁ ବିରୁଦ୍ଧରେ ଖାନା କମିଶନ ବସାଇଲେ । ଅବଶ୍ୟ ସେଇ କମିଶନ୍ କେବଳ ବିଜୁ ନୁହନ୍ତି, ବିରେନ, ସଦାଶିବ ତ୍ରିପାଠୀଙ୍କ କାର୍ଯ୍ୟ ସମୟକୁ ତଦନ୍ତ କମିଶନର ପରିସରଭୁକ୍ତ କଲେ । ଓଡ଼ିଶାର ରାଜନୀତି ସବୁବେଳେ ସାରୁପତ୍ର ଉପରେ ଜଳବିନ୍ଦୁ ପରି ଚଳଚଞ୍ଚଳ । ଦୁଇବର୍ଷ ମିଳିତ ମନ୍ତ୍ରୀମଣ୍ଡଳ ପରେ, ଦୁଇ ଦଳ ମଧ୍ୟରେ ଫାଟ ଦେଖାଦେଲା । ଡକ୍ଟର ମହତାବ, ଜାତୀୟ ରାଜନୀତିକୁ ଆଖି ଆଗରେ ରଖି ଆଞ୍ଚଳିକ ରାଜନୀତିରୁ ଦୂରେଇ ଯିବାକୁ ବସିଥାନ୍ତି । ଠିକ୍ ଏଇ ସମୟରେ ଜାତୀୟ ରାଜନୀତିରେ ମଧ ଏକ ଅଦ୍‌ଭୂତପୂର୍ବ ରାଜନୈତିକ ପରିସ୍ଥିତି, ରାଷ୍ଟ୍ରପତିଙ୍କ ନିର୍ବାଚନକୁ କେନ୍ଦ୍ରକରି ସୃଷ୍ଟିହେଲା । ୧୯୬୯ ଅଗଷ୍ଟ ମାସରେ ହେଉଥିବା ରାଷ୍ଟ୍ରପତି ପଦ ପାଇଁ କଂଗ୍ରେସ ଦଳୀୟ ପ୍ରାର୍ଥୀ ଭାବେ ମିଃ ସଞ୍ଜିବ ରେଡ଼ି ଠିଆ ହେଲାବେଳେ, ଇନ୍ଦିରା ଗାନ୍ଧି, ଭି.ଭି. ଗିରିଙ୍କୁ ସମର୍ଥନକରି, ତାଙ୍କୁ ପ୍ରାର୍ଥୀ କଲେ । ଡକ୍ଟର ମହତାବ, ଇନ୍ଦିରା ଗାନ୍ଧିଙ୍କ ପ୍ରାର୍ଥୀ, ଗିରିଙ୍କୁ ସମର୍ଥନ ଦେଲାବେଳେ ବିଜୁ ବାବୁ, ସଞ୍ଜିବରେଡ଼ିଙ୍କୁ ସମର୍ଥନ କଲେ ।

ଏଣେ ପୁଲିସ ପ୍ରଶାସନରେ ମୁଖ୍ୟମନ୍ତ୍ରୀଙ୍କ ସନ୍ଦେହ ଶ୍ରୀକାନ୍ତ ଘୋଷଙ୍କ ଉପରେ ପଡ଼ିଥିଲା । ସେ ଡକ୍ଟର ମହତାବଙ୍କ ସାଙ୍ଗରେ ରହି, ମନ୍ତ୍ରୀମଣ୍ଡଳରେ ଅସ୍ଥିରତା ସୃଷ୍ଟି କରିବା କଥା ଶୁଣାଗଲା । ପୁଲିସ ବିଭାଗରେ ମଧ ଘୋଷଙ୍କର ବହୁ ଶତ୍ରୁଥିଲେ । ସେ ଆଇ.ଜି. ହେଲାପରେ ତାଙ୍କର ଗୋଟିଏ ଗୋଷ୍ଠୀ ସୃଷ୍ଟି କରିଥିଲେ । ଯେଉଁ ଗୋଷ୍ଠୀକି ତାଙ୍କ ସମୟରେ ସାରା ପୁଲିସ୍ ବିଭାଗରେ ପ୍ରାଧାନ୍ୟ ବିସ୍ତାର କରି ରହିଥିଲେ । ସେତେବେଳେ ଏସ୍.ପି. ମିଃ ସାମଲଙ୍କୁ ମିଃ ଘୋଷ ନିଲମ୍ବିତ କରିଥାନ୍ତି । ମିଃ ସାମଲ ସ୍ୱତନ୍ତ୍ର ମନ୍ତ୍ରୀମଣ୍ଡଳରେ ମୁଖ୍ୟମନ୍ତ୍ରୀଙ୍କ ପାଖଲୋକ ହୋଇ ପାରିଥିଲେ । ତାଙ୍କର ଓକିଲ ଥିଲେ ଗୋକୁଳି ମହାନ୍ତି, ଯେ କି ସ୍ୱତନ୍ତ୍ର ଦଳର ସମର୍ଥକ । ତେଣୁ ସେ ମଧ ମୁଖ୍ୟମନ୍ତ୍ରୀଙ୍କୁ ଏକଥା କହିଲେ ଏବଂ ପ୍ରତିଶୋଧ ନେବାପାଇଁ ତାଙ୍କୁ କିପରି ଚାକିରିରୁ ବିଦାୟ କରାଯାଇ ପାରିବ, ସେକଥା ମଧ କହିଦେଲେ । ଆଗରୁ ୧୯୬୬-୧୯୬୭ ମସିହାରେ, ''ମଲ୍ଲିକ-ଚହ୍ୱାନ'' କେସ୍ ଯୋଗୁ ସାରା ଓଡ଼ିଶାରେ ଛାତ୍ର ଆନ୍ଦୋଳନ ଦେଖାଦେଇ, ତାର ପରିଣାମ ସ୍ୱରୂପ ଜଷ୍ଟିସ୍ ଏସ.କେ.ରାଏ କମିଶନ ବସିଥିଲା । ମିଃ ମଲ୍ଲିକ ଏବଂ ମିଃ ଚହ୍ୱାନ୍ ଦୁହେଁ ଆଇ.ପି.ଏସ. ଅଫିସର । ସେମାନେ ରାଉରକେଲାରୁ ରାତ୍ରି ବସରେ କଟକ ଆସିବାବେଳେ ଜଣେ ଡାକ୍ତରୀ ଛାତ୍ରୀଙ୍କୁ ଅଶାଳୀନ ବ୍ୟବହାର ପ୍ରଦର୍ଶନ କରିବା ଅଭିଯୋଗରେ ସାରା ରାଜ୍ୟରେ ଛାତ୍ର ଆନ୍ଦୋଳନ ହୋଇଥିଲା । ସେତେବେଳେ ମିଃ ଘୋଷ, ମଲ୍ଲିକଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ସରକାରଙ୍କୁ ଲେଖିଥିଲେ । କୁହାଯାଏ, ମିଃ ଘୋଷ ମଲ୍ଲିକଙ୍କ ଶ୍ୱଶୁରଙ୍କ ପାଇଁ ତାଙ୍କ ଉପରେ ଦାଉ ସାଧୁଥିଲେ । ତାଙ୍କର ତାଙ୍କ ଶ୍ୱଶୁରଙ୍କ ସହିତ ପୁରୁଣା ଶତ୍ରୁତା ଥିଲା । ରାଏ କମିଶନରେ ଶ୍ରୀଯୁକ୍ତ ଘୋଷଙ୍କୁ ସାକ୍ଷୀ ହିସାବରେ ଡକା ଯାଇଥିଲା । ସାକ୍ଷ୍ୟ ପ୍ରମାଣ ଦେଲାବେଳେ ସେ କହିଥିଲେ ଯେ, ''ମଲ୍ଲିକ-ଚହ୍ୱାନ'' ଘଟଣା କଥା ସେ ନିଜେ ଜାଣିଥିଲେ ଏବଂ ଡକ୍ଟର ମହତାବଙ୍କୁ ମଧ କହିଥିଲେ । କମିଶନ ତାଙ୍କ ରିପୋର୍ଟରେ ଲେଖିଲେ ଯେ, ଶ୍ରୀ ଘୋଷ ଓଡ଼ିଶାର ପୁଲିସ୍ ଆଇ.ଜି ଥିବା ସମୟରେ, ସେ ଡକ୍ଟର ମହତାବଙ୍କୁ, ଯେ କି ମନ୍ତ୍ରୀ ନ ଥିଲେ କିମ୍ବା ସରକାରୀ ପଦପଦବୀରେ, ନ ଥିଲେ, ତାଙ୍କୁ ଗୁପ୍ତ କଥା କହି ଅଫିସିଆଲ ସିକ୍ରେସୀକୁ ଭଙ୍ଗ କରିଛନ୍ତି । କାରଣ ଡକ୍ଟର ମହତାବ ସେତେବେଳେ ''Was not under the oath of secrecy'' । ମୁଖ୍ୟମନ୍ତ୍ରୀ ସିଂହଦେଓ, ସେଇ ପୁରୁଣା କମିଶନ ରିପୋର୍ଟକୁ ବାହାରକରି ଶ୍ରୀକାନ୍ତ ଘୋଷଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ଚିନ୍ତା କଲେ । ତାଙ୍କୁ ଚାକିରିରୁ ନିଲମ୍ବିତ ନ କରି ଅବସର ନେବା ପୂର୍ବରୁ ବାଧତାମୂଳକ ଅବସର ଦେଇ ବିଦାୟ କରିଦେଲେ । ପୁଲିସ ବିଭାଗ ପାଇଁ ଏହା ଏକ ନୂତନ ଉଦାହରଣ ହେଲା । ଶ୍ରୀକାନ୍ତ ଘୋଷଙ୍କ ବିରୋଧି ପୁଲିସ ଗୋଷ୍ଠୀ ସକ୍ରିୟ ହୋଇଗଲେ ଏବଂ ସାମଲ ପୁଣି ଚାକିରିରେ ଜଏନ୍ କରି ଗୁଇନ୍ଦା ଏସ.ପି. ହେଲେ ।

ଜାତୀୟ ସ୍ତରରେ ଇନ୍ଦିରା ଗାନ୍ଧିଙ୍କ ପ୍ରାର୍ଥୀ ଭି.ଭି.ଗିରି, ରାଷ୍ଟ୍ରପତି ଭାବେ ନିର୍ବାଚିତ ହେବାରୁ କଂଗ୍ରେସ ଦୁଇଭାଗ ହୋଇଗଲା । କଂଗ୍ରେସ ଦୁଇଭାଗ ପରେ, ଇନ୍ଦିରା ଗାନ୍ଧିଙ୍କୁ ସପୋର୍ଟ କରୁଥିବା କଂଗ୍ରେସ ନାମ ହେଲା ଇନ୍ଦିରା କଂଗ୍ରେସ । ଜାତୀୟ କଂଗ୍ରେସ ନାମ ହେଲା କଂଗ୍ରେସ (ଏସ.) ।

ବିଜୁ ବାବୁ ଇନ୍ଦିରା ଗାନ୍ଧିଙ୍କୁ ସମର୍ଥନ ଜଣାଇ ନ ଥିବାରୁ, ଇନ୍ଦିରାଙ୍କ କୋପଦୃଷ୍ଟି ତାଙ୍କ ଉପରେ ପଡ଼ିଥିଲା । ସେତିକିବେଳେ ଓଡ଼ିଶାରୁ ରାଜ୍ୟ ସଭାକୁ ତିନିଜଣ ପ୍ରାର୍ଥୀ ନିର୍ବାଚିତ ହୋଇ ଯିବାକଥା । ବିଜୁବାବୁ କଂଗ୍ରେସରୁ ପ୍ରାର୍ଥୀ ହେଲେ, ମାତ୍ର କଂଗ୍ରେସ ହାଇକମାଣ୍ଡ ତାଙ୍କ ନାମକୁ ଗ୍ରହଣ ନ କରି ନାରାୟଣ ପାତ୍ରଙ୍କୁ ଦଳୀୟ ପ୍ରାର୍ଥୀ ଭାବେ ଠିକ୍ କଲେ । ବିଜୁବାବୁ ରାଗି କଂଗ୍ରେସ ପ୍ରାର୍ଥୀଙ୍କ ବିରୁଦ୍ଧରେ ଭୋଟଦେଲେ । ତେଣୁ କଂଗ୍ରେସ ହାଇକମାଣ୍ଡ, ମେ ମାସ ୧୯୭୦ରେ ବିଜୁ, ନୀଳମଣି, ପ୍ରତାପ ପଟ୍ଟନାଏକଙ୍କୁ କଂଗ୍ରେସ ଦଳରୁ ନିଲମ୍ବିତ କଲେ । ସେମାନେ ନିଲମ୍ବିତ ହେବାପରେ ବିଜୁ ବାବୁ ଉତ୍କଳ କଂଗ୍ରେସ ଗଠନ କଲେ । ଡକ୍ଟର ମହତାବ, ଏପରି ଗୋଟିଏ ସୁଯୋଗ ଖୋଜୁଥିଲେ । ବିଜୁ, ନୀଳମଣି, ପ୍ରତାପ, ବିରେନ୍ ଏମାନେ କଂଗ୍ରେସରୁ ଗଲାପରେ ସେ ପୁଣି କଂଗ୍ରେସକୁ ଫେରିବାକୁ ମନ ବଳାଇ ସେଇ ଦିଗରେ କାମ କରିବା ଆରମ୍ଭ କଲେ । ସେତେବେଳେ ନନ୍ଦିନୀ ଦେବୀ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କ ଅତ୍ୟନ୍ତ ପାଖ ଲୋକ । ବିଜୁ, ବିରେନ୍‌ଙ୍କୁ କଂଗ୍ରେସରୁ ହଟାଇବାରେ ଭୂପେଶ ଗୁପ୍ତାଙ୍କ ଯେତିକି ହାତ ନ ଥିଲା, ତାଠାରୁ ଅଧିକ ହାତ ଥିଲା ନନ୍ଦିନୀ ଦେବୀଙ୍କର । ଡକ୍ଟର ମହତାବ କଂଗ୍ରେସ ନେତା ବନମାଳୀ ବାବୁଙ୍କ ସଙ୍ଗେ ହାତ ମିଳାଇ ନନ୍ଦିନୀ ଦେବୀଙ୍କୁ ହାତ କଲେ । ଏହି ସମୟରେ ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରୀମଣ୍ଡଳରୁ କେତେକ ଜନକଂଗ୍ରେସ ସଦସ୍ୟ ମହତାବଙ୍କ ବିରୁଦ୍ଧରେ ବସାଯାଉଥିବା କମିଶନଙ୍କୁ ବିରୋଧ କରି ସାତଜଣ ଜନକଂଗ୍ରେସ ଜନତାଦଳ ଛାଡ଼ିବାକୁ ବାହାରିଲେ । ମହତାବ ତାର ସୁଯୋଗ ନେଲେ ଏବଂ ମୁଖ୍ୟମନ୍ତ୍ରୀ ସିଂହଦେଓ, ମଧୁଲିକର କମିଶନଙ୍କ ରିପୋର୍ଟ ଉପରେ ତାଙ୍କ ବିରୁଦ୍ଧରେ କାର୍ଯ୍ୟକାରୀ କରିବାକୁ ଯାଉଥିବା ପ୍ରସ୍ତାବକୁ ବନ୍ଦ କରିବା ପାଇଁ, ସେ ନିଜେ ଜନ କଂଗ୍ରେସରୁ ଇସ୍ତଫା ଦେଲେ ବୋଲି ସମ୍ବାଦ ପତ୍ରକୁ ଜଣାଇଦେଲେ, ଯଦିଓ ନିଜେ କୌଣସି କାଗଜରେ ଇସ୍ତଫାପତ୍ର ଦସ୍ତଖତ କରି ନ ଥିଲେ । ମୁଖ୍ୟମନ୍ତ୍ରୀ ଏହାର ସୁରାକ ପାଇ, ଜଣିକିଆ ସ୍ୱରାଜ ପ୍ରସାଦ କମିଶନ ମହତାବଙ୍କ ବିରୁଦ୍ଧରେ ବସାଇଲେ । ଓଡ଼ିଶାରେ ୧୯୬୦ ମସିହା ପରଠାରୁ ଗୋଟାକ ପରେ ଗୋଟେ କମିଶନ ବସିବାରେ, ଦେଶରେ ବୋଧେ ଓଡ଼ିଶା ପ୍ରଥମ ପ୍ରଦେଶ । ସିଂହଦେଓ ଯେତେବେଳେ ଜାଣିଲେ ଯେ, ଡକ୍ଟର ମହତାବଙ୍କ ପ୍ରରୋଚନାରେ ଜନ କଂଗ୍ରେସ ମନ୍ତ୍ରୀମଣ୍ଡଳରୁ ଓହରି ଯାଉଛି, ସେ ଜାନୁଆରୀ ମାସ ୯ ତାରିଖ ଦିନ ତତ୍କାଳୀନ ରାଜ୍ୟପାଳ ଡକ୍ଟର ଆନ୍ସାରୀଙ୍କୁ ଇସ୍ତଫା ପତ୍ର ଦେଇଦେଲେ । ସିଂହଦେଓ ଇସ୍ତଫା ଦେଲାପରେ, ବିଜୁବାବୁଙ୍କ ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରୀମଣ୍ଡଳ କରିବାକୁ ପାଗଭିଡ଼ି ବସିଥିଲା ବେଳେ, ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାନୁଆରୀ ମାସ ୧୨ ତାରିଖ ୧୯୭୧ ମସିହାରୁ ଆରମ୍ଭ ହେଲା ।

ଓଡ଼ିଶାର ରାଜନୈତିକ ଅବସ୍ଥା ଏପରିଥିବା ବେଳେ ପୁଲିସ ପ୍ରଶାସନରେ ଶ୍ରୀ ଆର.କେ. ପାଢ଼ୀଙ୍କ ଗୋଟିଏ ବର୍ଷ ପୂରଣ ନ ହେଉଣୁ, ଡେପୁଟେସନରୁ ଫେରି, ଶ୍ରୀ ବି.ବି. ମିଶ୍ର ଓଡ଼ିଶା ପୁଲିସ୍‌ର ଆଇ.ଜି ହେଲେ । ସେ ଆଇ.ଜି ହେଲା ପରେ ପୁଲିସ୍ ପ୍ରଶାସନରେ ଚାଲିଥିବା ଅସ୍ଥିରତା, ଉପର ମହଲରେ ଟଣାଟଣି ବନ୍ଦ ହୋଇଗଲା ଏବଂ ସେ ଏକକାଳୀନ ତିନିବର୍ଷରୁ ଊର୍ଦ୍ଧ୍ୱ ସମୟ ଆଇ.ଜି. ଭାବେ ରହି ପାରିଥିଲେ । ଯଦିଓ ତାଙ୍କ ସମୟରେ ରାଜନୈତିକ ଅସ୍ଥିରତା

ବହୁଳ ଭାବେ ଦେଖା ଦେଇଥିଲା କିନ୍ତୁ ପୁଲିସ ପ୍ରଶାସନରେ ସ୍ଥିରତା ପରିଲକ୍ଷିତ ହୋଇଥିଲା ।

୧୯୭୧ ମସିହାରେ ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । ଏହି ନିର୍ବାଚନରେ କଂଗ୍ରେସ (ଆର୍) ୫୧, ଉତ୍କଳ କଂଗ୍ରେସ ୩୩, ସ୍ୱତନ୍ତ୍ର ଦଳ ୩୬ଟି ସ୍ଥାନ ପାଇଲା ବେଳେ ସି.ପି.ଆଇ, ପି.ଏସ.ପି ଝାଡ଼ଖଣ୍ଡଦଳ ପ୍ରତ୍ୟେକ ଚାରୋଟି ଲେଖାଁଏ ସ୍ଥାନ ପାଇଲେ । ଏଇ ନିର୍ବାଚନରେ ବିଜୁବାବୁ ଚାରୋଟି ସ୍ଥାନରୁ ଲଢ଼ି ହାରିଯିବା ପରେ, ରାଜନଗର ବାଇ-ଇଲେକସନ୍‌ରେ ଠିଆହୋଇ ବହୁ ଭୋଟରେ ବିଜୟୀ ହେଲେ । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କୌଣସି ଦଳ ସଂଖ୍ୟାଗରିଷ୍ଠତା ହାସଲ କରି ନ ଥିବା ହେତୁ, ପୁଣି ଥରେ ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରୀମଣ୍ଡଳ ହେଲା ଏବଂ ନେତାମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାକୁ ଏଡ଼େଇବା ପାଇଁ ଭୁଲିଯାଇଥିବା ନେତା ବିଶ୍ୱନାଥ ଦାସଙ୍କୁ ମୁଖ୍ୟମନ୍ତ୍ରୀ କଲେ । ଯଦିଓ ମିଳିତ ମନ୍ତ୍ରୀମଣ୍ଡଳ କିଛି ଦିନ ପାଇଁ ଚାଲିଲା, ମାତ୍ର ଏହା ଦୃଢ଼ ନେତୃତ୍ୱ ଦେଇ ପାରିଲା ନାହିଁ । କଥା କଥାକେ ଦଳଗତ କନ୍ଦଳ ସୃଷ୍ଟିହେଉଥାଏ । ଏହାର ସୁଯୋଗ କଂଗ୍ରେସ (ଆର) ନେଉଥାଏ । ନନ୍ଦିନୀ ଦେବୀ କେନ୍ଦ୍ରରେ ଥାଇ, ଓଡ଼ିଶା ରାଜନୀତି ଉପରେ ଆଖି ରଖିଥାନ୍ତି । ଅଳ୍ପଦିନ ପରେ ସ୍ୱତନ୍ତ୍ର ଦଳର କେତେକ ସଦସ୍ୟ ନନ୍ଦିନୀ ଦେବୀଙ୍କ ସଙ୍ଗେ କଥାବାର୍ତ୍ତା କରି ଗଙ୍ଗାଧର ପ୍ରଧାନଙ୍କ ସଙ୍ଗେ କଂଗ୍ରେସ ଦଳରେ ମିଶିଗଲେ । ଆଗରୁ ପି.ସେ.ପିରୁ କେତେକ ସଭ୍ୟ ମିଶିଥିଲେ । କଂଗ୍ରେସ (ଆର)ର ସଂଖ୍ୟା ବଢ଼ିବାରେ ଲାଗିଲା । ଉତ୍କଳ କଂଗ୍ରେସରୁ ନୀଳମଣି ବାବୁ ମଧ୍ୟ ନନ୍ଦିନୀଙ୍କ ସଙ୍ଗେ କଥାବାର୍ତ୍ତା କରି, ଉତ୍କଳକଂଗ୍ରେସରୁ ବିଦାୟ ନବାକୁ ପ୍ରସ୍ତୁତ ହେଲେ । ଇନ୍ଦିରା ଗାନ୍ଧି ଚାହୁଁଥିଲେ, ନନ୍ଦିନୀ ଓଡ଼ିଶା ଦାୟିତ୍ୱ ନିଅନ୍ତୁ । ଯେତେବେଳେ ନୀଳମଣି ବାବୁଙ୍କ ନେତୃତ୍ୱରେ ଉତ୍କଳ କଂଗ୍ରେସ, କଂଗ୍ରେସ ସହ ମିଶିଥିଲା, କଂଗ୍ରେସର ସଂଖ୍ୟା ୯୪ରେ ପହଞ୍ଚିଲା । ନନ୍ଦିନୀ ଦେବୀ କେନ୍ଦ୍ରରୁ ଆସି ଜୁନ୍ ମାସ ୧୪ ତାରିଖ ୧୯୭୨ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେଲାପରେ, କଟକ ସହରରୁ ସେ ନିର୍ବାଚନ ପାଇଁ ଠିଆ ହେଲେ । ତାଙ୍କୁ ବିରେନ୍ ମିତ୍ର ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ସେତେବେଳକୁ ବିରେନ୍ ମିତ୍ରଙ୍କର ଆଗଭଳି ପ୍ରତିଭା ନ ଥାଏ । ପାଖରେ ମଧ୍ୟ ପଇସା ନ ଥାଏ । ତେଣୁ ସେ ମାଗି ଯାଚି ନିର୍ବାଚନ ଲଢ଼ିଲେ । ଏଇ ନିର୍ବାଚନରେ ନନ୍ଦିନୀ ଦେବୀ ବହୁତ ପଇସା ଖର୍ଚ୍ଚ କଲେ ବୋଲି ତତ୍‌କାଳୀନ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଏପରିକି କଟକ ସହର ଗଳି କନ୍ଦିରେ ପ୍ରଚାର ପତ୍ର ଛାଇ ହୋଇ ଯାଇଥାଏ । ସେତିକିବେଳକୁ ଓଡ଼ିଶା ନିର୍ବାଚନ ପ୍ରଚାରରେ ଗୀତିକାରମାନଙ୍କ ପ୍ରବେଶ ହେଲା । ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲକର ଏମାନେ ନିର୍ବାଚନ ସଙ୍ଗୀତ ଦଳୀୟ ପ୍ରାର୍ଥୀଙ୍କ ପାଇଁ ଗାଇ ବୁଲିଲେ । କଟକ ସହର ଉଠ ପଡ଼ ହେଲା । ଶେଷରେ, ନନ୍ଦିନୀ ଦେବୀ ବହୁ ଭୋଟରେ କଟକ ସହରରୁ ନିର୍ବାଚିତ ହେଲେ ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବେ ରହିଲେ । ନନ୍ଦିନୀ ଦେବୀ ନିର୍ବାଚନରେ ଜୟଯୁକ୍ତ ହୋଇ ମୁଖ୍ୟମନ୍ତ୍ରୀ ଭାବେ ରହିଲେ, ହେଲେ ନିର୍ବାଚନ ପରେ ଦଳୀୟ କନ୍ଦଳ ଏପରି ଭାବେ ବଢ଼ିଲା ଯେ, ରାଜନୈତିକ ସ୍ଥିରତା ଓଡ଼ିଶା ପାଇଁ ସ୍ୱପ୍ନ ପରି ଦେଖାଦେଲା । ୧୯୭୩ ମସିହା ଫେବୃୟାରୀ ମାସରେ ଓଡ଼ିଶା ବିଧାନ

ସଭାରେ ବଜେଟ୍ ଅଧିବେସନ ଚାଲୁଥିବା ସମୟରେ ଡକ୍ଟର ମହତାବଙ୍କ ସକ୍ରିୟ ସହଯୋଗରେ ଓଡ଼ିଶାରେ ଆଉ ଗୋଟିଏ ନୂଆ ରାଜନୈତିକ ଦଳ "ପ୍ରଗତି ଦଳ" ନାମରେ ଜନ୍ମ ଗ୍ରହଣ କଲା । ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେଲାପରେ ଡକ୍ଟର ମହତାବ ତାଙ୍କୁ ଆନ୍ତରିକତାରସହ ଚାହୁଁ ନ ଥିଲେ ସେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ ବୋଲି । ତେଣୁ ବିଭିନ୍ନ ଉପାୟରେ ସେ ଚାହୁଁଥିଲେ ନନ୍ଦିନୀ ଦେବୀଙ୍କୁ ହଟାଇବା ପାଇଁ । ପ୍ରଗତିଦଳରେ ବିଜୁବାବୁ ଜଏନ୍ କଲେ । ସିଂହଦେଓ ମଧ ସେଥିରେ ଜଏନ କରିବା ପରେ, କଂଗ୍ରେସ ଦଳରେ ଯୋଗ ଦେଇଥିବା ନୀଳମଣି ବାବୁ, ଗଙ୍ଗାଧର ପ୍ରଧାନ ନନ୍ଦିନୀଙ୍କ ମନ୍ତ୍ରୀମଣ୍ଡଳରୁ ଓହରି ଆସିଲେ ଏବଂ ପ୍ରଗତିଦଳ ମନ୍ତ୍ରୀମଣ୍ଡଳ ଗଢ଼ିବା ପାଇଁ ମସୁଧା କଲା । ସେମାନେ ଆସିବା ପରେ, ମନ୍ତ୍ରୀମଣ୍ଡଳ ଭାଙ୍ଗିଯିବା ସମ୍ଭାବନା ଉଜ୍ଜ୍ୱଳ ହୋଇଗଲା । ବିଜୁବାବୁ ଭାବିଥିଲେ ନନ୍ଦିନୀ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲାପରେ ସେ ନିଜେ ମୁଖ୍ୟମନ୍ତ୍ରୀ ହୋଇ ପ୍ରଗତିଦଳ ଶାସନ କରିବ । ତାଙ୍କର ଏଇ ଚାଲ ନନ୍ଦିନୀ ଦେବୀ ଜାଣି ୧୯୭୩ ମସିହା ମାର୍ଚ୍ଚ ପହିଲା ଦିନ ସେ ରାଜ୍ୟପାଳ ଜଟିଙ୍କୁ ଇସ୍ତଫା ଦେଇ ଦେଇ ମନ୍ତ୍ରୀମଣ୍ଡଳ ଭାଙ୍ଗି ଦେବାକୁ ସୁପାରିଶ କଲେ । କାରଣ ସେ ଚାହୁଁ ନ ଥିଲେ ବିଜୁବାବୁଙ୍କ ନେତୃତ୍ୱରେ ପ୍ରଗତି ଦଳ ମନ୍ତ୍ରୀମଣ୍ଡଳ ଗଢ଼ୁ । ବିଜୁବାବୁଙ୍କ ସଙ୍ଗେ ସେତେବେଳେ ସଂଖ୍ୟାଗରିଷ୍ଠ ବିଧାନ ସଭା ସଦସ୍ୟ ଥିବା ଯୋଗୁ ସେ ନିଶ୍ଚିତ ହୋଇଯାଇଥିଲେ ଯେ, ସେ ନିଶ୍ଚିତଭାବେ ମନ୍ତ୍ରୀମଣ୍ଡଳ ଗଢ଼ିବେ ମାତ୍ର ତାଙ୍କ ବିଶ୍ୱାସକୁ ଅବିଶ୍ୱାସରେ ପରିଣତ କରି, ରାଜ୍ୟପାଳ ଜଟି ବିଧାନ ସଭାକୁ ଭାଙ୍ଗି ପୁଣି ରାଷ୍ଟ୍ରପତି ଶାସନ ଜାରୀ କଲେ । ମାର୍ଚ୍ଚମାସ ୩ ତାରିଖରୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ପ୍ରଚଳନ ହେଲା । ଏହା ବିରୁଦ୍ଧରେ ପ୍ରଗତି ଦଳ ଓଡ଼ିଶା ଉଚ୍ଚନ୍ୟାୟାଳୟରେ ରିଟ୍ ଦାୟର କଲେ । ଅକ୍ଟୋବର ୨୨ ତାରିଖ ୧୯୭୩ ମସିହାରେ ଓଡ଼ିଶା ଉଚ୍ଚନ୍ୟାୟାଳୟ ତାଙ୍କ ରାୟରେ କହିଥିଲେ ।

"The court dismissed the writ on the ground that the issue of proclamation is outside the judicial perview but it held that the Governor did not honour well established constitutional conventions in not calling upon the leader of the PRAGATI party to form Governments".

ଓଡ଼ିଶାରେ ପୁଣିଥରେ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହେଲା । ସେତେବେଳକୁ ଓଡ଼ିଶା ବିଧାନ ସଭାର ସଭ୍ୟସଂଖ୍ୟା ୧୪୦ରୁ ବଢ଼ି ୧୪୭ ହୋଇଯାଇଥାଏ । ୧୯୭୪ ମସିହା, ଫେବୃୟାରୀ ମାସ ୨୪ ତାରିଖରେ ନିର୍ବାଚନ ହେଲା ଏବଂ ଏଇ ନିର୍ବାଚନରେ କଂଗ୍ରେସ ୬୯, ଉତ୍କଳ କଂଗ୍ରେସ ୩୫, ସ୍ୱତନ୍ତ୍ର ୨୧ଟି ସ୍ଥାନ ପାଇଥିଲା ବେଳେ ସି.ପି.ଆଇ. ୭, ନିର୍ଦ୍ଦଳୀୟ ୮ଟି ସ୍ଥାନ ପାଇଥିଲେ । ନନ୍ଦିନୀ ଦେବୀ କଂଗ୍ରେସର ନେତୃତ୍ୱ ନେଉଥିଲେ ଏବଂ ସେ ସି.ପି.ଆଇ.ଙ୍କ ସମର୍ଥନରେ ଓଡ଼ିଶାରେ ମନ୍ତ୍ରୀମଣ୍ଡଳ ଗଠନ କଲେ ଏବଂ ମାର୍ଚ୍ଚ ମାସ ୬ ତାରିଖରେ ମୁଖ୍ୟମନ୍ତ୍ରୀଭାବେ ଶପଥ ନେଲେ । ସେ ମୁଖ୍ୟମନ୍ତ୍ରୀ ହେଲାପରେ, ଓଡ଼ିଶା ପୁଲିସ ପ୍ରଶାସନରେ ପୁଣି ଏକ ହଇଚଇ ସୃଷ୍ଟିହେଲା ।

## "୧୯୭୧ ମସିହା କଟକ ଜିଲ୍ଲାରେ ସାମୁଦ୍ରିକ ଝଡ଼"

ଝାରସୁଗୁଡ଼ାରୁ ଆସିଲାପରେ ମୁଁ କଟକ ଜିଲ୍ଲାର ହେଡ୍‌କ୍ୱାଟର ଡି.ଏସ.ପି. ଭାବେ ଜଏନ କଲି । ସେତେବେଳେ କଟକ ଜିଲ୍ଲା ଭାଗ ଭାଗ ହୋଇ ନ ଥାଏ । ଶ୍ରୀ ରବିନାରାୟଣ ମହାପାତ୍ର କଟକ ଜିଲ୍ଲା ଏସ.ପି. । ମୁଁ କଟକ ଜିଲ୍ଲା ସଦର ମହକୁମାରେ ଜଏନ୍ କଲାପରେ, ମୋତେ ଜିଲ୍ଲାର ଆକାଉଣ୍ଟସ୍ ଡି.ଏସ.ପି. ଭାବେ କାମ କରିବାକୁ ନିର୍ଦ୍ଦେଶ ଦିଆଗଲା । ସେତେବେଳକୁ ମୋ ଶାଶୁର ମଧ କଟକ ବଦଳି ହୋଇ ଆସି ଯାଇଥିଲେ । ପ୍ରଥମ କେତେଦିନ ତାଙ୍କ ଘରେ ରହିଲା ପରେ, ମୋତେ ତୁଳସୀପୁର ଉପର କଲୋନୀରେ ଗୋଟିଏ ଘର ମିଳିଗଲା । ମୁଁ କଟକରେ ଜଏନ୍ କଲାପରେ ମୋତେ ପ୍ରାୟ କେନ୍ଦ୍ରାପଡ଼ା ଯିବାକୁ ପଡୁଥିଲା । ସେତେବେଳର ଅତିରିକ୍ତ ଏସ.ପି.ମାନେ କେନ୍ଦ୍ରାପଡ଼ା ସହର ସେପଟକୁ ଯଥା ରାଜନଗର, ତାଳଚୁଆଁ, ଆଳି, କନିକା ଆଡ଼କୁ ଯିବାକୁ ଆଗ୍ରହ ପ୍ରକାଶ କରୁ ନ ଥିଲେ । କାରଣ ଏସବୁ ସ୍ଥାନମାନଙ୍କୁ ଯିବାପାଇଁ ବର୍ଷାଦିନରେ ବାଟ ନ ଥାଏ । ଯୁଆଡ଼େ ଗଲେ ନଈପାରି, ଚାଲି ଚାଲି ଯିବାକୁ ପଡ଼େ । କେତେ ଜାଗାରେ ଡଙ୍ଗା । ଭଲ ରାସ୍ତା ନ ଥିବା ଯୋଗୁ ବର୍ଷାଦିନେ ସାଇକେଲରେ ଯିବା କଷ୍ଟକର । ମୁଁ ଅଗଷ୍ଟ ମାସରେ ଜଏନ୍ କଲାପରେ ପରେ ରାଜନଗର ଉପନିର୍ବାଚନ କାର୍ଯ୍ୟ ଆରମ୍ଭ ହୋଇଗଲା । ରାଜନଗରୁ ପ୍ରହଲ୍ଲାଦ ମଲ୍ଲିକ ଜୟଯୁକ୍ତ ହୋଇଥିଲେ । ମାତ୍ର ସେ ପଟ୍ଟାମୁଣ୍ଡାଇ ସ୍ଥାନଟି ରଖି, ରାଜନଗର ନିର୍ବାଚନ ମଣ୍ଡଳୀରୁ ଇସ୍ତଫା ଦେଇ ସେଇଠୁ ବିଜୁବାବୁଙ୍କୁ ଦଳୀୟ ପ୍ରାର୍ଥୀ କଲେ । ଆଗରୁ ସାଧାରଣ ନିର୍ବାଚନରେ ବିଜୁବାବୁ ଚାରୋଟି ସ୍ଥାନରୁ ଠିଆ ହୋଇ ହାରିଥିଲେ । ନନ୍ଦିନୀ ଶତପଥୀ କେନ୍ଦ୍ରରୁ ଆସି, ଏଇ ନିର୍ବାଚନ ପ୍ରଚାରରେ କଂଗ୍ରେସ ପାଇଁ ଜୋରଦାର ପ୍ରଚାର କଲେ ଏବଂ ବିଜୁବାବୁଙ୍କୁ ହରାଇବା ତାଙ୍କର ମୁଖ୍ୟ ଲକ୍ଷ୍ୟଥିଲା । ମୁଁ ରାଜନଗର ଉପନିର୍ବାଚନ ଅଞ୍ଚଳରେ ଆଇନ ଶୃଙ୍ଖଳା ଦାୟିତ୍ୱରେ ରହିଲି ଏବଂ କେନ୍ଦ୍ରାପଡ଼ାରେ ପ୍ରାୟ ରହିବାକୁ ପଡ଼ିଲା । ନିର୍ବାଚନ ପ୍ରଚାର ଖୁବ୍ ସରଗରମ୍‌ରେ ଚାଲିଥାଏ । ଜାନକୀ ପଟ୍ଟନାଏକ କେନ୍ଦ୍ରାପଡ଼ାରେ ଥା'ନ୍ତି । ଦିନେ ରାତି ଅଧ ବେଳକୁ ଖବର ଆସିଲା ମାର୍ଶାଘାଇ ପାଖ ଗଗୁଆ ଗାଁରେ କାହ୍ନୁ ଲେଙ୍କାକୁ ଦଳେ ଉତ୍କଳ କଂଗ୍ରେସ ସମର୍ଥକ ଘେରାଇ କରି ରଖିଛନ୍ତି । ରାତିରେ ଜାନକୀବାବୁଙ୍କ ଠାରୁ ଖବର ପାଇ ଗୋଟେ ପୁଲିସ୍ ପିକ୍‌ପରେ ଫୋର୍ସ ନେଇ ସେ ଗାଁ ପାଖରେ ପହଞ୍ଚିଲା ବେଳକୁ ଗାଁ ଲୋକମାନେ ତାଙ୍କୁ ପେଟ୍ରୋଲମାକ୍ସ ଲାଇଟ୍ ଲଗାଇ ଏକ ପ୍ରକାର ଶୋଭାଯାତ୍ରାରେ ଗାଁ ଭିତରୁ ଏକ୍ସପ୍ରେସ୍ ହାଇୱେ ଆଡ଼େ ଆଣୁଥିଲେ । ଉପନିର୍ବାଚନରେ ବିଜୁବାବୁ ବହୁ ଅଧିକ ଭୋଟରେ ଜୟଯୁକ୍ତ ହେଲେ ଏବଂ ଓଡ଼ିଶା ସରକାରଙ୍କ ଯୋଜନା ବିଭାଗର ଅଧକ୍ଷ ହେଲେ ।

ବିଜୁବାବୁ ରାଜନଗର ଉପନିର୍ବାଚନରେ ବିଜୟୀ ହେବାର ମାତ୍ର ଅଳ୍ପ ଦିନ ପରେ କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍‌ର ରାଜକନିକା, ମହାକାଳପଡ଼ା, ପଟ୍ଟାମୁଣ୍ଡାଇ ବ୍ଲକରେ ଅକ୍ଟୋବର ମାସରେ ସାମୁଦ୍ରିକ ଝଡ଼ ହୋଇ ବହୁଲୋକ କ୍ଷତିଗ୍ରସ୍ତ ହେଲେ । ପ୍ରାୟ ୧୦,୦୦୦ ଲୋକ

ମୃତ୍ୟୁବରଣ କଲେ । ସାମୁଦ୍ରିକ ଝଡ଼ର ପ୍ରକୋପ ମଧ କଟକ ସହରରେ ପଡ଼ିଥିଲା । ତାରିଖ ଦିନ ରାତ୍ରିରେ କଟକ ସହରରେ ପ୍ରବଳ ବାତ୍ୟା ହେଲା ଏବଂ ଏଇ ବାତ୍ୟାରେ ସହରର କେତେକ ଗଛ ଉପୁଡ଼ି ପଡ଼ିବା ବେଳେ ବିଜୁଳି ଖୁଣ୍ଟ ଭାଙ୍ଗିଯାଇ ରାସ୍ତାଘାଟ ବନ୍ଦ ହୋଇଗଲା । ପରଦିନ ସକାଳୁ ପବନ କମିଥିଲେ ମଧ ବେଳେବେଳେ ବର୍ଷା ହେଉଥାଏ । ପବନ ବି ଜୋରରେ ବହୁଥାଏ । ମୁଁ ବହୁତ କଷ୍ଟରେ ବୁଲି ବୁଲି ପୁଲିସ୍ ଅଫିସ୍‌କୁ ଆସିଥିଲି । ଚାରିଟା ବେଳକୁ ଏସ.ପି. ମୋତେ ତାଙ୍କ ରେସ୍ ଅଫିସକୁ ଡକାଇ ପଠାଇଲେ । ମୁଁ ପହଞ୍ଚିଲାବେଳକୁ ସେଠାରେ ଅତିରିକ୍ତ ଏସ.ପି. ବି.ବି. ସିଂହ, ସିଟି ଡି.ଏସ.ପି ଗୋଦାବରୀଶ ମିଶ୍ର ଥା'ନ୍ତି । ଏସ.ପି. ମିଃ ମହାପାତ୍ର କହିଲେ ଯେ ସାମୁଦ୍ରିକ ଝଡ଼ ଏବଂ ଜୁଆର ମାଡ଼ି ଆସିବା ଯୋଗୁ ପାରାଦ୍ୱୀପ, ମହାକାଳପଡ଼ା, କେନ୍ଦ୍ରାପଡ଼ା ଅଞ୍ଚଳରେ ବହୁ କ୍ଷତି ହୋଇଛି । ବେତାର କେନ୍ଦ୍ରର ଏରିୟଲ ଲାଗିଥିବା ଖୁଣ୍ଟମାନ ଉପୁଡ଼ିଥିବା ଯୋଗୁ କିଛି ସଠିକ୍ ଖବର ପହଞ୍ଚି ପାରୁ ନ ଥାଏ । ତେଣୁ ସେ କହିଲେ, ତା ପରଦିନ ସକାଳୁ ମୁଁ କେନ୍ଦ୍ରାପଡ଼ା ଏବଂ ବି.ବି.ସିଂହ ପାରାଦ୍ୱୀପ ଯାଇ ଅବସ୍ଥା ଦେଖି ଆସିବୁ । ସାଙ୍ଗରେ କିଛି ପୁଲିସ୍ କନେଷ୍ଟବଲ, କୁରାଢ଼ୀ ନେବାକୁ କହିଥିଲେ । ପରଦିନ ଭୋର ୪ଟାରେ ମୁଁ କଟକରୁ ଚଣ୍ଡୀଖୋଲ ଦେଇ କେନ୍ଦ୍ରାପଡ଼ା ବାହାରିଲି । ମୁଁ ବଡ଼ଚଣା ଥାନା ପାଖେ ପହଞ୍ଚି ଦେଖିଲି, ଥାନାର ଛାତ ନାହିଁ । ଥାନା ପରିସରରେ ଗଛମାନ ଉପୁଡ଼ି ପଡ଼ିଛି । ବେତାର କେନ୍ଦ୍ରର ତାର ଛିଡ଼ିପଡ଼ିଛି । ସେଠାରେ କେତେ ସମୟ ରହି ଥାନା ବାବୁଙ୍କ ଠାରୁ ତାଙ୍କ ଅଞ୍ଚଳ ଖବର ବୁଝିବାପରେ କେନ୍ଦ୍ରାପଡ଼ା ଆଡ଼େ ଏକ୍ସପ୍ରେସ୍ ହାଇୱେ ଦେଇ ବାହାରିଲି । ସକାଳ ସାତଟା ବେଳକୁ କେନ୍ଦ୍ରାପଡ଼ା ସହର ଉପକଣ୍ଠରେ ପହଞ୍ଚିଲି । ସହର ଉପକଣ୍ଠ ତିନିମୁହାଣୀ ଛକ ପାଖରେ ଗୋଟେ ପୁରୁଣା ବିରାଟକାୟ ବରଗଛ ଉପୁଡ଼ି ପଡ଼ିଥିବା ଯୋଗୁ ସହର ଭିତରକୁ ଯିବାକୁ ବାଟ ନ ଥାଏ । କିଛି ବାଟ ବୁଲି, ଚାଲି ଚାଲି କେନ୍ଦ୍ରାପଡ଼ା ସହରକୁ ଗଲି । ସହରର ପ୍ରତ୍ୟେକ ଚାଳଘରର ଚାଳ ଉଡ଼ିଯାଇଥାଏ । ଟିଣ ଛାତ ମଧ କେତେସ୍ଥାନରେ ଉଡ଼ି ପଡ଼ିଥିଲା । ମୁଁ ଇନସ୍‌ପେକ୍ଟର ଅଫିସରେ ପହଞ୍ଚିଲା ବେଳକୁ କେନ୍ଦ୍ରାପଡ଼ାର ମୁନିସିପାଲିଟି ଅଧକ୍ଷ ବେଦୁ ଅଗ୍ରୱାଲ ଆସି ପହଞ୍ଚିଲେ । ତାଙ୍କଠାରୁ ଶୁଣିଲି କେନ୍ଦ୍ରାପଡ଼ା ସହରରେ କେହି ମୃତ୍ୟୁବରଣ କରି ନାହାନ୍ତି । ଯାହା ସବୁ ଘରର ଚାଳ ଉଡ଼ିଯାଇଛି । ବିଜୁଳି ଖୁଣ୍ଟ, ଗଛ ଭାଙ୍ଗି ପଡ଼ିଛି । ସେମାନେ ଗତ ସନ୍ଧ୍ୟାରେ ଚୁଡ଼ା ଚାଉଳ ବାଣ୍ଟି ରିଲିଫ୍ ଲୋକମାନଙ୍କୁ ଦେଇ ସାରିଲେଣି ।

ତାଙ୍କ ସଙ୍ଗେ କଥାବାର୍ତ୍ତା ପରେ, ମୁଁ କେନ୍ଦ୍ରାପଡ଼ା ଇନ୍‌ସପେକ୍ଟର ପଟ୍ଟନାୟକଙ୍କୁ ଜମୁକଥା ପଚାରିଲି । ସେତେବେଳେ ଜମୁ ଫାଣ୍ଡି ଗୋଟେ ତିନିମହଲା ଭଙ୍ଗା ବ୍ରିଟିଶ ଅମଳ କୋଠାରେ ଚାଲୁଥାଏ । ମୁଁ ଭାବିଲି, ସେ କୋଠାଘର ନିଶ୍ଚୟ ଭାଙ୍ଗି ପଡ଼ିଥିବ ଏବଂ ଆମର ପୁଲିସ୍ ଷ୍ଟାଫ୍ କ୍ଷତିଗ୍ରସ୍ତ ହୋଇ ଥାଇପାରନ୍ତି । ତେଣୁ ଇନସ୍‌ପେକ୍ଟର ଏବଂ ମୁଁ ଦୁଇଜଣ, କିଛି ବାଟ ଚାଲି ଚାଲି ଗଲାପରେ, ଜିପ୍‌ରେ ମାର୍ଶାଘାଇ ଆଡ଼େ ବାହାରିଲୁ । ମାର୍ଶାଘାଇ ଗଲାବେଳେ ଦେଖିଲୁ ଗଛ ଭାଙ୍ଗିଛି, ମାତ୍ର ସେ ପର୍ଯ୍ୟନ୍ତ କେହି ଲୋକ ରାସ୍ତାରେ ଦେଖା ଯାଉ ନ ଥାନ୍ତି । ମୋ ଜିପ୍ ମାର୍ଶାଘାଇ କେନାଲ ବନ୍ଧର ଫାଟକ ପାଖେ ଠିଆ ହୋଇ ଚଉକିଦାରକୁ କେନାଲ ବନ୍ଧ ଗେଟ୍

ଖୋଲିବା ପାଇଁ ଅପେକ୍ଷାରେ ଥାଏ । ଏଇ ସମୟରେ ଦେଖିଲି, ଗୋଟେ/ ଷ୍ଟେସନୱାଗନ୍ ଏକ୍ସପ୍ରେସ୍ ହାଇୱେରୁ ଗଡ଼ି ସେଇଆଡ଼କୁ ଆସିଲା । କିଛି ସମୟପରେ ମୋ ଜିପ୍ ପଛପଟେ ସେ ଗାଡ଼ି ରହିଲାପରେ ମୁଁ ଦେଖିଲି ବିଜୁ ପଟ୍ଟନାୟକ ଗାଡ଼ି ଆଗରେ ବସିଛନ୍ତି । ମୁଁ ଓହ୍ଲାଇ ତାଙ୍କୁ ଦେଖାକଲି । ସେ ମୋତେ ଆଗରୁ ଜାଣିଥିଲେ । ମୁଁ ଜମ୍ବୁ ଯିବା ଶୁଣି, ସେ ମୋତେ କେନ୍ଦ୍ରାପଡ଼ା କଥା ପଚାରି, ସେଠା ଅବସ୍ଥା ବୁଝି ନେଲାପରେ, କହିଲେ, ''ଚାଲ୍ ଜମ୍ବୁ ଯିବା'' । ସେ ଆଗେ ଆଗେ ଗଲେ, ମୋ ଜିପ୍ ପଛେ ପଛେ ଗଲା । ଆମେ ମହାକାଳପଡ଼ା ପାଖେ ପହଞ୍ଚିଛୁ, କେନାଲ ସେପଟୁ ପ୍ରାୟ ଷାଠିଏ ସତୁରୀ ଲୋକ ହାତ ଉଠାଇ ପାଟି କଲେ । ବିଜୁ ବାବୁ ଗାଡ଼ି ରଖିବାରେ ସେମାନେ କେନାଲ ପାର ହୋଇ ଗାଡ଼ି ପାଖେ ପହଞ୍ଚି କହିଲେ ଯେ ତାଙ୍କ ଗାଁରୁ ଛବିଶ ଜଣ ଲୋକ ଜଙ୍ଗଲକୁ କାଠ ଆଣିବାକୁ ଯାଇ ସମୁଦ୍ର ଜୁଆରରେ ଭାସିଗଲେ । ଗାଁର ଏବଂ ପାଖ ଗାଁରୁ ବହୁତ ଗାଈଗୋରୁ, ମଣିଷ ମରିଛନ୍ତି । ପ୍ରଥମେ ବିଜୁବାବୁ କିଛି ବିଶ୍ୱାସ କଲେନି । ସେମାନଙ୍କ ମଧ୍ୟରୁ ଦୁଇଜଣ କହିଲେ ଯେ ତାଙ୍କ ସାଥିମାନେ ମରିଛନ୍ତି । ବିଜୁବାବୁ କହିଲେ ''ମୋ ଗାଡ଼ିରେ ବସ୍, ଚାଲ ସେମାନେ କେଉଁଠି ମରିଛନ୍ତି କହିବ'' । ସେ ଦୁଇଜଣଙ୍କୁ ସେ ତାଙ୍କ ଷ୍ଟେସନ୍ ଓ୍ୟାଗନରେ ବସାଇଲେ ଏବଂ ଚାଲିଲେ । କିଛି ବାଟ କେନାଲ ବନ୍ଧରେ ଗଲାପରେ ଆମେ ଦେଖିଲୁ, କେନାଲ ବନ୍ଧରେ ଶହ ଶହ ଗୋରୁଙ୍କ ଶବ ଲାଗିଥାଏ । ଜମ୍ବୁ ଦୁଇ କିଲୋମିଟର ଅଛି, ଆଉ ଗାଡ଼ି ନଯିବାରୁ, ଆମେ ଚାଲି ଚାଲି ଗଲୁ । ଜମ୍ବୁ ପାଖରେ ଦେଖିଲୁ ଗୋଟେ ବଡ଼ ପାୱାର ଲଞ୍ଚ ପ୍ରାୟ ୨୦୦ ମିଟର ଦୂରରେ ବାଲିକୁଦ ଉପରେ ପଡ଼ିଛି । ଲୋକମାନେ କହିଲେ ଯେ, ସମୁଦ୍ର ଜୁଆର ୨୦ଫୁଟ ଉଚ୍ଚରେ ଆସି ଡଙ୍ଗା, ଲଞ୍ଚ ଭସାଇ ନେଇ ସେଇଠି ଲଗାଇ ଦେଇଛି । ବିଜୁବାବୁ ଡଙ୍ଗା ମଗାଇ, ସେପଟକୁ ଯିବାକୁ କହିବାରେ, ଇନିସପେକ୍ଟର ପଟ୍ଟନାଏକ, ଡଙ୍ଗା ଯୋଗାଡ଼ କରି, ଜମ୍ବୁ ପାଖ ନଦୀପାର ହୋଇ ଆରପଟକୁ ଗଲୁ । ଡଙ୍ଗାରେ ନଈ ପାର ହେଲାବେଳେ, ମଣିଷ ଶବ, ଗୋରୁଗାଈଙ୍କ ଶବ ବହୁ ସଂଖ୍ୟାରେ ଭାସି ଯାଉଥିବାର ଦେଖି ବିଜୁବାବୁ ବିଶ୍ୱାସ କଲେ, ପ୍ରବଳ ସାମୁଦ୍ରିକ ଝଡ଼ ହୋଇଛି ଏବଂ ବହୁ ଲୋକ ମରିଛନ୍ତି । ଜମ୍ବୁପଟେ ପହଞ୍ଚି ଆମେ ଚାଲି ଚାଲି ପୁଲିସ ଫାଣ୍ଡି ପାଖରେ ପହଞ୍ଚିଲୁ । ଗଲାବେଳେ ବାଟରେ ଗୋଟିଏ ପରିବାରର ୬ଜଣ ଲୋକ କାଛପଡ଼ି ମରିବାର ଦେଖିଲୁ । ସେ ପର୍ଯ୍ୟନ୍ତ ଶବ ସବୁ ସେମିତି ପଡ଼ିଥାଏ । ମଣିଷ ଶବକୁ ଲାଗି ଚାରିପାଞ୍ଚୋଟି ଛେଳି, ମେଣ୍ଢା ମରି ପଡ଼ିଥାନ୍ତି । ଗାଁ ଲୋକମାନେ କହିଲେ, ଗାଁ ଭିତରେ ୨୧ଜଣ ଲୋକ ମରିଛନ୍ତି । ଫାଣ୍ଡି ପାଖରେ ପ୍ରାୟ ୩୦୦ ଲୋକ ଆଶ୍ରୟ ନେଇଥାନ୍ତି । ସେତେବେଳକୁ ଦୁଇଦିନ ଧରି ସେମାନେ କିଛି ଖାଇ ନ ଥିଲେ । ମୁଁ ଦେଖିଲି ଆମ ପୁଲିସ ଫାଣ୍ଡି ଘରର କିଛି ହୋଇନି । ସେ ପୁରୁଣା ଘର ସେମିତି ଅଛି ଏବଂ ଆମ ଲୋକମାନେ ଠିକ୍ ଅଛନ୍ତି । ସେଠାକାର ସବ୍‌ଇନିସ୍‌ପେକ୍ଟର ରବି ସିଂହ ସାମୁଦ୍ରିକ ଝଡ଼ ଏବଂ ସମୁଦ୍ର ଢେଉରେ ଭାସି ଯାଇଥିବା ଲୋକମାନଙ୍କ କଥା ଯାହା ଶୁଣିଥିଲା ତାକୁ ବିଜୁବାବୁଙ୍କ ଆଗେ କହିଲା ଏବଂ ପୁଲିସ ପାଖେ ଯାହାଥିଲା ଫାଣ୍ଡିରେ ଆଶ୍ରୟ ନେଇଥିବା ଲୋକଙ୍କ ମଧ୍ୟରେ ବାଣ୍ଟି ଦେଇଛି । ବିଜୁ ବାବୁ କିଛି

ସମୟ ପାଇଁ ପୁଲିସ ଫାଣ୍ଡିର ଛାତରେ ବସିଲେ । ଖଣ୍ଡିଏ ଇଣ୍ଡିଆ କିଙ୍ଗ ସିଗାରେଟ୍ ପିଇଲେ । ମୋତେ କହିଲେ ସେ ଭୁବନେଶ୍ୱର ଫେରି ଯାଇ ଏ ଘଟଣା କ୍ୟାବିନେଟ୍ ଡକାଇ କହିବେ । ମୋତେ କହିଲେ "ତୁ ରାଜନଗର ଯାଇ, ସେଠା ଖବର କ'ଣ ମୋତେ ୱାରଲେସ୍‌ରେ ଜଣାଇବୁ" । ସେତେବେଳ ପର୍ଯ୍ୟନ୍ତ ପୃଥିବୀବାସୀ ଜାଣି ନଥିଲେ ଯେ, ଓଡ଼ିଶାର ଉପକୂଳରେ ଏତେବଡ଼ ସାମୁଦ୍ରିକ ଝଡ଼ ହୋଇ ଦଶହଜାରରୁ ଅଧିକ ଲୋକ ମରିଛନ୍ତି ବୋଲି । ବିଜୁ ବାବୁ ଜମ୍ବୁରୁ ଭୁବନେଶ୍ୱର ଫେରିଗଲେ । ଆମେ ଦୁହେଁ ଜମ୍ବୁରୁ କେନ୍ଦ୍ରାପଡ଼ା ଫେରି କେନ୍ଦ୍ରାପଡ଼ାରୁ ପଟ୍ଟାମୁଣ୍ଡାଇ ଦେଇ ରାଜନଗର ଆଡ଼େ ବାହାରିଲୁ । ପଟ୍ଟାମୁଣ୍ଡାଇ ପାର ହୋଇ ଅଳଭା ପାଖେ ପହଞ୍ଚିଲା ପରେ ଜିପ୍ ଯିବା କଷ୍ଟକର ହେଲା । ମାଟି ବନ୍ଧ । ଚିକିଟା କାଦୁଅ । ବହୁତ କଷ୍ଟରେ ଜିପ୍‌ରେ ଫୋର ହ୍ୱିଲି ପକାଇ ରାଜନଗର ଗଡ଼ା ପାଖେ ପହଞ୍ଚିଲୁ । ସେଇ ଗଡ଼ାଠାରୁ ରାଜନଗର ନଦୀଘାଟ ପ୍ରାୟ ତିନି କିଲୋମିଟର । ସେ ରାସ୍ତାରେ ସେ ପର୍ଯ୍ୟନ୍ତ ତିନି ଫୁଟରୁ ଚାରିଫୁଟ ପର୍ଯ୍ୟନ୍ତ ପାଣିଥାଏ । ଗଡ଼ା ପାଖରୁ ଜଣେ ଗାଁ ଲୋକଙ୍କୁ ଧରି, ଘାଟ ପର୍ଯ୍ୟନ୍ତ ପାଣିରେ ପଶି ପଶି ଗଲୁ । ଖୋଳା ନଦୀ ଘାଟ ପାରି ହେଲେ, ସେ ପଟେ ରାଜନଗର ଥାନା । ନଦୀ ବନ୍ଧ ଏପଟୁ ଥାନା ଦିଶୁଥାଏ । ମୁଁ ଉପନିର୍ବାଚନ ସମୟରେ ଆସିଥିଲା ବେଳେ ଏଇ ନଦୀଘାଟ ପାଖେ ସରକାରୀ ଲଞ୍ଚ ଡଙ୍ଗା ଥିଲା । ଘାଟ ପାଖେ ଦୁଇ ଚାରୋଟି ଘର, ଧାନକଳ ଇତ୍ୟାଦି ଥିଲା । ଏବେ କିଛି ନାହିଁ । ଆମକୁ ଦେଖି, ସେଇ ଭଙ୍ଗାଘର ଭିତରୁ ଜଣେ ଲୋକ ଡାକି କହିଲା ରାଜନଗର ଥାନା ବାବୁ ସେଇଠି ପଡ଼ିଛନ୍ତି । ଛାତିଏ ପାଣିରେ ପଶି ମୁଁ ସେଇଠିକି ଗଲି । ଥାନାବାବୁ କୁଳମଣି ସାହୁଙ୍କ ଅବସ୍ଥା ସାଂଘାତିକ । ସେ ମୃତ୍ୟୁ ସଙ୍ଗେ ଦୁଇ ରାତ୍ରି ଦୁଇ ଦିନ ଲଢ଼େଇ କରି ସେଇଠି ପଡ଼ିଛନ୍ତି । ତାଙ୍କୁ ସେଠାରୁ ଲୋକମାନଙ୍କ ସାହାଯ୍ୟରେ ବାହାର କରି ଜିପ୍ ପର୍ଯ୍ୟନ୍ତ ଆଣିବାର ବନ୍ଦୋବସ୍ତ କଲୁ । ଲୋକମାନଙ୍କ ପାଖରୁ ଯାହା ଶୁଣିଲୁ, ରାଜନଗରର ତଳ ଅଞ୍ଚଳରେ ବହୁତ ଗାଁ ଭାସି ଯାଇଛି । ସଠିକ୍ ମୃତାହତ ଖବର ମିଳିଲାନି । ଥାନାବାବୁଙ୍କ ପାଖରୁ ତାଙ୍କ ଅବସ୍ଥା ଶୁଣିଲି । ସେ ରାଜନଗରରୁ କଟକ ଯିବାପାଇଁ ନଈପାର ହୋଇ ଘାଟ ପାଖକୁ ବାତ୍ୟାପୂର୍ବ ଦିନ ସନ୍ଧ୍ୟାରେ ଆସିଥିଲେ । ଘାଟରୁ ପ୍ରତ୍ୟେକଦିନ ସନ୍ଧ୍ୟାରେ ଗୋଟେ ଦିଆସିଲି ଖୋଳ ପରି ବସ୍ କେନ୍ଦ୍ରାପଡ଼ା ଯାଏ - ସେଇଠୁ କଟକ ଯିବାକୁ ଅଲଗା ବସ୍ । ସେ ସେଇ ବସରେ ଯିବାପାଇଁ ଅପେକ୍ଷା କରିଥିଲା ବେଳେ, ଆସ୍ତେ ଆସ୍ତେ ପବନ ବହିବାକୁ ଆରମ୍ଭ କଲା । ଡ୍ରାଇଭର କହିଲା ଟିକିଏ ପବନ କମିଲେ ଯିବା । କିନ୍ତୁ ପବନ କମିଲାନି, ଆସ୍ତେ ଆସ୍ତେ ବଢ଼ିବାରେ ଲାଗିଲା । ସନ୍ଧ୍ୟାବେଳକୁ ପବନର ଗତି ଅଧିକ ହେଲା ଏବଂ ଖୋଳାନଈ ଜୁଆରୀଆ ହୋଇ ନଦୀବନ୍ଧ ପାଖକୁ ପାଣି ଛୁଇଁଲା । ସେ ଥାନାକୁ ଫେରି ପାରିଲେ ନାହିଁ । କାରଣ ଡଙ୍ଗା ବାଲା ପବନ ଯୋଗୁଁ ଡଙ୍ଗା ଫିଟାଇ ନ ଥିଲେ । ନଦୀପାଣି ସନ୍ଧ୍ୟା ସାତଟାକୁ ବନ୍ଧ ଟପିଲା । ବସ୍‌ରେ ଯିବା ଲୋକମାନେ ପାଖ ଗୋଦାମ ଘର ପିଣ୍ଡାରେ ବସିଲେ । ରାତି ଆଠଟା ନଅଟା ବେଳକୁ ପିଣ୍ଡା ବୁଡ଼ି ଘରେ ପାଣି ପଶିଲା । ସେମାନେ କେତେଜଣ ଘରେ ଚଉକି ପକାଇ ତା ଉପରେ ଠିଆହେଲେ । ଅଧରାତିକୁ ଘର ଭିତରେ

ପାଣିବେକେ । ସେମାନେ ଘର ଓରାରେ ବସିଲେ । ପାହାନ୍ତିଆ ପ୍ରହରକୁ ଘର ଭାସିଲା । ସେମାନଙ୍କ ମଧ୍ୟରୁ ଦୁଇଜଣ ଘରୁ ବାହାରିଗଲା ବେଳେ ପ୍ରବଳ ଜୁଆର ପାଣି ଏବଂ ପବନ ମାଡ଼ରେ ନଦୀ ଭିତରକୁ ଭାସିଗଲେ । ଥାନାବାବୁ ଆଉ ଦୁଇଜଣ ସେଇ ଚାଳରେ ବସି ଭାସି ଭାସି ଗଲା ବେଳେ ଘାଟଠାରୁ ଗୋଟେ କିଲୋମିଟର ଦୂରରେ ତାଙ୍କ ଚାଳ ଗୋଟେ ତାଳଗଛରେ ଲାଗି ଅଧା ଭାଙ୍ଗି ଭାସିଗଲା । ସେଇ ଅଧାଭଙ୍ଗା ଘରର ଚାଳକୁ ଧରି ସେ ଦୁଇଜଣ ରହିଗଲେ । ଦିନଟା ଯାକ ପବନ, ପାଣିମାଡ଼ରେ ସେମାନେ ମରୁମରୁ ବଞ୍ଚିଗଲେ । ଚାଳ ଉପରେ ବସିଥିଲା ବେଳେ ଦୁଇଟି ବଡ଼ ବିଷଧର ସାପ ତାଙ୍କ ସାଙ୍ଗରେ ଥିଲେ । ପବନ ଛାଡ଼ିଲାପରେ ସମୁଦ୍ର ଜୁଆର ପାଣି କମିଲା । ଦିନକ ପରେ ଘାଟର ଘାଟିଆ ତାକୁ ଉଦ୍ଧାର କରି ସେଇଠି ରଖିଥାନ୍ତି । ତାଙ୍କର ଟୋପି ଭାସିଯାଇଥାଏ । ମାସକ ପରେ ପ୍ରାୟ ଆଠ କିଲୋମିଟର ତଳୁ ଗୋଟିଏ ଗାଁର ଗ୍ରାମରକ୍ଷୀ ବଡ଼ବାବୁଙ୍କ ଟୋପିକୁ (ସୋଲଟୋପି) ଚିହ୍ନି ଆଣିକରି ଥାନାରେ ଦେଇଥିଲା । ମୁଁ କୁଳମଣି ସାହୁଙ୍କୁ ଧରି, ସେ ଦିନ କେନ୍ଦ୍ରାପଡ଼ା ଦେଇ କଟକ ଫେରିଲି । ସାହୁ କେନ୍ଦ୍ରାପଡ଼ାରେ ଚିକିତ୍ସା ପାଇଁ ରହିଲା । କଟକରେ ପହଞ୍ଚି ଏସ.ପି.ଙ୍କୁ ସବୁ ଘଟଣା କହିଲି । ଏସ.ପି. ମୋତେ ସାଙ୍ଗରେ ନେଇ ଆଇ.ଜି. ବ୍ରଜ ବିହାରୀ ମିଶ୍ରଙ୍କ ପାଖକୁ ନେଲେ । ଆଇ.ଜି. ସେଦିନ ଉପରବେଳା ଭୁବନେଶ୍ୱର ଯାଇଥିଲେ ଏବଂ ସ୍ୱତନ୍ତ୍ର କ୍ୟାବିନେଟ୍ ମିଟିଂରେ ସେଦିନ ବିଜୁବାବୁ କହିଥିଲେ ଯେ, ସେ କେବଳ ଜଣେ ଡି.ଏସ.ପି. ଏବଂ ଇନିସ୍‌ପେକ୍ଟରଙ୍କୁ ଜମୁ ଅଞ୍ଚଳରେ ଦେଖିଥିଲା ବେଳେ କୌଣସି ବି.ଡ଼ି.ଓ. କିମ୍ବା ତହସିଲଦାରଙ୍କୁ ଦେଖି ନ ଥିଲେ । ମୋ ନାମ ନେଇ ସେ ମଧ୍ୟ ମିଟିଂରେ କହିଥିଲେ । ଆଇ.ଜି. ମିଃ ମିଶ୍ର ମୋତେ କହିଲେ, ''ତୁମ ଯୋଗୁ ପୁଲିସ୍‌ର ମାନ ରହିଗଲା । ବିଜୁ ବାବୁ ନିଜେ ତୁମର ପ୍ରଶଂସା କରୁଥିଲେ ।'' ସେଦିନ କ୍ୟାବିନେଟ୍ ମିଟିଂପରେ ବିଜୁବାବୁ ସାମୁଦ୍ରିକ ଝଡ଼ରେ ଦୁର୍ଦ୍ଦଶାଗ୍ରସ୍ତ ଲୋକପାଇଁ ସାରା ପୃଥିବୀର ସାହାଯ୍ୟ ଲୋଡ଼ିଥିଲେ । ପରଦିନ ସକାଳୁ କିଛି ଚୁଡ଼ା ଚାଉଳ କିରୋସିନି ଧରି ମୁଁ ପୁଣି ରାଜନଗର ଗଲି । ମୋ ସାଙ୍ଗରେ କଟକ ଜିଲ୍ଲାର ଡେଭଲପମେଣ୍ଟ ଅଫିସର ମିଃ ପୂଜାରୀ ମଧ୍ୟ ଗଲେ । ଆମେ ରାଜନଗର ଘାଟରୁ ଗୋଟିଏ ପାଞ୍ଚ ହର୍ସ ପାୱାର ଲଞ୍ଚରେ ବସି ଖୋଲା ନଦୀରେ ଗୁପ୍ତି ଗଲୁ । ଗଲାବେଳକୁ ଘାଟ ପାଖେ ଦିନ ୧୧ଟା ହୋଇଥିଲା । ସନ୍ଧ୍ୟାବେଳକୁ ଫେରି ଆସିବୁ ବୋଲି କୁହାଯାଇଥିଲା । ଲଞ୍ଚରେ ଚୁଡ଼ା ଚାଉଳ କିଛି ଧରି ଥାଉ । ବିସ୍କୁଟ୍ କିଛିଥାଏ । ଲଞ୍ଚରେ ଗଲାବେଳେ ନଦୀକୂଳରେ ଲୋକମାନଙ୍କର ଆକୁଳ କାନ୍ଦଣା ଶୁଣୁଥିଲୁ । ସମସ୍ତେ ହାତ ପତାଇ ସାହାଯ୍ୟ ମାଗୁଥାନ୍ତି । ମାତ୍ର ଆମ ପାଖରେ ଯଥେଷ୍ଟ ଜିନିଷ ନ ଥିବାରୁ ଆମେ ଲଞ୍ଚ ଲଗାଇବାକୁ ସାହାସ କରୁ ନ ଥାଉ । ନଦୀରେ ବୁଲି ବୁଲି ଗୁପ୍ତିରେ ପହଞ୍ଚିଲା ବେଳକୁ ରାତ୍ରି ଏଗାର । ବାଟରେ ଲଞ୍ଚ ମଧ୍ୟ କିଛି ସମୟ ପାଇଁ ଖରାପ ହୋଇଥିଲା । ଗୁପ୍ତିରେ ପହଞ୍ଚିଲାପରେ ଲଞ୍ଚ ଆଉ ଫେରି ପାରିବନି ବୋଲି ଲଞ୍ଚ ଚାଳକ କହିଲା । ଗୁପ୍ତିରେ ରେଭିନ୍ୟୁ ଇନିସ୍‌ପେକ୍ଟର ଅଫିସ୍ ଥାଏ । ତୋଫାନ, ଏବଂ ସମୁଦ୍ର ଜୁଆରରେ, ତାର ଛାତ ଉଡ଼ି ଯାଇଥାଏ । ଆମେ ପହଞ୍ଚିଲା ପରେ, ଆର. ଆଇ. ଆଉ ଜଣେ ଦୁଇଜଣ

ଲୋକ ଉଠି ଆସିଲେ । ସେମାନେ ମଧ ତିନି ଚାରିଦିନ ହେବ ଖାଇ ନଥାନ୍ତି । ଆମେ ଦୁହେଁ ପ୍ରଥମ ବାହାର ଲୋକ ସେଠି ପହଞ୍ଚିଥିଲୁ । ଆର୍.ଆଇଙ୍କ ଠାରୁ ଶୁଣିଲୁ, ଗୁପ୍ତି ଅଞ୍ଚଳର ସାତଭାଇୟା ଗାଁର ୪୯୭ ଜଣ ଲୋକଙ୍କ ମଧରୁ ପ୍ରାୟ ୪୫୦ ଜଣ ଲୋକ ସମୁଦ୍ର ଜୁଆରରେ ଭାସିଗଲେ । ସେଇପରି, ବଗପାଟିଆ ଏବଂ ଅନ୍ୟ ଗାଁ ସବୁ ସମୂଳେ ଭାସି ଯାଇଛି ବୋଲି ଶୁଣିଲୁ । ଆର୍.ଆଇ ସେଇ ବନ୍ଧ ପାଖରେ ପଡ଼ିଥିବା ତିନି ଚାରୋଟି ଶବ ଦେଖାଇଲେ । ଗୋଟେ ବାଘ୍ହା, ଦୁଇ ଚାରୋଟି ହରିଣ, ଗୋରୁ ଗାଈ, ମଣିଷ ମରିପଡ଼ିଥିବାର ଦେଖିଲୁ । ସମୁଦ୍ର ଜୁଆରରେ ଭିତର କନିକା ଜଙ୍ଗଲରୁ ବହୁ ବନ୍ୟଜନ୍ତୁ ଭାସିଯାଇ ଥା'ନ୍ତି ।. କେତେକ ମରିକରି ନଦୀକୂଳମାନଙ୍କରେ ଲାଗିଥାନ୍ତି । ସେଇପାଖରେ ଗୋଟିଏ ୩୦ ବର୍ଷର ସ୍ତ୍ରୀ ଲୋକ ବସିଥିଲେ । ସେ ତାଙ୍କର ସ୍ୱାମୀ ପିଲା ଦୁଇଜଣ, ତାଙ୍କ ଘର ଚାଳ ଉପରେ ବସି ନଦୀ ମଝିରେ ସମୁଦ୍ର ଆଡ଼କୁ ଭାସିଗଲାବେଳେ, ଜୁଆର ମାଡ଼ରେ ମଝି ନଦୀରେ ଚାଳ ଖଣ୍ଡ ଖଣ୍ଡ ହୋଇ ଭାସିଗଲା । ନଦୀରେ ତା ସ୍ୱାମୀ, ପିଲାମାନେ ଖଣ୍ଡେ ଖଣ୍ଡେ ଚାଳର ବାଉଁଶ ଧରି ଭାସିଗଲେ । କୁଆଡ଼େ ଗଲେ ସେ ଜାଣେନି । ତାରି ଆଗରେ ଗୋଟେ ପାଞ୍ଚ ବର୍ଷର ଝିଅ ବୁଡ଼ିଗଲା । ସେ ଖଣ୍ଡେ ବାଉଁଶକୁ ଆଶ୍ରା କରି, ଗୁପ୍ତି ପାଖେ ଲାଗିଥିଲା । ମଲା ପରି ପଡ଼ିଥିଲା ବେଳେ, ଆର୍. ଆଇ. ଏବଂ ଅନ୍ୟମାନେ ସେଇଠିକୁ ଟେକି ଆଣିଥାନ୍ତି । ଆମ ପାଖରେ ଯାହା ଚାଉଳ, ଚୁଡ଼ାଥିଲା, ବନ୍ଧ ଉପରେ ଆଶ୍ରୟ ନେଇଥିବା ଲୋକମାନଙ୍କୁ ଦେଲୁ । ପାଖରେ ଥିବା ବିସ୍କୁଟ୍ କେତେଖଣ୍ଡ ଖାଇ ସେଦିନ ସେ ବନ୍ଧ ଉପରେ ଆର୍. ଆଇ. ଅଫିସ୍ର ଭାଙ୍ଗି ପଡ଼ିଥିବା କବାଟ ପଟା ଉପରେ ଶୋଇଲୁ । ପରଦିନ ଚାଲି ଚାଲି ଗୁପ୍ତିରୁ ରାଜନଗର ୧୮ କିଲୋମିଟର ରାସ୍ତା ପାରହୋଇ ପହଞ୍ଚିଲା ପରେ କଟକ ଫେରିଲୁ । ରାଜ୍ୟପାଳ ମିଃ. ସିଂହ, ମୋଠାରୁ ପ୍ରକୃତ ଘଟଣା ଶୁଣିବେ ବୋଲି ମୋତେ ରାଜଭବନ ଡ଼କାଇଲେ । ମୁଁ ଯାହା ଜାଣିଥିଲି କହିଲି । ସେ ଜାଣିବାକୁ ଚାହିଁଥିଲେ, ପ୍ରକୃତରେ କେତେ ଲୋକ ମରିଛନ୍ତି ବୋଲି । ପରେ ପରେ ବିଜୁବାବୁଙ୍କ ନିବେଦନରେ ବହୁ ଜାତୀୟ, ଆନ୍ତଃର୍ଜାତୀୟ ସାହାଯ୍ୟକାରୀ ସଂସ୍ଥା, ରାଜନଗର, ମହାକାଳପଡ଼ା, ଜମ୍ବୁ ଅଞ୍ଚଳରେ ପହଞ୍ଚି, ପ୍ରପୀଡ଼ିତ ଲୋକମାନଙ୍କୁ ସାହାଯ୍ୟ କରିଥିଲେ । ମଣିଷ ଏବଂ ପଶୁମାନଙ୍କର ଶବକୁ ଦାହ ଏବଂ ପୋତିବା ପାଇଁ ଆନନ୍ଦମାର୍ଗୀ, ଭାରତ ସେବକ ସଂଘ୍ଥା ରେଡ଼କ୍ରସ, ବହୁ ସଂସ୍ଥା ମାସ ମାସ ଧରି ଏଠି କାମ କରିଥିଲା । ମୁଁ ମଧ ଏଇ ଅଞ୍ଚଳରେ ପ୍ରାୟ ମାସକରୁ ଉର୍ଦ୍ଧ୍ୱ ସମୟ ରହି ଆଇନ୍ ଶୃଙ୍ଖଳା ପରିସ୍ଥିତି ଦେଖିଥିଲି । ବିଜୁବାବୁଙ୍କ ଯୋଗୁଁ, ଯେଉଁ ସାହାଯ୍ୟ, ରାଜନଗର, ମହାକାଳପଡ଼ା ଲୋକମାନେ ପାଇଥିଲେ ସେମାନେ ବିଜୁବାବୁ ମରିବା ପର୍ଯ୍ୟନ୍ତ ଭୁଲି ନ ଥିଲେ । ସେଇ ଦିନରୁ ବିଜୁବାବୁଙ୍କୁ କେନ୍ଦ୍ରାପଡ଼ା ଲୋକସଭା ଆସନରୁ କେହି ହଟାଇ ପାରି ନ ଥିଲେ । ଘରେ ଘରେ ଲୋକମାନେ ବିଜୁବାବୁଙ୍କୁ ଦେବତାତୁଲ୍ୟ ମାନୁଥିଲେ ।

କଟକ ହେଡ଼କ୍ୱାଟରରେ ଡି.ଏସ୍.ପି ଥିଲାବେଳେ କଟକ ଜିଲ୍ଲାତରଫରୁ ଗୋଟେ ଡ୍ରାମା କରାଯାଇଥିଲା । ସେତେବେଳେ କଟକର ଅର୍ଣ୍ଣପୂର୍ଣ୍ଣା ରଙ୍ଗମଞ୍ଚ ଚାଲିଥାଏ । ସେଇଠି ଆମ ନାଟକ "ଖଇ କଉଡ଼ି" ପରିବେଶଣ କରାଗଲା । ମୁଁ ଏଥିରେ ମୁଖ୍ୟ ଭାବରେ କାମ କଲାବେଳେ

ଏଥିରେ ସେତେବେଳର ବୁଢ଼ା ଅତିରିକ୍ତ ଏସ୍.ପି. ମିଃ.ପଣ୍ଡା, ଏ.ଏସ୍.ପି ମିଃ. ସ୍ୱାଇଁ, ପ୍ରଭୃତି ନାଟକରେ ଅଭିନୟ କରୁଥାନ୍ତି । ତା ଆଗରୁ କଟକ-ପୁଲିସ୍ ଜିଲ୍ଲା କେବେ ନାଟକ ପରିବେଷଣ କରିଥିଲା କେହି ଜାଣି ନ ଥିବା ଦୃଷ୍ଟିରୁ, ଆମେ ତାକୁ ପଞ୍ଚମ ଅବଦାନ ବୋଲି କହି, ଆଇ.ଜି ବି.ବି ମିଶ୍ରଙ୍କ ହାତରେ ଉଦ୍‌ଘାଟନ କଲୁ । ପ୍ରଥମରେ ସେ ଉଦ୍‌ଘାଟନ କରି କହିଲେ ଯେ, ''ନାଟକେ କେଉଁ ପରି ଭାବେ ପରିବେଷଣ କରୁଛନ୍ତି, ସେ କଥା ନାଟକ ନ ଦେଖିଲେ ମୁଁ କହିବି ନାହିଁ'' । ତେଣୁ ନାଟକ ଅଧା ହେଲା ପରେ ସେ ନିଜେ ମଞ୍ଚ ଉପରକୁ ଯାଇ କଳାକାରମାନଙ୍କର ଅଭିନୟର ଉଚ୍ଚ ପ୍ରଶଂସା କରିଥିଲେ । ସେତେବେଳେ ଏଇ ନାଟକ ପରିବେଷଣ କରିବା ପାଇଁ ପ୍ରାୟ ୧୮ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ।

**ଝାରସୁଗୁଡ଼ାକୁ ବଦଳି :** ଜାନୁଆରୀ ମାସ ଦଶ ତାରିଖ ୧୯୭୩, ମସିହାରେ ମୁଁ କଟକରୁ ବଦଳି ହୋଇ ଝାରସୁଗୁଡାରେ ଏସ୍.ଡି.ପି.ଓ ଭାବେ ଜଏନ୍ କଲି । ସେତେବେଳେ ସମ୍ବଲପୁରର ଏସି.ପି ଥା'ନ୍ତି ଶ୍ରୀ ଆର୍. ଏଟମ୍. ପଟ୍ଟନାଏକ । ଝାରସୁଗୁଡା ପୁଲିସ୍ ସବ୍‌ଡିଭିଜନ, ସେତେବେଳେ ବଡ଼ ଧରଣର ଆଇନ୍ ଶୃଙ୍ଖଳା ପରିସ୍ଥିତିର ସମ୍ମୁଖୀନ ହୋଇଥାଏ.। କୋଇଲା ଖଣି ଅଞ୍ଚଳରେ ଶ୍ରମିକ ଆନ୍ଦୋଳନ ଚାଲିଥାଏ । ତା ଛଡ଼ା ବ୍ରଜରାଜ ନଗର କାଗଜ କଳରେ ପ୍ରାୟ ସବୁ ସମୟରେ ଶ୍ରମିକ ଅଶାନ୍ତି ଥିବାବେଳେ, ଭାସ୍କର ସୂତାକଳ ଶ୍ରମିକ ଆନ୍ଦୋଳନ ଯୋଗୁ ବନ୍ଦ ହୋଇ ପଡ଼ିଥାଏ । ଏ ସବୁ ଶ୍ରମିକ ଆନ୍ଦୋଳନକୁ ଛାଡ଼ିଦେଲେ, ସେତେବେଳେ ପଶ୍ଚିମ ଓଡ଼ିଶାରୁ ଚୋରା ଚାଉଳ ବହୁପରିମାଣରେ ପଶ୍ଚିମ ବଙ୍ଗ, ବିହାରକୁ ଚାଲାଣ ହେଉଥାଏ । ଚୋରା ଚାଉଳ ଚାଲାଣରେ, ସବୁ ବିଭାଗର ଅଫିସରଙ୍କଠାରୁ ଅରମ୍ଭକରି ତଳିଆ କର୍ମଚାରୀମାନେ ସଂପୃକ୍ତ ଥାନ୍ତି । ଚୋରା ଚାଉଳ ବେପାରୀ ସମସ୍ତଙ୍କୁ ହାତରେ ରଖି କାରାବାର ଚଳାଇଥିଲେ । ସେତେବେଳେ ଗୋଟେ ଟ୍ରକ୍ ଚାଉଳ ଓଡ଼ିଶା ସୀମାପାର ହୋଇଗଲେ, ପ୍ରାୟ ପାଞ୍ଚ ହଜାରରୁ ସାତହଜାର ଟଙ୍କା ମିଳୁଥିଲା । ବାଟରେ ଦୁଇ ହଜାର ତିନିହଜାର ଟଙ୍କା ଖର୍ଚ୍ଚ କରିବାକୁ ସେମାନେ ପଛଉ ନ ଥିଲେ । ଏସ୍.ପି. ପଟ୍ଟନାୟକ ମୋତେ ଚୋ଼ରା ଚାଉଳ ଚାଲାଣ ବନ୍ଦ କରିବା ପାଇଁ କହିଲେ । ମାତ୍ର ଏ କାରବାରରେ ପୁଲିସ୍ ଠାରୁ ଆରମ୍ଭ କରି ସପ୍ଲାୟବାଲା ସଂପୃକ୍ତ ଥିବା ଯୋଗୁ, ମୁଁ ଯେଉଁଦିନ ଗୋଟେ ରାସ୍ତାରେ ଫୋର୍ସଧରି ଚେକ୍ କରିବାକୁ ଗଲି, ମୋ ଯିବା ଖବର ଚୋରାବେପାରୀଙ୍କ ପାଖରେ ପହଞ୍ଚିଯାଇଥାଏ । ସେମାନେ ମୋର ଗତି ବିଧିକୁ ଲକ୍ଷ୍ୟ କରି ସମ୍ବଲପୁର, ବରଗଡ଼ରୁ ଚାଉଳ ଟ୍ରକ୍ ଛାଡୁଥାନ୍ତି । କିଛି ଦିନ ପରେ ଖବର ମିଳିଲା ଯେ, ସମ୍ବଲପୁରର କତରାବଗା ପୁରୁଣା ରାଞ୍ଚି ରାସ୍ତାରେ ଚୋରା ଚାଉଳ ଯାଉଛି । ସେତେବେଳେ ମିଃ. ରାଓ ବୋଲିଜଣେ ତହସିଲ୍‌ଦାର ଝାରସୁଗୁଡ଼ାରେ ଥା'ନ୍ତି । ମିଃ. ରାଓଙ୍କ ଉଚ୍ଚତା ପ୍ରାୟ ୬ଫୁଟ ୨ଇଞ୍ଚ ହେଲାବେଳେ, ଓଜନ ପ୍ରାୟ ୧½କ୍ୱିଣ୍ଟାଲ୍ ହେବ । ସେ ତାଙ୍କ ଜିପ୍ ଚଳାଇଲାବେଳେ ପେଟ ସାହାଯ୍ୟରେ ଚଲାନ୍ତି, ହାତରେ ଷ୍ଟିୟରିଂ ଧରିବାକୁ ଦରକାର ପଡେନି । ତାଙ୍କର ଅତିରିକ୍ତ ତହସିଲଦାର ମିଃ ପଟ୍ଟନାଏକଙ୍କ ଉଚ୍ଚତା ୫ ଫୁଟ ୨ଇଞ୍ଚ ହେଲେ ମଧ ଓଜନ ଗୋଟେ କ୍ୱିଇଣ୍ଟାଲ୍ । ଦୁହିଁକୁ ମୁଁ ସୋରାବ୍ ଆଣ୍ଡ ରୋସ୍ତୋମ୍ ଡାକୁ ଥାଏ । ଦୁଇଜଣ

ଖୁବ୍ ଭଲ ଲୋକ । ପଟ୍ଟନାଏକ ପୁଲିସ୍-ମାଜିଷ୍ଟ୍ରେଟ୍ । ଏ.ପି.ଆର ଫୋର୍ସ, ସେ କୁଆଡ଼େ ଆଇନ୍ ଶୃଙ୍ଖଳା ପାଇଁ ଯିବେ, ତାଙ୍କ ସାଙ୍ଗରେ ଖୁସିରେ ଯିବାକୁ ବାହାରନ୍ତି । ସବୁବେଳେ ଫୋର୍ସଙ୍କ ସୁବିଧା-ଅସୁବିଧା ସେ ଦେଖିଥାନ୍ତି । ତେଣୁ ପଟ୍ଟନାଏକ ବାବୁ, ପୁଲିସ୍ ବାଲାଙ୍କ ପାଖେ ଅତିପ୍ରିୟ । ଦିନେ ସନ୍ଧ୍ୟାବେଳେ, ମୁଁ ଖବର ପାଇଲି ସମ୍ବଲପୁର ଠାରୁ ଚାରିପାଞ୍ଚଟ୍ରକ ଚାଉଳ ସେଦିନ ରାତିରେ କତରା ବାଗ ବାଟ ଦେଇ ରାଞ୍ଚି ଆଡ଼େ ଯିବ । କତରା ବାଗ ରାସ୍ତା ମୋରମ୍ ରାସ୍ତ- ଜଙ୍ଗଲ ରାସ୍ତା । ମୁଁ ଏ ଖବର କାହାକୁ ନ ଦେଇ, କେବଳ ତହସିଲ୍‌ଦାରଙ୍କୁ କହିଲି ଏବଂ ତାଙ୍କୁ ଜିପ୍ ଧରିଆସିବାକୁ କହିଲି । କୁଆଡ଼େ ଯିବୁ ବୋଲି କହି ନ ଥାଏ । ପୁଲିସ୍ ଜିପ୍ ନେଲିନି । ତହସିଲ୍‌ଦାରଙ୍କ ଜିପ୍‌ରେ ଫୋର୍ସ ବସାଇ ଆମେ କତରାବାଗ ରାସ୍ତାରେ ଛକି କରି ରହିଲୁ । ରାତ୍ରିପ୍ରାୟ ୨ଟା ବେଳକୁ ପ୍ରଥମ ଗୋଟେ ଟ୍ରକ୍ ଆସିଲା । ମୁଁ ସେ ଟ୍ରକ୍‌କୁ ଅଟକାଇ ବାକୁ ସିଗ୍‌ନାଲ ଦେଲି । ଟ୍ରକ ମୋ ପାଖରେ ଅଟିକି ଗଲା ପରେ, ମୁଁ ତାର ଫୁଟ୍ ବୋର୍ଡ଼ଉପରେ ଠିଆ ହୋଇଗଲି ଏବଂ ଡ୍ରାଇଭରକୁ ଓହ୍ଲାଇ ବାକୁ କହିଲି । ମାତ୍ର ଡ୍ରାଇଭର କ'ଣ ବୁଝିଲା କେଜାଣି, ଗାଡ଼ି ନ ଅଟକାଇ ଖୁବ୍ ଜୋରରେ ଚଲାଇ ବାକୁ ଆରମ୍ଭକଲା ।

ମୁଁ ଆଉ ଓହ୍ଲାଇ ପାରିଲିନି । ସେମିତି ଟ୍ରକର ଆଗଡ଼ୋର ଧରିଥାଏ । ଗାଡ଼ି ପଚାଶ୍,ଷାଠିଏ କିଲୋମିଟରରେ ଯାଉଥାଏ । ମୁଁ ପାଟିକରି ଡାକିବାରେ ତହସିଲ୍‌ଦାର, ତାଙ୍କ ଗାଡ଼ି ଧରି ଟ୍ରକ ପଛେ ପଛେ ଗୋଡ଼ାଉଥିଲେ । କିଛି ସମୟ ପରେ, ପୁଲିସ୍ ଫୋର୍ସ ପାଖକୁ ଲାଗିଯାଇ ଦୁଇରାଉଣ୍ଡ ଗୁଳି ଉପରକୁ ମାରିଲା ପରେ, ସେ ଗାଡ଼ି ଅଟିକିଲା । ଗାଡ଼ିକୁ ଧରି ଆମେ ଝାରସଗୁଡ଼ା ଆସିଲୁ ଏବଂ ସେଇ ଗାଡ଼ିରେ ୨୦୦ ବସ୍ତା ଚୋରା ଚାଉଳ ଚାଲାଣ ହେଇଥିଲା । ଏ ଗାଡ଼ି ଧରାପଡ଼ିବା ପରେ, ସେ ରାସ୍ତାରେ ଆଉ ସେଦିନ ଗାଡ଼ି ଆସି ନ ଥିଲା । ଏ ଘଟଣାରେ କିଛି ଦିନ ପରେ, ଦେଓଗଡ଼ ଥାନାର ଜଣେ ଏ.ଏସ୍.ଆଇ, ଏଇପରି ଗାଡ଼ିରେ ଚଢ଼ିଗଲା ବେଳେ, ପଞ୍ଜାବୀ ଟ୍ରକ୍ ଡ୍ରାଇଭର ତାଙ୍କୁ ନେଇଯାଇ ଅଧାରାସ୍ତାରେ ପେଲିଦେଇ ତାଙ୍କ ଗୋଡ଼ ଉପରେ ଟ୍ରକ ମଡ଼ାଇ ଚାଲିଗଲା । ଏ.ଏସ୍.ଆଇଙ୍କ ଗୋଡ଼ ସବୁଦିନ ପାଇଁ କାଟି ଦିଆ ଯାଇ ତାଙ୍କୁ ବଞ୍ଚାଇବାକୁ ପଡ଼ିଥିଲା । ପରେ ମୁଁ ମୋର ଭୁଲ ବୁଝିପାରିଥିଲି ।

ମୁଁ ଝାରସୁଗୁଡ଼ାରେ ଏସ୍.ଡ଼ି.ପି.ଓ ଥିଲା ବେଳେ, ସେଇ ବର୍ଷ ଫେବୃଆରି ମାସ ୧୬ ତାରିଖରେ ଓଡ଼ିଶାରେ ବଙ୍ଗାଳୀ ବିରୋଧି ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏଇ ଆନ୍ଦୋଳନରେ କଟକ, ପୁରୀ, ରାଉରକେଲା ସହରର କେତେକ ବଙ୍ଗାଳୀ ପରିବାର ବଙ୍ଗାଳୀ ବିରୋଧିମାନଙ୍କର ଶିକାର ହେଲେ । ଝାରସୁଗୁଡ଼ାରେ ଏହାର ପ୍ରଭାବ ପଡ଼ିବାକୁ ଆରମ୍ଭ କଲାବେଳେ ପୁଲିସ ପକ୍ଷରୁ କଡ଼ା ପ୍ରତିରକ୍ଷା ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ତେଣୁ ଏହାର ପ୍ରଭାବ ଝାରସୁଗୁଡ଼ାରେ ପଡ଼ି ନ ଥିଲା । ତେବେ ଓଡ଼ିଶାରେ ଏକପ୍ରକାର ସାଂପ୍ରଦାୟିକ ଆନ୍ଦୋଳନ ଆରମ୍ଭ ହୋଇ ଯାଇଥିଲା ମାତ୍ର ତାହାକୁ ଦୃଢ଼ହସ୍ତରେ ଦମନ କରାଯାଇପାରିଥିଲା । ସମ୍ବଲ ପୁର ଏସ.ପି. ମିଃ ପଟ୍ଟନାଏକଙ୍କ, ସମ୍ବଲପୁରରୁ ବଦଳି ହୋଇ ଏ.କେ. ପଟ୍ଟନାୟକ ଏସଳିପି ହୋଇଆସିଲେ । ସେ ଆସିବାର ମାସକ ପରେ ମୋର ଝାରସୁଗୁଡ଼ାରୁ କଟକ- ଭିଜିଲାନ୍ସକୁ ବଦଳି ହେଲା । ମୁଁ

ଭିଜିଲାନ୍ସରେ ୨୯.୮.୭୩ ରେ ଆସି ଜଏନ୍ କଲି । ଭିଜିଲାନ୍ସରେ ଜଏନ୍ କଲା ପରେ ମୋତେ କେତେଗୁଡ଼ିଏ ଇନ୍‌କ୍ୱାରୀ ଦେଲା ବେଳେ ଦୁଇଟି ଆୟବହିର୍ଭୂତ ସଂପତ୍ତି ତଦନ୍ତ ପାଇଁ ଦାୟିତ୍ୱ ଦେଇଥିଲେ । ତାମଧ୍ୟରୁ ମୁଁ ଗୋଟିଏ ମାମଲାର ଇନ୍‌କ୍ୱାରୀ ଶେଷ କରି ତାର ରିପୋର୍ଟ ଦେଇଥିଲି । ମାତ୍ର ୧୧ମାସ ପରେ ମୋର ଭିଜିଲାନ୍ସରୁ କଟକ ସିଟି ଡି.ଏସ.ପି ଭାବେ ବଦଳି ହେଲା । ମୁଁ ପୁଣି କଟକରେ ୩.୭.୧୯୭୪ ରେ ଜଏନ୍ କଲି ।  ସେତେବେଳକୁ ପୁଲିସ୍ ପ୍ରଶାସନ କ୍ଷେତ୍ରରେ ପୁଣି ଅସ୍ଥିରତା ଦେଖା ଦେବାକୁ ଆରମ୍ଭ କରିଥାଏ । ମିଃ ଅପାରାଓ, କଟକ ଜିଲ୍ଲାର ଏସ୍.ପି ମିଃ ଅଶୋକ ମୋବାଇ କଟକ ଜିଲ୍ଲାପାଳ ।

**ପୁଲିସ ପ୍ରଶାସନ ଏବଂ ରାଜନୀତି :-** ବ୍ରଜ ବିହାରୀ ମିଶ୍ର ଆଇ.ପି. ପୁଲିସ୍ ଆଇ.ଜି ଭାବେ ତିନିବର୍ଷରୁ ଉର୍ଦ୍ଧ୍ୱରହିଲେ । ତାଙ୍କ ସମୟରେ ଓଡ଼ିଶା ରାଜନୈତିକ କ୍ଷେତ୍ରରେ ବହୁ ଉତ୍‌ଥାନ ପତନ ହୋଇଥିଲେ ମଧ୍ୟ ସେ ପୁଲିସ୍ ପ୍ରଶାସନକୁ ରାଜନୈତିକ ନେତାମାନଙ୍କ ହାତକୁ ଛାଡ଼ି ଦେଇ ନ ଥିଲେ । ପୁଲିସ୍ ପ୍ରଶାସନର ସମସ୍ତ ସ୍ତରରେ ସମନ୍ୱୟ ରକ୍ଷା କରିବା ସଙ୍ଗେ ସଙ୍ଗେ ବିଭାଗରେ ଶୃଙ୍ଖଳା ଉଚ୍ଚମାନର ଥିଲା । ତାଙ୍କ ରହଣିର ଶେଷ ବେଳକୁ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେଲା ପରେ, ପୁଲିସ୍ ଶାସନରେ ହସ୍ତକ୍ଷେପ କରିବାକୁ ପରୋକ୍ଷରେ ଚେଷ୍ଟକଲା ବେଳେ, ସେ ପୁଲିସ୍ ବିଭାଗର ମୁଖ୍ୟ ଭାବେ ଉପଯୁକ୍ତ ଉତ୍ତର ତାଙ୍କୁ ଦେଇ ପାରିଥିଲେ । ୨୨.୧.୧୯୭୩ ମସିହା ଦିନ ସେ, ଓଡ଼ିଶାରୁ ବିଦାୟ ନେଲେ । ଶ୍ରୀ ଆର.କେ.ପାଢ଼ୀ, ଆଇ.ଜି ହୋଇ ଆସିଲେ । ସେ ମଧ୍ୟ ସେଇପରି ଅଫିସର ଥିଲେ । ଯଦିଓ ସେ ବି.ବି.ମିଶ୍ରଙ୍କ ପରି ଶୃଙ୍ଖଳା ଉପରେ ବିଶେଷ ନଜର ଦେଇ ନ ଥିଲେ, ମାତ୍ର ତାଙ୍କ ସମୟରେ ପୁଲିସ୍‌ରେ ରାଜନୈତିକ ନେତାମାନଙ୍କର ହସ୍ତକ୍ଷେପକୁ ସେ ପ୍ରଶ୍ରୟ ଦେଇ ନ ଥିଲେ । ଏପରିକି ଥରେ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ତାଙ୍କୁ ରାତ୍ରି ଆଠଟା ବେଳେ ଖୋଜିବାରେ, ସେ ତାଙ୍କୁ କହିଥିଲେ ''ସାର୍ ସକାଳେ ମୁଁ ଆପଣଙ୍କ ସଙ୍ଗେ କଥା ହେବି – ଦୟାକରି ରାତ୍ରିଟା ମୋ ପାଇଁ ଛାଡ଼ି ଦିଅନ୍ତୁ'' । ସେମାନଙ୍କର କାର୍ଯ୍ୟକଳାପ, ବ୍ୟବହାର, ଜ୍ଞାନ ଏତେ ଉଚ୍ଚମାନର ଥିଲା ଯେ, କୌଣସି ରାଜନୈତିକ ନେତା ତାଙ୍କ କାମରେ ହସ୍ତକ୍ଷେପ କରିବାକୁ ସାହସ କରୁ ନ ଥିଲେ । ବି.ବି.ମିଶ୍ର ଯିବା ପରେ ପରେ, ମିଃ ଜେ.ଏସ. ସାମଲ ଥା'ନ୍ତି କୋରାପୁଟ ଜିଲ୍ଲାର ଏସ୍.ପି. । ତାଙ୍କର ସେତେବେଳର ଘରୋଇ ବିଭାଗ ସଚିବଙ୍କ  ସଙ୍ଗେ ପଡ଼ୁନଥିଲା । କେଉଁ କାରଣରୁ ପଡ଼ୁ ନଥିଲା – ସେ କଥା ମୋର ମନେ ପଡ଼ୁନି । କୋରାପୁଟ୍‌ରେ ଏସ.ପି. ଥିଲା ବେଳେ ତାଙ୍କ ପ୍ରରୋଚନାରେ ଜୟପୁର ଥାନାରେ, ଘରୋଇ ବିଭାଗ ସଚିବ ମିଃ ପଦ୍ମନାଭ ମିଶ୍ରଙ୍କ ନାମରେ ଗୋଟିଏ କ୍ରିମିନାଲ କେସ୍ ଜୟପୁର ଥାନାରେ ପଞ୍ଜିକରଣ କରି ପଏଣ୍ଟ ଅଫ୍ ଜୁରିଡ଼ିକିସନ୍‌ରେ ତାକୁ କଟକ ଲାଲ୍‌ବାଗ ଥାନାକୁ ବଦଳି କରିଦେଲେ । ଲାଲ୍‌ବାଗ୍‌ଥାନାରେ ସେତେବେଳେ ଲାଲ୍ ମୋହନ କାନୁନ୍‌ଗୋ ଇନସ୍‌ପେକ୍ଟର ଥା'ନ୍ତି । ସେ ମିଃ ସାମଲଙ୍କ ଗୋଷ୍ଠୀର ଅଫିସର । ପଦ୍ମନାଭ ମିଶ୍ର ଘରୋଇ ସଚୀବ ହେବାପୂର୍ବରୁ ମତ୍ସ୍ୟବିଭାଗର ନିର୍ଦ୍ଦେଶକ ଥିଲେ । ସେଇ ସମୟର କିଛି ଅଫିସ ସମ୍ବନ୍ଧୀୟ ଘଟଣାକୁ ନେଇ ଏ କେସ୍ ହୋଇଥିଲା ।  ମିଃ

ଜେ.ଏସ୍.ସାମଲ ଏହି ମକଦମାର ପୃଷ୍ଠଭୂମୀରେ ଥିବା ଯୋଗୁ, ଘରୋଇ ସଚୀବ, ଆଇ.ଜିଙ୍କ ସାହାଯ୍ୟ ନେଲେ ଯଦିଓ ଆର୍.କେ.ପାଢୀ, ନନ୍‌କମିଟାଲ ପ୍ରକୃତିର ଲୋକ । କିନ୍ତୁ ତାଙ୍କୁ ମିଶାଇ ଯେତେବେଳେ ଗୋଟେ ବେନାମୀ ପ୍ରଚାର ପତ୍ର କଟକ, ଭୁବେନେଶ୍ୱରରେ ବଣ୍ଟା ଗଲା, ସେତେବେଳେ ସେ ଏଇ ଘଟଣା ମଧ୍ୟକୁ ଟଣା ହୋଇ ଆସିଲେ । ଜେ.ଏସ୍.ସାମଲ ଏଇ ବେନାମୀ ପ୍ରଚାରପତ୍ରର ପଛରେ ଅଛନ୍ତି ବୋଲି ଗୁଇନ୍ଦା ବିଭାଗ ଖବର ଦେଲେ । ପରେପରେ ସାମଲଙ୍କର ବଦଳୀ କୋରାପୁଟ୍ ଜିଲ୍ଲାରୁ ଦ୍ୱିତୀୟ ବାଟେଲେୟାନ୍‌କୁ କରାଗଲା ଏବଂ ତାଙ୍କ ନାମରେ ଗୋଟେ ଭିଜିଲାନ୍ସ ମକଦମା ରୁଜୁ ହୋଇ ତଦନ୍ତ ଆରମ୍ଭ ହେଲା । ଆର୍.କେ. ପାଢୀ, ଙ୍କୁ ଯେତେବେଳେ ବେନାମୀ ପ୍ରଚାରପତ୍ର ବଣ୍ଟାଯିବା କଥା ଶ୍ରୀ ପ୍ରଫୁଲ୍ଲ ରଥ ଏବଂ ଏ.ବି.ତ୍ରିପାଠୀ କହିଲେ, ସେ ସେପରି ବେନାମୀ ପ୍ରଚାର ପତ୍ର ଉପରେ ଗୁରୁତ୍ୱ ଦେଉନାହାଁନ୍ତି କହିଥିଲେ ମଧ୍ୟ ତାଙ୍କମନ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା । ସେତେବେଳକୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଚାଲୁଥାଏ ମାତ୍ର କେନ୍ଦ୍ରରେ କଂଗ୍ରେସ ସରକାର ଇନ୍ଦିରା ଗାନ୍ଧିଙ୍କ ନେତୃତ୍ୱରେ ଅତ୍ୟନ୍ତ ଦୃଢ଼ଥାଏ । ବଙ୍ଗଳା ଦେଶ ଯୁଦ୍ଧରେ, ପାକିସ୍ତାନ ହାରିବା ଏବଂ ଲକ୍ଷେ ପାଖା ପାଖି ପାକିସ୍ତାନ ସୈନ୍ୟଙ୍କୁ  ବାନ୍ଧୀକରି ଫେରାଇବା ଯୋଗୁ, ଇନ୍ଦିରା ଗାନ୍ଧିଙ୍କର ଲୋକପ୍ରିୟତା ସବୁଆଡ଼େ ବଢ଼ିଯାଇଥାଏ । ଓଡ଼ିଶାରେ ମଧ୍ୟ କଂଗ୍ରେସ ହାୱା ବହିବାକୁ ଆରମ୍ଭ କଲା । ବର୍ଷକ ପରେ ଓଡ଼ିଶାରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ପ୍ରକ୍ରିୟା ଆରମ୍ଭ ହୋଇଗଲା  ଏବଂ ଫେବୃଆରୀରେ ନିର୍ବାଚନ ଶେଷହେଲା ପରେ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେଲେ । ମାତ୍ର ନିର୍ବାଚନ ଶେଷହେବା ପୂର୍ବରୁ ଆର୍.କେ.ପାଢୀ ୧୯.୧.୭୪ ରାତ୍ରିରେ ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ବରହମପୁରଠାରେ ମୃତ୍ୟୁବରଣ କଲେ । ସେ ବରହମପୁରକୁ, ରୋଟାରୀ ଗଭର୍ଣ୍ଣର ନିର୍ବାଚନ ପାଇଁ ଯାଇଥିଲେ ଏବଂ ରୋଟାରୀ ଗଭର୍ଣ୍ଣର ଭାବେ ନିର୍ବାଚିତ ହୋଇଥିଲେ । ସେଦିନ ରାତ୍ରିରେ ବରହମପୁର ଶୋଇଥିବା ବେଳେ, ହୃଦରୋଗରେ ଆକ୍ରାନ୍ତ ହେଲେ । ସକାଳୁ ତାଙ୍କର ମୃତ ଦେହକୁ ଦେଖିବାକୁ ମିଳିଲା । ତାଙ୍କ ମୃତ୍ୟୁ ପରେ ସାରା ପୁଲିସ୍ ବିଭାଗରେ  ଦୁଃଖର ଛାୟା ଖେଳିଗଲା । ସମସ୍ତେ ଶ୍ରୀଯୁକ୍ତ ପାଢୀଙ୍କୁ ଅନ୍ତର ସହିତ ଭଲପାଉଥିଲେ । ତାଙ୍କ ମୃତ୍ୟୁ ପରେ ମିଃ ନାରାୟଣ ଚାନ୍ଦ୍ ସିନିୟର ମୋଷ୍ଟ ଅଫିସର ଭାବେ ପୁଲିସ୍ ବିଭାଗର ଆଇ.ଜି ହେଲେ । ୧୯.୧.୭୪ ସନ୍ଧ୍ୟା ବେଳକୁ, ମୁଁ ଆଉ ପ୍ରେମରଞ୍ଜନ ମହାନ୍ତି, ଭୁବନେଶ୍ୱର ଭିଜିଲାନ୍ସ ଅଫିସ୍‌ରେ ବସିଥିବା ବେଳେ, ଚାନ୍ଦ୍ ସାହେବ, (ସେତେବେଳେ ଭିଜିଲାନ୍ସର ଆଇ.ଜି.ଥିଲେ) ନୋଟିଫିକେସନ ଧରି ଭିଜିଲାନ୍ସ ସ୍କ୍ୱାର୍ଡ଼ ଅଫିସରେ ପହଞ୍ଚିଲେ । ସେ ଆମକୁ ନୋଟିଫିକେସନ ଦେଖାଇ କହିଲେ ''ଦେଖ, ମୋତେ ପୁଲିସ ଏବଂ ଭିଜିଲାନ୍ସ ଦୁଇଟିର ମୁଖ୍ୟ ଭାବେ ରହିବାପାଇଁ ନିର୍ଦ୍ଦେଶ ଅଛି'' । ସେ ସେଦିନ ବହୁତ ଇମୋସନାଲ ହୋଇ କହିଲେ, ''ସମସ୍ତେ ମୋତେ ଦୁର୍ବାସା ବୋଲି କୁହନ୍ତି । କିନ୍ତୁ ମୁଁ ମୋ ପୁଲିସ୍ ଜୀବନ କାଳମଧ୍ୟରେ, କାହା ପ୍ରତି ଅନ୍ୟାୟ କରି ନାହିଁ, କିମ୍ୱା କାହାର ଚାକିରୀ ଜୀବନକୁ ନଷ୍ଟ କରିବାକୁ କଲମ ଉଠାଇନି । ଦେଖ ସେଥିପାଇଁ ବୋଧେ ଭଗବାନ ମୋ ପ୍ରତି ସଦୟ ହେଲେ ।'' କିଛି ସମୟ ପରେ ସେ ପ୍ରେମରଞ୍ଜନ ବାବୁଙ୍କୁ

ସାଙ୍ଗରେ ଧରି ବାହାରକୁ ବାହାରିଗଲେ । କଟକ ଜିଲ୍ଲା ପୁଲିସ୍‌ରେ ମଧ୍ୟ ଅଦଳ ବଦଳ ହୋଇ ମିଃ ରବି ମହାପାତ୍ରଙ୍କୁ ବଦଳି କରାଯାଇ ତାଙ୍କ ସ୍ଥାନରେ ଭି.ଆପାରାଓଙ୍କୁ ଅଣାଗଲା । ପାଢ଼ୀଙ୍କର ମୃତ୍ୟୁ ସାରା ପୁଲିସ୍ ବିଭାଗକୁ ଶୋକସାଗରରେ ଭସେଇ ଦେଇ ଗଲା ପରେ ସେଇ ବର୍ଷ ବିଜୟକୁମାର ସ୍ୱାଇଁ, ଆଇ.ପି.ଏସ୍ ବଡ଼ବିଲରେ ଏସ୍.ଡି.ପି.ଓ ଥିଲାବେଳେ ନିଜ ରିଭଲଭଲରୁ ଗୁଳି କରି ଆତ୍ମହତ୍ୟା କଲେ ।

ଫେବୃଆରୀ ମାସ ନିର୍ବାଚନ ପରେ, ମାର୍ଚ୍ଚମାସରେ ନନ୍ଦନୀ ଦେବୀଙ୍କ ନେତୃତ୍ୱରେ କଂଗ୍ରେସ, ସି.ପି.ଆଇଙ୍କ ସମ୍ମର୍ଥନରେ ମନ୍ତ୍ରିମଣ୍ଡଳ ଗଢ଼ିଲେ । କାରଣ ନିର୍ବାଚନରେ କଂଗ୍ରେସ ୬୯ ସ୍ଥାନ ପାଇଥିବାଯୋଗୁ ସି.ପି.ଆଇଙ୍କ ସହଯୋଗ ଲୋଡ଼ିଥିଲା । ସେତେବେଳେ କେନ୍ଦ୍ରରେ ମଧ୍ୟ ସି.ପି.ଆଇ କଂଗ୍ରେସ୍‌କୁ ସମ୍ମର୍ଥନ କରୁଥାଏ । ନନ୍ଦିନୀ ଦେବୀ ମନ୍ତ୍ରିମଣ୍ଡଳ ଗଢ଼ିଲା ପରେ, ସେ ପୁଲିସ ପ୍ରଶାସନରେ ହସ୍ତକ୍ଷେପ କରିବାକୁ ଆରମ୍ଭ କରିଥିଲେ । କଟକ ଉପନିର୍ବାଚନ ସମୟରେ ମିଃ ଏନ୍. ମହାପାତ୍ର ନନ୍ଦିନୀ ଦେବୀଙ୍କ ସମ୍ମର୍ଥକମାନଙ୍କ କଥାକୁ ରକ୍ଷା କରିବାରେ ସାହାଯ୍ୟ ଦେଇନଥିଲେ । ସେ ଉପନିର୍ବାଚନ ଯେପରି ନିରପେକ୍ଷ ହୁଏ, ତାହାହିଁ ହେବାକୁ ଦେଇଥିଲେ । ଏଥିଲାଗି ଉପନିର୍ବାଚନରେ ଲଢୁଥିବା ଏବଂ ମୁଖ୍ୟମନ୍ତ୍ରୀ ଥିବା ନନ୍ଦିନୀ ଦେବୀ ତାଙ୍କ ଉପରେ ଅସନ୍ତୁଷ୍ଟ ଥିଲେ । ତେଣୁ ସେ କଟକରୁ ମିଃ ମହାପାତ୍ରଙ୍କୁ ବଦଳାଇ ମିଃ ଆପାରାଓଙ୍କୁ କଟକ ଏସ୍.ପି କରି ଆଣିଲେ । କଟକ ଏସ୍.ପି. ଭାବେ ଆପାରାଓ, ଜଣେ ଅତ୍ୟନ୍ତ ଦକ୍ଷ, ନିରପେକ୍ଷ ଏସ. ପି ଭାବେ ପରିଗଣିତ ହୋଇଥିଲେ ମଧ୍ୟ ସେ ନନ୍ଦିନୀ ଦେବୀଙ୍କର ଖାସ୍ ଲୋକ ଏଥିରେ କିଛି ସନ୍ଦେହ ନଥିଲା । ମୁଖ୍ୟମନ୍ତ୍ରୀ ଯାହା କହିବେ, ସେ ତାଙ୍କରି କଥାକୁ କେବଳ ଶୁଣୁଥିଲେ, ଅନ୍ୟ କୌଣସି ମନ୍ତ୍ରୀଙ୍କ କଥା ଶୁଣୁନଥିଲେ । ସେ ନିଜେ ମଧ୍ୟ ଏକଥା ବହୁବାର ପ୍ରକାଶ କରିଛନ୍ତି । ଏପରିକି, ସେ ଜଏନ୍ କଲା ପରେ,କେତେକ ସମ୍ବାଦ ପତ୍ରରେ, ନନ୍ଦିନୀ ଦେବୀଙ୍କ ପୁତ୍ରଙ୍କୁ ସେ ଗୁଳିଚାଳନା ଶିକ୍ଷା ଦେଉଥିଲେ ବୋଲି ପ୍ରକାଶ ପାଇଥିଲା । କଟକରୁ ମିଃ ମହାପାତ୍ରଙ୍କୁ କେଉଁଝରେ ବଦଳି କଲେ । ସେ କେତେ ଦିନ ଛୁଟିରେ ରହିଲା ପରେ ବାଧ୍ୟ ହୋଇ କେନ୍ଦୁଝରେ ଯାଇଥିଲେ ।

ମିଃ ନାରାୟଣ ଚାନ୍ଦଙ୍କର ଚାକିରୀ ସ୍ୱଳ୍ପକାଳ ପାଇଁ ଥିବା ଯୋଗୁ ସେ ୧୬.୮.୭୪ ତାରିଖ ଦିନ ଚାକିରୀରୁ ଅବସର ଗ୍ରହଣ କଲେ । ସେ ଅବସର ନେଲା ବେଳେ ତାଙ୍କ ତଳକୁ ମିଃ ଦାମୋଦର ଛୋଟରାଏ ସିନିୟର ଅଫିସର; ମାତ୍ର ନନ୍ଦିନୀ ଦେବୀ ଦାମ ଛୋଟରାଏଙ୍କୁ ପୁଲିସ୍ ବିଭାଗର ଆଇ. ଜି ନ କରି, ମିଃ ନରସିଂହ ସ୍ୱାଇଁଙ୍କୁ ଆଇ.ଜି. କଲେ । ନରସିଂହ ସ୍ୱାଇଁ ତିନିଜଣଙ୍କ ତଳେ ଥିଲେ । ଦାମୋଦର ଛୋଟରାଏଙ୍କୁ ଛାଡ଼ି ଦେଲେ ତାଙ୍କ ଉପରେ ଘନଶ୍ୟାମ ଦାସ୍ ମିଃ ରାଜଗୋପାଳ ସିନିୟର ଥିଲେ । ନନ୍ଦିନୀ ଦେବୀ ନରସିଂହସ୍ୱାଇଁଙ୍କୁ ଆଇ.ଜି. କରିବାରେ ଏମାନେ ସମସ୍ତେ ଆଇ.ଜି, ସ୍ତରକୁ ପ୍ରମୋଶନ ପାଇଥିଲେ । ମିଃ ଛୋଟରାଏ, ଆଇ .ଜି. ଭିଜିଲାନ୍ସ ହେଲାବେଳେ ରାଜଗୋପାଳନ୍ ଏବଂ ଘନଶ୍ୟାମ ଦାସ ସେଇ ପାହିୟାରେ ଅନ୍ୟସ୍ଥାନରେ ପୋଷ୍ଟିଂ ହେଲେ । ପୁଲିସ୍ ବିଭାଗର ଅଫିସରମାନେ ଖୁସି ହେଲେ ଯେ, ଏକା

ଥରକେ ଚାରିଗୋଟି ଆଇ.ଜି ପୋଷ୍ଟ ହୋଇ, ଚାରିଜଣଙ୍କର ପଦୋନ୍ନତି ହେଲା ମାତ୍ର ମିଃ ଛୋଟରାଏ ସିନିୟରମୋଷ୍ଟ ଥିଲାବେଳେ ତାଙ୍କୁ ପୁଲିସ୍ ଆଇ.ଜି ନକରିବାରୁ ଗୋଟିଏ ଗୋଷ୍ଠୀ ଏହାକୁ ସମର୍ଥନ କରିନଥିଲେ । ନରସିଂହ ସ୍ୱାଇଁ, ପୁଲିସ୍ ଆଇ.ଜି ଭାବେ କାମକଲେ ମାତ୍ର ସେମାନଙ୍କ ମଧ୍ୟରେ ସମନ୍ୱୟ ନରହିବା ଯୋଗୁ ପୁଲିସ୍ ବିଭାଗରେ ଖୋଲାଖୋଲି ଭାବେ ସିନିୟର ଏବଂ ଜୁନିୟର ସ୍ତରରେ ଗୋଷ୍ଠୀ କନ୍ଦଳ ସୃଷ୍ଟି ହେଲା । ଏଇ ଘଟଣା ପରେ ପୁଲିସ ଉପର ସ୍ତରରେ ଯେଉଁ ଗୋଷ୍ଠୀ କନ୍ଦଳ ସୃଷ୍ଟି ହେଲା, ତାହା ପରବର୍ତ୍ତୀ କାଳରେ ବଢ଼ବଢ଼ର ହୋଇ ରହିଲା, ଯାହାକି ଆଜିପର୍ଯ୍ୟନ୍ତ ମଧ୍ୟ ଚାଲିଆସିଛି । ଏଇ ଘଟଣାକୁ କେନ୍ଦ୍ରକରି ଗୋଟିଏ ଗୋଷ୍ଠୀ ପୁଲିସ୍ ବିଭାଗରେ ବ୍ରାହ୍ମଣ କରଣ ଭେଦଭାବ ସୃଷ୍ଟିକରିବାକୁ ପଛାଇ ନଥିଲେ ।

ନରସିଂହ ସ୍ୱାଇଁ, ତିନିଜଣ ସିନିୟରଙ୍କୁ ପଛରେ ପକାଇ ପୁଲିସ୍ ଆଇ.ଜି ହୋଇଥିବା ଯୋଗୁ ସେ ନନ୍ଦିନୀ ଦେବୀଙ୍କ ପ୍ରତି ଆନୁଗତ୍ୟ ଥିଲେ । ଏକଥା ପୁଲିସ ତଥା ଅନ୍ୟବିଭାଗ ଏବଂ ସାଧାରଣରେ ପ୍ରସାର ଲାଭକଲା ଏବଂ କଂଗ୍ରେସର ବିରୋଧି ଦଳମାନେ ଏହାର ସୁଯୋଗ ନେଲେ । ପୁଲିସ ଗୋଟିଏ ରାଜନୈତିକ ଦଳକୁ ସମର୍ଥନ କରେ ବୋଲି ଖୋଲା ଖୋଲି ଭାବେ ପ୍ରଚାର ହେଲା ।

କଟକ ସିଟି ଡି.ଏସ୍.ପି – କଟକ ସିଟି ଏ.ଏସ୍.ପି ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର ପ୍ରମୋଶନ ପାଇ ବାଲେଶ୍ୱର ଜିଲ୍ଲାକୁ ଅତିରିକ୍ତ ଏସ୍.ପି ଭାବେ ଗଲାପରେ ମେ ମାସ ୩ତାରିଖ ୧୯୭୪ ମସିହାରେ ମୋତେ କଟକ ସିଟି ଦାୟିତ୍ୱ ଦିଆଯାଇଥିଲା । ପରେ ଜୁଲାଇ ତିନି ତାରିଖ ଦିନ, ମୁଁ କଟକ ସିଟି ଡି.ଏସ୍.ପି ଭାବେ ଜଏନ୍ କଲି । ସେତେବେଳେ କଟକ ଜିଲ୍ଲାରେ ଏସ୍.ପି ଥା'ନ୍ତି ମିଃ ଭି. ଆପରାଓ, ଅତିରିକ୍ତ ଏସ୍.ପି ଥା'ନ୍ତି କେ.ଏମ୍. ଲାଲ । ମିଃ ଅଶୋକ ମୋବାଇ, କଟକ ଜିଲ୍ଲା ପାଳ ଭାବେ ଜଏନ୍ କରିଥାନ୍ତି । କଟକ ସହରରେ ସେତେବେଳେ ନାନା ପ୍ରକାର ବେଆଇନ୍ କାର୍ଯ୍ୟ ସାଙ୍ଗକୁ, ଛୋଟ ବଡ଼ ଅପରାଧ ବଢ଼ିବାରେ ଲାଗିଥାଏ । ସିନେମା ଟିକେଟ୍‌ରେ କଳାବଜାର ପ୍ରାୟ ପ୍ରତ୍ୟେକ ସିନେମା ହଲରେ ଦୈନନ୍ଦିନ ଘଟଣା । ଜନସାଧାରଣ ସିନେମା ଦେଖିବାକୁ ଗଲେ ଟିକେଟ୍ କଳାବଜାରରୁ ଅଧିକା ପଇସା ଦେଇ କିଣୁଥିଲେ । ହଲ୍ କାଉଣ୍ଟରରେ ଟିକେଟ୍ ପାଇବା ଅସମ୍ଭବ । ଏଥିପାଇଁ ସାଧାରଣ ଦର୍ଶକମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ହେଉଥିଲେ ଏବଂ ପୁଲିସ୍‌କୁ ଏଥିପାଇଁ ମୁଖ୍ୟତଃ ଦାୟୀ କରୁଥିଲେ । କେବଳ ଯେ ସିନେମା ଟିକେଟ୍‌ରେ କଳାବଜାର ହେଉଥିଲା ଏକଥା ନୁହେଁ । ପ୍ରାୟ ପ୍ରତ୍ୟେକଦିନ ସନ୍ଧ୍ୟାରେ ପ୍ରତ୍ୟେକ ହଲ ପାଖେ ବାଡ଼ିଆବାଡ଼ି, ଛୁରାମରାମରି ହେଉଥିଲା । ପ୍ରତ୍ୟେକ ହଲ୍‌କୁ ଗୋଟିଏ ଗୋଟିଏ ଦଳ ନିଜର କରି ନେଇ ଅନ୍ୟମାନଙ୍କୁ ତାଙ୍କ ଅଞ୍ଚଳକୁ ପୁରାଉନଥିଲେ । ସେଥିରେ ସିନେମା ହଲ କାଉଣ୍ଟର ଟିକେଟ୍ ବିକାଳୀ ଏବଂ ସ୍ଥାନୀୟ ପୁଲିସ୍ ଫାଣ୍ଡିର ହାବିଲ୍‌ଦାର, କନେଷ୍ଟବଲମାନଙ୍କର ହାତଥିଲା ବୋଲି ଜନସାଧାରଣ ଅଭିଯୋଗ କରୁଥିଲେ । ଟିକେଟରେ କଳାବଜାର ସାଙ୍ଗକୁ, ସନ୍ଧ୍ୟାପରେ କଟକ ସହରର ପ୍ରତ୍ୟେକ ଗଳିକନ୍ଦିରେ ଦେଶୀମଦ, କୁଚିଆମାନେ ଆଣି ବିକ୍ରି କରୁଥିଲେ । ଏପରିକି ବକ୍ସିବଜାର, ରେଲ୍‌ୱେ ଷ୍ଟେସନ୍ ବଜାର, ବକ୍ସିବଜାର ମାର୍କେଟ୍ ମଧ୍ୟରେ ଦେଶୀମଦର

ବାର କାଉଣ୍ଟର ଖୋଲା ହୋଇ ମଦ ବିକ୍ରି ହେଉଥିଲା । ଏଇ କାଉଣ୍ଟରମାନଙ୍କରେ ଚେୟାର ଟେବୁଲ୍, ଫ୍ୟାନ୍ ସବୁ ଯୋଗାଇ ଦିଆଯାଇଥାଏ । ଏସବୁ ଦେଶୀମଦ କାରବାରକୁ ମାଛୁଆବଜାରର ଜଣେ ବଡ଼ ଦେଶୀମଦ ବ୍ୟବସାୟୀ ଯେ କି କଟକ ଜିଲ୍ଲା ପାଇଁ ଦେଶୀମଦ ବିକ୍ରିକରିବାର ଲାଇସେନ୍ସ ନେଇଥିଲେ, ମଙ୍ଗଳାବାଗର ଜଣେ ଜଣାଶୁଣା ମଦ ବ୍ୟବସାୟୀ ଓ ବକ୍ସିବଜାର ଧୋବି ଗଳିର ଜଣେ ବ୍ୟବସାୟୀ ଏହି ବ୍ୟବସାୟ ଚଳାଉଥିଲେ । ଲାଇସେନସ୍ପ୍ରାପ୍ତ ସ୍ଥାନମାନଙ୍କରେ ବିକ୍ରି କରିବା ସାଙ୍ଗକୁ ସହରର ପ୍ରାୟ ପ୍ରତ୍ୟେକ ଗଳିକନ୍ଦିରେ କୁଚିଆମାନଙ୍କ ମାଧ୍ୟମରେ ଏଇ ବେଆଇନ୍ ବ୍ୟବସାୟ ଚାଲୁଥାଏ । ଏମାନେ ଢେଙ୍କାନାଳ, ଆଠଗଡ଼, ଗୁରୁଡ଼ିଛାଟିଆ, ଜଙ୍ଗଲ ଅଞ୍ଚଳରେ ଦେଶୀମଦ ତିଆରି କରି, କଟକ ସହରକୁ ଗାଡ଼ି, ନଦୀରେ ଡଙ୍ଗାରେ ଆଣି କୁଚିଆମାନଙ୍କୁ ଯୋଗାଇ ଦେଉଥିଲେ । କଟକ ସହରରେ ନାମ୍‌ଜାଦା ଜୁଆଆଡ୍ଡାମାନ ଚାଲୁଥାଏ । ମଙ୍ଗଳାବାଗ, ବକ୍ସବାଟୀ ରୋଡ଼ ବକ୍ସିବଜାର ପ୍ରଭୃତି ସ୍ଥାନମାନଙ୍କରେ ଜୁଆଖେଳ ପ୍ରତ୍ୟେକଦିନ ସନ୍ଧ୍ୟାରେ ଚାଲେ ଯେଉଁଠିକୁ କଟକ ବାହାରୁ ଜୁଆଡ଼ୀମାନେ ଆସନ୍ତି । କେବଳ ଜୁଆଡ଼ୀ ନୁହଁନ୍ତି, ଅପରାଧି, ଦାଗୀ ଏମାନେ ମଧ ଏଇ ସ୍ଥାନମାନଙ୍କରେ ଆଡ୍ଡା ଜମାଇଥାନ୍ତି । ମଙ୍ଗଳାବାଗ ଥାନାଠାରୁ ମାତ୍ର ତିନିଶହ ଗଜ ଦୂରରେ ଗୋଟିଏ ଜୁଆଆଡ୍ଡା ବର୍ଷ ବର୍ଷଧରି ଚାଲୁଥିଲା । ସମସ୍ତ କାର୍ଯ୍ୟ ପୁଲିସ୍, ଅବକାରୀ ବିଭାଗର ଜ୍ଞାତସାରରେ ଚାଲୁଥିଲା ବୋଲି ଜନସାଧାରଣ ଅଭିଯୋଗ କରୁଥିଲେ । ପ୍ରକୃତରେ ମୁଁ ଜଏନ୍ କଲା ପରେ ଜାଣିଲି ଯେ ଏ ସମସ୍ତ କାରବାର ସ୍ଥାନୀୟ ପୁଲିସଥାନା, ଫାଣ୍ଡିର ଜଣାତରେ ଚାଲୁଥିଲା ଏବଂ କେତେକ ଥାନା ଫାଣ୍ଡିର ଅଫିସର୍, ହାବିଲ୍‌ଦାରମାନେ ଏମାନଙ୍କଠାରୁ ମାସିକିଆ ପାଉଣା ନେଉଥିଲେ । ତେଣୁ ଜନସାଧାରଣଙ୍କର ପୁଲିସ୍ ଉପରୁ ବିଶ୍ୱାସ କମିଯାଇଥିଲା ।

କଟକ ସିଟିରେ ଜଏନ୍ କଲା ପରେ ଚୋରା ମଦ କାରବାର ଉପରେ ପ୍ରତ୍ୟେକ ଦିନ ଚଢ଼ାଉ ଆରମ୍ଭ କଲି । ପ୍ରଥମେ କେତେଦିନ ଥାନା ମାଧ୍ୟମରେ ଚଢ଼ାଉ କଲାବେଳେ, କୁଚିଆ ବିକାଳୀ ଦଳ ଆଗରୁ ଖବର ପାଇଯିବା କଥା ଶୁଣିବାକୁ ପାଇଲି । ପରେ ଏସ.ପି.ଙ୍କ ସଙ୍ଗେ କଥାବାର୍ତ୍ତା କଲାପରେ, ପ୍ରତ୍ୟେକ ଦିନ ସନ୍ଧ୍ୟାରେ କଟକ ରିଜର୍ଭରୁ ଗୋଟେ ସେକ୍‌ସନ ଏ.ପି.ଆର୍ ଫୋର୍ସ, ସର୍ଜେଣ୍ଟ କଟକ ହେଡ଼କ୍ୱାଟରର୍ସ, ଡି.ଏସ୍.ପି, ହରିହର ପଣ୍ଡା ତତ୍‌କାଳୀନ ଅତିରିକ୍ତ ଏସ.ପି. ବି.ବି. ମିଶ୍ରଙ୍କୁ ସାଙ୍ଗରେ ନେଇ ସ୍ଥାନୀୟ ଥାନାର ଅଜଣାନ୍ତରେ ବିଭିନ୍ନ ସ୍ଥାନରେ ଚଢ଼ାଉ କଲୁ । ଏପ୍ରକାର ଅଚାନକ ଚଢ଼ାଉ ଯୋଗୁ ପ୍ରତ୍ୟେକ ଦିନ ଦେଶୀମଦ ବିକାଳୀ ଧରାପଡ଼ିଲେ । ଶହଶହ ଲିଟିର ଦେଶୀମଦ ଜବତ୍ କରାଗଲା । ଚଢ଼ାଉ ପରେ ଯେଉଁ ଥାନା ଅଞ୍ଚଳରୁ ଦେଶୀମଦ ଧରାହୁଏ, ସେଇ ଥାନାର ଅଫିସରମାନଙ୍କୁ ଖବର ଦିଆଯାଇ ମଦ ଜବତ ହୁଏ ଏବଂ ଥାନାରୁ ଏକ୍‌ସାଇଜ୍ ପ୍ରସିକ୍ୟୁସନ ରିପୋର୍ଟ ଦିଆଯାଏ । ପ୍ରତ୍ୟେକ ଦିନ ସନ୍ଧ୍ୟାରେ ପ୍ରାୟ ସାତ ଆଠ ଯାଗାରେ ଏପରି ଚଢ଼ାଉ ହୁଏ । ଚଢ଼ାଉ ଖବର ସବୁଦିନ କଟକରୁ ପ୍ରକାଶ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଇବା ଯୋଗୁଁ ଯେଉଁ ଅଞ୍ଚଳରେ ଏପରି କାରବାର ଚାଲୁଥାଏ ସେଠାକାର ସ୍ଥାନୀୟ ବାସିନ୍ଦାମାନେ ମଧ ମୋ ଅଫିସକୁ ତାଙ୍କ ନାମ ଗୋପନ ରଖି ଟେଲିଫୋନ

କରି କୁହନ୍ତି । ଏହା ଦ୍ୱାରା ଲୋକସଂପର୍କ ମଧ୍ୟ ବଢ଼ିବାରେ ଲାଗିଲା । ଦେଶୀମଦ ସାଙ୍ଗକୁ ସିନେମା ଟିକେଟ୍‌ରେ କଳାବଜାର କରୁଥିବା ଅସାମାଜିକ ଲୋକମାନଙ୍କ ଉପରେ ମଧ୍ୟ ଚଢ଼ାଉ ଆରମ୍ଭ ହେବାରେ ସିନେମା ଟିକେଟ୍‌ରେ କଳାବଜାର କମିଗଲା । କଳାବଜାରୀମାନଙ୍କୁ ସିନେମା ହଲ ପାଖେ ଚିହ୍ନିବା ପାଇଁ, ସେମାନଙ୍କୁ ଆଗେ ସିଟି ଅଫିସ୍ ପାଖେ ଭଣ୍ଡାରୀ ଡାକି, ତାଙ୍କୁ ଲଣ୍ଡା କରି ଦିଆଯାଉଥିଲା । ଲଣ୍ଡାକଲାପରେ, ସେମାନେ ସିନେମା ହଲପାଖରେ ଟିକେଟେ ବିକ୍ରୀ କଲାବେଳେ ପୁଲିସ ହାବୁଡ଼େ ସହଜରେ ପଡ଼ିଯାଉଥିଲେ । ଏପରି କିଛି ଦିନ ଚଢ଼ାଉ କଲାପରେ, ସେମାନଙ୍କର ପାର୍ଦୁଭାବ ସିନେମା ହଲ ପାଖରୁ ମଧ୍ୟ କମିଗଲା ।

**କଟକ ସହରରେ ପୋଲିସ ପକ୍ଷରୁ**
**ବ୍ୟାପକ ଖାନତଲାସ**

ମୁଁ ଏଜନ୍ କରିବାର କିଛି ଦିନ ପରେ, ୧୯୭୪ ମସିହା ଅଗଷ୍ଟମାସ ଚାରିତାରିଖ ଦିନ, କଟକ ସହରରେ ଏକ ଚାଞ୍ଚଲ୍ୟକର ଠକେଇ ଘଟଣା ଧରା ପଡ଼ିଲା । ମିଃ ମହାନ୍ତି ବୋଲି ଜଣେ ମେଡ଼ିକାଲ କଲେଜର ଡ୍ରପ ଆଉଟ୍, କଟକ-ଭୁବନେଶ୍ୱରରେ ନାନା ପ୍ରକାର ଠକେଇ କାର୍ଯ୍ୟରେ ଲିପ୍ତ ରହି ଖସି ଯାଉଥିଲା । ଏଥିମଧ୍ୟରେ ସେ କଟକ ବାଦାମବାଡ଼ି ପାଖରେ ଗୋଟିଏ ଘରଭଡ଼ା ନେଇ "ନାୟକ-ଫାର୍ମାସିଟିକାଲ୍" ନାମରେ ଗୋଟିଏ ନକଲି କମ୍ପାନୀ ଖୋଲି, ଠକେଇ କାର୍ଯ୍ୟ ଆରମ୍ଭ କରିଥିଲା । ଏଇ କମ୍ପାନୀ ଖୋଲିବାର କିଛି ଦିନ ପରେ, ବିଭିନ୍ନ ଓଡ଼ିଆ ସମ୍ବାଦ ପତ୍ରମାନଙ୍କରେ ୩୫୦ ଜଣ ମେଡ଼ିକାଲ ପ୍ରତିନିଧି ନିଯୁକ୍ତି ଦେବାପାଇଁ ପ୍ରାର୍ଥୀମାନଙ୍କର ଦରଖାସ୍ତ ଆହ୍ୱାନ କରି ଏକ ବିଜ୍ଞାପନ ପ୍ରକାଶ କରିଥିଲା । ପ୍ରାର୍ଥୀମାନେ ଦରଖାସ୍ତ ଫର୍ମ କିଣିବା ପାଇଁ ଟଙ୍କା ରଖିବା ବେଳେ, ଯେଉଁଦିନ ଇଣ୍ଟରଭ୍ୟୁ ଦେବେ, ସେ ଦିନ ମଧ୍ୟ ତିନିଟଙ୍କା ଲେଖାଏଁ ଦବାକୁ କୁହାଯାଇଥିଲା । ବିଜ୍ଞାପନ, ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଇଲା ପରେ ଶହଶହ ପ୍ରାର୍ଥୀ ଦରଖାସ୍ତ ଦ୍ୱାରା ଆବେଦନ କରିଲା ବେଳେ, ମନ୍ତ୍ରୀ, ଏମ୍.ଏଲ. ଏଙ୍କ ଠାରୁ ମିଃ ମହାନ୍ତିଙ୍କ ପାଖକୁ ସୁପାରିସ୍ ପତ୍ର ମାନ ଆଣିଥିଲେ । କମ୍ପାନୀ ମଧ୍ୟ ଗୋଟିଏ ଟେଲିଫୋନ୍ ନେଇଥିଲେ ଏବଂ ବିଭିନ୍ନ ପ୍ରାର୍ଥୀମାନଙ୍କୁ ଚାକିରୀ କରାଇଦେବା ଲାଗି ତାଙ୍କର ଦଲାଲମାନଙ୍କ ଜରିଆରେ ମଧ୍ୟ ହଜାର ହଜାର ଟଙ୍କା ଆଦାୟ କରିଥିଲେ । ଅଗଷ୍ଟ ଚାରିତାରିଖକୁ

**ଚାଞ୍ଚଲ୍ୟକର ଠକେଇ**
**ଘଟଣା ଧରାପଡ଼ିଲା**

ପ୍ରାର୍ଥୀମାନଙ୍କର ଲିଖିତ ଏବଂ ମୌଖିକ ଇଣ୍ଟରଭିଉ ବାରବାଟୀ ଷ୍ଟାଡ଼ିୟମରେ ହେବାର ମଧ୍ୟ ସମ୍ବାଦ ପ୍ରକାଶ ପାଇଥିଲା । ସେଇଦିନ ସକାଳୁ ଜଣେ ଜଣାଶୁଣା ଔଷଧ କମ୍ପାନୀର ପ୍ରତିନିଧି ମୋତେ କହିଲେ ଯେ, ସେ ଏତେଦିନ ଧରି ଏତେବଡ଼ ଔଷଧ କମ୍ପାନୀର ପ୍ରତିନିଧି ଭାବେ ସାରା ଭାରତ ବୁଲି ସାରିଲେଣି ମାତ୍ର କେବେ ହେଲେ ସେ କୌଣସି ଔଷଧ କମ୍ପାନୀ ଏତେ ସଂଖ୍ୟକ ପ୍ରତିନିଧି ନବାର ଜାଣିନି । ''ନାୟକ ଫର୍ମାସୁଟିକାଲ'' ଏକ ଠକ କମ୍ପାନୀ ହୋଇପାରେ ବୋଲି ସନ୍ଦେହ କରୁଛନ୍ତି । ଏକଥା ଶୁଣିଲା ପରେ, ମୁଁ ମଙ୍ଗଳାବାଗ ଥାନା ଇନ୍‌ସପେକ୍ଟରଙ୍କୁ ଡକାଇ,ତାଙ୍କର କେତେଜଣ ଅଫିସରଙ୍କୁ ସାଧା ପୋଷାକରେ ଆସିବାକୁ କହିଥିଲି । ପରେ ପରେ, ମୁଁ ଛଦ୍ମବେଶରେ ବାରବାଟୀ ଷ୍ଟାଡ଼ିୟମ ଭିତରେ ହେଉଥିବା ଇଣ୍ଟରଭିଉ ହଲକୁ ଯାଇ ଲିଖିତ ପରୀକ୍ଷା ଦେଇଥିଲି । ସେଠି ଦେଖିଲି ଠକ ଦଳର ନେତା ମିଃ ମହାନ୍ତି ପଇସା ଆଦାୟ କରିବାରେ ବ୍ୟସ୍ତ । ମୌଖିକ ପରୀକ୍ଷା କରିବା ପାଇଁ କିଛି ମେଡ଼ିକାଲ କଲେଜର ହାଉସ୍ ସର୍ଜନମାନଙ୍କୁ ଡକାଇ ସେମାନଙ୍କ ଦ୍ୱାରା ମୌଖିକ ପରୀକ୍ଷା ଆରମ୍ଭ କରିଥାନ୍ତି । ପରୀକ୍ଷକମାନେ ନାନା ପ୍ରକାର ଅବାନ୍ତର ପ୍ରଶ୍ନମାନ ମଧ୍ୟ ପଚାରୁଥାନ୍ତି । ମୁଁ ଯେତେବେଳେ ନିଶ୍ଚିତଭାବେ ଜାଣିଲି ଏ ସାକ୍ଷାତ୍‌କାର ନକଲି କମ୍ପାନୀର ସେତେବେଳେ ସାଧା ପୋଷାକରେ ଥିବା ସବ୍ ଇନସ୍‌ପେକ୍ଟର ଏବଂ ପୋଷାକରେ ଥିବା ଇନ୍‌ସପେକ୍ଟରଙ୍କୁ, ସେଠାକୁ ଆସିବା ପାଇଁ ଖବର ଦେବାରୁ, ସେମାନେ ଆସିଥିଲେ । ପୁଲିସ୍ ପହଞ୍ଚିଲା ପରେ ଠକ ସର୍ଦ୍ଦାର ସେଠାରୁ ଡେଇଁ ପଳାଇବାକୁ ଚେଷ୍ଟାକଲା ବେଳେ ଧରା ପଡ଼ିଲେ । ବାକି ଦୁଇଜଣ ଆଦାୟ ହୋଇଥିବା ଟଙ୍କା ଧରି ଗୋଟିଏ ପରିସ୍ରାଗାର ମଧ୍ୟରେ ଲୁଚିଥିବାବେଳେ ଧରାହେଲେ । ସେଠାରୁ ବହୁ ପରିମାଣରେ ନକଲି କାଗଜ ପତ୍ର, ଷ୍ଟାମ୍ପ, ନଗଦ ଟଙ୍କା ଧରା ପଡ଼ିଥିଲା । ପରେ ପରେ ବାଦାମବାଡ଼ି ଭଡ଼ାଘର ଖାନ୍‌ତଲାସ କରାଯାଇଥିଲା । ଅଗଷ୍ଟ ପାଞ୍ଚ ତାରିଖ ଦିନ ସମାଜ, ପ୍ରଜାତନ୍ତ୍ର ପରି ସମ୍ବାଦ ପତ୍ରମାନଙ୍କରେ ''କଟକ ସହରରେ ଚାଞ୍ଚଲ୍ୟକର ଠକେଇ ଘଟଣା ଧରା ପଡ଼ିଲା, ୪ଜଣ ଗିରଫ ଓ ବହୁ ପରିମାଣରେ ନକଲି କମ୍ପାନୀର କାଗଜ ପତ୍ର ଜବତ'' ସିରୋନାମାରେ ସମ୍ବାଦ ପ୍ରକାଶ ପାଇଥିଲା । ଏହି ଚଢ଼ାଉରେ ବହୁ ଗରୀବ ପ୍ରାର୍ଥୀ ଠକ କବଳରୁ ରକ୍ଷା ପାଇଥିଲେ ।

ଏହାପରେ ଅଗଷ୍ଟ ଛଅ ତାରିଖ ଦିନ ସକାଳେ ଜଣେ ଅଜଣା ଲୋକ ମୋତେ ଆସି ମୋ ସିଟି ଅଫିସ୍‌ରେ ଖବର ଦେଲା ଯେ, କଟକ ସହରରେ ମାଣିକଘୋଷ ବଜାରରେ ଅଣ୍ଡରଗ୍ରାଉଣ୍ଡରେ ଗୋଟିଏ ଅପମିଶ୍ରଣ କାରଖାନା ଚାଲିଛି । ସେଠି ନାନା ପ୍ରକାର ଜିନିଷରେ ଅପମିଶ୍ରଣ କରାଯାଉଛି । ଏହାର ସତ୍ୟାସତ୍ୟ ବୁଝିବା ପାଇଁ ମୁଁ ନିଜେ ସାଧା ପୋଷାକରେ ଜଣେ ସାଧାରଣ ଲୋକ ଭାବେ ଅଟାକଳକୁ ଅଟା ପେଷାଇବା ପାଇଁ ଯାଇଥିଲି । ଦୁଇ କେ.ଜି. ଗହମ ପେଷି ସାରିଲା ପରେ ଗୁପ୍ତ ଖବର ଦେଇଥିବା ଲୋକ ଯେଉଁ ପରି ଭାବେ ସେଇ ଅମ୍ବିକା ଅଟାକଳର ବର୍ଣ୍ଣନା କରିଥିଲେ, ତାହା ସଂପୂର୍ଣ୍ଣ ସତ୍ୟ ବୋଲି ଜଣାଗଲା । ମାତ୍ର ମାଟିତଳେ କାରଖାନା କାମ କରୁଛି କି ନାହିଁ ଏକଥା ମୁଁ ଦେଖିପାରି ନଥିଲେ ମଧ୍ୟ ସନ୍ଦେହ କରିଥିଲି । ସେଠାରୁ ଫେରି ମୁଁ ଏକଥା ଏସ.ପି. ମିଃ. ଆପାରାଓଙ୍କୁ କହିଥିଲି ଏବଂ ଆପାରାଓ,

କଲେକ୍ଟରଙ୍କୁ କହି ପରଦିନ ୨ଟା ବେଳେ ସେଇ ଅଟାକଳ ଉପରେ ଚଢ଼ାଉ କରିବା ପାଇଁ ଠିକ୍ କଲେ । ଏ ଘଟଣା କେବଳ ମୋ ଛଡ଼ା ଆଉ କେହି ଜାଣିନଥିଲେ । ଅଗଷ୍ଟ ସାତ ତାରିଖ ଦିନ ସକାଳୁ ମୁଁ କେତେକ ସାଧାପୋଷାକଧାରୀ ଅଫିସରଙ୍କୁ ଡକାଇ ଥିଲି ଏବଂ ଦୁଇ ସେକସନ୍ ଫୋର୍ସ ଠିକ୍ କରି ଦିନ ଦୁଇଟା ବେଳେ ସେଇ ଅଟାକଳ ଉପରେ ଚଢ଼ାଉ କରିଥିଲି । ପରଦିନ ସମାଚରେ ପ୍ରକାଶ ପାଇଥିବା ଖବର ହେଲା ''କଟକ ସହରରେ ଚୋରା ଅପମିଶ୍ରଣ କାରଖାନା ଧରା ପଡ଼ିଲା । ମାଟି ତଳେ ଥିବା ଚୋରା କାରଖାନାରୁ ଦୁଇଟି ଅଟାକଳ ସମେତ ବହୁ ପରିମାଣର ବାଲି, ଜାଫରା ଫଳ, ପଥର ଗୁଣ୍ଡ ପ୍ରଭୃତି ଜବତ । ଗତକାଲି ସନ୍ଧ୍ୟା ପାଞ୍ଚଟା ବେଳେ, ଜିଲ୍ଲା ମାଜିଷ୍ଟ୍ରେଟ୍, ପୁଲିସ୍ ସୁପରିଟେଣ୍ଡ, କଟକ ସି.ଟି. ଡି.ଏସ୍.ପି., ଲାଲବାଗ ଥାନାର ଅଫିସର ବୃନ୍ଦ, ରିଜର୍ଭପୁଲିସ୍ ଫଉଜ ସହାୟତାରେ ମାଣିକ ଘୋଷ ବଜାରରେ ଥିବା ''ଅମ୍ବିକା ଅଟାକଳ'' କୁ ଅଚାନକ ଭାବେ ଘେରାଉକରି ଖାନତଲାସ କରିଥିଲେ । ଅନୁସନ୍ଧାନକାରୀ ପୁଲିସ୍ ଅଫିସରମାନେ ଏକ ଗୁପ୍ତ କବାଟ ଭାଙ୍ଗି, ଅଟାକଳର ମାଟିତଳେ ଏକ ପ୍ରଶସ୍ତଘରେ ଏକ ବିରାଟ ଅପମିଶ୍ରଣ କାରଖାନା ଥିବାର ଦେଖିଥିଲେ । ଉକ୍ତ ମାଟି ତଳେ କାରଖାନାର ଦୁଇଟି ଅଟାକଳ ବୋଲି କୁହାଯାଉଥିବା ପେଷା ମେସିନ୍ ବସା ଯାଇଛି ଏବଂ ସେଠାକୁ ଅଭିନବ ଉପାୟରେ ବିଦ୍ୟୁତ୍ ଲାଇନ୍ ମଧ ନିଆଯାଇଛି । ଅନୁସନ୍ଧାନ ବେଳେ ସେଇ ଘରୁ ବହୁ ପରିମାଣରେ ବାଲି, ପଥର ଜାଫରଫଳ, ହଳଦୀଗୁଣ୍ଡ, ଲଙ୍କାଗୁଣ୍ଡ, ଲଙ୍କାମରିଚ ମଂଜି, ବେସନ, ଗୋଖାଦ୍ୟ ଚୋକଡ଼ ଇତ୍ୟାଦି ବାହାରିଥିଲା । ଧରାପଡ଼ିଥିବା ଅପମିଶ୍ରଣ କାରଖାନା ଆଧୁନିକ ଧରଣର କାରଖାନା ଏବଂ ସେଥିରେ ଲଙ୍କା ଗୁଣ୍ଡ, ହଳଦୀଗୁଣ୍ଡ, ଇତ୍ୟାଦିରେ ଅପମିଶ୍ରଣ କରି ବଜାରକୁ ରପ୍ତାନୀ କରାଯାଉଥିଲା ।'' ପ୍ରାୟ ପ୍ରତ୍ୟେକ ସମ୍ବାଦ ପତ୍ରରେ ଏ ଘଟଣା ପ୍ରକାଶ ପାଇଥିଲା । କଟକ ସହର ବାସିନ୍ଦାମାନେ ଏପରି ଖାଦ୍ୟ ଅପମିଶ୍ରଣ କାରଖାନା ବିଷୟରେ ଆଗରୁ ଜାଣିନଥିଲେ । ପରେ ପରେ ସେ କାରଖାନାର ମାଲିକଙ୍କୁ ଗିରଫ କରି ଖାଦ୍ୟ ଅପମିଶ୍ରଣ ଆଇନ୍‌ରେ କୋର୍ଟକୁ ଚାଲାଣ କରାଯାଇଥିଲା ।

ଚୋରା ଅପମିଶ୍ରଣ
କାରଖାନା ଧରାପଡ଼ିଲା

ଗିରଫ

ସେଇ ସମୟରେ ସହରରେ କେତେକ ସ୍ଥାନରେ ବେଶ୍ୟାବୃତ୍ତି ଚାଲିଥିଲା । କଟକ ଓଡ଼ିଆ ବଜାରରେ ରେଣୁକା ନାମରେ ଜଣେ ମହିଳା ତାଙ୍କ ନିଜ ଘରେ ବାହାରୁ ଝିଅମାନଙ୍କୁ ଆଣି

ଦେହ ବ୍ୟବସାୟରେ ଲଗାଉଥିଲେ । କଟକ ସହରରେ ଚୋରା କାରବାର ଧରା ହେବାପରେ ସ୍ୱତଃ ପ୍ରବୃତ୍ତ ହୋଇ ଲୋକମାନେ ଅନ୍ୟାନ୍ୟ ଅପରାଧ ବିଷୟରେ ମଧ୍ୟ ଖବର ଦେବାକୁ ଆସିଲେ । ଦିନେ ଉପରବେଳା ଜଣେ ଲୋକ, ଯାହାଙ୍କୁ କି ମୁଁ ଚିହ୍ନିନଥିଲି ଆସି ମୋ ଅଫିସ୍‌ରେ ଖବର ଦେଲେ ଯେ ଓଡ଼ିଆ ବଜାରରେ ଏପରି ବେଶ୍ୟାବୃତ୍ତି ଚାଲୁଛି । ଏ ଖବର ଶୁଣିଲା ପରେ ମୁଁ ଲାଲ୍‌ବାଗ୍ ଥାନା ଇନସ୍‌ପେକ୍ଟର ମିଃ. ନରସିଂହ ପଟ୍ଟନାୟକଙ୍କୁ ଧରି ଅପରାହ୍ଣ ପାଞ୍ଚଟା ବେଳକୁ ସେଇ ଘର ଉପରେ ଚଢ଼ାଉ କରିଥିଲୁ । ଚଢ଼ାଉବେଳେ ଜଣେ ଯୁବକ, ଗୋଟିଏ ଯୁବତୀ ସହିତ ଦୈହିକ ସମ୍ପର୍କ ରଖିଥିବା ଅବସ୍ଥାରେ ଧରା ପଡ଼ିଲେ । ଆଉ ଗୋଟିଏ ଯୁବତୀ ମଧ୍ୟ ଘରେ ଥିଲା ବେଳେ ଉଧାର କରାଗଲା । ପ୍ରଥମ ଥର ପାଇଁ ଓଡ଼ିଶାରେ ବେଶ୍ୟାବୃତ୍ତି ନିରୋଧ ଆଇନ୍‌ବଳରେ, ସେଇ ମହିଳା ରେଣୁକାଙ୍କୁ ଗିରଫ କରାଯାଇ କୋର୍ଟକୁ ଚାଲଣ କରାଯାଇଥିଲା । ବେଶାବୃତ୍ତି ନିରୋଧ ଆଇନ୍ ଅନୁସାରେ, ସେତେବେଳେ ଏସବୁ ମାମଲାର ତଦନ୍ତ କେବଳ ଡି.ଏସ.ପି.କିମ୍ୱା ତାଙ୍କ ଠାରୁ ଉଚ୍ଚ ଅଫିସର କରିବାର ଆଇନ୍ ଅନୁସାରେ ଅନୁମୋଦିତ ଥିବା ହେତୁ ମୁଁ ସେଇ ମାମଲାର ତଦନ୍ତ କରିଥିଲି ଏବଂ ଚାର୍ଜସିଟ୍ ଦେଇଥିଲି । ଏହାପୂର୍ବରୁ କୌଣସି ମାମଲା ଏଇ ଆଇନ୍ ଅନୁସାରେ ଓଡ଼ିଶାରେ କୋର୍ଟକୁ ବିଚାର ପାଇଁ ଯାଇନଥିଲା । ପରେ ମଧ୍ୟ ସେଇ ଘରୁ ଆଉ ଥରେ ସେଇ ଅପରାଧରେ ଦୁଇଜଣ ଯୁବତୀଙ୍କୁ ଉଧାର କରିବା ସଙ୍ଗେ ସଙ୍ଗେ ସେଇ ମହିଳାଙ୍କ ବିରୁଦ୍ଧରେ ମାମଲା ରୁଜୁ କରି ହାଜତ୍‌କୁ ପଠାଇ ଥିଲି ।

କେବଳ ଓଡ଼ିଆ ବଜାରରେ ନୁହେଁ, ସେତେବେଳେ କଟକ ସହରରେ ନୂଆ ନୂଆ ହୋଇ ଖୋଲିଥିବା କେତେକ ଲଜ୍‌ରେ ମଧ୍ୟ ଫୁଲବାଣୀ ନୟାଗଡ଼ ପ୍ରଭୃତି ଅଞ୍ଚଳରୁ ଯୁବତୀ ଝିଅମାନଙ୍କୁ ଆଣି ଦେହ ବ୍ୟବସାୟରେ ଲଗାଉଥିଲେ । ଓଡ଼ିଆ ବଜାର ଚଢ଼ାଉ ପରେ ଲଜ୍‌ମାନଙ୍କରେ ଦେହ ବ୍ୟବସାୟ ଚାଲୁଥିବା ଖବର ମଧ୍ୟ ମୋ ପାଖରେ ଆସି ପହଞ୍ଚିଲା । ସେଇ ଖବର ପାଇଲା ପରେ କଟକ ସହରର କେତେକ ଲଜିଂରେ ମଧ୍ୟ ଚଢ଼ାଉ କରି ଫୁଲବାଣୀ ଅଞ୍ଚଳରୁ ଭୁଲାଇ ଆଣି ଏପରି କାର୍ଯ୍ୟରେ ଲଗାଉଥିବା ଲୋକଙ୍କୁ ଗିରଫ କରାଯାଇଥିଲା । ସେତେବେଳେ କଳାବତୀ ଏବଂ ଗୟା ପ୍ରଧାନ ନାମକ ଦୁଇଜଣ ବ୍ୟକ୍ତି ଫୁଲବାଣୀ ଅଞ୍ଚଳରୁ ଆଦିବାସୀ ଝିଅମାନଙ୍କୁ କଟକ ବୁଲିଯିବା ନାମରେ ଡାକି ଆଣି ଯବରଦସ୍ତି ଏପରି କାର୍ଯ୍ୟ ଲଜିଂମାନଙ୍କରେ ରଖି କରାଉଥିଲେ । ତଦନ୍ତବେଳେ ମୁଁ ଫୁଲବାଣୀର ଜି.ଉଦୟଗିରି ଅଞ୍ଚଳରୁ କଳାବତୀକୁ ଗିରଫ କରିଆଣିଥିଲି । ମହିଳା ସବ୍‌ଇନସ୍‌ପେକ୍ଟର ଶାନ୍ତି ନନ୍ଦ ମୋତେ ଏଥିରେ ସାହାଯ୍ୟ କରିଥିଲେ । ଏପରି ଅଚାନକ ଚଢ଼ାଉ ହେବା ପରେ ଏବଂ ଏପ୍ରକାର ସମ୍ବାଦ ପ୍ରକାଶ ପାଇଲା ପରେ

ଫୁଲବାଣୀ ଅଞ୍ଚଳରୁ କେତେକ ଛାତ୍ର ଯେଉଁମାନେ କି ସେତେବେଳେ କଟକ ଭୁବନେଶ୍ୱରରେ କଲେଜରେ ପଢୁଥାନ୍ତି, ସେମାନେ ଗୋଟିଏ ଦଳକରି ମୋତେ ମଧ ସେଠାକାର ବ୍ରୋକର ମାନଙ୍କ ବିରୁଦ୍ଧରେ ଖବର ଦେଲେ ଏବଂ ଏପ୍ରକାର କାର୍ଯ୍ୟ ପ୍ରତିରୋଧ କରିବା ଦିଗରେ ସାହାଯ୍ୟ କଲେ । ପରେ ପରେ ଲଜିଂ ମାନଙ୍କରେ ଏପରି ଘଟଣା ବହୁପରିମାଣରେ କମିଯାଇଥିଲା ।

ବିଭିନ୍ନ ସ୍ଥାନରେ ଚଢ଼ାଉ ଏବଂ ଚଢ଼ାଉ ଘଟଣାମାନଙ୍କରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେବାପରେ ପ୍ରାୟ ପ୍ରତ୍ୟେକ ଦିନ ବିଭିନ୍ନ ଲୋକମାନେ ଚୋରୀ ଡକାୟତି, ଅସାମାଜିକ କାର୍ଯ୍ୟ ଏବଂ ଚୋରାକାରବାର ବିଷୟରେ ଖବର ଦେଉଥାନ୍ତି । ସମସ୍ତେ ସେମାନଙ୍କ ନାମକୁ ଗୋପନ ରଖିବାକୁ ଅନୁରୋଧ କରି ଖବର ଦିଅନ୍ତି । ଖବର ଦେଉଥିବା ଲୋକମାନଙ୍କ ନାମକୁ କେବେହେଲେ ମୁଁ କାହା ଆଗରେ ପ୍ରକାଶ କରେନି । ଏପରିକି ଦରକାର ନପଡ଼ିଲେ ଏସ.ପି.ଙ୍କୁ ମଧ କହୁନଥିଲି । ଦିନେ ଜଣେ ଆସି ଖବର ଦେଲେ ଯେ କଟକ ସହରରେ ବିଭିନ୍ନ ସ୍ଥାନମାନଙ୍କରେ ଚା ଅପମିଶ୍ରଣ କାରଖାନା ମାନ ଚାଲୁଛି । ଚାରେ ଅପମିଶ୍ରଣ ମୁଁ ପ୍ରଥମେ ବୁଝି ପାରିନଥିଲି । ମାତ୍ର ଖବର ଦେଇଥିବା ଲୋକ, ମୋତେ " ଶୁଆବସା" ଚାହା ଦୁଇଟି ପ୍ୟାକେଟ୍ ଆଣି ଅପମିଶ୍ରଣ ଚାହା ଏବଂ ପ୍ରକୃତ ପ୍ୟାକେଟ୍ ବିଷୟରେ ବୁଝାଇ ଥିଲେ । ତାଛଡ଼ା ସେ ମଧ ଚା ଅପମିଶ୍ରଣ କାରଖାନାର ଗୋଟିଏ ନକ୍ସା କାଟି ମୋତେ ଦେଲେ । ମୁଁ ଏକଥା ଏସ.ପି. ଆପାରାଓଙ୍କୁ କହିଲି । ସେ ସଙ୍ଗେ ସଙ୍ଗେ ଚଢ଼ାଉ କରିବାପାଇଁ ନିର୍ଦ୍ଦେଶ ଦେଲେ ଏବଂ ଚାରିଟା ବେଳକୁ ପୁଲିସ୍ ଚାରୋଟି ଅପମିଶ୍ରଣ ସ୍ଥାନରୁ ନକଲି ଚା କାରଖାନା ଏବଂ ଅନ୍ୟ ତିନୋଟି ସ୍ଥାନରୁ ଚା ତିଆରି ପାଇଁ ଦୁଇ କୁଇଣ୍ଟାଲ୍ ଚା ରଙ୍ଗର କାଠ ଗୁଣ୍ଡ ଓ ୮୬କେଜି. ଅପମିଶ୍ରିତ ଚା ଜବତ କରାଯାଇଥିଲା । ଚଢ଼ାଉ ବେଳେ ଚା ପରି ରଙ୍ଗ ଦିଆ କାଠ ଗୁଣ୍ଡ, ବେଙ୍ଗଲବଣ୍ଡ ସେସାଇ ଡଷ୍ଟ ଟି, (୫ପଇସାର) ଛାପାକାଗଜ ପ୍ୟାକେଟ୍ ଜବତ କରାଯାଇଥିଲା । କାଜି ବଜାରର ମହାନ୍ତିଲେନ୍ ଅଞ୍ଚଳରୁ ଗୋଟିଏ ଭଡ଼ାଘରୁ ପ୍ରାୟ ସତୁରୀ କିଲୋଗ୍ରାମ ଅପମିଶ୍ରଣ ଚା ଜବତ୍ କରାଯାଇଥିଲା । ଅପମିଶ୍ରଣକାରୀମାନେ, ବିଭିନ୍ନ ଚା ଦୋକାନରୁ ବ୍ୟବହାର କରାଯାଇଥିବା ଚା ଗୁଣ୍ଡକୁ ସଂଗ୍ରହ କରି ଆଣିଲା ପରେ,ତାସହିତ ଚମଡ଼ାଗୁଣ୍ଡ, କରତଗୁଣ୍ଡକୁ ଖଇର ଦ୍ୱାରା ରଙ୍ଗ କରିଥାନ୍ତି । ଖଇର ରଙ୍ଗ କଲାବେଳେ ସେମାନେ ମଧ ଅଳ୍ପ ପ୍ରକୃତ ଚା ଗୁଣ୍ଡ ତା ଦେହରେ ପିଆଇ ଦିଅନ୍ତି । ରଙ୍ଗ ଦେଇ, ତାକୁ ଭଲଭାବେ ଶୁଖାଇ ଦେଲା ପରେ, ୫ପଇସା, ଦଶପଇସାର ଚା ପ୍ୟାକେଟ୍ ପ୍ରିଣ୍ଟିଂ କରି ତା ଦେହରେ ଏସବୁ ନକଲି ଚା ମଫସଲ ଅଞ୍ଚଳକୁ ପଠାଇ ଥା'ନ୍ତି । ଚଢ଼ାଉ ପରେ ଜଣା ପଡ଼ିଲା ଏପରି କାରବାର ସହରରେ ବର୍ଷ ବର୍ଷ ଧରି ଚାଲିଥିଲା । ଚଢ଼ାଉରେ କେତେ ଜଣ ଅପରାଧି ଧରାହେଲା ବେଳେ ଆଉ କେତେକ ରାତାରାତି କଲିକତା ଚାଲିଗଲେ । ସମଗ୍ର ଓଡ଼ିଶା, ଆନ୍ଧ୍ର ପ୍ରଦେଶ, ପଶ୍ଚିମ ବଙ୍ଗର କେତେକ ଅଞ୍ଚଳକୁ ଏଇ ଅପମିଶ୍ରଣ ଚା କଟକ ସହରରୁ ପଠାଯାଉଥିଲା । ଏ ସମ୍ବନ୍ଧରେ ୨୬.୩.୭୫ରେ ପ୍ରତ୍ୟେକ ସମ୍ବାଦ ପତ୍ରରେ ସମ୍ବାଦମାନ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା । କେବଳ

ସେତିକି ନୁହେଁ, ସେତେବେଳେ କଟକ ଶିଳ୍ପାଞ୍ଚଳରେ ମଧ କେତେକ ବ୍ୟବସାୟୀ, ଲୁହାଚାଦର ନିଜ ଶିଳ୍ପାନୁଷ୍ଠାନରେ କାର୍ଯ୍ୟ କରିବା ପାଇଁ ଆଣି ଚୋରାରେ ବିକ୍ରିକରି ଲାଭବାନ ହେଉଥିଲେ । ସେ ଖବର ମଧ ଆମପାଖରେ ପହଞ୍ଚିଲାପରେ, ଏସ.ପି. ଆପାରାଓ ଏବଂ ମୁଁ ପାଞ୍ଚନମ୍ବର ଜାତୀୟ ରାଜପଥରେ ରହି, କଟକରୁ କଲିକତା ଆଡ଼କୁ ଲୁହାଚାଦର ଲୋଡ଼ ହୋଇ ଯାଉଥିବା କେତେ ଗୁଡ଼ିଏ ଟ୍ରକ ଧରିଥିଲୁ ।

ଗଣେଶ ପୂଜା ଠାରୁ କଟକରେ ପୂଜା ଉତ୍ସବ ଆରମ୍ଭ ହୋଇ ବାଲିଯାତ୍ରାରେ ଶେଷହୁଏ । ଯଦିଓ କଟକରେ ଦଶହରାପୂଜା ସବୁଠାରୁ ବଡ଼ ଏବଂ ଯାକଜମକରେ ପାଳିତ ହୁଏ କିନ୍ତୁ ପୂଜା ଚାନ୍ଦାକୁ କେନ୍ଦ୍ରକରି ପ୍ରାୟ କଟକରେ ପ୍ରତ୍ୟେକ ସାହିରେ ଗଣ୍ଡଗୋଳ ଥାଏ ଏବଂ ଏହି ଗଣ୍ଡଗୋଳ ଭସାଣୀ ଉତ୍ସବ ବେଳେ ହିଂସା କାଣ୍ଡରେ ପରିଣତ ହୁଏ । ସାହି ମଧରେ ଅଶାନ୍ତିର ମୁଖ୍ୟ କାରଣ ହେଲା ସାହି ସୀମା ନିର୍ଦ୍ଧାରଣ । ଲୋକ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ସାହିରେ ବସ୍ତି, ବଜାର ବଢୁଛି ଏବଂ ଯେଉଁ ନୂଆ ବସ୍ତି, ବଜାର, ଦୋକାନ ହେଲା, ସେମାନଙ୍କ ଠାରୁ ଚାନ୍ଦା ଆଦାୟ କରିବାକୁ କେନ୍ଦ୍ରକରି ସାହି ଭିତରେ ଅଶାନ୍ତି ଲାଗି ରହୁଛି । ଗୋଟିଏ ବର୍ଷ ପୂର୍ବରୁ କଟକର ତତ୍‌କାଳୀନ ଜିଲ୍ଲାପାଳ ପ୍ୟାରିମୋହନ ସାମନ୍ତରାଏ, ପ୍ରଥମ କରି କଟକରେ ପୂଜା କମିଟି ଗଢ଼ିଥିଲେ ଏବଂ ପ୍ରତ୍ୟେକ ସାହିର ପୂଜା କମିଟି ଗଢ଼ି, ସେମାନଙ୍କର ଦୁଇଜଣ ଲେଖାଁଏ ପ୍ରତିନିଧି ଆଣି କେନ୍ଦ୍ରୀୟ ପୂଜା କମିଟି ଗଠନ କରିଥିଲେ । ପୂଜା ପୂର୍ବରୁ, ଜିଲ୍ଲାପାଳ ନିଜେ ପୂଜା କମିଟିର ସଦସ୍ୟମାନଙ୍କୁ ଗୋଟିଏ ମିଟିଂରେ ଡାକି, ସାହିରେ ଥିବା ବାଦାନୁବାଦକୁ ଆପୋଷରେ ତୁଟାଇବାକୁ କହିବା ସଙ୍ଗେ ସଙ୍ଗେ ଗୋଟିଏ କମିଟି ଗଢ଼ି କମିଟି ମାଧମରେ ପ୍ରତ୍ୟେକ ସାହି ବୁଲି, ସେମାନଙ୍କ ସୀମା ନିର୍ଦ୍ଧାରଣ ଏବଂ ଅନ୍ୟାନ୍ୟ ସମସ୍ୟା ବୁଝି, ତୁଟାଇବାକୁ ଦାୟିତ୍ୱ ଦେଇଥିଲେ । ସେଇ କମିଟିରେ ସିଟି ଡି.ଏସ.ପି. ଜଣେ ସଦସ୍ୟ । ତେଣୁ ସେବର୍ଷ ଦଶହରା ଆସିବା ପୂର୍ବରୁ ପ୍ରତ୍ୟେକ ସାହି ସାହି ବୁଲି ବିଭିନ୍ନ ସମସ୍ୟା ତୁଟାଇବା କାର୍ଯ୍ୟ ସବୁଠାରୁ ବଡ଼ଦାୟିତ୍ୱ ଥିଲା । ସେ ବର୍ଷ ଅକ୍ଷୟ ପଣ୍ଡା, ପୂଜା କମିଟିର ମୁଖ୍ୟ ଥା'ନ୍ତି ଏବଂ କଟକର କେତେକ ଜଣାଶୁଣା ମୁଖିଆ ବ୍ୟକ୍ତି ସାହି ସମସ୍ୟା ତୁଟାଇବା ପାଇଁ ସାହି ସାହି ବୁଲି ମିଟିଂ କରି ତୁଟାଉଥିଲେ । ପୂଜାର ପନ୍ଦର, କୋଡ଼ିଏ ଦିନ ଆଗରୁ ପ୍ରାୟ ପ୍ରତ୍ୟେକ ସନ୍ଧ୍ୟାରେ ବିଭିନ୍ନ ସାହିରେ ନିର୍ଦ୍ଧାରିତ ସମୟରେ ମିଟିଂ ହୁଏ । ଏହି ମିଟିଂ ମାଧମରେ କଟକର ପ୍ରତ୍ୟେକ ସାହିର ମୁଖିଆମାନଙ୍କୁ ଏବଂ ସାହିର ଯେଉଁମାନେ ଦାଦା (ଗଣ୍ଡଗୋଳକାରୀ),ସେମାନଙ୍କୁ ଚିହ୍ନିବାରେ ଯଥେଷ୍ଟ ସୁବିଧା ହେଲା । ସେ ବର୍ଷ ଦଶହରା ଏବଂ ଭସାଣୀ ଉତ୍ସବ ଭଲରେ ଭଲରେ କଟିଗଲା । କୌଣସୀ ସ୍ଥାନରେ ଅଶାନ୍ତି ଉପୁଜିନଥିଲା । ଯଦିଓ ଭସାଣୀ ଉତ୍ସବ କ୍ରମାଗତ ଭାବେ ୪୮ ଘଣ୍ଟା ଧରି କଟକ ସହରରେ ଚାଲିଥିଲା ।

ଦଶହରା ଉତ୍ସବ ପରେ, ପରେ କଟକରେ କାଳୀପୂଜା ଆଉ ଗୋଟିଏ ମୁଖ୍ୟ ଉତ୍ସବ । ପ୍ରାୟ ଚାଳିଶରୁ ପଚାଶ ସ୍ଥାନରେ ସହର ମଧରେ କାଳୀମୂର୍ତ୍ତୀ ନିର୍ମାଣ କରାଯାଇ ପୂଜା ହୁଅନ୍ତି ।

କଟକ ସହରର ନିୟମ ଅନୁସାରେ, ଯେଉଁ ସ୍ଥାନରେ ଦୁର୍ଗାପୂଜା ହୁଏ ସେଇ ସ୍ଥାନରେ କାଳୀ ପୂଜା ହୁଅନ୍ତି । ଦଶହରା ସମୟରେ ସାହି ଗଣ୍ଡଗୋଳ ତୁଟିଯାଇଥିଲେ ମଧ ବେଳେବେଳେ ଦଶହରା ସମୟର ଭସାଣୀକୁ କେନ୍ଦ୍ର କରି କାଳୀ ପୂଜା ସମୟରେ ଗଣ୍ଡଗୋଳ ହୁଏ । ସେ ବର୍ଷ କାଳୀପୂଜା ଭସାଣୀ ସମୟକୁ ଶେଖ୍‌ବଜାର ଏବଂ ବିନୋଦ ବିହାରୀ ମେଢ଼ ମଧରେ ଶାନ୍ତିଭଙ୍ଗର ଆଶଙ୍କା ଥିବା ଯୋଗୁ ଭସାଣୀ ବେଳକୁ ମୁଁ ଅକ୍ଷୟ ପଣ୍ଡା ଏବଂ ପୂଜା କମିଟିର ଆଉଜଣେ ସଭ୍ୟ ଶେଖ୍‌ବଜାର ପୂଜା ମଣ୍ଡପ ସାମ୍ନାରେ ବସିଥିଲୁ । ସେତେବେଳକୁ ଶେଖ୍‌ବଜାରର ମେଢ଼, ସାହିବୁଲି ଚାନ୍ଦିନଚୌକି ଆଡ଼େ ଯାଉଥାଏ । ରାତ୍ରିପାୟ ଦୁଇଟା ପାଖାପାଖି ହେବ । ଏଇ ସମୟରେ ବିନୋଦ ବିହାରୀର କାଳୀମେଢ଼ ବଡ଼ ପ୍ରସେସ୍‌ନରେ ଚଣ୍ଡିମନ୍ଦିର ପଟୁ ଆସୁଥିଲା । ପ୍ରସେସନ୍‌ର ଆଗରେ ଦୁଇଟା ହାତୀ ଥିଲେ । ପଛରେ ପ୍ରାୟ ତିନିଶହ ଲୋକ । ମେଢ଼ ସାଙ୍ଗରେ ଲାଇଟ୍, ବନେଟି, ବୁଢ଼ାବୁଢ଼ୀନାଚ, ଘୋଡ଼ାନାଚ ଇତ୍ୟାଦି ଆସୁଥାଏ । ମେଢ଼ ପ୍ରସେସନ୍ ଯେତେବେଳେ ଆସି ଆମ ପାଖରେ ପହଞ୍ଚିଲା ହଠାତ୍ ଶେଖ୍‌ବଜାର ସାହିଭିତରୁ ପ୍ରସେସନ ଉପରକୁ ଟେକାପଥର ମାଡ଼ ହେଲା । ଆମ ପାଖରେ ମାତ୍ର ଦୁଇ ସେକସନ୍ ଫୋର୍ସ ଥା'ନ୍ତି । ଅନ୍ଧାରରେ ସେମାନେ ଗୋଡ଼ା ଗୋଡ଼ି କଲେ । ମାତ୍ର କିଛି ଫଳ ହେଲା ନାହିଁ । ବରଂ କେତେକ ଫୋର୍ସ ଅନ୍ଧାରରେ ଟେକା ମାଡ଼ ଖାଇ ଖଣ୍ଡିଆ ଖାବରାହେଲେ । ଜଣେ ମାଜିଷ୍ଟ୍ରେଟ୍ ଥିଲେ ସେ ସେଇ ଅନ୍ଧାର ମଧରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ମୁଁ ଏବଂ ଅକ୍ଷୟ ପଣ୍ଡା ମଝିରେ ରହି ଚେଷ୍ଟା କଲୁ, ଫୋର୍ସ ଧରି ଗୋଡ଼ିଆ ଗୋଡ଼ିକରି କିଛି ସମୟ ପରେ ଅବସ୍ଥାକୁ ଶାନ୍ତିକୁ ଆଣିଲୁ । କିନ୍ତୁ ବିନୋଦ ବିହାରୀରୁ ପ୍ରସେସନ୍ ଆଉ ଶେଖ୍‌ବଜାରଦେଇ, ଚାନ୍ଦିନୀ ଚୌକ୍ ଆଡ଼େ ନଯାଇ ମେଢ଼କୁ ଶେଖ୍‌ବଜାର ରାସ୍ତା ଉପରେ ରଖି ଦେଇ ଫେରିଗଲା । ଫେରିଲାବେଳେ ବିନୋଦବିହାରୀ ମେଢ଼ରେ ଆସୁଥିବା କେତେକ ଖଳ ପ୍ରକୃତିର ଲୋକ ଶେଖ୍‌ବଜାର ରାସ୍ତାକଡ଼ ଚାଳଘରେ ନିଆଁ ଲଗାଇଦେଲେ । ଘର ଗୁଡ଼ାକ ଧୁ ଧୁ ହୋଇ ଜଳିଲା । ଏଣେ ପୁଣି ଅନ୍ଧାରରୁ ଟେକା ମାଡ଼ ଆରମ୍ଭ ହେଲା । ଦୁଇ ପଟରୁ ମାଡ଼ ମଝିରେ ମାତ୍ର ଦୁଇ ସେକସନ୍ ପୁଲିସ୍ । କିଛି ଲୁହାବୁହା ଗ୍ୟାସ ମରାଗଲା ମାତ୍ର କାମଦେଲାନି । ବିନୋଦ ବିହାରୀର ମେଢ଼ ସାଙ୍ଗେ ଆସିଥିବା ଲୋକମାନେ ଫେରିଲା ବାଟରେ, ଶେଖ୍‌ବଜାରର କେତେକ ଅସାମାଜିକ ବ୍ୟକ୍ତି ପ୍ରସେସନ୍‌ରେ ଆସିଥିବା ଅମୁମିଆଁକୁ ଫାର୍ଶାରେ ହାଣିଦେଲେ । ପ୍ରାୟ ସକାଳ ଚାରିଟା ବେଳକୁ ଆମେ ଜାଣିଲୁ ଅମୁମିଆଁ ଶେଖ୍‌ବଜାର ପଛପଟ ରାସ୍ତାରେ ମରିପଡ଼ିଛି । ଅମୁ ମୁସଲମାନ୍ ହୋଇଥିବା ଯୋଗୁ ଚାରିଆଡ଼େ ଚହଳ ପଡ଼ିଗଲା । କଟକରେ ଆଗରୁ ସଂପ୍ରଦାୟିକ ଗଣ୍ଡଗୋଳ ୧୯୬୮ ମସିହାରେ ହୋଇଥିଲା । ''ଅମୁ'' ବିନୋଦବିହାରୀର ଜଣେ ଜଣାଶୁଣା ବ୍ୟକ୍ତି । ମୁସଲମାନ ହେଲେ ମଧ, ବିନୋଦବିହାରୀ ମେଢ଼ ପ୍ରସେସନ ଏବଂ ପୂଜା କାମରେ ତାର ସାହାଯ୍ୟ ଯଥେଷ୍ଟ । ଏ ଖବର ଏସ.ପି. କଲେକ୍ଟରଙ୍କୁ ଦିଆଗଲା । ସେମାନେ ଆସି ଘଟଣାସ୍ଥଳରେ ପହଞ୍ଚିଲେ । ଦୁଇ ସାହିର ଭଦ୍ରଲୋକମାନଙ୍କୁ ଡକା ଗଲା, ପୂଜା କମିଟିର ମେମ୍ବରମାନେ ବସିଲେ ଏବଂ ନିଷ୍ପତ୍ତି ଅନୁସାରେ ଯେଉଁମାନେ ଏଥିରେ ସଂପୃକ୍ତ, ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ କାର୍ଯ୍ୟକ୍ରମ ଆରମ୍ଭ

ହେଲା । ଭସାଣୀ ସରିଲା ପରେଏହି ହତ୍ୟାକାଣ୍ଡରେ ସଂପୃକ୍ତ ଥିବା ଶେଖ୍‌ବଜାରର''ଗୁଡୁ''କୁ ଧରିବାକୁ ପୁଲିସ୍ ଚେଷ୍ଟା କଲା ମାତ୍ର ତାର ଖବର କେହି ପାଇ ନଥାନ୍ତି । ପ୍ରାୟ ଆଠଦିନ ପରେ ଗୁପ୍ତ ଖବର ମିଳିଲା ଯେ ଗୁଡୁ ଯାଇ ଟାଙ୍ଗିପାଖ ଗୋଟିଏ ଜଙ୍ଗଲରେ ରହୁଛି । ଏ ଖବର ପାଇ କଲେକ୍ଟର ମି. ମୋବାଇ, ଏସ.ପି. ମିଃ ରାଓ ଓ ମୁଁ ପୁଲିସ୍ ଦଳକୁ ଧରି,ରାତାରାତି ଟାଙ୍ଗି ଜଙ୍ଗଲ ଆଡ଼େ ଗଲୁ । ଖବରଦେଇଥିବା ଲୋକ (ଯେ କଲେକ୍ଟରଙ୍କ ପାଖରେ କାମକରେ) ସାଙ୍ଗରେ ଯାଇଥାଏ । ପ୍ରାୟ ଆଠ କିଲୋମିଟର ଜଙ୍ଗଲ ରାସ୍ତାରେ ଚାଲି ଚାଲି ଗଲା ପରେ ଗୋଟେ କୁଡ଼ିଆ ଘରେ ଗୁଡୁ ଶୋଇଥିବା ଅବସ୍ଥାରେ ଧରା ପଡ଼ିଲା । ପରେ ଅବଶ୍ୟ ସେ ଏଇ କେସ୍‌ରେ ପ୍ରମାଣ ଅଭାବରେ ଖଲାସ ହେଲା । ମାତ୍ର ସେ ବର୍ଷ କାଳୀ ଭସାଣୀ ବେଳେ ଏଇ ହତ୍ୟାକାଣ୍ଡ ଯୋଗୁ ସହରରେ ଆତଙ୍କ ଖେଳି ଯାଇଥିଲା । ପ୍ରାୟ ଆଠ ଦଶ ଦିନ ଧରି ପୁଲିସ୍ ପ୍ୟାଟ୍ରୋଲିଂ ଏବଂ ମୁଖ୍ୟସ୍ଥାନ ମାନଙ୍କରେ ପୁଲିସ୍ ପହରା ଦିଆଯାଇଥିଲା ।

କଟକରେ ସିଟି ଡି.ଏସ.ପି. ଥିବା ବେଳେ କେତେଗୁଡ଼ିଏ ଘଟଣା ସବୁଦିନ ପାଇଁ ମୋର ମନେ ରହିଯାଇଛି ।

ସେଥିମଧ୍ୟରୁ ମିଃ ସୁନ୍ଦରରାଜନ୍‌ଙ୍କ ଘରୁ ଚୋରୀ । ମିଃ ସୁନ୍ଦରରାଜନ୍ ସେତେବେଳେ କଟକରେ ସେଟେଲ୍‌ମେଣ୍ଟ କମିଶନର ଥା'ନ୍ତି ଏବଂ କାଣ୍ଟନମେଣ୍ଟର ତିନି ନମ୍ବର କୋଠାରେ ରହୁଥାନ୍ତି । ତାଙ୍କ ଘରେ ତାଙ୍କ ସ୍ତ୍ରୀ ଏବଂ ଝିଅ ରହୁଥିଲେ । ଘରପରିସର ମଧ୍ୟରେ ଥିବା ସରଭାଣ୍ଟକ୍ୱାଟରମାନଙ୍କରେ ଅଫିସ୍ ପିଅନ୍, ଘରର ରୋଷେଇଆ ଦୁଇଟି ବଖରାରେ ରହୁଥିଲେ । ମୁଖ୍ୟ ଘରର ଗୋଟିଏ କଣବଖରାରେ ଜଣେ ମେଡ଼ ସରଭାଣ୍ଟ ରହୁଥିଲେ । ଦିନେ ଅଫିସ୍ କାମ ସାରି ପ୍ରାୟ ୧୨ଟା ବେଳକୁ ମଙ୍ଗଳାବାଗ୍ ପୁଲିସ୍ ଷ୍ଟେସନ ଆଡ଼େ ଗଲାବେଳେ ଏସ.ପି. ଆପାରାଓ ଟେଲିଫୋନ୍ କରି କହିଲେ ଯେ ମିଃ ସୁନ୍ଦରରାଜନ୍‌ଙ୍କ ଘରେ ଚୋରୀ ହୋଇଛି, ଯାଇ ବୁଝିବା ପାଇଁ । ମିଃ ରଙ୍ଗରାଜନ୍ ଅଫିସରୁ ଫେରିଆସି ଘରେ ଥା'ନ୍ତି । ଜଣେ ସିନିୟର ଅଫିସର ହେବା ଯୋଗୁ ଏସ.ପି.କହୁଥିଲେ ତଦନ୍ତକୁ ମୁଁ ସୁପରଭାଇଜ କରିବାକୁ ଯିବି । ଅଫିସରୁ ମୁଁ ସିଧା କାଣ୍ଟନମେଣ୍ଟ କୋଠି ନମ୍ବର ତିନିରେ ପହଞ୍ଚିଲା ବେଳକୁ ମଙ୍ଗଳାବାଗ୍‌ରୁ ଜଣେ ସବ୍‌ଇନ୍‌ସ୍‌ପେକ୍ଟର ଟାଉନ ହାବିଲଦାର ଏବଂ ଅନ୍ୟ କେତେଜଣ ପହଞ୍ଚିଲେ । ମିସେସ୍ ରଙ୍ଗରାଜନ୍ କହିଲେ ଯେ ତାଙ୍କର ପୂଜାରୀ ତା ଟ୍ରଙ୍କରେ ଦୁଇ ଶହ କେତେ ଟଙ୍କା ସେଦିନ ସକାଳେ ରଖିଥିଲା । ମାତ୍ର ଦିନ ଦଶଟା ବେଳକୁ ସେ ବାକ୍ସରେ ଟଙ୍କା ନାହିଁ । ସେ ମଧ ଏକଥା ଆଗରୁ ପୁଲିସ୍ ଏସ୍. ଆଇଙ୍କୁ କହିଥିଲେ । ପୁଲିସ୍ ଏସ୍.ଆଇ. ପୂଜାରୀଙ୍କ ପାଖରୁମ୍‌ରେ ରହିଥିବା ପିଅନ୍‌କୁ ଧରିଆଣି ପାହାରେ ଦିପାହାରେ ଦେଇ ବସେଇଥାନ୍ତି । ସେ ଗୋଟିଏ ଗଛମୂଳେ ମାଡ଼ ଖାଇବସିଥାଏ । ଚୋରୀଯାଇଥିବା ଘର, ବୁଲାବୁଲି କରି ସାରିଲା ପରେ, ଏବଂ ପିଅନ୍‌କୁ ପଚରାପଚରି କଲାପରେ ମୋର ତା ଉପରେ କିମିତି ସନ୍ଦେହ ହେଲାନି । ତା ମୁହଁଟା ନିରୀହ ଲୋକର ମୁହଁ ପରି ଜଣାପଡୁଥାଏ । ତା କଥାରେ ମିଛ ଥିଲା ପରି ଜଣା ପଡୁନଥିଲା । ମାତ୍ର ସକାଳୁ ଆଉ କେହି ବାହାର ଲୋକ ତାଙ୍କ ଘରକୁ ଆସି ନଥିବା ଯୋଗୁ

ସେଇ କେତେଜଣଙ୍କ ଉପରେ ସନ୍ଦେହ । ମିସେସ୍ ସୁନ୍ଦରରାଜନ୍‌ଙ୍କ ସଙ୍ଗେ କଥାବାର୍ତ୍ତା ହେଲାବେଳେ ତାଙ୍କ ଠାରୁ ଜାଣିଲି ଯେ ଏ ଚୋରୀ ଆଗରୁ ଆଉ କେତେଥର ମଧ ତାଙ୍କ ଘରୁ ଟଙ୍କା ଚୋରୀ ହୋଇଛି । ଥରେ ତାଙ୍କର ଜଣେବାନ୍ଧବୀ ତାଙ୍କର ଭ୍ୟାନିଟ୍ ବ୍ୟାଗ୍ ଡ୍ରଇଁରୁମ୍‌ରେ ରଖିଦେଇ ଭିତରକୁ ଯାଇ ଅଧଘଣ୍ଟା ପରେ ଫେରି ଦେଖିଲେ ତାଙ୍କ ବ୍ୟାଗରୁ ୪୦ ଟଙ୍କା ଚୋରୀ ହୋଇଛି । ଆଉ ଥରେ ମଧ ଏମିତି ହୋଇଥିଲା । ତାଙ୍କ କଥାରୁ ଜଣାଗଲା ଯେ, ଘର ଭିତର ଲୋକ ଏସବୁ ଚୋରୀରେ ସଂପୃକ୍ତ ଥାଇ ପାରନ୍ତି । ପିଅନ୍ ଉପରେ ସନ୍ଦେହ ବଳବତ୍ତର ହେଲା, ତାକୁ ଥାନାକୁ ନନେଇ, ମାଡ଼ନ ଦେଇ କିଛି ବାହାରିବନି ବୋଲି ପୁଲିସ୍ ଏସ.ଆଇ କହୁଥାଏ । ଯିବାପୂର୍ବରୁ ମୁଁ ତାଙ୍କ ଘର ଭିତର ଏବଂ ବେଡ୍‌ରୁମ୍ ପାଖକୁ ଦେଖିବାକୁ ଗଲି । ଗଲାବେଳେ ଦେଖିଲି ମେଡ୍ ସର୍ଭାଣ୍ଟ ତାଙ୍କ ବେଡ୍‌ରୁମ୍‌କୁ ଲାଗି, ବାହାର ପଟକୁ ଦରଜା ଥିବା ରୁମ୍ ପାଖେ ଠିଆ ହୋଇଛି । ମୁଁ ତାକୁ ପଚାରିଲା ବେଳେ ମିସେସ୍ ସୁନ୍ଦରରାଜନ୍ କହିଲେ,'' ସେ ବହୁତଭଲ ଝିଅ, ତାକୁ ସନ୍ଦେହ କରିବା କିଛି ଦରକାର ନାହିଁ ।'' ଝିଅଟିର ବୟସ ପ୍ରାୟ ୨୫ କି ୨୬ ବର୍ଷ ହେବ, ବେଶ୍ ମୋଟା । ମୁଣ୍ଡରେ ଗହଳିଆ କଳାବାଳ । ବଡ଼ ଖୋସାଟିଏ ପକାଇଥାଏ । ମୁଁ ତାଙ୍କ ଘର ଛାଡ଼ିବାପୂର୍ବରୁ ତା କୋଠରୀକୁ ଦେଖିବାକୁ ଗଲି । ଛୋଟ ରୁମ୍‌ଟିଏ । ମଝିରେ ଲମ୍ବା ଦଉଡ଼ିରେ ଖଣ୍ଡେ ସାୟା ଗୋଟେ ବ୍ଲାଉଜ୍ ଝୁଲୁଥାଏ । ଘରେ ଖଣ୍ଡେ ଭଙ୍ଗାଟିଣ ବାକ୍ସ । ଶୋଇବାକୁ ସଉପ ଖଣ୍ଡେ । ତେଣୁ ଘର ଭିତରେ କିଛି ଦେଖିବାକୁ ନଥିଲା । ସେ ଘର ଭିତରେ ଥିଲା । ତାକୁ ବି, ଚାରି କଥା ପଚାରିଲି । ସେ କହୁଥାଏ ମାତ୍ର ତା ମୁହଁରେ ମୁଁ କିମିତି ଗୋଟେ ଦୋଷି ଦୋଷିର ଆଭାସ୍ ପାଇଲି । ମାତ୍ର ତାକୁ କୁଆଡ଼େ ନବୁ ? ମିସେସ୍ ମନା କରୁଥାନ୍ତି ଏବଂ ତାଙ୍କର ତା ଉପରେ ଆଦୌ ସନ୍ଦେହ ନଥାଏ । ତା ରୁମ୍‌ରୁ ବାହାରିଲାବେଳେ ସେ ଦୁଆର ମୁହଁପାଖେ ମୋ ଆଡ଼କୁ ପଛ କରି ଠିଆ ହୋଇଥିଲା । ତାରମୁଣ୍ଡରେ ଏତେବଡ଼ ଖୋସାକୁ ଦେଖି ମୁଁ ମୋ ବାଡ଼ିରେ ତା ଖୋସାକୁ ଟେକିଦେଲି । ସମସ୍ତଙ୍କ ଆଗରେ ସେଇ ଖୋସା ଭିତରୁ ତିନିମାସ ମଧରେ ଯେତେଟଙ୍କା ଚୋରୀ ଯାଇଥିଲା ସବୁ ତଳେ ଖସି ପଡ଼ିଲା । ମିସେସ୍ ସୁନ୍ଦରରାଜନ୍ ସ୍ତବ୍ଧ ହୋଇଗଲେ । ମୁହୂର୍ତ୍ତକ ଆଗରୁ ସେ କହୁଥିଲେ ତା ଉପରେ ତାଙ୍କର କିଛି ସନ୍ଦେହ ନାହିଁ । ମାତ୍ର ସବୁଯାକ ଚୋରୀ ଯାଇଥିବା ଟଙ୍କା ତାଙ୍କରି ଆଗରେ ବାହାରିଲା । କିଛି କହିପାରୁ ନଥିଲେ । ମହିଳାଙ୍କୁ ଧରି ଥାନାକୁ ବାହାରିଲା ବେଳେ ମିଃ ସୁନ୍ଦରରାଜନ୍ ଆଉ ଅଧିକା ଆଗେଇବାକୁ ମନା କଲେ । କେସ୍ ହେଲାନି ମାତ୍ର ତାଙ୍କ ଘରୁ ସେ ମେଡ୍ ସରଭାଣ୍ଟକୁ ବାହାର କରିଦେଲେ ।

ଏହି ଘଟଣାର କିଛି ଦିନ ପରେ ଆଇ.ଜି ଶ୍ରୀ ନରସିଂହ ସ୍ୱାଇଁଙ୍କ କାଣ୍ଟନମେଣ୍ଟ ଚାରିନମ୍ବର କୋଠାରୁ ଚୋରୀ ହେଲା । ଖୋଦ୍ ଆଇ.ଜି. ସାହେବଙ୍କ ଘରେ ଚୋରି ସେତେବେଳେ କାଣ୍ଟନ୍‌ମେଣ୍ଟ ପଛପଟେ ଆଜିପରି ରିଙ୍ଗ ରୋଡ୍ ନଥାଏ । ଘର ପଛକୁ ମହାନଦୀର ଗୋଟିଏ ସରୁଆ ନାଳ ଲାଗିଥାଏ । ବର୍ଷାଦିନେ ଏଥିରେ ପାଣି ପ୍ରାୟ ଛ, ସାତଫୁଟ ରହୁଥିଲା । ଏସ.ପି.ଙ୍କ ନଅ ନମ୍ବର କୋଠୀ ଏବଂ ଆଇ. ଜି.ଙ୍କ ଚାରିନମ୍ବର କୋଠୀ ପଛପଟେ

ପୁଲିସ୍ ପାୱାର ଲଞ୍ଚରେ ବସି ମହାନଦୀର ତଳକୁ ଯାଉଥିଲେ । ପଛପଟେ କେବଳ ମହାନଦୀ ପାଣି । ଯିବା ଆସିବାର ରାସ୍ତା ନଥାଏ । ମୁଁ ସେଦିନ କଟକରୁ ରାଜ୍ୟପାଳ ଜଟିଙ୍କୁ ପାଇଲଟ୍ କରି ଚଣ୍ଡିଖୋଲ ନେଉଥାଏ । ହଠାତ୍ ଜିପ୍‌ର ଓ୍ୱରଇଲେସ୍ ସେଟ୍‌ରୁ ଖବର ମିଳିଲା ଯେ କଟକ ଫେରିଯିବା ପାଇଁ । ରାଜ୍ୟପାଳଙ୍କୁ ଆଉ ଜଣେ ଡି.ଏସ.ପି. ପାଇଲଟ୍ କରିବାକୁ ବାହାରି ଆସିଲେଣି । ହାଠାତ୍ ମୋତେ କାହିଁକି ଫେରିଯିବାକୁ କୁହାଯାଇଛି ମୁଁ ବୁଝିପାରିଲିନି । ୱାର୍‌ଲେସ୍‌ରେ ପଚାରିବାରେ କେବଳ ଜାଣିଲି ଯେ ଆଇ.ଜିଙ୍କ ଘରୁ କ'ଣ ଚୋରି ହୋଇଛି, ମୋତେ ସେଠାକୁ ଯିବାକୁ ହେବ । ମୁଁ କଟକରେ ପହଞ୍ଚିଲାବେଳକୁ ପ୍ରାୟ ୧୧ଟା ପରେ । ଆଇ.ଜି. ମିଃ ସ୍ୱାଇଁ, ଅଫିସ ଚାଲିଗଲେଣି । ପୁଲିସ୍‌ବାଲା ଭୟରେ ତାଙ୍କ ବଙ୍ଗଳା ପରିସର ଭିତରେ ଠିଆ ହୋଇଥାନ୍ତି । ସେମାନଙ୍କଠାରୁ ବୁଝିବାରେ ଜଣାଗଲା ଯେ ଗତ ରାତିରେ କେହି ଚୋର ତାଙ୍କ ଦାଣ୍ଡ ଘରେ କବାଟ ଖୋଲି ପଶି ତାଙ୍କର ପ୍ରାୟ ସାତ ଆଠ ହଳ ଯୋତା, ଦୁଇଟି ଡବଲ ବେଡ଼ସିଟ, ଇଲେଟ୍ରିକ୍ ଆଇରନ୍, ଗାର୍ଡ଼ ରହୁଥିବା ବାହାର ପଟରୁମ୍‌ରୁ ଗାର୍ଡ଼ମାନଙ୍କର ଦିହଳ ପୋଲିସ୍‌ଡ୍ରେସ୍ ଚୋରୀ ହୋଇଛି । ଜଣେ ହାବିଲ୍‌ଦାର ଆଉ ଜଣେ ଏ.ପି.ଆର୍ କନେଷ୍ଟବଲ ସେଠାରେ ଡିଉଟିରେ ରହନ୍ତି । ସେମାନଙ୍କ ପାଖରେ ବନ୍ଧୁକ ମଧ୍ୟଥାଏ । ସେଦିନ ରାତିରେ ବର୍ଷା ହେଉଥିବା ଯୋଗୁ, ସମସ୍ତେ ଗାର୍ଡରୁମ୍‌ରେ ଶୋଇଥିଲେ । ସେମାନେ ରାତିରେ ଶୋଇଥିବାବେଳେ ଚୋରମାନେ ଆଇ.ଜି.ଙ୍କ ଦାଣ୍ଡ ଘରୁ ଏବଂ ଗାର୍ଡ଼ରୁମର ଏ ସମସ୍ତ ଜିନିଷ ଚୋରି କରି ନେଇ ଯାଇଥାନ୍ତି । ଚୋରି ଜିନିଷ ଯାହାହେଉନା କାହିଁକି ଆଇ.ଜିଙ୍କ ଘରୁ ଯଦି ଚୋରି ହେଲା, ତେବେ କଟକ ସହରବାସୀଙ୍କୁ ଚୋର ଦାଉରୁ ରକ୍ଷା କରିବ କିଏ ? କେତେକ ମୃଦୁ ଗୁଞ୍ଜରଣ କଲାବେଳେ କେତେ ପୁଲିସ୍ ବାଲାକୁ ଟାହିଟାପରା କରିବାକୁ ଲାଗିଲେ । ଆଇ.ଜି. ସ୍ୱାଇଁ ଏସବୁ ଶୁଣି ରାଗରେ ଜଳୁଥାନ୍ତି ।

ମୁଁ ତାଙ୍କ କୋଠୀରେ ପହଞ୍ଚିଲା ପରେ ଦେଖିଲି, ପୁଲିସ୍ କୁକୁର, ସାଇଣ୍ଟିଫିକ୍ ଟିମ୍ ସମସ୍ତେ ଆସି ସ୍ଥାନ ପରିଦର୍ଶନ କରି ସାରିଲେଣି । କିଛି କ୍ଲୁ ମିଳୁନି କି ପୁଲିସ୍ କୁକୁର ଗନ୍ଧ ନେଉନି । ସମସ୍ତେ ମନ ମାରି ତାଙ୍କ ଘର ପଛ ପଟରେ ବସିଥାନ୍ତି । ମୁଁ ପହଞ୍ଚି କିଛି ସମୟ ଦେଖାଦେଖି କଲା ପରେ ତାଙ୍କ ଘରର ସାମ୍ନାପଟ ବାରଣ୍ଡାର କଣ ଯାଗାରେ ଗୋଟେ ମୋରମ ଲଗା ଅସ୍ପଷ୍ଟ ପାଦ ଚିହ୍ନ ଦେଖିଲି । ଜଣେ କିଏ ଖାଲି ଗୋଡ଼ରେ ଘର ସାମ୍ନା ମୋରମ ରାସ୍ତା ଦେଇ ଆସି ଏଇବାଟ ଦେଇ ଘର ଭିତରକୁ ପ୍ରବେଶ କରିଥାଏ ବୋଲି ମୋର ସନ୍ଦେହ ହେଲା । ତଥାପି ପଛପଟେ ବସିଥିବା ପୁଲିସ୍ କୁକୁର ମାଷ୍ଟରକୁ ଡାକିଲି ଏବଂ ସେହି ଯାଗାରୁ କୁକୁରକୁ ଗନ୍ଧ ନେବାକୁ କହିଲି । କୁକୁର ମାଷ୍ଟର ପ୍ରଥମେ ଏଇଟା ବୃଥା କଥା ବୋଲି ଭାବୁଥିଲା, ମାତ୍ର ମୁଁ କହିଲା ପରେ ବାଧ୍ୟ ହୋଇ ସ୍ମେଲ୍ ଦେଲା । ପୁଲିସ୍ କୁକୁର ତଲି କିଛି ସମୟ ସ୍ମେଲ୍ ନେଲା ପରେ ଘର ପଛପଟକୁ ଯାଇ ନଈପାଖ ଆଡ଼କୁ ସିଗ୍‌ନାଲ ଦେଲା । କୁକୁର ସ୍ମେଲରୁ ମୁଁ ଭାବିଲି ବୋଧେ, ଚୋରମାନେ ଡଙ୍ଗାରେ ଆସିଥାଇ ପାରନ୍ତି । ସେତେବେଳେ ଡଙ୍ଗାରେ ପଥର, ମୋରମ୍, ଛଣ, ମଦ ଇତ୍ୟାଦି ନଦୀରେ ଆସି ମାତାମଠ ପାଖେ ଅନ୍‌ଲୋଡ଼ ହେଉଥିଲା ।

ତେଣୁ ସନ୍ଦେହ ବଢ଼ିଲା । କୁକୁର ଏବଂ ଗାର୍ଡ଼ରୁମ୍‌ରୁ ଚୋରମାନେ ଧରିଥିବା ଗୋଟେ ଜିନିଷକୁ ନେଇ ମାତାମଠ ପାଖ ଘାଟକୁ ଗଲୁ ଏବଂ ସେଇଠି କୁକୁରକୁ ପୁଣି ସ୍ମେଲ୍ ଦେଲୁ । ସ୍ମେଲ ନେଲାପରେ କୁକୁର ସିଧା ଦଉଡ଼ି ମାଛୁଆବଜାରରେ ରହୁଥିବା ଜଣେ ଜଣାଶୁଣା ଚୋର ଘରେ ପଶିଲା । କୁକୁର ତା ଘରେ ପଶିଲାବେଳେ ସେ ଘରପଛପଟ କାନ୍ଥ ଡେଇଁ ସାହିଭିତରେ ଦଉଡ଼ି ପଳାଇଲାବେଳେ ପୁଲିସ୍ ଏବଂ ଲୋକମାନେ ଗୋଡ଼େଇ ତାକୁ ବକ୍ସିବଜାର ଛକ ପାଖରୁ ଧରିଲେ । ତାକୁ ଧରିଲା ପରେ ସିଧା କଂଟ୍ରୋଲ ରୁମ୍‌କୁ ଅଣାଇ,ମୁଁ ନିଜେ ପଚରାଉଚରା କଲି । କିଛି ସମୟପରେ ସେ ସବୁକଥା ମାନିଲା ଏବଂ କହିଲା ଯେ ସେମାନେ ତିନିଜଣ ପୂର୍ବ ରାତି ଆଠ,ନଅଟା ବେଳେ ମାତାମଠ ଘାଟ ପାଖରେଥିବା ଡଙ୍ଗାରେ ବସି ଗଞ୍ଜେଇ ଟାଣୁଥିଲେ । ଗଞ୍ଜେଇ ଖାଇ ସାରିଲାପରେ, ଡଙ୍ଗାଧରି ସେମାନେ ତିନିଜଣ କାହାବାଡ଼ିରେ ପଶିଲେ ଜାଣନ୍ତି ନାହିଁ । ଗଞ୍ଜେଇ ନିଶାରେ ଯୋତା, ବେଡ଼ସିଟ୍, ଏବଂ ଗାଡ଼ଡ୍ରେସ ଆଦି ଯାହା ପାଇଥିଲେ ସବୁ ନେଇଯାଇଥିଲେ । ତା କହିବା ଅନୁସାରେ ସେମାନେ ସେଇ ଘରଟି ଆଇ.ଜିଙ୍କ ଘର ବୋଲି ଜାଣିନଥିଲେ । ଜାଣିଥିଲେ କେବେ ସେହିପରି ଦୁଃସାହାସ କାମ କରିନଥାନ୍ତେ ।

ଚୋରୀଯାଇଥିବା ସବୁ ଜିନିଷ ଆଇ.ଜି. ଅଫିସରୁ ଫେରିଲା ବେଳକୁ ତାଙ୍କ ଘର ସାମ୍ନାରେ ରଖାଯାଇଥିଲା । ଗଲାବେଳେ ଯେଉଁ ରାଗଥିଲା ସେ ରାଗରେ କିଛିଟା କମି ଥିଲା ପରି ଜଣାଗଲା । ଅବଶ୍ୟ ଏ ଚୋରୀପାଇଁ ଦାୟିତ୍ୱରେ ଥିବା ସମସ୍ତ ଗାର୍ଡ଼ ନିଲମ୍ବିତ ହେଲେ ଏବଂ ସେମାନଙ୍କ ନାମରେ ପ୍ରେସିଡ଼ଂ ହେଲା । ମାତ୍ର ଆଇ.ଜିଙ୍କ ଘରୁ ଚୋରୀ ଯାଇଥିବା ଜିନିଷ ମାତ୍ର ଚବିଶ୍ ଘଣ୍ଟା ଭିତରେ ମିଳିଥିବା ଏବଂ ଚୋରମାନଙ୍କୁ ଧରିଥିବା ଯୋଗୁ ଏହାର ପ୍ରସାର ଏବଂ ପ୍ରଭାବ କଟକ ସହରବାସୀଙ୍କ ଉପରେ ଯଥେଷ୍ଟ ପଡ଼ିଥିଲା । ଅବଶ୍ୟ କେତେକ କହିଲେ ଯେ ଆଇ.ଜି.ଙ୍କ ଘରୁ ଚୋରୀ ହୋଇଥିଲା ବୋଲି ପୁଲିସ୍ ତତ୍‌ପରତାର ସହିତ କାର୍ଯ୍ୟକରି ଚୋର ଏବଂ ଚୋରୀଜିନିଷ ଧରିପାରିଲା ମାତ୍ର ସାଧାରଣ ଲୋକଙ୍କ ଘରେ ଚୋରି ହୋଇଥିଲେ ଏହା କ'ଣ ହୋଇଥାନ୍ତା ?

ଏ ଘଟଣାର ମାତ୍ର କେତେଦିନ ପରେ ମୁଁ ଅଫିସ୍‌ରୁ ଫେରିଲା ବେଳକୁ ଏସ.ପି. ଫୋନ୍ କଲେ କଟକ କ୍ଲବରୁ ଚୋରୀ ହୋଇଛି ଯାଇ ଦେଖିବାକୁ । କଟକ କ୍ଲବର ସେତେବେଳେ ମିଃ ଭିକ୍ଟର ମାଥୁସ୍ ସଭାପତି ଥା'ନ୍ତି । ବି.କେ. ମହାପାତ୍ର, ଡି.ଆଇ.ଜି କ୍ଲବର ମେମ୍ବର । ସାରା ଓଡ଼ିଶାରେ ମାଥୁସ୍ ସାହେବ ଜଣାଶୁଣା । ସେତେବେଳେ ସେ କଟକରେ ମେମ୍ବର ବୋର୍ଡ଼ ଅଫ୍ ରେଭେନ୍ୟୁ, ଆଗରୁ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଥିଲେ । ଏସ.ପି. ଫୋନ୍ କଲାପରେ ତାଙ୍କ ପାଖରୁ ଫୋନ୍ ଆସିଲା କ୍ଲବରେ ଚୋରୀ ବିଷୟରେ । ମୁଁ ବସାକୁ ଫେରିଲା ବାଟରେ କ୍ଲବରେ ପହଞ୍ଚିଲି । ସେତେବେଳକୁ ମଙ୍ଗଳାବାଗ୍ ପୁଲିସ୍ ଆସି ପହଞ୍ଚିଥାନ୍ତି । ପୂର୍ବ ରାତ୍ରିରେ କ୍ଲବ ବନ୍ଦ ହୋଇଥିଲା ପ୍ରାୟ ରାତ୍ରି ବାରଟା ପରେ । ସକାଳ ଦଶଟାବେଳକୁ କ୍ଲବର ମ୍ୟାନେଜର ଆସି ଦେଖିଲେ କ୍ଲବ ବାର ରୁମ୍‌ରେ ଥିବା ସବୁଯାକ ମଦବୋତଲ, ସିଗାରେଟ୍ ପ୍ୟାକେଟ୍, କ୍ୟାସ୍ ଚୋରୀ ହୋଇଯାଇଛି । ଚୋରୀ ହେବାଶୁଣି କ୍ଲବ କର୍ମଚାରୀମାନେ ସମସ୍ତେ ଦଉଡ଼ା ଦଉଡ଼ି ହୋଇ

ଆସି ଚୋରୀ ହୋଇଥିବା ସ୍ଥାନରେ ରୁଣ୍ଡ ହୋଇଥିଲେ । ମୁଁ ପହଞ୍ଚିଲା ବେଳକୁ ପୁଲିସ୍ କୁକୁର ପହଞ୍ଚିଥିଲା । ମାତ୍ର କର୍ମଚାରୀମାନେ ସେଇ ଯାଗାକୁ ଯିବା ଆସିବା କରିବା ଦ୍ୱାରା କୁକୁର ସ୍ମେଲ୍ ନେବାରେ ଅସୁବିଧାହେଲା । ଜଣକ ପରେ ଜଣେ ମେମ୍ବର ଆସି ପହଞ୍ଚିଥିଲେ । ମିଃ.ବି.କେ. ମହାପାତ୍ର ବି ଆସି ପହଞ୍ଚିଲେ । କଟକ କ୍ଲବର ପ୍ରେଷ୍ଟିଜ୍ ସଙ୍ଗେ ପୁଲିସ୍ ପ୍ରେଷ୍ଟିଜ୍ ଇଶୁ ।

କର୍ମଚାରୀମାନଙ୍କୁ ପଚରା ଉଚରା କଲା ପରେ, କେବଳ ଏତିକି ଜାଣିବାକୁ ପାଇଲି ଯେ ଜଣେ ସୁଇପର ସକାଳେ କ୍ଲବ ପରିଷ୍କାର କରି ପଳାଇ ଯାଇଛି । ବାକି ସମସ୍ତେ ଅଛନ୍ତି । ତେବେ ସେ ସୁଇପର ଜଣେ ଭଲଲୋକ ବୋଲି ସମସ୍ତେ କହିଲେ କିନ୍ତୁ ମୁଁ ଠିକ୍ କଲି ସେ ସୁଇପର ରହୁଥିବା ଘର ଦେଖିବାକୁ । ପଚାରି ବୁଝିଲି ସୁଇପରଙ୍କ ଘର ସାଲେପୁର ଥାନାର ପଦ୍ମପୁର ଗାଁରେ । ସେତେବେଳକୁ ଦିନ ଦୁଇଟା ବାଜିଲାଣି । ଥାନା ପୁଲିସ୍ କର୍ମଚାରୀ ତରତର ହେଲେଣି ଫେରିଯିବାକୁ । ମୁଁ କିନ୍ତୁ ଦୁଇଜଣ ଅଫିସରଙ୍କୁ ଧରି ଅଖିଆ ଅପିଆ ଗଲି ପଦ୍ମପୁର । ପଦ୍ମପୁରରେ ସେ ସୁଇପର ଘର ଖାନତଲାସ କଲୁ । ଖାନତଲାସ ବେଳେ ତା ଘରୁ କଟକ କ୍ଲବର କେତେଟା ପ୍ଲେଟ୍ ଚାମୁଚ ଏବଂ କଣ୍ଟା ମିଳିଲା । ଏସବୁ ପୁରୁଣା ଜିନିଷପତ୍ର ଦେହରେ କଟକ କ୍ଲବ ଲେଖା ହୋଇଥାଏ । ଏ ଜିନିଷ ପାଇଲା ପରେ, ଆମେ ସେଇଠି ଅପେକ୍ଷା କରିଥିଲୁ । ସୁଇପର ଗାଁ ଆଡ଼େ ବୁଲିଯାଇଥିଲା । ବୁଲାବୁଲି ସାରି ଘରକୁ ଫେରିଲା ବେଳେ, ଆମେ ତାକୁ ତା ଘରପାଖରୁ ଧରି ମଙ୍ଗଳାବାଗ୍ ଥାନାକୁ ଆଣିଲୁ । ଆସିଲା ବେଳେ ବାଟରେ ପଚରା ଉଚରା କଲୁ । ପ୍ରଥମେ ମାନୁ ନଥିଲା ମାତ୍ର କ୍ଲବର କଣ୍ଟା ଚାମଚ ତା ଘରକୁ କିପରି ଆସିଲା ପଚାରିଲା ବେଳେ, ସେ ତାର ସଠିକ୍ ଉତ୍ତର ଦେଇ ପାରିଲା ନାହିଁ । ସେଇ ସମୟରେ ଠିକ୍‌ଭାବେ ପଚରା ଉଚରା କରିବାରେ ସେ ମାନିଲା ଯେ ସମସ୍ତ ଜିନିଷ ଚୋରୀ କରି କଟକ ଜୋବ୍ରା ଅଞ୍ଚଳରେ ରହୁଥିବା ତା ଭଉଣୀ ଘରେ ରଖିଛି । ମାଡ଼ପିଟ୍ ନକଲେ ସେ ସବୁ ଜିନିଷ ଦେଇଦେବ । ଫେରିବା ବାଟରେ ଆଉ ମଙ୍ଗଳାବାଗ ନଯାଇ ସିଧା ତା ଭଉଣୀ ଘର ଜୋବ୍ରାରେ ପହଞ୍ଚିଲୁ । ସୁଇପର ସିଧା ଗାଡ଼ିରୁ ଓହ୍ଲାଇ ତା ଭଉଣୀ ଘରର ଗୋଟିଏ କଣରେ ଦୁଇଟି ବସ୍ତାରେ ବାନ୍ଧିରଖିଥିବା ସମସ୍ତ ମଦ ବୋତଲ ସିଗାରେଟ୍ ଏବଂ ରେଜା ପଇସା ଆଣି ଦେଲା । ସବୁ ଚୋରି ମାଲ୍ ଧରି ମୁଁ କଟକ କ୍ଲବକୁ ଫେରିଲା ବେଳକୁ ସନ୍ଧ୍ୟା ୫ଟା । ସବୁ ଯାକ ଚୋରୀ ଜିନିଷକୁ ପ୍ରବେଶଦ୍ୱାର ପାଖେ, ଲାଇନ୍ କରି ରଖି ଦେଲି । କ୍ଲବର ମେମ୍ବରମାନେ ଆସି ଦେଖିଲେ ସବୁଯାକ ଚୋରୀ ମାଲ ଜବତ୍ ହୋଇ ପାରିଛି । ସଙ୍ଗେ ସଙ୍ଗେ ସଭାପତି ମିଃ ମାଥୁସ୍‌ଙ୍କୁ ଖବର ଦିଆଗଲା । ସେ ମଧ ପହଞ୍ଚିଲେ । ସେ ଯାହା ହେଉ ସମସ୍ତ ଚୋରୀ ଜିନିଷ ମାତ୍ର ପାଞ୍ଚ ଛ ଘଣ୍ଟା ମଧରେ ଉଦ୍ଧାର ହୋଇଥିବା ଯୋଗୁ କ୍ଲବର ମେମ୍ବରମାନଙ୍କ ମଧରେ ଏହାର ପ୍ରସାର ଘଟିଲା ଏବଂ ପୁଲିସ୍‌ର ଇମେଜ୍ ବହୁଳଭାବେ ବଢ଼ିଥଲା ।

ପ୍ରଥମଥର ପାଇଁ ଦିନିକିଆ ଇଣ୍ଟରନ୍ୟାସନାଲ କ୍ରିକେଟ୍ ମ୍ୟାଚ କଟକ ବାରବାଟୀ ଷ୍ଟାଡ଼ିୟମରେ ଭାରତ ଏବଂ ୱେଷ୍ଟଇଣ୍ଡିଜ୍ ମଧରେ ହେଉଥାଏ । କାଳିଚରଣ ୱେଷ୍ଟଇଣ୍ଡିଜ୍ ଟିମ୍‌ର କ୍ୟାପଟେନ୍ । କ୍ରିକେଟ୍ ଜଗତରେ ସେତେବେଳେ ତାର ନାଁ ସାରା ପୃଥିବୀରେ ପ୍ରସାର ଲାଭକରିଥାଏ । ବାରବାଟୀ

ଷ୍ଟାଡ଼ିୟମ୍‌ରେ ନାହିଁ ନଥିବା ଭିଡ଼ର ଆଶଙ୍କା । ପୁଲିସ୍ ବନ୍ଦୋବସ୍ତ କଲା ପରେ ଯେପରି କୌଣସି ପ୍ରକାର ଅପ୍ରିତିକର ଘଟଣା ନଘଟେ, ସେଥିପାଇଁ କଟକ ପୁଲିସ୍‌କୁ ତାଗିଦ୍ କରାଯାଇଥାଏ । କଟକ ସହରରେ ଏଇ ଖେଳ ହେଉଥିବା ଯୋଗୁ ମୋ ଉପରେ ଦାୟିତ୍ୱ ଅଧିକ । ଖେଳ ହେବା ଦିନ ସକାଳ ୪ଟାରୁ ପୁଲିସ୍ ଷ୍ଟାଡ଼ିୟମ୍ ଚାରିପଟେ ମୃତୟନ ହୋଇଗଲେ । ରାତି୨ଟାରୁ ଖେଳଦେଖିବା ପାଇଁ ଦର୍ଶକମାନେ ଟିକେଟ୍ କାଉଣ୍ଟର ସାମ୍ନାରେ ଲାଇନ୍ ଦେଉଥାନ୍ତି । ସବୁ କାଉଣ୍ଟର ପାଖେ ଲମ୍ବା ଲାଇନ୍ । ସକାଳ ନଅଟାରେ ଖେଳ ଆରମ୍ଭ ହେବ ମାତ୍ର ଆଠଟା ବେଳକୁ ଷ୍ଟାଡ଼ିୟମ୍‌ର ସବୁ ଗ୍ୟାଲେରୀ ଦର୍ଶକମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଥାଏ । ନିମନ୍ତ୍ରିତ ବ୍ୟକ୍ତିମାନେ ସେମାନଙ୍କ ପରିବାରଙ୍କୁ ଧରି ପଡ଼ିଆରେ ନିର୍ଦ୍ଧାରିତ ସ୍ଥାନରେ ବସିଲେ । ଷ୍ଟାଡ଼ିୟମ୍ ସଂପୂର୍ଣ୍ଣଭାବେ ଦର୍ଶକମାନଙ୍କ ଦ୍ୱାରା ଭରପୂର ହୋଇଗଲା । ଖେଳାଳୀମାନେ ଭୁବନେଶ୍ୱର ପ୍ରାଚୀ ହୋଟେଲରୁ ବସ୍ ଯୋଗେ ଆସିଲେ । ସେମାନଙ୍କ ପାଇଁ ସ୍ୱତନ୍ତ୍ର ସିକ୍ୟୁରିଟ୍ ବ୍ୟବସ୍ଥା ହୋଇଥିଲା । ଏଣେ କାଳୀଚରଣକୁ ଦେଖିବାକୁ ପିଲାମାନଙ୍କ ମଧ୍ୟରେ ଭୀଷଣ ଭିଡ଼ । ଭି.ଆଇ.ପି. ମାନଙ୍କର ଝିଅ, ପୁଅମାନଙ୍କର ଅଟୋଗ୍ରାଫ୍ ନବାପାଇଁ ଡ୍ରେସିଂରୁମ୍‌ରେ ଭିଡ଼ । ବଡ଼ବଡ଼ ଝିଅମାନେ କାଳିଚରଣର ସାନିଧ୍ୟ ପାଇଁ ମଧ୍ୟ ବ୍ୟସ୍ତ । ସେ ଦିନ ଖେଳ ଶେଷ ହେଲା । ଷ୍ଟାଡ଼ିୟମ୍‌ରେ କୌଣସି ପ୍ରକାର ଅପ୍ରିତୀକର ଘଟଣା ସୃଷ୍ଟି ହୋଇନଥିଲା ଯଦିଓ ସକାଳେ ପ୍ରବେଶ ସମୟରେ ଯଥେଷ୍ଟ ଭୀଡ଼ ହୋଇଥିଲା ।

ଖେଳପରେ ସେ ଦିନ ରାତିରେ, ଭାରତ ଏବଂ ଓ୍ୱେଷ୍ଟଇଣ୍ଡିଜ୍ ଟିମ୍‌କୁ କଟକ କ୍ଲବ ରାତ୍ର ଭୋଜନପାଇଁ ନିମନ୍ତ୍ରିତ କରିଥାଏ । ଦୁଇଟି ଯାକ ଟିମ୍‌ରପ୍ରାୟ ସମସ୍ତ ସଦସ୍ୟ ସନ୍ଧ୍ୟା ଆଠଟା ବେଳକୁ ସେଠାକୁ ଆସିଲେ । ସେଠି ମଧ୍ୟ ପୁଲିସ୍ ବନ୍ଦୋବସ୍ତ ହୋଇଥିଲା । ମେମ୍ବର ଏବଂ ମେମ୍ବରମାନଙ୍କ ପରିବାର ଲୋକମାନେ ଡିନରରେ ଯୋଗ ଦେଉଥାନ୍ତି । କ୍ଲବରେ ଡ୍ରିଙ୍କ୍ କଲା ପରେ କେତେଜଣ ଖେଳାଳୀ ମଧ୍ୟ ନାଚ ଆରମ୍ଭ କଲେ । ନାଚ ଗୀତ ଏବଂ ରାତ୍ରଭୋଜନ ପ୍ରାୟ ରାତ୍ରି ୧୨ଟା ପର୍ଯ୍ୟନ୍ତ ଚାଲିଲା । ମୁଁ କ୍ଲବରୁ ଟିମ୍ ଦୁଇଟିକୁ ବିଦାୟ କରି ଫେରିଲା ବେଳକୁ ରାତ୍ର ଗୋଟାଏ ଉପରେ । ଦିନଟାଯାକ କେବଳ ଠିଆରେ ଠିଆରେ ଡିଉଟି କରା ଯାଇଥିବା ଯୋଗୁ ବଡ଼ କ୍ଲାନ୍ତ ଲାଗୁଥାଏ । ମୋତେ ଟିକିଏ ନିଦ ହୋଇ ଆସିଛି, ହଠାତ୍ ଟେଲିଫୋନ୍ ବାଜିଲା । ଟେଲିଫୋନ୍ ଧଇଲି । ଆରପଟୁ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ବି.କେ. ପାଣିଗ୍ରାହୀ ଅସ୍ଥିର ସ୍ୱରରେ କହୁଥାନ୍ତି "ତୁମେ ଜଲ୍‌ଦି ମଙ୍ଗଳାବାଗ୍ ଅଞ୍ଚଳର ଗୋଟିଏ ହୋଟେଲକୁ ଯାଆ । ସେଠାରେ ଜଣେ ଭଦ୍ର ମହିଳାଙ୍କୁ ଜଣେ ପୁଲିସ୍ ସବ୍‌ଇନିସ୍‌ପେକ୍ଟର ରେପ୍ କରିଛନ୍ତି । ଜଲଦି ଯାଇ ଦେଖ" । ଏତେ କଷ୍ଟରେ ଗୋଟିଏ ଦିନ ଗଲା ପରେ ପୁଣି ଆଉ ଗୋଟିଏ ଦୁର୍ଘଟଣା । କଷ୍ଟଲାଗୁଥିଲେ ମଧ୍ୟ ନିଜେ ଗ୍ୟାରେଜରୁ ଜିପ୍‌ବାହାର କରି ଗାଡ଼ିଚଲାଇ ମଙ୍ଗଳାବାଗ ଥାନାକୁ ଗଲି ଏବଂ ସେଠାରେ ଇନିସ୍‌ପେକ୍ଟର ଗଡ଼ନାୟକଙ୍କୁ ଧରି, ସେଇ ଜଣାଶୁଣା ହୋଟେଲକୁ ଗଲୁ । ହୋଟେଲ୍‌ରେ ପହଞ୍ଚି ଉଦ୍ଦିଷ୍ଟ କୋଠରୀକୁ ଗଲୁ । ସେତେବେଳେ ସେ କୋଠରୀରେ ଜଣେ କୋଡ଼ିଏ ବାଇଶ ବର୍ଷର ଯୁବତୀ ବସିଥିଲେ ଏବଂ ବାହାରେ ଜଣେ ଯୁବକ ବୟସ ପଚିଶ ଛବିଶ ହେବ ବୁଲୁଥିଲେ । ଯୁବତୀଙ୍କ ଠାରୁ ଯାହା ଶୁଣିଲୁ ଘଟଣାଟି

ହେଲା ଯେ ସେ ବାଲେଶ୍ୱର ଅଞ୍ଚଳର ଝିଅ ଏବଂ ଜଣେ କଳାକାର । ଆମେଚର ଥିଏଟରରେ କାମ କରନ୍ତି । ଏହି ଘଟଣାର କିଛି ଦିନ ଆଗରୁ ସେ ଜଳେଶ୍ୱରରେ ଗୋଟିଏ ନାଟକର ମୁଖ୍ୟ ନାରୀ ଭୂମିକାରେ ଅଭିନୟ କଲାବେଳେ ବାହାରେ ବୁଲୁଥିବା ଯୁବକଟି ମୁଖ୍ୟପୁରୁଷ ଭୂମିକାରେ ଅଭିନୟ କରୁଥିଲେ । ଯୁବକ ଜଣଙ୍କ ମାରୱାଡ଼ି ବ୍ୟବସାୟୀ ହେଲେ ମଧ ନାଟକ କରିବାରେ ତାଙ୍କର ଖୁବ୍ ଝୁଙ୍କ ଥିଲା । ନାଟକ ପରେ ସେ ଦୁହିଁଙ୍କ ମଧରେ ସୁସମ୍ପର୍କ ଗଠିଉଠିଲା । ଦୁଇଦିନ ତଳେ ସେମାନେ କଟକ ବୁଲି ଆସି, ସେଇ ଲଜରେ ଗୋଟିଏ ରୁମ୍‌ରେ ରହୁଥିଲେ । ସେଦିନ ମଧ ସେମାନେ କ୍ରିକେଟ୍ ଖେଳ ଦେଖିବାକୁ ଯାଇଥିଲେ । ସନ୍ଧ୍ୟା ପରେ ଖାଇ ସାରି ରୁମ୍‌ରେ ଏକାଠି ଥିଲା ବେଳେ ହଠାତ୍ ଜଣେ ପୁଲିସ୍ ଏସ୍.ଆଇ. ଡ୍ରେସ୍ ପିନ୍ଧି ତାଙ୍କ ରୁମ୍‌ର କବାଟ ବାଡ଼େଇଲେ । ସେମାନେ କବାଟ ଖୋଲିଲା ପରେ ସେ ପୁଲିସ୍ ବାବୁ ତାଙ୍କ ରୁମ୍‌କୁ ପଶିଯାଇ ତାଙ୍କ ପୋଷାକ ଖୋଲି ହାଙ୍ଗରରେ ଟାଙ୍ଗି ଦେଲା ପରେ ତାଙ୍କ ସାଙ୍ଗେ କଥାବାର୍ତ୍ତାହେଲେ । ସେ ମଧ ତାଙ୍କୁ ଆଗରୁ ଜାଣିଥିଲେ । କାରଣ ସେ ମଧ ବାଲେଶ୍ୱର ଅଞ୍ଚଳର ଲୋକ । କିଛି ସମୟ କଥାବାର୍ତ୍ତା କଲା ପରେ ଏସ୍.ଆଇ ବାବୁ ମାରୱାଡ଼ି ଯୁବକଙ୍କୁ ବଜାରରୁ ଗୋଟେ ନିପ୍ ହୁସ୍କି ଏବଂ ଚଣାଚୁର ଆଣିବାକୁ ଆଦେଶ ଦେଲେ । ସେ ଲୋକ ଲଜ୍ ବାହାରେ ଥିବା ଦୋକାନରୁ ଗୋଟେ ନିପ୍ ହ୍ୟୁସ୍କି ଏବଂ ଦିପ୍ୟାକେଟେ ଚନାଚୁର ଆଣିଦେଲେ । ଏସ.ଆଇ ମଦ ପିଇଲେ ଏବଂ ପିଇଲା ପରେ ମାରୱାଡ଼ି ଯୁବକଙ୍କୁ ସେ ରୁମ୍‌ରୁ ବାହାରି ଯିବାକୁ କହିଲେ । ତାଙ୍କ କହିବା ମୁତାବକ ସେ ବାହାରି ଆସି, ରୁମ୍ ଆଗ କରିଡ଼ରରେ ବୁଲୁଥିଲା । ସେଇସମୟରେ ତାଙ୍କ କୋଠାରୀ ଠାରୁ, ଦିଇଟାରୁମ୍ ପରେ ଜଗତସିଂହପୁର ଅଞ୍ଚଳର ଜଣେ ଟୋକା ସରପଞ୍ଚ ରହୁଥାନ୍ତି । ବିଗତ ଦୁଇଦିନ ଧରି ସେ ଏ ଦୁଇଜଣଙ୍କ ହାବ୍‌ଭାବ୍ ଉପରେ ଚୋରା ନଜର ରଖିଥିଲେ । ପୁଲିସ୍ ଏସ.ଆଇ. ତାଙ୍କ ରୁମ୍‌ରେ ପଶିଲା ବେଳେ ମଧ ସେ ଲକ୍ଷ୍ୟ କରିଥିଲେ ଏବଂ ମାରୱ୍ୟାଡ଼ି ଯୁବକ ହ୍ୟୁସ୍କିନିପ୍, ଚନାଚୁର ପ୍ୟାକେଟ୍ ଆଣିଲା ବେଳେ ମଧ ଦେଖିଥିଲେ । ଏବେ ରୁମ୍ ବନ୍ଦକରି ପୁଲିସ୍ ଏସ.ଆଇ. ଭିତରେ ରହିଲା ବେଳେ, ତାଙ୍କୁ ବାହାରେ ବୁଲିବାର ଦେଖି ସେ ତାଙ୍କୁ ମୁହଁ ଖୋଲି ସେ କଥା ପଚାରିଲେ । ମାରୱ୍ୟାଡ଼ି ଯୁବକ ଅଗତ୍ୟା ବାଟ ନପାଇ ପୁଲିସବାଲା ଜବରଦସ୍ତି ତାଙ୍କ ରୁମ୍‌ରେ ପଶିଛନ୍ତି ବୋଲି କହିଲା । ସେ କହିଲା ପରେ ସରପଞ୍ଚବାବୁ ପୁଲିସ୍‌ଥାନାକୁ ଫୋନ୍‌କଲେ । ଥାନାରେ କନେଷ୍ଟବଲ ଧରିଲା । ସେ ଏସ.ପି.ପାଖକୁ ଫୋନ୍ କଲେ । ଏସ.ପି. ଙ୍କ ଫୋନ୍ ତାଙ୍କ କହିବା ମୁତାବକ କେହି ଉଠେଇଲେନି ପରେ ଡି.ଆଇ.ଜି.ଙ୍କୁ ଫୋନ୍‌କରି ଏ ଘଟଣା କହିଥିଲେ ।।

ଯୁବତୀଙ୍କଠାରୁ ଏସବୁ ଘଟଣା ଶୁଣିଲି ଏବଂ ସେ କହିଲେ'' ସେ ଏସ.ଆଇ ବାବୁ କବାଟ ବନ୍ଦ କରି ଦେଲାପରେ ତାଙ୍କ ସହିତ ଯୌନକାର୍ଯ୍ୟ କରିଛନ୍ତି ଏବଂ ସେ କାର୍ଯ୍ୟ ତାଙ୍କ ଇଚ୍ଛାବିରୁଦ୍ଧରେ ଥିଲା । ମୁଁ ତାଙ୍କୁ ପଚରାଉଚରା କଲାବେଳେ ଅତିରିକ୍ତ ଏସ.ପି. ମଧ ସେଠି ପହଞ୍ଚିଥିଲେ । ସବୁଶୁଣି ମୁଁ ସେ ଭଦ୍ର ମହିଳାଙ୍କୁ ନିଜ ହାତରେ ଗୋଟିଏ ରିପୋର୍ଟ ଲେଖିବାକୁ କହିଲି । ସେ ମଧ ଦୁଇ ଫାଳର ଗୋଟିଏ ରିପୋର୍ଟରେ ସମସ୍ତ ଘଟଣା ବର୍ଣ୍ଣନା କରି ଲେଖିଲେ ।

ତାଙ୍କରି ରିପୋର୍ଟ ଅନୁସାରେ ମଙ୍ଗଳାବାଗଥାନାରେ ଗୋଟିଏ ରେପ୍ କେସ୍ ସେ ଏସ.ଆଇ. ନାମରେ ରଜ୍ଜୁ କରାଗଲା ଏବଂ ଇନିସ୍‌ପେକ୍ଟର ତାର ତଦନ୍ତ ଭାରନେଲେ । ସେ ଦିନ ରାତିରେ ସେ ଯୁବତୀଙ୍କ ସଂଗରେ ଜଣେ ମହିଳା ପୁଲିସ୍ ରହିବାର ବନ୍ଦୋବସ୍ତ କରି ଭୋରୁ ଫେରିଲୁ । ସକାଳ ୯ଟାରେ ପୁଣି ଥାନାକୁ ଯାଇ ତାଙ୍କୁ ମେଡ଼ିକାଲ ପରୀକ୍ଷା ପାଇଁ ତଦନ୍ତକାରୀ ଅଫିସରଙ୍କ ସଙ୍ଗେ ପଠାଇଲି । ପୁଲିସ୍ ଏସ.ଆଇ. ଏସବୁ ଖବର ପାଇଁ ନିରୁଦ୍ଦିଷ୍ଟ ହୋଇଯାଇଥାନ୍ତି । ତାଙ୍କୁ ଖୋଜିବାକୁ ମଧ୍ୟ ଲୋକ ପଠାଯାଇଥାଏ । ଦିନ ୯ଟା ପରେ ଭିକ୍ଟିମ୍ ଲେଡ଼ି ମେଡ଼ିକାଲ ପରୀକ୍ଷା ପାଇଁ ଗଲେ ଏବଂ ପରୀକ୍ଷାପରେ ପ୍ରାୟ ଗୋଟାଏ ବେଳେ ଫେରିଲେ । ସେଇ ଦିନ ଚାରିଟା ବେଳେ, ସେ ଅଦାଲତକୁ ଯାଇ, ୧୬୪ ଧାରାରେ ମାଜିଷ୍ଟ୍ରେଟ୍‌ଙ୍କ ଆଗେ ଜମାନବନ୍ଦୀ ଦେଇ କହିଲେ ଯେ ତାଙ୍କୁ ଅଭିଯୁକ୍ତ ପୁଲିସ୍ ଏସ୍.ଆଇ. କୌଣସି ପ୍ରକାର ଖରାପ ବ୍ୟବହାର କରିନାହାଁନ୍ତି । ସେ ତାଙ୍କର ଆଗରୁ ଜଣାଶୁଣା ଯୋଗୁ ତାଙ୍କ ରୁମ୍‌କୁ ଯାଇଥିଲେ । ପୁଲିସ୍ ତାଙ୍କୁ ଧମକ୍ ଚମକ୍ ଦେବାରେ ସେ ତାଙ୍କ ନାମରେ ଅଯଥା ମିଥ୍ୟା ଅଭିଯୋଗ ଆଣିଛନ୍ତି । ଏ ଘଟଣା ମଧ୍ୟ ସେ ଦିନ ଖବର କାଗଜମାନଙ୍କରେ ପ୍ରକାଶ ପାଇଲା ଏବଂ ଏଇ ଜମାନବନ୍ଦୀକୁ ନେଇ ଅଭିଯୁକ୍ତ ପୁଲିସ ଏସ.ଆଇ. ଅଦାଲତରୁ ଆଡ଼ଭାନ୍ସ ବେଲ ପାଇଗଲେ । ପରେ ଏଇ ମାମଲାକୁ ପୁଲିସ୍ ତଦନ୍ତ କରି ଅଭିଯୋଗ ଫର୍ଦ୍ଦ ଦାଖଲ କରିଥିଲେ ମଧ୍ୟ ଏସ.ଆଇ ନିର୍ଦ୍ଦୋଷରେ ଖଲାସ ହେଲେ ।

ମୁଁ କଟକ ସିଟିରେ ଥିଲା ବେଳେ, କଟକ ଜିଲ୍ଲା ଏବଂ କଟକ ପାଖ ଜିଲ୍ଲାମାନଙ୍କରେ ବଡ଼ ଧରଣର ଡକାୟତି ଘଟୁଥାଏ । ଅବିଭକ୍ତ କଟକ ଜିଲ୍ଲାର ଜଗତସିଂହପୁର ଅଞ୍ଚଳରେ ବୈରାଗୀ ପାତ୍ର, ବିଜ୍ଞାନ ମଲ୍ଲିକ ଦଳ, କଟକ, ପୁରୀ, ବାଲେଶ୍ୱର, ବରହମପୁର,ଢେଙ୍କାନାଳ ଜିଲ୍ଲାରେ ଡକାୟତି କରୁଥାନ୍ତି । ସେମାନଙ୍କୁ ଧରିବା ଲୋକାଲ ପୁଲିସ ପକ୍ଷରେ କଷ୍ଟକର ହୋଇଥିଲା । ପ୍ରାୟ ପ୍ରତ୍ୟେକ ସପ୍ତାହରେ କଟକ ଜିଲ୍ଲାର ବିଭିନ୍ନ ଥାନା ଅଞ୍ଚଳରେ ଡକାୟତି ଘଟୁଥାଏ । ତେଣୁ ଏସ.ପି.ଙ୍କ ନିର୍ଦ୍ଦେଶରେ ମୁଁ ଅତିରିକ୍ତ ଏସ.ପି. ଶ୍ରୀଯୁକ୍ତ ଲାଲ୍, କଟକ ହେଡ଼କ୍ୱାଟର ଡି.ଏସ.ପି. ହରିହର ପଣ୍ଡା, ଡକାୟତି ରେଡ଼ କରିବାକୁ ପ୍ରାୟ ପ୍ରତ୍ୟେକ ରାତ୍ରିରେ ଜିଲ୍ଲାର ବିଭିନ୍ନ ସ୍ଥାନକୁ ଯାଉ । ଗୋଟିଏ ଖବର ମିଳିଲା ଯେ ଡକାୟତ ବିଜ୍ଞାନ ମଲ୍ଲିକର ଦଳ ଭୁବନେଶ୍ୱର ରସୁଲଗଡ଼ ପାଖେ ଏକତ୍ରିତ ହୋଇ ଡକାୟତି କରିବାକୁ ଯିବେ ।

ଏ ଖବର ପାଇଲା ପରେ ମୁଁ ଏକଥା ଏସ.ପି. ଆପାରାଓଙ୍କୁ କହିଥିଲି । ଆପାରାଓ, ଜିଲ୍ଲାପାଳଙ୍କୁ ମଧ୍ୟ କହିଲେ । ଗୋଟିଏ ପୁଲିସ୍ ଦଳ ଏସ.ପିଙ୍କ ନେତୃତ୍ୱରେ କଟକରୁ ଭୁବନେଶ୍ୱର ଯାଇ, ବିଜ୍ଞାନ ମଲ୍ଲିକ ସହ ତା ଦଳକୁ ଭୁବନେଶ୍ୱର ରସୁଲଗଡ଼ ପାଖରୁ ଧରିବାକୁ ସକ୍ଷମ ହେଲେ । ବିଜ୍ଞାନ ମଲ୍ଲିକ ଧରା ପଡ଼ିଲା ପରେ, ସେଇକେସ୍‌ରେ ହରିମିଶ୍ର ବୋଲି ଆଉଜଣେ ତା ଦଳର ଡକାୟତକୁ କେସର ରାଜ ସାକ୍ଷୀ କରାଗଲା । ଡକାୟତି କେସ୍ ଚାଲୁଥିବାବେଳେ, ଏଇ ଦଳର ଡକାୟତମାନେ କଟକର ଜଣେ ଜଣାଶୁଣା ବଡ଼ ସୁନା, ରୁପା ବ୍ୟବସାୟୀଙ୍କୁ ଡକାୟତି କରି ଆଣୁଥିବା ଚୋରୀମାଲ କିଣିବାରେ ସଂପୃକ୍ତ କଲେ । କେତେଜଣ ବିହାରୀ ବଣିଆ

ମଙ୍ଗଳାବାଗ୍ ଅଞ୍ଚଳରେ ରହି ସୁନାରୂପା ରଖି ଏଇ ଦୋକାନରେ ଦେଉଥିଲେ । ବିଜ୍ଞାନ ମଲ୍ଲିକ କହିବା ଅନୁସାରେ ନୟାସଡ଼କର ସେଇ ବଡ଼ ବ୍ୟବସାୟୀଙ୍କ ଦୋକାନରୁ ଚୋରା ସୁନା ଧରାଗଲା ଏବଂ ଦୋକାନର ଅଣଓଡ଼ିଆ ମାଲିକଙ୍କୁ ମଧ୍ୟ ସେଇ ମାମଲାରେ ଆରେଷ୍ଟ କରି କୋର୍ଟକୁ ଚାଲାଣ କରାଗଲା । କଟକରେ ପ୍ରଥମ ଥର ପାଇଁ ବୋଧେ ଏତେ ବଡ଼ ଜଣାଶୁଣା ବ୍ୟବସାୟୀଙ୍କୁ ହ୍ୟାଣ୍ଡକପ୍ ପକାଇ କୋର୍ଟକୁ ଚଲାଇ ଚଲାଇ ଯିବା ପ୍ରଥମ ଘଟଣା । ଏହାର ପ୍ରଭାବ ମଧ୍ୟ ସହରରେ ବଡ଼ଧରଣର ପଡ଼ିଥିଲା । ତାଙ୍କର କେସ୍, ନାମଜାଦା ଓକିଲ ବାରିଷ୍ଟର ବିରେନ୍ ପଟ୍ଟନାୟକ ନେଇଥାନ୍ତି । ବେଲ୍ ପାଇଁ ଜଜକୋର୍ଟରୁ ସୁପ୍ରିମ୍ କୋର୍ଟ ପର୍ଯ୍ୟନ୍ତ ଗଲେ, ମାତ୍ର ବେଲ୍ ମିଳିଲା ନାହିଁ । କେସର ତଦନ୍ତ ଚାଲୁଥିଲା ବେଳେ, ବାରିଷ୍ଟର ପଟ୍ଟନାୟକଙ୍କୁ ସଂପୃକ୍ତ କରି ମଧ୍ୟ ଗୋଟେ ମାମଲା ଲାଲ୍‌ବାଗଥାନାରେ ରୁଜୁ ହେଲା । ଏଇ ମାମଲାରେ କୁହାଗଲା ଯେ ଶ୍ରୀଯୁକ୍ତ ପଟ୍ଟନାୟକ ଡକାୟତି ମାମଲାରେ ସାକ୍ଷୀମାନଙ୍କୁ ଧମକ ଚମକ ଦେଉଛନ୍ତି । ଏଇ ମାମଲାର ସୁପରଭିଜନ ମୋତେ ଦିଅଗଲା । ମୁଁ ତାଙ୍କ ଘରକୁ ଗଲି ଏବଂ ସେହିଦିନରୁ ତାଙ୍କ ସହିତ ମୋର ଚିହ୍ନା ହେଲା । ସେଇଦିନ ଠାରୁ ୧୯୯୭ ମସିହାରେ ସେ ଶେଷନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ତାଙ୍କ ସହିତ ମୋର ଘନିଷ୍ଠ ସଂପର୍କ ଥିଲା । ଅବଶ୍ୟ ସେ ମାମଲା, ମୁଁ ସୁପରଭାଇଜ୍ କଲା ବେଳେ ଜଣାଗଲା ଯେ ସେ ଆଦୌ ସଂପୃକ୍ତ ନୁହଁନ୍ତି । ତଳ ପୁଲିସ କର୍ମଚାରୀ ଜାଣି ଶୁଣି ତାଙ୍କୁ ସଂପୃକ୍ତ କରାଇଥିଲେ । ବିଜ୍ଞାନ ମଲ୍ଲିକ କେସ୍‌ରେ ବିଜ୍ଞାନ ମଲ୍ଲିକ ସହ ବହୁଜଣ ଡକାୟତଙ୍କୁ  କନଭିକ୍‌ସନ ହେଲା ।

ତାପରେ ଆଉ ଗୋଟିଏ ଦଳ ସେକ୍ ଆଲିଜାନ୍ ନେତୃତ୍ୱରେ କଟକ ଆଖପାଖ ଜିଲ୍ଲାମାନଙ୍କରେ ଆତଙ୍କ ସୃଷ୍ଟି କରୁଥାନ୍ତି । ଦିନେ ମୁଁ ଅଫିସ୍‌ରେ ବସିଥିବା ବେଳେ ଖବର ପହଞ୍ଚିଲା ଗୋଟିଏ ସ୍ଥାନରେ ଜଣେ ଲୋକ ସନ୍ଦେହରେ ବୁଲୁଛି । ତାକୁ ଯାଇ ଧରିଆଣିଲା ପରେ ସିଟି ଅଫିସ ପାଖ କଣ୍ଟ୍ରୋଲରୁମ୍‌ରେ ପଚରା ଉଚରା କଲା ପରେ ଜଣାଗଲା, ସେ ଦିନ ଉପରବେଳା ଚାରିଟା ସମୟରେ ଗୋଟିଏ ଡକାୟତ ଦଳ, ରାଣୀହାଟ କେନାଲ ବ୍ରିଜ୍ ଉପରେ ଏକତ୍ରିତ ହୋଇ ଡକାୟତି କରିବା ପାଇଁ ଯିବେ ।  ସେଇ ଦଳରେ ଜଣାଶୁଣା କେତେକ ଡକାୟତ ଥା'ନ୍ତି । ସେକ୍ ଆଲିଜାନ ଦଳର ମଧ୍ୟ କେତେ ଡକାୟତ ଏହି ଦଳରେ ଥିଲେ । ଏକଥା ଜାଣିଲା ପରେ ମୁଁ ଅତିରିକ୍ତ ଏସ.ପି. ଲାଲ୍‌ଙ୍କୁ କହିଲି । ସେ କଂଟ୍ରୋଲରୁମ୍‌କୁ ଆସିଲେ । କଥାହେଲା ଆମେ ତିନିଜଣ ଛଦ୍ମବେଶରେ ରାଣୀହାଟ ବ୍ରିଜ୍ ପାଖରେ ରହିବୁ । ଧରା ଯାଇଥିବା ଡକାୟତ କାଲା ଓରଫ ସର୍ବେଶ୍ୱର ମହାନ୍ତିଙ୍କୁ ବ୍ରିଜ୍ ଉପରେ ଚାରିଟା ପୂର୍ବରୁ ଛାଡ଼ି ଦେବୁ । ଅନ୍ୟମାନେ ତା ପାଖକୁ ଆସି କଥାବାର୍ତ୍ତା କଲାବେଳେ, ବ୍ରିଜ୍‌ର ଦୁଇପଟେ ଛଦ୍ମବେଶରେ ଲୁଚିଥିବା ପୁଲିସ ଦଳ ସହ  ଦୁଇ ପଟୁ ଘେରି ସେମାନଙ୍କୁ ଧରି ନେବୁ । ଆମର ପ୍ଲାନ୍ ଅନୁସାରେ ମିଃ ଲାଲ୍ ଜଣେ କାକୁଡ଼ି ବିକାଳୀ ହେଲେ । ସେତେବେଳେ ବୈଶାଖ ମାସ ବହୁତ ଖରା ହେଉଥାଏ । ଚାରିଟା ବେଳକୁ ପ୍ରତ୍ୟେକଦିନ ରାଣୀହାଟ ବ୍ରିଜ୍ ଉପରେ କାକୁଡ଼ି, ଲେମ୍ବୁ ବିକାଳୀ ବସନ୍ତି । ମିଃଲାଲ କାକୁଡ଼ି ବିକାଳି ପରି ଲୁଗା ଗାମୁଛା ପକାଇ ବ୍ରିଜ୍ ଉପରେ ବସିଲେ । ହରିପଣ୍ଡା,

ସେଇ ପରି ଜଣେ ସାଧାରଣଲୋକ ଭାବେ ପୋଲତଳେ ରହିଲା । ମୁଁ ପୋଲର ଆରପଟେ ସାଧାପୋଷାକରେ ସାଧାରଣ ରିକ୍ସା ଚାଳକ ଭାବେ ଥାଏ । ପୁଲିସ ଦଳ ସର୍ଜେଣ୍ଟଙ୍କ ନେତୃତ୍ୱରେ ହିନ୍ଦ୍ ସିନେମା ପଛପଟ ଗଳିରେ ଗୋଟେ ଜିପ୍‌ରେ ବସିଥାନ୍ତି । ମୋ ପାଖରେ ଗୋଟେ ହ୍ୱିସିଲ ଥାଏ । ଦରକାର ବେଳେ ହ୍ୱିସିଲ୍ ଦେଲେ ଲୁଚିଥିବା ପୁଲିସ୍ ଦଳ ସଙ୍ଗେ ସଙ୍ଗେ ପହଞ୍ଚିବେ । ପ୍ଲାନ ଅନୁସାରେ ଠିକ୍ ଦିନ ୩.୩୦ ମିନିଟ୍‌ରେ ଡକାୟତ କାଳାକୁ ଧରି, ହିନ୍ଦ୍ ସିନେମା ପଛପଟେ ଓହ୍ଲାଇ ଚାଲିଚାଲି ବ୍ରିଜ୍ ପାଖକୁ ଗଲୁ । ବ୍ରିଜ୍ ମଝିରେ ତାକୁ ଛାଡ଼ିଲୁ ଏବଂ ଦୁଇପଟେ ଜଗିରହିଲୁ । ସମସ୍ତଙ୍କ ପାଖରେ ପିସ୍ତଲ ଥାଏ । ଲାଲ୍ ସାହେବ ପୋଲମଝିରେ କାକୁଡ଼ି ଟୋକେଇ ଧରି ରହିଲେ । ଏଇ ସମୟରେ ଦିଜଣ ବୁଢ଼ା କନେଷ୍ଟବଲ ହିନ୍ଦ୍ ସିନେମା ପାଖେ ଡିଉଟି କରିବାକୁ ଆସିଲେ । ସେମାନେ ପୋଲ ଉପରେ ବସିଥିବା କାକୁଡ଼ି ବିକାଳୀଙ୍କ ପାଖରୁ କାକୁଡ଼ି ନେଇ ଖାଇଲା ବେଳେ ଦେଖିଲେ ମିଃ ଲାଲ୍, ଅଳ୍ପଦୂରରେ ଗୋଟେ ଟୋକେଇ ନେଇ ବସିଛନ୍ତି । ସେମାନେ କାହିଁକି ବା ଭାବିବେ ମିଃ ଲାଲ୍ ବସିଛନ୍ତି ବୋଲି । କାକୁଡ଼ି ଖାଇ, ପୋଲ ଏପଟକୁ ଚାଲି ଆସିଲା ବେଳେ ତାଙ୍କ ଭିତରୁ ଜଣେ କହିଲା ସେ ଶଳା କାକୁଡ଼ି ବାଲାଟା ଲାଲା ସାହେବ ପରିଦିଶୁଛି । ମୁଁ ଚୁପ୍ ଚାପ୍ ମୁହଁ ବୁଲାଇ ରହିଗଲି । ସେମାନେ କଲେଜ ଛକ ଆଡ଼କୁ ଚାଲି ଚାଲି ଗଲେ ।

ଠିକ୍ ଚାରିଟା ଦଶ ମିନିଟ୍‌ରେ ଡକାୟତ ସନା ରାଉତ ପୋଲ ମଝିରେ ଠିଆ ହୋଇଥିବା ଡକାୟତ ପାଖକୁ ଆସି କଥାବାର୍ତ୍ତା ଆରମ୍ଭ କଲା । ସେମାନେ ତା ସଙ୍ଗେ କଥାବାର୍ତ୍ତା କଲାବେଳେ, ମିଃ ଲାଲ, ଚାଲି ଚାଲି ତାଙ୍କ ପାଖକୁ ଆସିଗଲେ, ମୁଁ ଏବଂ ହରିପଣ୍ଡା ଦୁଇ ପଟରୁ ଆସିଲୁ । ମିନିଟ୍‌କ ମଧ୍ୟରେ ଡକାୟତକୁ କାବୁ କରିନେଲୁ । ହ୍ୱିସିଲ ଶବ୍ଦ ପାଇ ପୁଲିସ ଦଳ ଜିପ୍ ସହ ପୋଲ ଉପରେ ପହଞ୍ଚିଗଲେ । ମାତ୍ର ଦୁଇ ତିନି ମିନିଟ ମଧ୍ୟରେ ଡକାୟତଙ୍କୁ ଧରି ଆମେ ସଙ୍ଗେ ସଙ୍ଗେ କଂଟ୍ରୋଲ ରୁମ୍‌କୁ ଫେରିଲୁ । ସେତେବେଳେ ଆମର ମୁଖ୍ୟ କାମ ଥିଲା ସେକ୍ ଆଲିଜାନ୍‌କୁ ଧରିବା । ତେଣୁ ସେ ଦୁଇଜଣ ଡକାୟତଙ୍କୁ ପଚରାଉଚରା କରାଗଲାପରେ ତାଙ୍କ ମଧ୍ୟରୁ ଜଣେ କହିଲା ସେକ୍ ଆଲିଜାନ୍ କଟକର ମାତୃଭୂମି ପ୍ରେସ ପାଖ ଦରଖାବଜାର ହୁମାୟୁନବାଦ ପାଖରେ ଗୋଟେ ଲେନ୍ ଭିତରେ ରହୁଛି । ସଙ୍ଗେ ସଙ୍ଗେ ତାକୁ ସାଙ୍ଗରେ ଧରି ଆମେ ତିନିଜଣ ଗୋଟେ ଜିପ୍‌ରେ ବାହାରି ଆସିଲୁ । ସାଙ୍ଗରେ ଜଣେ ସର୍ଜେଣ୍ଟ ଗାଡ଼ିରେ ଆସିଥାଏ । ଡକାୟତ ଜଣକ ଠିକ୍ ଭାବେ ତା ଘର ଦେଖି ନଥିବା ଯୋଗୁ ସେମୀନାରୀ ଛକ ଠାରୁ ଓହ୍ଲାଇ ଚାଲି ଚାଲି ଆସିଲା । ତାକୁ ମଝିରେ ଚଳାଇ ଆମେ ଚାରିଜଣ ଆଗ ପଛ ହୋଇ ଚାଲିଥାଉ । ଠିକ୍ ହୁମାୟୁନବାଦର ଛକ ପାଖରେ ପହଞ୍ଚିବାକୁ ଆଉ ଅଳ୍ପବାଟ ଅଛି, ସେ ଡକାୟତ ଜଣକ, ଦେଖାଇ ଦେଲା ଆଲିଜାନ୍ ରାସ୍ତା ପାର ହୋଇ ସେ ରହୁଥିବା ଲେନ ଭିତରକୁ ଯାଉଛି । ସେ ଆମକୁ ଦେଖିପାରିନି । ଆଖି ଆଗରେ ପାଇ ଏତେଦିନ ଧରି ଖୋଜୁଥିବା ଡକାୟତକୁ କାବୁ କରିବା ପାଇଁ ପ୍ରବଳ ଆଗ୍ରହ ଯୋଗୁ ମିଃ ଲାଲ, ଟିକିଏ ଆଗକୁ ଚାଲିଯାଇ ସେକ୍ ଆଲିଜାନ୍ ଗଳି ଭିତରେ ତା ଘର ଆଡ଼କୁ ଗଲାବେଳେ ତାକୁ ପଛପଟୁ ମାଡ଼ି

ବସିଲେ । ଆଲିଜାନ୍ ମଧ୍ୟ ଖୁବ୍ ବଳଶାଳୀ ଯୁଆନ । ହଠାତ୍ କିଏ ପଛରୁ ଧରିନେଲା ଦେଖି, ସେ ମଧ୍ୟ ତାଙ୍କ କବଳରୁ ଖସି ଯିବାପାଇଁ ଚେଷ୍ଟାକଲା । ମୂହୂର୍ତ୍ତକ ମଧ୍ୟରେ ମିଃ ଲାଲ ଏବଂ ଆଲିଜାନ୍ ତଳେ ପଡ଼ି ଗଡ଼ିଆ ଗଡ଼ି ହେଲେ । ସୁଯୋଗ ନେଇ ଆଲିଜାନ୍ ମିଃ ଲାଲଙ୍କ ବେକକୁ ଚାପି ଧରି ତାଙ୍କ ଉପରେ ବସିଗଲା । ଏହି ସମୟରେ ହାବିଲାଦାର ମହେଶ୍ୱର ମହାପାତ୍ର ଦଉଡ଼ି ସେଇଠି ପହଞ୍ଚି ଗଲା ଏବଂ ସର୍ଜେଣ୍ଟ ତା ବେକରେ ପିସ୍ତଲ ଲଗାଇଲାପରେ କାବୁ କରିନେଲୁ । ପାଖ ଘରୁ ଖଣ୍ଡେ ଦଉଡ଼ି ଆଣି ତାକୁ ଆଗ ବାନ୍ଧି ପକାଇଲୁ । ଆମେ ସବୁ ସାଧା ପୋଷାକରେ ଥିବା ଯୋଗୁ, ବସ୍ତିଲୋକମାନେ ଆମକୁ ଘେରିଗଲେ ମାତ୍ର ସେମାନଙ୍କ ମଧ୍ୟରୁ କେତେଜଣ ମତେ ଚିହ୍ନି, ପୋଲିସ୍ ସାଧା ପୋଷାକରେ ଆସିଛି ବୋଲି ଜାଣିଲେ । ସେମାନେ କିନ୍ତୁ ଆଲିଜାନ୍ ଜଣେ ବଡ଼ ଡକାୟତ ବୋଲି ଜାଣିନଥିଲେ । ସେ ଭଦ୍ରକର ଲୋକ, ସେଠି ପିଲାଛୁଆ ରଖି ଏଠି ମଧ୍ୟ ଗୋଟିଏ ସ୍ତ୍ରୀ ରଖିଥାଏ । ତାକୁ କଣ୍ଟ୍ରୋଲ ରୁମ୍ ଆଣି ପଚାର ଉଚରା କଲା ପରେ, ବହୁ ଡ଼କାୟତ ମାମଲାରେ ସେ ସଂପୃକ୍ତ ବୋଲି ଜଣାଗଲା ଏବଂ ବହୁତ ପୁରୁଣା ମାମଲାରେ ସେ ଏବଂ ତା ଦଳର ଡକାୟତମାନେ ଚୋରି କରିଥିବା ଜିନିଷ ରିକଭରି ଦେଲେ । ସେକ୍ ଆଲିଜାନ୍, ପୁଲିସ ହେପାଜତ୍‌ରେ ଥିଲାବେଳେ, ଜଣେ ଜଗୁଆଳୀ କନେଷ୍ଟବଳକୁ କହିଥିଲା, ତାକୁ ଧରିବା ବେଳେ ସେ ରାସ୍ତା ସେପଟ ପାଇଖାନାରୁ ଫେରୁଥିବା ଯୋଗୁ ସାଙ୍ଗରେ ଛୁରୀ ଧରିନଥିଲା । ନହେଲେ ସବୁବେଳେ ତା ଅଣ୍ଟାରେ ଛୁରୀଥାଏ । ସେ ଦିନ ଯଦି ଛୁରୀଥାନ୍ତା, ତାହେଲେ ତାକୁ ଧରୁଥିବା ପୁଲିସଙ୍କ ଭିତରୁ ଜଣେ ଦୁଇଜଣକୁ ନିଶ୍ଚୟ ମାରିଥାନ୍ତା । ଏହାପରେ ପାରେଶ୍ୱର ସାହିର ବଳରାମ ନାୟକଙ୍କ ଘରେ ରହୁ ଥିବା ଡକାୟତ ସନାତନ ରାଉତର ବସାଘରକୁ ସଛ ଦାସ ନାମକ ଆଉଜଣେ ଡକାୟତ ଆସି ଖୋଜିଲା ବେଳେ, ବଳରାମଙ୍କ ସ୍ତ୍ରୀ ଶ୍ରୀମତୀ ପାଲୁଣୀ ଦେଇ ଆମର ପୂର୍ବ କହିବା ଅନୁସାରେ ତାକୁ କୌଶଳକ୍ରମେ ତାଙ୍କ ଘରେରଖି ମଙ୍ଗଳାବାଗ୍ ଥାନାକୁ ଫୋନ୍ ଯୋଗେ ଜଣାଇବାରୁ ଘଟଣା ସ୍ଥଳରେ ପୁଲିସ୍ ପହଞ୍ଚି ସେ ଡକାୟତକୁ ଗିରଫ କରିଥିଲେ ।

ତିନି ଚାରିଗୋଟି ବଡ଼ ଡକାୟତଦଳ ଅଳ୍ପ କେତେଦିନ ମଧ୍ୟରେ ଧରାଗଲା ପରେବି ବିଚି ମଲ୍ଲିକ ଦଳ, ଜଗତସିଂହପୁର, ଗୋବିନ୍ଦପୁର ଅଞ୍ଚଳରେ ଡକାୟତି କରି ଆତଙ୍କ ସୃଷ୍ଟିକରୁଥାନ୍ତି । ରାତିରେ ତା ଘରକୁ ଯାଇ ରେଡ଼କରି ଧରିବା ମଧ୍ୟ ସମ୍ଭବପର ହେଉନଥାଏ । ତାଘର ପାଖରେ କନ୍ଦଳ ନଦୀ । ନଦୀ ବନ୍ଧରେ ରାତିରେ ଜିପ୍ ଆସିଲେ କିମ୍ବା ନଦୀ ଦେଇ ଲୋକ ଚାଲିକରି ଆସିଲେ, ବହୁ ଦୂରରୁ ସେ ଜାଣିପାରେ ଏବଂ ଘରୁ ଖସିପଳାଇଯାଏ । ଦୁଇ ତିନିଥର ସ୍ଥାନୀୟ ପୁଲିସ୍ ତାକୁ ଧରିବାରେ ବିଫଳ ହେବାପରେ ଏସ୍.ଆଇ ଦିଗେନ୍ ମହାନ୍ତିଙ୍କ ସଙ୍ଗେ ଗୋଟେ ପୁଲିସ୍ ଦଳ ମେଣ୍ଢା ବିକାଳୀର ଛଦ୍ମ ବେଶରେ ଜଗତସିଂହପୁର ଠାରୁ ତା ଗାଁକୁ ପଠାଇଲି । ନଦୀକୂଳରେ ଜିପ୍ ରହିଲା । ସେମାନେ ଦୁଇଟି ମେଣ୍ଢା ଧରି, ନଦୀ ବାଲିରେ ଚାଲିଚାଲି ଆରପଟକୁ ଉଠିଲେ । ଦିନ ପ୍ରାୟ ୧୧ଟା ହେବ । ଖରାରେ ନଇବାଲି ଫୁଟୁ ଥାଏ । ସେଇଥିରେ ସେମାନେ ସାଧା ପୋଷାକରେ

ଚାଲିଥାନ୍ତି । ସମସ୍ତେ ଜାଣନ୍ତି, ଜଗତସିଂହ ପୁରରୁ ଗୋବିନ୍ଦପୁର କିମ୍ବା ସେ ଅଞ୍ଚଳକୁ ଆସିବାକୁ ହେଲେ, ପାଦଚଲାଳୀ ସେଇ ଖରାଦିନିଆ ନଈବାଟରେ ଯାଆନ୍ତି । ଦିଗେନ୍ ମହାନ୍ତି ଜଣାଶୁଣା ପୁରୁଣା ପୁଲିସ୍ ଅଫିସର । ସେତେବେଳେ କଟକ ସଦର ଥାନାର ଦାୟିତ୍ୱରେ ଥା'ନ୍ତି । ସେମାନେ ମେଣ୍ଢା ଦୁଇଟାକୁ ଧରି ନଦୀ ବନ୍ଧକୁ ଉଠି, ବିଚି ମଲ୍ଲିକ ଘରକୁ ସିଧା ଗଡ଼ିଲେ । ସେତେବେଳକୁ ବିଚି ଦାଣ୍ଡପିଣ୍ଡାରେ ଠିଆ ହୋଇଥାଏ । ମେଣ୍ଢା ବିକାଳୀ ତା ଘର ସାମ୍ନାରେ ଠିଆ ହେବା ଦେଖି, ସେ ତଳକୁ ଓହ୍ଲାଇ ମେଣ୍ଢା ଦର କରିବା ବେଳେ, ଏମାନେ ତାକୁ କାବୁ କରିନେଲେ । ପଛରେ ଆସୁଥିବା ଆଉ ଦୁଇଜଣ ପୁଲିସ୍, ଏ.ପି.ଆର ସାଧାପୋଷାକରେ ପହଞ୍ଚି ଗଲେ । ତା ଘର ଖାନତଲାସି କଲା ବେଳେ ଅଳ୍ପଦିନ ଆଗରୁ ଗୋବିନ୍ଦପୁର ଥାନା ଅଞ୍ଚଳରୁ ଡକାୟତ କରି ନେଇଥିବା ଲୁଗାପଟା, ସୁନା ଏବଂ କେତେକ ରୁପା ଅଳଙ୍କାର ତାଘରୁ ବାହାରିଲା । ସେମାନେ ସନ୍ଧ୍ୟା ସୁଧା ତାକୁ ଧରି, ଜଗତସିଂହପୁରରେ ପହଞ୍ଚିଲେ । ବିଚି ମଲ୍ଲିକ ଦଳ ଆରେଷ୍ଟ ହେବାପରେ, ସେତେବେଳର କଟକ, ପୁରୀ ବାଲେଶ୍ୱର, ଢେଙ୍କାନାଳ ଜିଲ୍ଲାରୁ ଡକାୟତ ପ୍ରାୟ ବନ୍ଦହୋଇ ଯାଇଥିଲା । ଲୋକମାନେ ଶାନ୍ତିରେ ନିଶ୍ୱାସ ମାରିଲେ । କଟକ ସହରରେ ମଧ ଅପରାଧ କମିଯାଇଥାଏ । ମଦ,ଜୁଆ ଆଡ୍ଡା, ସିନେମା ଟିକେଟ୍ର କଳାବଜାରୀମାନଙ୍କ ଉପରେ ପ୍ରାୟ ସବୁ ଦିନ ରେଡି ହେଉଥିବାଯୋଗୁ, ସହରର ଲେକମାନଙ୍କ ମଧରେ ପୁଲିସ୍ ପ୍ରତି କିଛି ଆସ୍ଥା ମଧ ବଢ଼ିଥିଲା । ପ୍ରାୟ ପ୍ରତ୍ୟେକ ଦିନ ସମ୍ବାଦ ପତ୍ର ମାନଙ୍କରେ ପୁଲିସ୍ ଧଡ଼ପକଡ଼ ବିଷୟରେ ସମ୍ବାଦ ବାହାରୁଥିବା ଯୋଗୁ, ଜନସାଧାରଣ ପୁଲିସ୍ର କାର୍ଯ୍ୟକଳାପ ଉପରେ ଜାଣିବାକୁ ପାଉଥାନ୍ତି । ଏଥିମଧରେ କଟକ ସହରର ଜଣେ ଜଣା ଶୁଣା ଚୋରା ଦେଶୀମଦ ବ୍ୟବସାୟୀ ସେତେବେଳର ରାଜନୈତିକ ହର୍ତ୍ତାକର୍ତ୍ତାଙ୍କ ସଂପର୍କୀୟ, ଯେକି ''କିଚକ ବାହୁବଳେ ବିରାଟ ରଜା''ଙ୍କ କାର୍ଯ୍ୟ କଟକ ସହରରେ ଚଳାଉଥାନ୍ତି, ତାଙ୍କ ଶରଣାପନ୍ନ ହେଲେ । କେବଳ ଶରନାପର୍ଣ୍ଣ ନୁହେଁ, ମୋର କଟକ ସହରରୁ ଅନ୍ୟ କୌଣସି ସ୍ଥାନକୁ ବଦଳି କରିବା ପାଇଁ ଯେତେଟଙ୍କା ଦରକାର ଦେବେ ବୋଲି ମଧ କହିଲେ । ମାତ୍ର ହଠାତ୍, ମୋ ବିରୁଦ୍ଧରେ କିଛି ଅଭିଯୋଗ ନଥାଇ ବଦଳି କରିବା ସମ୍ଭବପର ନୁହେଁ ବୋଲି କହିବାରୁ ମୋତେ କିପରି ଧରାଯାଇ ପାରିବ, ତାର ବନ୍ଦୋବସ୍ତ କରିବାକୁ ଚେଷ୍ଟାକରି ନେତାଙ୍କର ସଂପର୍କୀୟ ମୋତେ ଦିନେ ତାଙ୍କ ଘରକୁ ରାତ୍ରିଭୋଜନ ପାଇଁ ଡାକିଥିଲେ । ଅବଶ୍ୟ,ତାଙ୍କୁ ମୁଁ ବହୁତ ଆଗରୁ ଜାଣିଥିଲି । ସହରର ଜଣେ ଜଣାଶୁଣା ବ୍ୟକ୍ତିଙ୍କ ପୁତ୍ର ତଥା ବରିଷ୍ଠ ନେତାଙ୍କ ସଂପର୍କୀୟ, ତେଣୁ ତାଙ୍କ ଡକରାରେ ମୁଁ ତାଙ୍କ ଘରକୁ ଯିବାକୁ ମନା କରିପାରିନଥିଲି । ମନା କରିବାର ମଧ କିଛି, ଆବଶ୍ୟକତା ନଥିଲା କାରଣ ତାଙ୍କ ସହିତ ମୋର ସାମାଜିକ ସଂର୍ପକ ଖୁବ୍ ଭଲଥିଲା । ସେ ଦିନ ସନ୍ଧ୍ୟା ଆଠଟାରେ ମୁଁ ତାଙ୍କ ଘରେ ପହଞ୍ଚିଲା ବେଳକୁ ଦେଖିଲି ଦେଶୀ ମଦ ବ୍ୟବସାୟୀଙ୍କ ଗୁମାସ୍ତା ତାଙ୍କ ଘରେ ଥା'ନ୍ତି । ବୋଧେ ଖାଇବାର ସମସ୍ତ ବନ୍ଦୋବସ୍ତ ସେ କରିଥିଲେ କେବଳ ଖାଇବା ନୁହେଁ ଖାଦ୍ୟ, ସାଙ୍ଗକୁ ଭଲ ପାନୀୟର ମଧ ବନ୍ଦୋବସ୍ତ ହୋଇଥିଲା । ନିମନ୍ତ୍ରିତ ହୋଇ ଘରେ ପହଞ୍ଚି ସାରିଲା ପରେ, ମନାକରିବା କିମ୍ବା ଫେରିଯିବା ଅସୌଜନିକ ହେବ

ବୋଲି, ମୁଁ କିଛି ନକହି, ମଦ ବ୍ୟବସାୟୀଙ୍କ ଗୁମାସ୍ତାଙ୍କୁ ନଦେଖିଲା ପରି, ତାଙ୍କ ସହିତ ବ୍ୟବହାର କଲି । କିଛି ସମୟ ବସିଲା ପରେ, ନେତାଙ୍କ ସଂପର୍କୀୟ ମୋତେ ଅସଲକଥା କହିଲେ । ତାଙ୍କର ପ୍ରସ୍ତାବ ଅନୁସାରେ, ମୋତେ ମାସକୁ ପାଞ୍ଚହଜାର ଟଙ୍କା ଦେବେ । ମୁଁ ଦେଶୀମଦ ରେଡ୍ଡି କରିବି ନାହିଁ । ନେତାଙ୍କ ସଂପର୍କୀୟଙ୍କ ଠାରୁ ନୈଶ୍ୟଭୋଜନ ଆଳରେ ଏପରି ପ୍ରସ୍ତାବ ଶୁଣି ମୁଁ ଅପ୍ରତିଭ ହୋଇଥିଲେ ମଧ୍ୟ ମୁହଁରେ କିଛି ଆଭାସ ପ୍ରକାଶ ନକରି କହିଲି "ମୁଁ ଟଙ୍କାତ ନେବା ଦୂରର କଥା, ମୁଁ ଥିବା ପର୍ଯ୍ୟନ୍ତ, ଦେଶୀ ମଦ ବ୍ୟବସାୟୀଙ୍କ ବିରୁଦ୍ଧରେ ଚଢ଼ାଉ ନିଶ୍ଚିତ ଭାବେ ହେବ" । ମୋ କଥା ଶୁଣି ସେ ଆଉ କିଛି କହିନଥିଲେ । ସେଦିନ ତାଙ୍କ ଘରୁ ଖାଇ ଫେରିଲି ସତ ମାତ୍ର ମନଟା ଅତ୍ୟନ୍ତ ଖରାପ ଲାଗିଲା । ମୁଁ ମୁହେଁ ମୁହେଁ ମନାକରିଦେଇ ଫେରିଲା ପରେ, ଯଦିଓ ସେ ମୋତେ କିଛି କହିନଥିଲେ, ସେଇଦିନୁ ମୋର ବଦଳିପାଇଁ ଚେଷ୍ଟାରେ ରହିଲେ ।

**ଜରୁରୀ ପରିସ୍ଥିତି ଏବଂ ପୁଲିସ୍** – ସେତେବେଳକୁ ପୁଲିସ ଆଇ.ଜି ନରସିଂହ ସ୍ୱାଇଁ, ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ଅତ୍ୟନ୍ତ ପାଖଲୋକ ଭାବେ ଜଣା ଶୁଣା । ଏଇ ସମୟରେ ଭାରତରେ ରାଜନୈତିକ ଆକାଶରେ ଅସ୍ଥିରତା ଦେଖା ଦେଇଥିଲା । ୧୯୭୧ ମସିହା ବଙ୍ଗଳା ଦେଶ ଯୁଦ୍ଧ ପରେ ସାରା ପୃଥିବୀରେ ଇନ୍ଦିରାଗାନ୍ଧି, ଜଣେ ଶକ୍ତିଶାଳୀ ମହିଳା ନେତ୍ରୀ ହିସାବରେ ଗଣା ହେଲେ । ତାଙ୍କର ଭାବମୂର୍ତ୍ତୀ ମଧ୍ୟ ସେହି ପରିଭାବେ ସାରା ପୃଥିବୀରେ ବଢ଼ିଯାଇଥିଲା । ତାର ପ୍ରଭାବ ମଧ୍ୟ ପ୍ରତ୍ୟେକ ପ୍ରଦେଶରେ ପଡ଼ିଥିଲା । ନନ୍ଦିନୀ ଦେବୀ, ଇନ୍ଦିରାଙ୍କ ଅତ୍ୟନ୍ତ ପାଖ ଲୋକ ହିସାବରେ ଗଣା ହେଉଥିଲେ ଏବଂ ସେ ଓଡ଼ିଶାର ନେତୃତ୍ୱ ନେଲାପରେ, ତାଙ୍କୁ ମଧ୍ୟ ଓଡ଼ିଶାର ଜଣେ ଦକ୍ଷ ଶକ୍ତିଶାଳୀ ମହିଳା ମୁଖ୍ୟମନ୍ତ୍ରୀ ଭାବେ ଓଡ଼ିଶାର ଜନସାଧାରଣ ଭାବିନେଇଥିଲେ । ୧୯୭୪ବେଳକୁ "Indira is India" କୁହାଗଲା ଏବଂ କେତେ ସ୍ଥାନରେ ଇନ୍ଦିରାଙ୍କୁ ଦୁର୍ଗାଙ୍କ ସହିତ ତୁଳନା କରାଗଲା । ଓଡ଼ିଶାରେ ନନ୍ଦିନୀ ଦେବୀ ଏକ ବିଶାଳ ଜନତା ରାଲି କରିଥିଲେ ଏବଂ ଯେଉଁଥିରେ କି କେତେକ ଦଳୀୟ ଲୋକ ତାଙ୍କୁ ଏସିଆର ସୂର୍ଯ୍ୟ ବୋଲି ଆଖ୍ୟା ଦେଲେ ।

ଇନ୍ଦିରାଗାନ୍ଧିଙ୍କ ନେତୃତ୍ୱ ଏବଂ ତାଙ୍କର ପ୍ରତିଷ୍ଠା ବଢ଼ିବାରେ, ବିରୋଧି ଦଳ ମଧ୍ୟ, ତାଙ୍କର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ୧୯୭୪ ମସିହା ବେଳକୁ ଭାରତର କେତେକ ଅଞ୍ଚଳରେ ମରୁଡ଼ି ଦେଖା ଦେଇଥିଲା । ମରୁଡ଼ି ସମୟରେ ବଳକା ପ୍ରଦେଶରୁ ମରୁଡ଼ି ପିଡ଼ିତ ରାଜ୍ୟମାନଙ୍କୁ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ପଠାଇବା ଅତ୍ୟନ୍ତ ଜରୁରୀଥିଲା ଏବଂ ଏସବୁ ସମଗ୍ରୀର ପରିବହନ ମୁଖ୍ୟତଃ ରେଲଗାଡ଼ି ଉପରେ ନିର୍ଭର କରୁଥିଲା । ସମୟର ସୁଯୋଗ ଏବଂ ରାଜନୈତିକ ଦୃଷ୍ଟିକୋଣରୁ ବିରୋଧିଦଳ ଦେଶରେ ଛାତ୍ର ଆନ୍ଦୋଳନ, ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିବା ସଙ୍ଗେ ସଙ୍ଗେ ,ରେଲୱେ ଷ୍ଟ୍ରାଇକ୍ ଆରମ୍ଭ କରିଦେଲେ । ରେଲ୍ ଷ୍ଟ୍ରାଇକ୍ ଯୋଗୁ ଦରକାରୀ ସାମଗ୍ରୀ ମାନ ଯିବାରେ ବାଧାସୃଷ୍ଟି ହେଲା ଏବଂ ନିତ୍ୟବ୍ୟବହାର୍ଯ୍ୟ ସାମଗ୍ରୀର ଦର ହୁ ହୁ ହୋଇ ବଢ଼ିବାରେ ଲାଗିଲା । ଦରଦାମ୍ ବୃଦ୍ଧିକୁ ମଧ୍ୟ, ସ୍ଥାନୀୟ ଶାସନକଳ ରୋକିବାରେ ଅସମର୍ଥ ହେଲା । ସାରା ଦେଶରେ ଏକ ପ୍ରକାର ଅର୍ଥନୈତିକ ବିଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବା ଆଡ଼କୁ

ଆଗେଇଲା । ଏହି ସମୟରେ, ଜୟପ୍ରକାଶ ନାରାୟଣ, ଯେକି ସାରା ଭାରତବର୍ଷରେ ଜଣେ ସୁଦକ୍ଷ ସ୍ୱାଧୀନତା ସଂଗ୍ରାମୀ ଭାବେ ପରିଚିତ ଏବଂ ଯାହାଙ୍କର ଭାବମୂର୍ତ୍ତୀ ସେତେବେଳେ ମହାତ୍ମାଗାନ୍ଧିଙ୍କ ସଦୃଶଥିଲା, ସେ ମଧ ବିହାର, ଗୁଜୁରାଟ ପ୍ରଦେଶରେ ଛାତ୍ର ଆନ୍ଦୋଳନକୁ ସମର୍ଥନକଲେ ଏବଂ ଛାତ୍ର,ପୁଲିସ୍, ସୈନ୍ୟ ବାହିନୀର ସଦସ୍ୟମାନେ, ସରକାର ଆଦେଶକୁ ମାନନ୍ତୁ ନାହିଁ ବୋଲି ଆହ୍ୱାନ ଦେଲେ । ସ୍ୱାଧୀନତା ପରେ ଦେଶରେ ଏପରି ଏକ ପରିସ୍ଥିତି ସୃଷ୍ଟି ହେବା ପ୍ରଥମ । ଇନ୍ଦିରା ଗାନ୍ଧିଙ୍କୁ ବିରୋଧି ଦଳର ସମାଲୋଚନାର ଫଳ ଅନ୍ୟ ପ୍ରଦେଶମାନଙ୍କରେ ପଡ଼ିଥିଲା । ଓଡ଼ିଶାରେ ମଧ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ, ବିରୋଧି ଦଳ ମୁଣ୍ଡ ଟେକିବାକୁ ବାହାରିଲେ । ମହତାବ ବିଜୁପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି ଅନ୍ୟ ନେତାମାନେ, ଜେ.ପି ମୁଭ୍‌ମେଣ୍ଟକୁ ସମର୍ଥନ ଦେଲେ ଏବଂ ଜେ.ପି, ଓଡ଼ିଶା ଗସ୍ତରେ ଆସି ବିଭିନ୍ନ ଜିଲ୍ଲା ପରିକ୍ରମା କଲେ । ଦେଶରେ ଏପରି ଏକ ପରିସ୍ଥିତି ଚାଲିଥିବା ବେଳେ ରାଜନାରାୟଣ ଇନ୍ଦିରାଙ୍କ ବିରୁଦ୍ଧରେ ଏଲାହାବାଦ ଉଚ୍ଚନ୍ୟାଳୟରେ କରିଥିବା ନିର୍ବାଚନ ମାମଲାରେ ଏଲ୍ଲାହାବାଦ ଉଚ୍ଚନ୍ୟାୟଳୟ, ଇନ୍ଦିରାଙ୍କ ନିର୍ବାଚନକୁ ଅସିଦ୍ଧ ଘୋଷଣା କଲା । ନିର୍ବାଚନ ଅସିଦ୍ଧ ଘୋଷଣାପରେ, ମିସେସ ଗାନ୍ଧି, ରାଜନୈତିକ କ୍ଷେତ୍ରରେ ଅସୁରକ୍ଷିତ ମନେ କଲେ ଏବଂ ତାର ସୁଯୋଗ ନେଇ ତାଙ୍କର କେତେଜଣ ପାଖ ରାଜନୈତିକ ନେତା ତାଙ୍କୁ ବିରୋଧିଦଳଙ୍କ ବିରୋଧାତ୍ମକ କାର୍ଯ୍ୟକଳାପକୁ ପ୍ରତିରୋଧ କରିବାକୁ ଉପଦେଶ ଦେଲେ । ଇନ୍ଦିରାଗାନ୍ଧି ମଧ ମନେ ମନେ ଚିନ୍ତାକଲେଯେ ତାଙ୍କ ଦଳର କେତେକ ସିନିୟର ନେତା ପ୍ରଧାନମନ୍ତ୍ରୀଙ୍କ ଗଦିଉପରେ ଲୋଲୁପ ଦୃଷ୍ଟିରଖିଛନ୍ତି । ତେଣୁ ଦଳଭିତରେ, ସେ କାହାକୁ ବିଶ୍ୱାସ କରିବାକୁ ଚାହୁଁ ନଥିଲେ । ଏଇ ସମୟରେ ତାଙ୍କର କନିଷ୍ଠ ପୁତ୍ର ସଞ୍ଜୟ ଗାନ୍ଧି ତାଙ୍କର ଅତ୍ୟନ୍ତ ବିଶ୍ୱାସଭାଜନ ହେବା ସଙ୍ଗେ ସଙ୍ଗେ ଆଉ କେତେଜଣ ତାଙ୍କ ପାଖ ଲୋକ, ତାଙ୍କର ପରାମର୍ଶଦାତା ହୋଇଗଲେ । ପରିସ୍ଥିତିକୁ ମୁକାବିଲା କରିବାକୁ ଯାଇ, ପୁଅ ସଞ୍ଜୟ ଏବଂ ପାଖଲୋକଙ୍କ ପରାମର୍ଶରେ ଇନ୍ଦିରାଗାନ୍ଧୀ ସାରାଦେଶରେ ଜୁନ୍ ୨୫ତାରିଖ ମଧ ରାତ୍ର ଠାରୁ (ଜୁନ୍ ୨୬ ସକାଳୁ) ଆଭ୍ୟନ୍ତରୀଣ ଆପତକାଳୀନ ପରିସ୍ଥିତି ଜାରିକଲେ । ଆପତକାଳୀନ ପରିସ୍ଥିତି ବିଷୟରେ ଅଲ୍ ଇଣ୍ଡିଆ ରେଡ଼ିଓ ଘୋଷଣା କଲାପରେ, ସାରା ଦେଶରେ ଏକ ପ୍ରକାର ଆତଙ୍କ ଖେଳିଗଲା । ଯେଉଁମାନେ ଇନ୍ଦିରା ଗାନ୍ଧିଙ୍କ ନୀତି ଏବଂ ସରକାରକୁ ବିରୋଧ କରୁଥିଲେ, ସେମାନଙ୍କୁ ଆରେଷ୍ଟ କରିବାକୁ ନିର୍ଦ୍ଦେଶ ଦିଆଗଲା । ଜୁନ୍ ୨୬ ତାରିଖ ଠାରୁ ଏହି ବିରୋଧିଦଳର ନେତାମାନଙ୍କୁ ଆରେଷ୍ଟ କରିବା ଦାୟିତ୍ୱ ପୁଲିସ ଉପରେ ପଡ଼ିଲା ।

କଟକ ସିଟି.ଡ଼ି.ଏସ.ପି ଭାବେ ମୋତେ ପ୍ରଥମ କେତେଦିନ ମଧରେ ଓଡ଼ିଶାର ପ୍ରଖ୍ୟାତ ଶ୍ରମିକ କମ୍ୟୁନିଷ୍ଟ ନେତା ମନମୋହନ ମିଶ୍ର, ଗାନ୍ଧିବାଦୀ ନେତା, ନବକୃଷ୍ଣ ଚଉଧୁରୀଙ୍କ ପୁତୁରା ମନମୋହନ ଚଉଧୁରୀ, ବିଘ୍ନେଶ୍ୱର ସ୍ୱାଇଁ,ସି.ପି.ଆଇ.ଏମ୍.(ଏଲ୍) ନେତା ବିନୋଦ ଦାସ୍ ଆଦିଙ୍କୁ ଜରୁରୀକାଳିନ ପରିସ୍ଥିତି ଘୋଷିତ ହେବାର ଦିନେ ଦୁଇଦିନ ମଧରେ, ରାତିରେ ତାଙ୍କ ଘର ରେଡ଼ି କରି ଆରେଷ୍ଟ କଲାପରେ ତାଙ୍କୁ ନିର୍ଦ୍ଧାରିତ ଜେଲକୁ ପଠାଗଲା । ବାକି

ଯେଉଁ ନେତାମାନେ ଥିଲେ, ସେମାନେ ଲାପତା ହୋଇଗଲେ । ସେମାନଙ୍କ ମଧ୍ୟରେ ଥିଲେ କଟକ ସହରରେ ରହୁଥିବା ତ୍ରିଲୋଚନ କାନୁନ୍‌ଗୋ, ଭାଗବତ ବେହେରା, ଇତିହାସ ରବିଦାସ ଇତ୍ୟାଦି । ଓଡ଼ିଶାରେ ବହୁ ତୁଙ୍ଗନେତାମାନେ ଜେଲ୍ ଗଲେ । ସେମାନଙ୍କ ମଧ୍ୟରେ, ଡକ୍ଟର ମହତାବ, ବିଜୁପଟ୍ଟନାୟକ, ନବକୃଷ୍ଣ ଚଉଧୁରୀ ଅନ୍ୟତମ ।

ଜରୁରୀ ପରିସ୍ଥିତି ଜାରିହେବାର ଅଳ୍ପଦିନ ଆଗରୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ନିର୍ଦ୍ଦେଶରେ କଟକ ସହରରୁ ବେଆଇନ୍ ଭାବରେ ରାସ୍ତା ଅବରୋଧକାରୀଙ୍କୁ ଉଠାଯାଉଥାଏ । ବହୁଦିନରୁ ଦୋକାନୀ ଠାରୁ ଆରମ୍ଭ କରି ଘରୋଇ ଲୋକମାନେ ସରକାରୀ ରାସ୍ତା ଉପରେ ପକ୍କାଘର କରିଯାଇଥିଲେ । ରାଣୀହାଟ ପୋଲ ଠାରୁ ରେଲ୍‌ଷ୍ଟେସନ ଯିବାକୁ ରାସ୍ତା ଅତ୍ୟନ୍ତ ଅଣଓସାରିଆ ଥିଲା । ବଡ଼ ବଡ଼ ଦୋତାଲା କୋଠାମାନ ପ୍ରାୟ ୧୦୦ ଫୁଟରୁ ଊର୍ଦ୍ଧ୍ୱ ସରକାରୀ ଜମି ମାଡ଼ି ବସି ଘର, ଦୋକାନ କରିଯାଇଥାନ୍ତି । ବକ୍ସିବଜାରଟି, ମଙ୍ଗଳାବାଗ୍ ଏମିତି କେତେଯାଗାରେ ସରକାରୀ ରାସ୍ତାଉପରେ, ମନ୍ଦିରମାନ ନିର୍ମାଣ ହୋଇଯାଇଥାଏ । ଦିଲ୍ଲୀ ସହରରେ, ସଂଜୟଗାନ୍ଧିଙ୍କ ନିର୍ଦ୍ଦେଶରେ ଜବର ଦଖଲକାରୀଙ୍କ ଘର ଭଙ୍ଗା ଯାଇ, ରାସ୍ତା ଚଉଡ଼ା ହେଉଥାଏ । ଜରୁରୀ ପରିସ୍ଥିତି ପୂର୍ବରୁ ରାଣୀହାଟ ପୋଲ ପାଖରୁ ଷ୍ଟେସନ ବଜାର ପର୍ଯ୍ୟନ୍ତ,ସମସ୍ତ ସରକାରୀ ଯାଗା ଏବଂ ଜଗନ୍ନାଥଙ୍କ ଜାଗା ଉପରୁ ଜବରଦଖଲକାରୀଙ୍କୁ ହଟାଇ ଦିଆଗଲା । ସେହିପରି ରାଣୀହାଟ ଟ୍ରାଫିକ ଛକରୁ ଦୋଳମୁଣ୍ଡାଇ ଛକ ପର୍ଯ୍ୟନ୍ତ ସବୁ ଜବରଦଖଲକାରୀଙ୍କୁ ହଟାଇ ଦିଆଗଲା । ଏଥିପାଇଁ ବହୁତ ଦୋମହଲା କୋଠା ଠାରୁ ଆରମ୍ଭ କରି ଚାଳଘର ବୁଲଡ଼ୋଜର ଦ୍ୱାରା ଭାଙ୍ଗିଥିଲା । ଜନସାଧାରଣ ଏହି କାର୍ଯ୍ୟକୁ ଅନୁମୋଦନ କଲାବେଳେ, ଯେଉଁମାନେ କ୍ଷତିଗ୍ରସ୍ତ ହେଉଥିଲେ, ସେମାନେ ପ୍ରତିବାଦ କରୁଥିଲେ । ମଙ୍ଗଳାବାଗ ଥାନା ସାମ୍ନା ଛକ ଉପରେ, ମଙ୍ଗଳାବାଗ ଦେବୀ ଘରଥାଏ । ଦେବୀଘର ଯୋଗୁ, ସେଠି ରାସ୍ତା ବହୁତ ସଂକୀର୍ଣ୍ଣ ଥିଲା । ଗୋଟେ ଗାଡ଼ି ଯିବା କଷ୍ଟକର ହେଉଥିଲା । ଦଶହରା, କାଳୀପୂଜାରେ, ଆହୁରି ଅସୁବିଧା । ଶାସକ ତରଫରୁ ସେଇ ଦେବୀଘରକୁ ଉଠାଇବାକୁ ନିଷ୍ପତ୍ତି ନିଆଗଲା । ଦେବୀ ଘର ଉଠାଇଲା ବେଳେ, ନିଶ୍ଚିତ ଆଇନ୍ ଶୃଙ୍ଖଳା ପରିସ୍ଥିତି ହେବ ବୋଲି ଅନୁମାନ କରାଯାଉଥିଲା । ମୁଁ ନିଜେ ତିନିପ୍ଲାଟୁନ୍ ଫୋର୍ସ ନେଇ ଏ.ଡି.ଏମ୍. ମିଃ ଜୁହାଙ୍କ ସଙ୍ଗେ ରହିଲି । ପଛରେ ଏସ.ପି ଆପାରାଓ, କଲେକ୍ଟର ମିଃ ସତ୍ୟରଞ୍ଜନ ପାଲ ପହଞ୍ଚିଲେ । ନିଷ୍ପତ୍ତି ନିଆଗଲା, ମଙ୍ଗଳାବାଗ ଟ୍ରାଫିକ ପୋଷ୍ଟର ପୂର୍ବକୁ ଥିବା ସରକାରୀ ଯାଗାକୁ (ସେତେବେଳେ ପଟ୍ଟନାଏକ ଗ୍ୟାରେଜ) ପରିଷ୍କାର କରି ଦେବୀ ଘରକୁ ଦିଆଯିବ ଏବଂ ଦେବୀଙ୍କୁ ସେଠୁ ଉଠାଇବାକୁ ହେବ । ମଙ୍ଗଳାବାଗ୍ ପୂଜାକମିଟି ରାଜି ହେଉନଥିଲେ। ମଧ୍ୟ ପରେ ରାଜି ହେଲେ ଏବଂ ଦେବୀଘର ରାସ୍ତା ଉପରୁ ଉଠିଲା (ବର୍ତ୍ତମାନ ଯେଉଁଠି, ମଙ୍ଗଳାବାଗ୍ ଦେବୀ ଘର ଅଛି ସେଇଠିକୁ ଗଲା) । ବହୁଦିନ ଧରି, ସେ ସ୍ଥାନରେ କିଛି ଜବରଜଖଲ ନଥିଲା, ମାତ୍ର ପରବର୍ତ୍ତୀକାଳରେ ଶାସନକଳରେ ସୁବିଧା ନେଇ, ପୁଣି ସେଇ ଯାଗାରେ ଗଣେଶ ମନ୍ଦିର କରାଯାଇଛି । ଜରୁରୀକାଳୀନ ପରିସ୍ଥିତି ଆସିଗଲାପରେ, ଜବରଦଖଲ ହଟାଇବା କାର୍ଯ୍ୟ ବହୁ ଜୋରସୋରରେ ଚାଲିଥିଲା । ଏ

କାର୍ଯ୍ୟ ଚଉଧୁରୀ ବଜାର ପାର ହୋଇ,ନୟା ସଡ଼କ ଆଡ଼କୁ ଏଣେ ଦୋଳମୁଣ୍ଡାଇରୁ ଛତ୍ରବଜାର ଆଡ଼କୁ ଆରମ୍ଭହୋଇଥାଏ । ଜଣେ ପ୍ରତିପତ୍ତିଶୀଳ ଜଜ୍‌ଙ୍କ ଘର କ୍ଷତିଗ୍ରସ୍ତ ହେବାର ସମ୍ଭାବନାଥିବା ଯୋଗୁ, ହାଇକୋର୍ଟରୁ ଷ୍ଟେ ଆଦେଶ ଆସିଗଲା । ପରେ ପରେ କଟକସହର "ଜବର ଦଖଲ" ହଟାଇବା ଉପରେ ହାଇକୋର୍ଟ ଷ୍ଟେ ଦେଇଦେଲା । ଯଦି ଷ୍ଟେ ଦେଇନଥାନ୍ତା, ତାହେଲେ ନୟାସଡ଼କ, କଟକ ଷ୍ଟୁଡେଣ୍ଟ ଷ୍ଟୋର ଠାରୁ ହାଇକୋର୍ଟ ଛକ ପର୍ଯ୍ୟନ୍ତ, ବର୍ତ୍ତମାନ ଯେଉଁ ପ୍ରକାର ଅବସ୍ଥା ଅଛି ସେଥିରେ ଯଥେଷ୍ଟ ଉନ୍ନତି ହୋଇ ପାରିଥାନ୍ତା ।

ଜରୁରୀ କାଳୀନ ଅବସ୍ଥାରେ କଟକ ସହରରେ ବହୁ ବ୍ୟବସାୟ ପ୍ରତିଷ୍ଠାନମାନଙ୍କରେ ଆବଶ୍ୟକୀୟ ସାମଗ୍ରୀରେ କଳାବଜାର ପାଇଁ ପ୍ରାୟ ପ୍ରତ୍ୟେକ ଦିନ ବିଭିନ୍ନ ସ୍ଥାନରେ ଖାନ୍ତଲାସ ହେଉଥାଏ । ତାଛଡ଼ା ମଧ୍ୟ ଆୟକର ବିଭାଗ ଯେଉଁମାନେ ଲୁଚାଛପା କାରବାର କରୁଥାନ୍ତି, ସେ ପରି ବ୍ୟବସାୟୀଙ୍କ ଘର ଖାନ୍‌ତଲାସ କରୁଥାନ୍ତି । ତେଣୁ ବ୍ୟବସାୟୀ ମହଲରେ ଏକ ପ୍ରକାର ଆତଙ୍କ ଖେଳିଯାଇଥାଏ । ଜରୁରୀ କାଳୀନ ଅବସ୍ଥାରେ କାର୍ଯ୍ୟକ୍ଷେତ୍ରରେ, ଅଫିସ୍ କାମରେ ଅସମ୍ଭବ ଦକ୍ଷତା ଦେଖାଗଲା । ଅଫିସକୁ ଅଫିସର ଠାରୁ ପିଅନ ପର୍ଯ୍ୟନ୍ତ ସମସ୍ତେ ଠିକ୍ ଦଶଟା ବାଜିଲା ବେଳକୁ ହାଜର ହେଉଥିଲେ । ଟ୍ରେନ୍ ଠାରୁ ଆରମ୍ଭ କରି ବସ୍ ପର୍ଯ୍ୟନ୍ତ ସବୁ ଠିକ୍ ଟାଇମ୍‌ରେ ଚାଲିଲା । ଦୋକାନ, ବଜାରରେ ଜିନିଷ ପତ୍ର ଉଚିତ୍ ମୂଲ୍ୟରେ ବିକ୍ରିହେଲା । କୌଣସି ବ୍ୟବସାୟୀ କିମ୍ବା ଚାକିରିଆ ଯଦି ନିୟମବିରୁଦ୍ଧ କାର୍ଯ୍ୟ କରୁଥିଲା,ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ସଙ୍ଗେ ସଙ୍ଗେ ହେଉଥିଲା । ସାଧାରଣ ଲୋକ ଉପକୃତ ହେଲେ, ଯାହାକି ଅନ୍ୟବେଳେ ସ୍ୱପ୍ନଥିଲା ।

ଜରୁରୀକାଳୀନ ଅବସ୍ଥାରେ ଦୁଇଟି ଘଟଣା ମୋର ମନେପଡ଼େ । ଥରେ ଜଣେ ଜଣାଶୁଣା ମାରୁଓ୍ୱାଡ଼ି ବ୍ୟବସାୟୀଙ୍କ ବିରୁଦ୍ଧରେ ଖବର ଆସିଲାଯେ, ସେ ତାଙ୍କ ଖପୁରୀଆ ଷ୍ଟିଲ୍ ଆଲମିରା ତିଆରି କାରଖାନାରେ ଦୁଇଟି ଷ୍ଟପ୍ ମେସିନ୍ ତଳେ ଗାତ କରି ବହୁତ ସୁନା ପୋତି ରଖିଛନ୍ତି । ଖବରଟି ଟେଲିଫୋନ୍ ମାଧ୍ୟମରେ ଆସିପହଞ୍ଚିଲା । ଏ ଖବର ପାଇ ମୁଁ ଏସ୍.ପିଙ୍କୁ କହିଲି । ସେ ସଙ୍ଗେ ସଙ୍ଗେ କାରଖାନା ଘେରାଉ କରି ସତକଥା ବାହାର କରିବାକୁ କହିଲେ । ମୁଁ ଦଶ ବାରଜଣ କନେଷ୍ଟବଳ ଏବଂ ଦୁଇଜଣ ଅଫିସରଙ୍କୁ ଧରି ସେଇ କାରଖାନାରେ ସଙ୍ଗେ ସଙ୍ଗେ ପହଞ୍ଚିଗଲି । ସେତେବେଳେ କାରଖାନାରେ ମାଲିକ ନିଜେ ଉପସ୍ଥିତ ଥାନ୍ତି । ହଠାତ୍ ପୁଲିସ୍ ପହଞ୍ଚିବାରେ ସେ ବଡ଼ ବିବ୍ରତ ହୋଇ ପଡ଼ିଲେ । ଖବର ଅନୁସାରେ, ପ୍ରଥମେ ଗୋଟିଏ ଷ୍ଟପ୍‌ମେସିନ୍ ତଳ ଖୋଳାଗଲା, ପ୍ରାୟ ୪ ଫୁଟ ଖୋଳିଲୁ, ମାତ୍ର କିଛି ବାହାରିଲା ନାହିଁ । ମାଲିକ୍‌ଙ୍କୁ କୁହାଯାଇଥାଏ ଯେ ଚୋରାମାଲ୍ ସନ୍ଧାନରେ ଏପରି ରେଡ୍ କରାଯାଇଛି । ପ୍ରଥମେ ଯେତେବେଳେ କିଛି ନ ବାହାରିଲା, ମୁଁ ଦେଖିଲି ମାଲିକଙ୍କ ମୁହଁରେ ଟିକିଏ ହସ ଦେଖାଦେଲା ମାତ୍ର ଦେହରୁ ଝାଳ ଗମ୍ ଗମ୍ ହୋଇ ବାହାରୁଥାଏ । ତାଙ୍କ କାରଖାନାକୁ ପୁଲିସ୍ ପ୍ରବେଶ କରିଛି ବୋଲି ପାଖ ଆଖ କାରଖାନାର ମାଲିକ ଶ୍ରମିକମାନେ ଘେରି ଯାଇଥାନ୍ତି । କାରଖାନାରେ ଆଉ ଗୋଟିଏ ଷ୍ଟପ୍ ମେସିନ୍ ଥାଏ । ଦ୍ୱିତୀୟଟିକୁ ଖୋଳିବୁ ମାତ୍ର ୩ ଫୁଟ ଖୋଳିଲା ପରେ

ଗୋଟେ ଲୁହାବାକ୍ସ ଉପରେ ଶାବଳ ମୁନ ବାଜିଲା । ଏସ୍.ପି. ଆପାରାଓ, ଆସିଲେ ଏବଂ ସେଇ ବାକ୍ସଟିକୁ ବାହାର କରାଯାଇ ଖୋଲାଗଲା । ବାକ୍ସ ମଧରେ ପ୍ରାୟ ୪ କିଲୋଗ୍ରାମର ସୁନା ଅଳଙ୍କାର ଥାଏ । ମୁଣ୍ଡା ସୁନା ନଥାଏ । ଜିନିଷ ବାହାରିଲାପରେ, ମାଲିକଙ୍କୁ ପଚରାଗଲା । ସେତେବେଳକୁ ତାଙ୍କ ପାଟି ଖନିମାରି ଗଲାଣି, ଦେହରୁ ଗମ୍ ଗମ୍ ଝାଳ ବାହାରୁଥାଏ । ଅପାରାଓ ଏଣୁ ତେଣୁ ପଚାରୁ ଥା'ନ୍ତି । ମାଲିକ ସେ ସୁନା ଗହଣା ବିଷୟରେ କିଛି ଜାଣନ୍ତି ନାହିଁ ବୋଲି ପ୍ରଥମେ କହିଲେ । ମାତ୍ର ମୁଁ ଦେଖିଲି ତାଙ୍କର କିଛି ଭୁଲ ନାହିଁ ଭୟରେ ଏସବୁ କହୁଛନ୍ତି । ସେ ମାରଓ୍ୱାଡ଼ି ଭଦ୍ରଲୋକ ତାଙ୍କ ଘରେ ଗଣ୍ଡଗୋଳ ଯୋଗୁ ତାଙ୍କ ସ୍ତ୍ରୀଙ୍କର ସୁନା ଗହଣା, କାରଖାନାରେ ଲୁଚାଇ ରଖିଥିଲେ । ତାଙ୍କର କର୍ମଚାରୀ ମଧରୁ କିଏ ଟେଲିଫୋନ୍‌ରେ ଏଖବର ଦେଇଥାନ୍ତି । ମୁଁ ଦେଖିଲି, ବିଚରା ସବୁତକ ଅଳଙ୍କାର ହରାଇବାକୁ ଯାଉଛନ୍ତି । କାରଣ ସେତେବେଳେ ସୁନା ଗହଣା ରଖିବା ବେଆଇନ୍ ନଥିଲା ମୁଣ୍ଡା ସୁନା ରଖିବା ଥିଲା ବେଆଇନ୍ । ସେଇଠି ମୁଁ କହିଲି ''ଦେଖନ୍ତୁ ଡରିବାର କିଛି ନାହିଁ । ଯଦି ଏ ଗହଣା ଆପଣଙ୍କ ସ୍ତ୍ରୀଙ୍କର ହୋଇଥାଏ, ତାହେଲେ ଆପଣ କହୁନାହାନ୍ତି ?'' ଟିକିଏ, ଆଶ୍ୱସ୍ତ ହେଲାପରେ, ସେ କହିଥିଲେ ଯେ ''ଚୋର ଭୟରେ ମୁଁ ମୋର ସ୍ତ୍ରୀଙ୍କ ଗହଣା-ଏଠାରେ ଲୁଚାଇରଖିଥିଲି ଏବଂ ସେ ସମସ୍ତ ଗହଣା ଆମର ।'' ଯଦିଓ ସେ ସମସ୍ତ ଗହଣା ପୁଲିସ୍ ଜବତ କରିଥିଲା ତାହା ପରେ ତାଙ୍କୁ ଫେରାଇ ଦିଆଯାଇଥିଲା ।

ଜରୁରୀକାଳୀନ ପରିସ୍ଥିତି ସମୟରେ ନନ୍ଦିନୀ ଦେବୀଙ୍କର, ଇନ୍ଦିରା ଗାନ୍ଧିଙ୍କ ସହିତ ରାଜନୈତିକ ଦୃଷ୍ଟିକୋଣରୁ ମନାନ୍ତର ହେଲା । କୁହାଯାଏ, ସଞ୍ଜୟ ଗାନ୍ଧି ନନ୍ଦିନୀଙ୍କ କାର୍ଯ୍ୟକୁ ପସନ୍ଦ କଲେନି ଏବଂ ନନ୍ଦିନୀ ମଧ ତାଙ୍କୁ ସେପରି ଭାବେ ଖାତିର କରୁନଥିଲେ । ସେତେବେଳେ ସଞ୍ଜୟ ଗାନ୍ଧି ଯାହା କହୁଥିଲେ, କେହି ତାଙ୍କୁ ବିରୋଧ କରିବାର ଶକ୍ତି ନଥିଲା । ସେ ଯେଉଁଆଡ଼େ ଯାଉଥିଲେ, ତାଙ୍କୁ ପ୍ରଧାନମନ୍ତ୍ରୀଙ୍କ ପରି ମୁଖ୍ୟମନ୍ତ୍ରୀମାନେ ସମ୍ମାନ ପ୍ରଦର୍ଶନ କରୁଥିଲେ । ଜରୁରୀ କାଳୀନ ପରିସ୍ଥିତି ମଧରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀଦେବୀଙ୍କୁ ତାଙ୍କ ମୁଖ୍ୟମନ୍ତ୍ରୀପଦରୁ ହଟାଇ ଦିଆଗଲା ଏବଂ ତାଙ୍କ ସ୍ଥାନରେ ବିନାୟକ ଆଚାର୍ଯ୍ୟଙ୍କୁ ମୁଖ୍ୟମନ୍ତ୍ରୀ କରାଗଲା । ସଞ୍ଜୟ ଗାନ୍ଧି ଭାରତବର୍ଷରେ, ଇନ୍ଦିରାଙ୍କ ପୁଅ ହିସାବରେ, ଶାସନ କଳ ଠାରୁ ଆରମ୍ଭ କରି ରାଜନୀତି କ୍ଷେତ୍ରରେ ହସ୍ତକ୍ଷେପ କରୁଥିଲାବେଳେ, ଓଡ଼ିଶାରେ ନନ୍ଦିନୀ ଦେବୀଙ୍କ ପୁତ୍ର ମଧ ସବୁକ୍ଷେତ୍ରରେ ପ୍ରତିପତ୍ତି ଯାହିର କରିବାକୁ ଚେଷ୍ଟା କରିଥିଲେ । ସେତେବେଳେ କୁହାଗଲା, ଜୈନିକ ଏସ୍.ପି ମୁଖ୍ୟମନ୍ତ୍ରୀଙ୍କ ପୁତ୍ରକୁ ପୁଲିସ ରିଭଲଭର ଦେଇ ଟାର୍‌ଗେଟ୍ ପ୍ରାକ୍‌ଟିସ୍ କରାଉଥିଲେ ।

ଜରୁରୀ ପରିସ୍ଥିତିରେ କଟକ ସହରରେ କେତେଜଣ ଶାସକ ବିରୋଧି ରାଜନୈତିକ ନେତାଙ୍କୁ ଆରେଷ୍ଟ କରିବା, ବେଆଇନ୍‌ଭାବେ ରାସ୍ତା ଅବରୋଧକାରୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରି ସେମାନଙ୍କୁ ସର୍ବସାଧାରଣ ସ୍ଥାନମାନଙ୍କରୁ ଉଚ୍ଛେଦ କରିବା, ଅତ୍ୟାବଶକୀୟ ସାମଗ୍ରୀରେ କଳାବଜାର ରୋକିବା ପାଇଁ ବିଭିନ୍ନ ବ୍ୟବସାୟ ପ୍ରତିଷ୍ଠାନମାନଙ୍କରେ ଚଢ଼ାଉ କରି ସେମାନଙ୍କ ବିରୁଦ୍ଧରେ ମିସା ଆଇନ୍ ଲାଗୁ କରିବା ଛଡ଼ା, ପୁଲିସ୍ ତରଫରୁ ଅନ୍ୟ କୌଣସି

ପ୍ରକାର ଅଧିକା କାର୍ଯ୍ୟାନୁଷ୍ଠାନ କରାଯାଇନଥିଲା । କଟକ ସହରରେ କେତେକ ପତ୍ର ପତ୍ରିକା, ଯେଉଁମାନେ ଜରୁରୀ ପରିସ୍ଥିତି ବିରୁଦ୍ଧରେ ଲେଖୁଥିଲେ, ପ୍ରଚାର କରୁଥିଲେ ସେପରି ଗୋଟେ ଦୁଇଟି ଅନୁଷ୍ଠାନ ଉପରେ ମଧ ଚଢ଼ାଉ କରାଯାଇଥିଲା ।

**ଖୋର୍ଦ୍ଧାରେ ଏସ୍.ଡି.ପି.ଓ –** କଟକ ସିଟିରୁ ମୋର ବଦଳି ଆଦେଶ ଖୋର୍ଦ୍ଧା ଏସ.ଡି.ପି.ଓ. ଭାବେ ଆସିଲା । ଆଗରୁ ଖୋର୍ଦ୍ଧାରେ ଏଇ ପୋଷ୍ଟ ନଥିଲା ଯଦିଓ ଖୋର୍ଦ୍ଧା ସବ୍‌ଡ଼ିଭିଜନ୍ ୧୯୩୬ ମସିହାରୁ ଆରମ୍ଭ ହୋଇଥିଲା । ପ୍ରାରମ୍ଭରୁ ଜଣେ ଆଇ. ସି. ଏସ୍. କିମ୍ବା ଆଇ. ଏ. ଏସ୍ ସବ୍‌କଲେକ୍ଟର ଏଇ ରାଜସ୍ୱ ସବ୍.ଡିଭିଜନରେ ପୋଷ୍ଟିଂ ହେଉଥିଲେ । ବଦଳି ଆଦେଶ ପାଇଲାପରେ ମୁଁ କଟକରୁ ୨୦.୧୨.୭୫ରେ ଭାରମୁକ୍ତ ହୋଇ ଖୋର୍ଦ୍ଧାରେ ୨୪.୧୨.୭୫ରେ ଜଏନ୍ କଲି । ଖୋର୍ଦ୍ଧା ମୋ ପାଇଁ ନୂଆଯାଗା ନଥିଲା । ମୋର ଚାକିରୀ ଜୀବନ ଆରମ୍ଭ ଏଇ ଖୋର୍ଦ୍ଧାରେ । ପ୍ରଥମ କରି ଖୋର୍ଦ୍ଧା ମୁକୁନ୍ଦପ୍ରସାଦଠାରେ ଯେଉଁ କମରସିଆଲ ଚେକ୍‌ଗେଟ୍ ହେଲା, ସେଠାରେ ମୁଁ ୧୯୬୫ ମସିହା ଅଗଷ୍ଟମାସରେ କମରସିଆଲ ଟାକ୍ସ ଇନ୍‌ସ୍‌ପେକ୍ଟର ଭାବେ କାର୍ଯ୍ୟ ଆରମ୍ଭ କରିଥିଲି । ଏଇଠି ଥିଲାବେଳେ ଓ.ଏ.ଏସ୍ ପାଇ, କେଉଁଝରେ ଯାଇଥିଲି । ଖୋର୍ଦ୍ଧାରେ କମରସିଆଲ ଟାକ୍ସରେ ଥିଲାବେଳେ ମୋର ବିଭାଘର ହୋଇଥିଲା । ତେଣୁ ଖୋର୍ଦ୍ଧାକୁ ବଦଳି ହୋଇ ଆସିବାରେ ମୋର କିଛି ଅସୁବିଧା ନଥିଲା । ମାତ୍ର ନୂଆ ହୋଇ ଏସ୍.ଡି.ପି.ଓ ପୋଷ୍ଟ ହୋଇଥିବା ହେତୁ, ଏଥିପାଇଁ ଅଫିସ୍ ଘର ନିଆହୋଇ ନଥାଏ କିମ୍ବା ରହିବା ପାଇଁ ଘର ନ ଥାଏ ।

ମୁଁ ଜଏନ୍ କଲାପରେ ପ୍ରଥମେ ମୋର ଅଫିସ୍ ଖୋର୍ଦ୍ଧାଥାନା ପରିସର ମଧରେ ତମ୍ବୁ ପକାଇ ଆରମ୍ଭ କଲି । ତମ୍ବୁରେ ଅଫିସ୍ ହେଲାବେଳେ, ରହିବା ପାଇଁ ଯାଗା ନଥିବା ଯୋଗୁ, ମୁଁ ବରୁଣେଇ ପାହାଡ଼ରେ ନୂଆ ହୋଇ ତିଆରି ହୋଇଥିବା ରେଭେନ୍ୟୁ ବଙ୍ଗଳାରେ ରାତିରେ ସୁଏ । ପାଖରେ କେବଳ ଜଣେ ୱାଚ୍‌ମ୍ୟାନ୍ ରହୁଥିଲା । ସେତେବେଳେ ବରୁଣେଇ ପାହାଡ଼ରେ ଚିତାବାଘ, ହରିଣ କୁଟ୍‌ରା, ବାରହା ଥା'ନ୍ତି । ମୁଁ ରହୁଥିବା ବଙ୍ଗଳା ପାଖକୁ ପାଣି ପିଇବାକୁ ପ୍ରତ୍ୟେକ ରାତିରେ ଚିତାବାଘ ଆସୁଥିଲା । ଦିଥର ମୁଁ ତା ହାତୁଡ଼େ ପଡ଼ିଥିଲି । ଏବେ ବରୁଣେଇ ପାହାଡ଼ରେ ଠେକୁଆ ଛୁଆଟେ ବି ଦେଖିବାକୁ ମିଳିବେନି । ପ୍ରାୟ ମାସକ ପରେ, ବରୁଣେଇ ସାହିରେ ଗୋଟେ ଘର ଭଡ଼ା ନେଇ ସେଇଟିକୁ ଅଫିସ୍ ଉଠାଇନେଲି । ଦୁଇଟି ରୁମ୍‌ରେ ଅଫିସ୍ ହୁଏ ଆଉ ଦୁଇଟି ରୁମ୍ ମୋ ରହିବା ପାଇଁ ନିଆଯାଇଥାଏ । ମୁଁ ଖୋର୍ଦ୍ଧାରେ ଜଏନ୍ କଲାପରେ, ଖୋର୍ଦ୍ଧାସହରର ବାସିନ୍ଦାମାନେ ବିଶେଷଭାବେ ଖୁସିଥାନ୍ତି । କଟକ ସିଟିରେ ଥିଲାବେଳେ ପ୍ରତ୍ୟେକ ଦିନ ଖବର କାଗଜରୁ ଧରପଗଡ଼ ବିଷୟରେ ସେମାନେ ପଢ଼ିଥିଲେ ଏବଂ ଆଗରୁ ମୁଁ ଏଠି ଥିଲାବେଳେ ମୁକୁନ୍ଦ ପ୍ରସାଦ ଗାଁରେ ଡ୍ରାମା ଇତ୍ୟାଦି କରିବାରେ ସମସ୍ତେ ଜାଣିଥାନ୍ତି । ତେଣୁ ଖୋର୍ଦ୍ଧା ସହରରେ ଯେକୌଣସି ଘଟଣା ଘଟିଲେ ମୋ ପାଖରେ ଖବର ପହଞ୍ଚିଯାଉଥିଲା ।

ଏସ୍.ଡି.ପି.ଓ ଥିଲାବେଳେ, ଜରୁରୀକାଳୀନ ଅବସ୍ଥା ଚାଲୁଥାଏ । ସାରାଦେଶରେ ଏକପ୍ରକାର ଶୃଙ୍ଖଳା ଫେରିଆସିଥିଲା । ମାତ୍ର ସଞ୍ଜୟ ଗାନ୍ଧିଙ୍କ କେତେକ କାର୍ଯ୍ୟକ୍ରମକୁ

ଜନସାଧାରଣ ବିରୋଧ କରୁଥିଲେ ମଧ୍ୟ କିଛି କହିପାରୁ ନଥାନ୍ତି । ଇନ୍ଦିରାଗାନ୍ଧିଙ୍କ ଏକୋଇଶ ଦଫା କାର୍ଯ୍ୟକ୍ରମ ସାରାଦେଶରେ ଲାଗୁଥିଲାବେଳେ ସଞ୍ଜୟ ଗାନ୍ଧିଙ୍କ ପାଞ୍ଚଦଫା କାର୍ଯ୍ୟକ୍ରମ ମଧ୍ୟରେ ଜନ୍ମ ନିୟନ୍ତ୍ରଣ, ବୃକ୍ଷରୋପଣ, ନିରକ୍ଷରତା ଦୂରିକରଣ, ଯୌତୁକ ନିରୋଧ ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ସେତେବେଳେ ପ୍ରଚାର କରାଗଲାଯେ, ସଞ୍ଜୟ ଗାନ୍ଧିଙ୍କ ନିର୍ଦ୍ଦେଶରେ, ଏପରିକି ଅବିବାହିତା ଯୁବକମାନଙ୍କୁ ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କରିବାକୁ ବାଧ୍ୟ କରାଯାଉଥିଲା । ଏହା କେତେଦୂର ସତ୍ୟ, ମାତ୍ର ବିରୋଧି ଦଳଙ୍କଠାରୁ ଆରମ୍ଭ କରି ଜନ ସାଧାରଣ ମଧ୍ୟ ଏକଥା କହୁଥିଲେ । ସଞ୍ଜୟଗାନ୍ଧି ଯାହା କରୁଥିଲେ, ଇନ୍ଦିରା ତାଙ୍କୁ ପୂର୍ଣ୍ଣମାତ୍ରାରେ ସମର୍ଥନ କରୁଥିଲେ । ତେଣୁ ସଞ୍ଜୟ ଦେଶରେ ଏକ ଅଣଆନୁଷ୍ଠାନିକ ଶକ୍ତି ରୂପେ ଦେଖା ଦେଇଥିଲେ । ନନ୍ଦିନୀ ଦେବୀ ୧୯୭୧ ମସିହା ଆଗରୁ ଇନ୍ଦିରାଙ୍କର ଅତ୍ୟନ୍ତ ନିକଟରେ ଥିଲେ ମଧ୍ୟ ଜରୁରୀ ଅବସ୍ଥା ପରେ ପରେ, ସଞ୍ଜୟଗାନ୍ଧିଙ୍କ ସହିତ ତାଙ୍କର ମତାନ୍ତର ଘଟିଥିଲା ଏବଂ ତାର ପରିଣାମ ସ୍ୱରୂପ ତାଙ୍କୁ ସେଇ ଜରୁରୀ ଅବସ୍ଥାରେ ମୁଖ୍ୟମନ୍ତ୍ରୀ ପଦ ହରାଇବାକୁ ପଡ଼ିଥିଲା ।

ନନ୍ଦିନୀ ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ନେଲାପରେ, ୧୯୭୭ ମସିହା ଜାନୁୟାରୀ ମାସରେ ଇନ୍ଦିରାଗାନ୍ଧି ଦେଶରୁ ଜରୁରୀ ଅବସ୍ଥା ଉଠାଇ ଦେଇ ମାର୍ଚ୍ଚ ମାସରେ ଲୋକସଭା ନିର୍ବାଚନ କରିବା ପାଇଁ ଠିକ୍ କଲେ । ଜାନୁଆରୀ ମାସ ୩ ତାରିଖରେ ସେ ଓଡ଼ିଶା ଗସ୍ତରେ ଆସିଥିଲେ ଏବଂ ଖୋର୍ଦ୍ଧାରେ ମିଟିଙ୍ଗ ପରେ ଖୋର୍ଦ୍ଧାରୁ କୌଶଲ୍ୟା ଗ୍ୟାଙ୍ଗ୍ ଆସି ସେଠାରେ ''ଇନ୍‌ଲ୍ୟାଣ୍ଡ ଫିସେରୀ''ର ଭିତ୍ତିପ୍ରସ୍ତର ସ୍ଥାପନ କରି ଭୁବନେଶ୍ୱର ଫେରିଲେ । ମୋତେ ଖୋର୍ଦ୍ଧାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରାସ୍ତା ପେଟ୍ରୋଲିଂ ଡିଉଟି ଦିଆଯାଇଥାଏ । ଇନ୍ଦିରାଗାନ୍ଧି ଯିବାପରେ ଜାନୁଆରୀ ଶେଷ ବେଳକୁ (୨୯/୧) ସଞ୍ଜୟ ଗାନ୍ଧି ଓଡ଼ିଶା ଭ୍ରମଣରେ ଆସି, ଭୁବନେଶ୍ୱରରୁ ଆସ୍କାକୁ କାରରେ ଯାଉଥାନ୍ତି । ମୋତେ ତାଙ୍କୁ ପାଇଲଟିଂ କରିବାକୁ କୁହାଯାଇଥାଏ ଏବଂ ପାଇଲଟିଂ ପାଇଁ ଗୋଟେ ଫିୟାଟ୍ ଗାଡ଼ି ଦେଇଥିଲେ । ଭୁବନେଶ୍ୱରଠାରୁ ବାଲୁଗାଁ ପର୍ଯ୍ୟନ୍ତ ରାସ୍ତା କଡ଼ରେ ହଜାର ହଜାର ଲୋକ ସଞ୍ଜୟଗାନ୍ଧିଙ୍କୁ ଦେଖିବା ପାଇଁ ଲାଇନ୍ ଦେଇ ଠିଆହୋଇଥାନ୍ତି । ବହୁ ସ୍ଥାନରେ ତୋରଣମାନ ନିର୍ମାଣ କରାଯାଇଥାଏ । ଜରୁରୀ ପରିସ୍ଥିତି ସମୟରେ ସଞ୍ଜୟଙ୍କ ନାଁ ପ୍ରଚାର ଏବଂ ପ୍ରସାର ଲାଭ କରିଥିଲା, ତେଣୁ ତାଙ୍କୁ ଦେଖିବା ପାଇଁ ସ୍ୱତଃ ପ୍ରବୃତ୍ତ ହୋଇ ଛୁଆଠାରୁ ବୁଢ଼ାପର୍ଯ୍ୟନ୍ତ ରାସ୍ତାକଡ଼ରେ ଠିଆହୋଇଥାନ୍ତି । ତାଙ୍କ ସାଙ୍ଗରେ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ଯାଉଥାନ୍ତି । ସଞ୍ଜୟ ଟିକିଏ ଫାଙ୍କାରାସ୍ତା ପାଇଲେ ଗାଡ଼ି ଡ୍ରାଇଭରଙ୍କୁ ଶହେ କିଲୋମିଟର ଗତିରେ ଗାଡ଼ି ଚଳେଇବାକୁ କହୁଥାନ୍ତି । ଭୁବନେଶ୍ୱରରୁ ଖୋର୍ଦ୍ଧା ମଧ୍ୟରେ ସେ ପାଇଲଟ ଗାଡ଼ିକୁ ଦୁଇଥର ଓଭରଟେକ୍ କରିନେଲେ । ଫିଆଟ୍ ଗାଡ଼ି ସତୁରୀ, ଅଶୀରେ ଗଲାବେଳେ ଥରି ଉଠୁଥାଏ । ରାସ୍ତା ବି ସେତେବେଳେ ଏତେ ଭଲ ନଥିଲା । ଖୋର୍ଦ୍ଧା ପାଖେ ତଙ୍କୁ ସମ୍ବର୍ଦ୍ଧନା ଦେଲାବେଳେ ମୁଁ ପୁଣି ଆଗକୁ ଚାଲିଲି ଏବଂ ପ୍ରାୟ ସାତ ଆଠ କିଲୋମିଟର ଆଗକୁ ଗଲାପରେ ମଧ୍ୟ ତାଙ୍କ ଗାଡ଼ି ପାଇଲଟ ଗାଡ଼ିକୁ ଓଭରଟେକ୍ କରିଗଲା । ବହୁତ କଷ୍ଟରେ ଆସ୍କାରେ ପହଞ୍ଚିଲୁ । ସେଠି ରାମଚନ୍ଦ୍ର ରଥ କଂଗ୍ରେସ ଲୋକସଭା ସାଂସଦ

ଥା'ନ୍ତି । ସାଧାରଣ ସଭାରେ ସଞ୍ଜୟ ମାତ୍ର ପାଞ୍ଚମିନିଟ୍ କହିଥିଲେ । ଆସ୍କାରୁ ଗୋପାଳପୁର ଫେରି ସେଠି ରାତ୍ରି କଟାଇଲା ପରେ, ପରଦିନ ରଙ୍ଗେଇଲୁଣ୍ଡାରୁ ସଞ୍ଜୟ ବିଦାୟ ନେଇଥିଲେ । ୧୯୭୭ ମସିହା ମାର୍ଚ୍ଚ ଷୋହଳ ତାରିଖରେ ଲୋକସଭା ନିର୍ବାଚନ ହେଲା । ଏଇ ନିର୍ବାଚନରେ କଂଗ୍ରେସର ପରାଜୟ ପରେ ପୁଣି ଜୁନ୍ ମାସରେ ଓଡ଼ିଶାରେ ବିଧାନ ସଭାପାଇଁ ନିର୍ବାଚନ ହେଲା । ଏଇ ନିର୍ବାଚନରେ କଂଗ୍ରେସ ଓଡ଼ିଶାରୁ ପରାସ୍ତ ହେଲା ଏବଂ ଜନତାଦଳ ବହୁ ସଂଖ୍ୟାରେ ନିର୍ବାଚିତ ହୋଇ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଢ଼ିଲେ ଏବଂ ବହୁ ବର୍ଷପରେ (୧୯୫୨ ମସିହା) ଓଡ଼ିଶାରୁ ଦୁଇ ଜଣ କେନ୍ଦ୍ରମନ୍ତ୍ରୀମଣ୍ଡଳରେ କ୍ୟାବିନେଟ୍ ମନ୍ତ୍ରୀଭାବେ ଯୋଗ ଦେଲେ । (ବିଜୁ ପଟ୍ଟନାୟକ ଏବଂ ରବିରାୟ) । ନନ୍ଦିନୀ ଦେବୀ, ମୁଖ୍ୟମନ୍ତ୍ରୀ ପଦରୁ ଗଲାପରେ ନରସିଂହ ସ୍ୱାଇଁଙ୍କୁ ଆଇ.ଜି ପଦରୁ ହଟାଇ ଦିଆଯାଇଥିଲା । ସେ ମେ ୧୯୭୭ ମସିହାରେ ଓଡ଼ିଶାରୁ ବିଦାୟ ନେଇ, କେନ୍ଦ୍ରକୁ ଗଲେ ଏବଂ ତାଙ୍କ ସ୍ଥାନରେ କେନ୍ଦ୍ରରୁ ଫେରି ଶ୍ରୀ ବି.କେ. ରାଏ ଆଇ. ଜି ହେଲେ । ସେ ଆଇ.ଜି. ହେଲାପରେ, ନରସିଂହ ସ୍ୱାଇଁଙ୍କ ବିରୋଧିଦଳ ପୁଲିସରେ ସକ୍ରୀୟ ହୋଇ ଉଠିଲେ । ଜରୁରୀ ଅବସ୍ଥାବେଳେ, ୧୯୭୫ ମସିହାରେ ଓଡ଼ିଶା ପୁଲିସ୍ ବରିଷ୍ଠ ଆଇ.ପି.ଏସ୍ ଅଫିସର ସାମଲଙ୍କୁ ସମ୍ବିଧାନର ୩୧୧ ଧାରା ଅନୁସାରେ ଦେଶଦ୍ରୋହି କାର୍ଯ୍ୟଯୋଗୁ ଚାକିରୀରୁ ବହିଷ୍କାର କରାଯାଇ ଥିଲା । ଏଇ ବହିଷ୍କାର ଆଦେଶ ପ୍ରଥମେ ମୋତେ ତାଙ୍କ ଉପରେ ଯାହିର କରିବାକୁ ଆଦେଶ ହୋଇଥିଲା ମାତ୍ର ଜଣେ ସିନିୟର ଅଫିସର ଏହାକୁ ଯାହିରି କଲେ ଭଲ ହେବ ବୋଲି ମୁଁ ଏସ.ପି କୁ କହିଥିଲି । ସାମଲ ସାହେବ ଏକଥା ଜାଣିବାକୁ ପାଇଥିଲେ ମଧ କେଉଁ ଦିନ ତାଙ୍କ ଉପରେ ଏହା ଯାହିର ହେବ ଜାଣିନଥିଲେ । ସେତେବେଳେ ସେ ବାରିଷ୍ଟର ରଣଜିତ୍ ମହାନ୍ତିଙ୍କ ଭଉଣୀ ଆଡ୍‌ଭୋକେଟ୍ ଦୀପ୍ତି ମହାନ୍ତି ଏବଂ ଗୋକୁଳୀ ମହାନ୍ତିଙ୍କ ଘରକୁ ଆସୁଥାନ୍ତି ଏବଂ ତାଙ୍କ ପରାମର୍ଶ ନେଇଥାନ୍ତି । ଦୀପ୍ତି ମହାନ୍ତିଙ୍କ ଘର ସହିତ ମୋର ସମ୍ପର୍କ ଭଲଥିଲା । ମୁଁ ମଧ ପ୍ରାୟ ସେଠାକୁ ଯାଉଥିଲି । ଗୋକୁଳୀ ଭାଇ ଜଣେ ସାହିତ୍ୟିକ ଏବଂ ସାହିତ୍ୟ ପ୍ରେମୀ । ତେଣୁ ତାଙ୍କ ଘରେ ସେଇପରି ଲୋକମାନଙ୍କର ଭିଡ଼ ହୁଏ । ସେଠାକୁ ସାମଲ୍ ସାହେବ ଆସୁଥିବା ଖବର ମୁଁ ଏସ୍. ପିଙ୍କୁ କହିଥିଲି ଏବଂ ପୁଲିସ୍‌ରୁ ବହିଷ୍କାର ଆଦେଶ ତାଙ୍କୁ ଏସ୍.ପି.ଦିପ୍ତୀ ମହାନ୍ତିଙ୍କ ଘରେ ଦେଇଥିଲେ । ସେଦିନ କିଛି ପ୍ରତିକ୍ରିୟା ପ୍ରକାଶ ନକରି ମିଃ ସାମଲ ତାକୁ ଗ୍ରହଣ କରିଥିଲେ ଏବଂ କହିଥିଲେ ଯେ ସେ ଏକଥା ବହୁଆଗରୁ ଜାଣିଥିଲେ ।

ଜୁନ୍‌ମାସରେ ନୂଆ ସରକାର ଗଠନ ହେଲା ପରେ, ପୁଲିସ୍ ବିଭାଗରେ ବହୁ ଅଦଳ ବଦଳ ହେଲା । ନନ୍ଦିନୀ ବିରୋଧି ଦଳ ମଧ ରାଜନୈତିକ କ୍ଷେତ୍ରରେ ସକ୍ରିୟ ହୋଇଉଠିଲେ । ବି.କେ. ରାଏ ଆସିଲା ପରେ ପୁଲିସ୍‌ର ଗୋଟିଏ ଗୋଷ୍ଠୀ ତାଙ୍କ ନିକଟତମ ହେବାକୁ ଚାହିଁଥିଲେ ମଧ ସେ କୌଣସି ଦଳଭୁକ୍ତ ନଥିଲେ ।

ଜରୁରୀଅବସ୍ଥା ପରେ ଜନତା ସରକାର ଦାୟିତ୍ୱ ଗ୍ରହଣ କରିବାର ଅଳ୍ପଦିନପରେ ଜଗନ୍ନାଥଙ୍କ ନବକଳେବର ୧୯୭୭ ମସିହା ଜୁଲାଇ ମାସ ୧୮ ତାରିଖରେ ପଡ଼ୁଥାଏ । ଜୁନ୍

୧୭ରେ ନବ ଯୌବନ ଦର୍ଶନ । ସେତେବେଳକୁ ପୁରୀ ଏସ୍.ପି. ପଦରୁ ଦିଲିପ ମହାପାତ୍ର ବଦଳି ହୋଇ ଏସ୍.କେ. ଚାଟାର୍ଜି ଦାୟିତ୍ୱ ଗ୍ରହଣ କରିଥାନ୍ତି । ବି.ବି. ପରିଡ଼ା ପୁରୀର ଜିଲ୍ଲାପାଳ । ନବକଳେବର ପାଇଁ ବ୍ୟାପକ ପୁଲିସ୍ ବନ୍ଦୋବସ୍ତ କରାହୋଇଥାଏ । ନୂଆ ସରକାର ମଧ୍ୟ ଦାୟିତ୍ୱ ନେଲାପରେ ନବକଳେବର କିପରି ସୁରୁଖୁରୁରେ ଶେଷ ହେବ, ସେଥିପାଇଁ ତତ୍‌ପରଥା'ନ୍ତି । ବିଶ୍ୱଭୂଷଣ ହରିଚନ୍ଦନ ଜନତା ଦଳରୁ ପୁରୀ ଜିଲ୍ଲାର ମନ୍ତ୍ରୀ । ସେ ମଧ୍ୟ ପୁରୀ ଜିଲ୍ଲା ପ୍ରଶାସନ ସଙ୍ଗେ ସମ୍ପର୍କ ରକ୍ଷାକରୁଥାନ୍ତି । ଏସବୁ ସତ୍ତ୍ୱେ ମନ୍ଦିରର ସେବକମାନଙ୍କ ମଧ୍ୟରେ କେତେକ କାରଣରୁ ଉତ୍ତମ ସମନ୍ୱୟ ରକ୍ଷା ହୋଇପାରି ନ ଥାଏ । ତେଣୁ ନବଯୌବନ ଦର୍ଶନ ଦିନ ଠାକୁରଙ୍କ ଦର୍ଶନରେ ଅହେତୁକ ବିଳମ୍ବ ଘଟିଥିଲା ଏବଂ ବହୁ ଯାତ୍ରୀ, ଦର୍ଶନ ନ ପାଇ ଫେରିଯାଇଥିଲେ । ଏଥିରେ କେତେକ ଦଇତାପତି ସେବକ ଗୋଷ୍ଠୀ ଉତ୍‌କ୍ଷିପ୍ତ ହୋଇଥାନ୍ତି ।

ନବକଳେବର ପାଇଁ ମୋତେ ଯାତାୟାତ ନିୟନ୍ତ୍ରଣର ଦାୟିତ୍ୱ ଦିଆ ହୋଇଥାଏ । ସୁଚିତ ଦାସ, ଅତିରିକ୍ତ ଏସ୍.ପି ଏବଂ ମୁଁ ଟ୍ରାଫିକ୍ କଣ୍ଟ୍ରୋଲର ଦାୟିତ୍ୱରେ ଥାଉ । ଆମକୁ ସାହାଯ୍ୟ କରିବା ପାଇଁ ଦୁଇଜଣ ପ୍ରୋବେସନାରୀ ଡି.ଏସ୍.ପିଙ୍କୁ ଦେଇଥାନ୍ତି । ତାହାଛଡ଼ା ଇନ୍‌ସପେକ୍ଟର ଏବଂ ଟ୍ରାଫିକ୍ ପୁଲିସ୍ ଦିଆଯାଇଥାଏ । ଚାରିଦିନ ଆଗରୁ ମୁଁ ପୁରୀରେ ଆସି କ୍ୟାମ୍ପ କରି ଗୋଟିଏ ପୁରୁଣା ଭଙ୍ଗାଘରେ ରହୁଥାଏ । ସେଇ ଘରେ ସୁଚିତବାବୁ ବି ରହିଥାନ୍ତି । ତିନିଦିନ ଆଗରୁ, ଓଡ଼ିଶା ବାହାରୁ ବସ୍‌ରେ ବହୁ ଯାତ୍ରୀ ଆସିବା ଆରମ୍ଭ କଲେ । ସେଇ ବର୍ଷ ନୂଆ ହୋଇ ଅଠର ନଳା ଠାରୁ ଗୋଟେ ରାସ୍ତା ତାଳବଣିଆ ପର୍ଯ୍ୟନ୍ତ ତିଆରି ହୋଇଥାଏ । ସେଇବାଟ ଦେଇ ବାହାର ରାଜ୍ୟର ବସ ସବୁ ତାଳବଣିଆ ପାଖେ ରହୁଥାଏ । ଯାତ୍ରୀମାନେ ମଧ୍ୟ ବସ୍ ପାଖରେ ରହୁଥାନ୍ତି । ସେମାନଙ୍କ ରହିବା ପାଇଁ ସାମାନ୍ୟ ଲାଇଟ୍ ଏବଂ ପାଣିର ବ୍ୟବସ୍ଥା ହୋଇଥାଏ । ଖୋଲା ବାଲିବନ୍ତ ଥିବା ଯୋଗୁ ରହିବାରେ କିଛି ଅସୁବିଧା ନଥାଏ । ଛୋଟ ଗାଡ଼ିର ପାର୍କିଂ କଲେଜ ପାଖ ରାସ୍ତା ପର୍ଯ୍ୟନ୍ତ କରାଯାଇଥାଏ । ସେ ବର୍ଷ ନବକଳେବର ପାଇଁ ପ୍ରାୟ ଆଠ, ଦଶଲକ୍ଷ ଭକ୍ତ ସାରା ଦେଶରୁ ଆସିଥାନ୍ତି । ସବୁଦିନ ସକାଳୁ ରାତି ୩ଟା ପର୍ଯ୍ୟନ୍ତ ଭୁବନେଶ୍ୱର ପୁରୀ ରାସ୍ତାରେ ବୁଲି ଦୁର୍ଘଟଣା, ରାସ୍ତା ଅବରୋଧ ଯେପରି ନହୁଏ, ତାର ତଦାରଖ କରୁଥାଏ । ମୋର ଦାୟିତ୍ୱ ସହର ବାହାରର ଗାଡ଼ି ଚାଳନାକୁ ନିୟନ୍ତ୍ରଣ କରିବା । କଠିନ ପରିଶ୍ରମ ଯୋଗୁ, ସେତେବେଳର ରାସ୍ତାର ଅବସ୍ଥା ଯାହାଥିଲା, ତାହାସତ୍ତ୍ୱେ ମଧ୍ୟ କୌଣସି ଦୁର୍ଘଟଣା ଶ୍ରୀଗୁଣ୍ଡିଚା ଦିନ ପର୍ଯ୍ୟନ୍ତ ହୋଇନଥିଲା କିମ୍ବା ଯାତ୍ରୀଙ୍କ ଯିବା ଆସିବାରେ ଅସୁବିଧା ସୃଷ୍ଟି ହୋଇନଥିଲା ।

ଗୁଣ୍ଡିଚା ଦିନ ସକାଳୁ ଲକ୍ଷ ଲକ୍ଷ ଲୋକ ରଥ ଦେଖିବା ପାଇଁ ବଡ଼ ଦାଣ୍ଡରେ ଭିଡ଼କରିଥାନ୍ତି । ରାସ୍ତାର ଦୁଇପଟ ଘରର ଛାତ ଉପରେ ଶୋରିଷ ପକାଇବାକୁ ସ୍ଥାନ ନ ଥାଏ । ସେଇପରି ବଡ଼ଦାଣ୍ଡରେ ହସପିଟାଲ ଛକ ପର୍ଯ୍ୟନ୍ତ ଜନସମାଗମ, ଥାଳି ମାରି ଦେଲେ ଥାଳି ମଣିଷ ମୁଣ୍ଡ ଉପରେ ଚାଲିଯିବ । ଏଣେ ମନ୍ଦିର ଭିତରୁ ଠାକୁର ପହଣ୍ଡିରେ ଆସୁ ନ ଥାନ୍ତି । ଯେଉଁ ସମୟ ନିର୍ଘଣ୍ଟ ଦିଆ ଯାଇଥିଲା, ସେ ସମୟ ଗଡ଼ିଗଲା, ପହଣ୍ଡି ହେଉ ନ ଥାଏ । ଦଇତାପତି ସେବକ, ପୂଜା ପଣ୍ଡା ନିୟୋଗ ଏମାନଙ୍କ ମଧ୍ୟରେ କଳି ଅଡୁଆ ତୁଟୁ ନଥିବା

ଯୋଗୁ, ପହଣ୍ଡି ହୋଇପାରୁ ନଥାଏ । ବଡ଼ ଦାଣ୍ଡରେ ଲକ୍ଷ ଲକ୍ଷ ଭକ୍ତ ଠେଲା, ପେଲାରେ ବେହୋସ ହେଉଥାନ୍ତି । ପୁଲିସ୍ ସେମାନଙ୍କୁ ଶୃଙ୍ଖଳିତ କରି ରଖିବାରେ କ୍ଲାନ୍ତ ହୋଇ ପଡୁଥାନ୍ତି । ପ୍ରଶାସନର ସମସ୍ତ ଚେଷ୍ଟା ସତ୍ତ୍ୱେ ଗୁଣ୍ଡିଚା ଦିନ ପହଣ୍ଡି ଶେଷ ହେଲା ବେଳକୁ ସମୟ ପ୍ରାୟ ୫ଟା ଉପରେ । ତେଣୁ ସେ ଦିନ ରଥଟଣା ହୋଇ ପାରିଲା ନାହିଁ । ଖାଲି ପରମ୍ପରା ରକ୍ଷା କରିବାକୁ ବଡ଼ ଠାକୁରଙ୍କ ରଥକୁ ଚାରିଫୁଟ ପାଞ୍ଚ ଫୁଟ ଟାଣି ରଖି ଦିଆଗଲା । ଲକ୍ଷ ଲକ୍ଷ ଦର୍ଶକ ନିରାଶ ହୋଇ ଫେରିଲେ । ସହର ଭିତରେ ହଜାର ହଜାର ଛୋଟ ବଡ଼ ଗାଡ଼ି ରହି ଯାତାୟତରେ ଅସୁବିଧା ସୃଷ୍ଟି କରୁଥାଏ । ଶ୍ରୀଗୁଣ୍ଡିଚା ପରଦିନ ସକାଳୁ ରଥଟଣା ଆରମ୍ଭ ହେଲା । ହଜାର ହଜାର ଭକ୍ତ ବଡ଼ଦାଣ୍ଡରେ ରଥଟାଣିବା ପାଇଁ ଅପେକ୍ଷା କରିଥାନ୍ତି । ତେଣୁ ସମସ୍ତେ ରଥଟିକିଏ ଟାଣିଦେଇ ଫେରି ଯିବାପାଇଁ ବ୍ୟସ୍ତ । ବଡ଼ ଠାକୁରଙ୍କ ରଥ ଟଣା ଆରମ୍ଭ ହେଲା । ମାତ୍ର ପୁଲିସର ରଥ ଦଉଡ଼ି କଂଟ୍ରୋଲରେ ଅଭାବ, ଅପେକ୍ଷମାଣ ଭକ୍ତମାନଙ୍କର ବ୍ୟସ୍ତତା ଯୋଗୁଁ, ବଡ଼ ଠାକୁରଙ୍କ ରଥ ମାତ୍ର ତିନିଶହ ମିଟର ପରେ ଡାହାଣ ପଟ ଛାଡ଼ି, ବାମପଟ ରାସ୍ତାକଡ଼ର ଗୋଟେ ବିଜୁଳୀବତୀ ଖୁଣ୍ଟରେ ଲାଗିଲା । କ'ଣ କରାଯିବ ? ଖୁଣ୍ଟ ନଉଠୁଲେ, ରଥ ଟଣା ହୋଇପାରିବ ନାହିଁ । ରଥଟଣା ବନ୍ଦ ହେଲା । ଅପେକ୍ଷାରତ ଲକ୍ଷ ଲକ୍ଷ ଭକ୍ତ ବଡ଼ ନିରୁତ୍ସାହ, ବ୍ୟତିବ୍ୟସ୍ତ ହୋଇ ଉଠିଲେ । ମୁଁ ରାସ୍ତାରୁ ଫେରି ବଡ଼ ଦାଣ୍ଡକୁ ଆସିଲି । ଖୁଣ୍ଟ କିପରି ଉଠିବ ? ସେତେବେଳେ ମିଃ ରାଓ, ବିଜୁଳୀ ବିଭାଗର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର । ଉପସ୍ଥିତ ଜନତାରୁ କିଏ କହିଲା, ଜଲ୍‌ଦି ଆରିରେ ଖୁଣ୍ଟମୂଳକୁ କାଟି ଦେଲେ ହେବ ମାତ୍ର ରାଓ କହିଲେ ଖୋଳି କରି ଖୁଣ୍ଟ ଉଠାହେବ । ତେଣୁ ଖୋଳା ଚାଲିଲା । ପ୍ରାୟ ଚାରି ଘଣ୍ଟା କାଳ ଖୋଳା ହେଲାପରେ ଖୁଣ୍ଟ ଉଠିଲା । ଖୁଣ୍ଟ ଉଠିଲା ବେଳକୁ ଦିନ ଗୋଟାଏ ପାଖାପାଖି । ପୁଣି ରଥ ଟଣାପାଇଁ ପ୍ରସ୍ତୁତ ହେଲେ । ବଡ଼ ଠାକୁରଙ୍କ ରଥ, ପୁରା ବାମପଟ ରାସ୍ତା କଡ଼ରେ ଥାଏ । ମୋଡ଼ ଦେଇ, ମଝି ରାସ୍ତାକୁ ଆଣିବା କଥା । ସେତେବେଳକୁ ରଥପାଖରେ ମନ୍ତ୍ରୀ, ଆଇ.ଜି. ଡି.,ଆଇ.ଜି. ଠାରୁ ଆରମ୍ଭ କରି ଜିଲ୍ଲାପାଳ, ସମସ୍ତେ ଥା'ନ୍ତି । ରଥକୁ ଠିକ୍‌ଭାବରେ ମୋଡ଼ ନଦେଇ, ଦଉଡ଼ି ଲମ୍ବା କରି ଟାଣିବାକୁ ଆରମ୍ଭ କରିବାଦ୍ୱାରା ବଡ଼ ଠାକୁରଙ୍କ ରଥର ଆଠଟା ଚକା ମଡ଼ମଡ଼ ହୋଇ ଭାଙ୍ଗିଗଲା । ଚକା ଭାଙ୍ଗିଗଲା ପରେ ଚାରିଆଡ଼େ ନିରୁତ୍ସାହ ଖେଳିଗଲା । ରଥଟଣା ସେଦିନ ପାଇଁ ବନ୍ଦ ହେବାକୁ ବାଧ ହେଲା । ଉପସ୍ଥିତ ଭକ୍ତ ଏବଂ ଦର୍ଶକମାନେ ଶାସନ କଳକୁ ଅପାରଗ ବୋଲି ଦୋଷ ଦେଲେ । ସାରା ସହରରେ ଅଶାନ୍ତି ସୃଷ୍ଟି ହେଲା । ନବ କଳେବରରେ, ଦୂରଦୂରାନ୍ତରୁ ଆସିଥିବା ଭକ୍ତମାନେ ରଥଟାଣି ପାରିଲେ ନାହିଁ । ଲୋକମାନେ ସେଦିନ ପୁରୀ ଛାଡ଼ି ଯିବାକୁ ଆରମ୍ଭ କଲେ । ସେଦିନ ସନ୍ଧ୍ୟାବେଳକୁ ସବୁ ଖବର କାଗଜରେ ପ୍ରଶାସନକୁ ଦୋଷଦେଇ ସମ୍ବାଦ ପ୍ରକାଶ ପାଇଲା । ପୁଲିସର ଅପାରଗତା ଠାରୁ ଆରମ୍ଭ କରି ପ୍ରଶାସନର ଅପାରଗତା ବହୁଳଭାବେ ବର୍ଣ୍ଣନା କରାଗଲା । କେତେ ସମ୍ବାଦପତ୍ର ଲେଖିଲେ, ପୁଲିସ୍ ଠିକ୍ ଭାବେ କର୍ଡ଼ନ ରକ୍ଷା କରି ନ ପାରିବାରୁ ରଥଚକ ଭାଙ୍ଗିଲା ଇତ୍ୟାଦି ।

ନବକଳେବର ଆଗରୁ, ଆଇ.ଜି.,ବି.କେ. ରାଏଙ୍କୁ କୁହାଯାଇଥିଲା, ସାମ୍ବାଦିକମାନଙ୍କୁ ଡାକି ପୁଲିସ ବନ୍ଦୋବସ୍ତ ବିଷୟରେ କିଛି କହିବାକୁ, ମାତ୍ର ସେ ମନାକରି ଦେଇଥିଲେ । ଏବେ ପୁଲିସ୍ ବିରୁଦ୍ଧରେ ସମ୍ବାଦମାନ ପ୍ରକାଶ ପାଇଲାପରେ ତାଙ୍କର ମନେ ପଡ଼ିଲା । ଚକାଭାଙ୍ଗିବା ଦିନ ସେ ମୋତେ ତିନିଶହ ଟଙ୍କା ଦେଲେ ଏବଂ ମୁଁ ପୁରୀରେ ବଡ଼ ଧରଣର ପ୍ରେସ୍ କନଫରେନ୍ସର ଆୟୋଜନ କଲି । ଆଇ.ଜି. ଶ୍ରୀ ରାଏ, ସାମ୍ବାଦିକମାନଙ୍କୁ ସବୁ କଥା କହି, ପୁଲିସ୍ ବନ୍ଦୋବସ୍ତ ଏବଂ ଚକାଭାଙ୍ଗିବାରେ ପୁଲିସ୍‌ର ସମ୍ପର୍କ ବିଷୟରେ କହିଲେ ଏବଂ ପରଦିନ ସମ୍ବାଦରେ ପୁଲିସ ବିରୋଧ ସମ୍ବାଦ ପରିବେଷଣ ପ୍ରାୟ ବନ୍ଦ ହୋଇଯାଇଥିଲା ।

ଚକା ଭାଙ୍ଗିଲାପରେ ନୂଆ ଜନତା ଶାସନ, ପୁରୀ ପ୍ରଶାସନ ଉପରେ ଖଡ୍‌ଗହସ୍ତ ହୋଇ ଉଠିଲେ । ଏପରିକି ଜିଲ୍ଲାପାଳ ଏବଂ ଏସ୍.ପି.ଙ୍କୁ ନିଲମ୍ବିତ କରିବା ପାଇଁ ପ୍ରସ୍ତାବ ଦିଆଗଲା । ମାତ୍ର ନୀଳମଣି ରାଉତରାଏ, ପୁରୁଣା ପୁଲିସ ମନ୍ତ୍ରୀ ଥିବା ଯୋଗୁ, ସେ ଅବସ୍ଥାକୁ ଦେଖି ସମ୍ଭାଳି କାର୍ଯ୍ୟ କଲେ । ନବକଳେବରରେ ଏପରି ଅବସ୍ଥା ପାଇଁ ଗୋଟିଏ କମିଶନ ବସିଲା ।

ଚକା ଭାଙ୍ଗିଲା ପରେ ଖୋର୍ଦ୍ଧାରୋଡ୍‌ରୁ ରାତା ରାତି ସେଲେଓ୍ୱାର ଜ୍ୟାକ୍ ଆସି ରଥଟେକା ହୋଇ ଭଙ୍ଗା ଚକାର ମରାମତି କରାହେଲା ଏବଂ ପରଦିନ ସକାଳ ଆଠଟାରେ ରଥଟଣା ଆରମ୍ଭ ହୋଇ ତିନିରଥ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିଲେ । ଜନତା ସରକାର ଆରମ୍ଭରେ, ଜଗନ୍ନାଥଙ୍କ ରଥଯାତ୍ରାରେ ଏପରି ଅଶୁଭ ଘଟଣା ଘଟିବାରେ ନୂଆ ସରକାର ପୁରୀ ଜିଲ୍ଲା ପ୍ରଶାସନ ଉପରେ ଅତ୍ୟନ୍ତ ବିରକ୍ତିପ୍ରକାଶ କରିଥିଲେ ଏବଂ ଇନ୍‌କ୍ୱାରୀ କମିଶନ ବସାଇବା ପରେ, ବାହୁଡ଼ା ଯାତ୍ରା ଶେଷରେ ଏସ୍.ପି. ଏବଂ କଲେକ୍ଟରଙ୍କୁ ଜିଲ୍ଲାରୁ ବଦଳି କରିଦେଲେ ।

ଖୋର୍ଦ୍ଧା ଏସ୍.ଡ଼ି.ପି.ଓ ଥିଲାବେଳେ ଗୋଟିଏ ଘଟଣା ବେଳେ ବେଳେ ମୋର ମନେପଡ଼େ । ସେତେବେଳେ ଓଡ଼ିଶାର ରାଜ୍ୟପାଳ ମିଃ ବ୍ରାର ଥା'ନ୍ତି । ଶ୍ରୀମତୀ ବ୍ରାର୍, ପଞ୍ଜାବ ମନ୍ତ୍ରୀମଣ୍ଡଳରେ ଜଣେ ମନ୍ତ୍ରୀ । ତେଣୁ ମିଃ ବ୍ରାର ସବୁବେଳେ ଏକୁଟିଆ ରାଜଭବନରେ ରହୁଥାନ୍ତି । ମଝିରେ ମଝିରେ ମିସେସ୍ ବ୍ରାର୍ କିମ୍ବା ତାଙ୍କର ଏକମାତ୍ର ଝିଅ ତାଙ୍କ ସଙ୍ଗେ ଯୋଗ ଦିଅନ୍ତି । ଏ.ଡି.ସି. ନଥିଲା ସମୟରେ, ମୁଁ ରାଜ୍ୟପାଳଙ୍କ ଏ.ଡି.ସି.ଭାବେ କାମ କରୁଥିଲି ଏବଂ ବହୁଥର ତାଙ୍କ ସାଙ୍ଗରେ ଦିଲ୍ଲୀ, ଚଣ୍ଡିଗଡ଼ ଯାଇଥିଲି । ତେଣୁ ସେ ମୋତେ ଭଲ ଭାବେ ଜାଣିଥିଲେ । ଥରେ ରାଜ୍ୟପାଳ ଗଞ୍ଜାମ ଜିଲ୍ଲା ଗ୍ରସ୍ତରେ ଯାଇ ଫେରିଲା ବାଟରେ କିଛି ସମୟ ପାଇଁ ବରକୁଳ ଡାକ ବଙ୍ଗଳାରେ ରହିବେ ବୋଲି ଖବର ଆସିଲା । ସେତେବେଳେ ବରକୁଳ ଡାକବଙ୍ଗଳା ବହୁତ ଛୋଟ ଥିଲା । ଏବର ମଝିରେ ଥିବା ଦୁଇଟି ବଖରା ବିଶିଷ୍ଟ ଗୃହ, ସେତେବେଳେ ସମୁଦାୟ ବଙ୍ଗଳା ଥିଲା । ରାଜ୍ୟପାଳ ଆସି ସେଠାରେ ଦିନ ଚାରିଟା ସୁଦ୍ଧା ପହଞ୍ଚିବେ ଏବଂ ଚା ପିଇ ଭୁବନେଶ୍ୱର ଫେରିବାର ଖବରଥାଏ । ମୁଁ ଏବଂ ଖୋର୍ଦ୍ଧା ସବ୍‌କଲେକ୍ଟର ମିଃ ଶରତଚନ୍ଦ୍ରନ୍, ବରକୁଳ ଡାକ ବଙ୍ଗଳାରେ ଅପେକ୍ଷା କରିଥାଉ । ଠିକ୍ ଚାରିଟାରେ ରାଜ୍ୟପାଳ ତାଙ୍କ କନ୍ୟାଙ୍କ ସଙ୍ଗେ ବଙ୍ଗଳାରେ ପହଞ୍ଚିଲେ । ସେ ଦିନ ଥିଲା ଫଗୁଣ ପୂର୍ଣ୍ଣିମା । ରାଜ୍ୟପାଳ

ପହଞ୍ଚିଲା ପରେ, ଚା ପିଇ, ଚିଲିକା ଭିତରକୁ ଚଢ଼େଇ ଦେଖି ଯିବାର ଥିଲା । ତେଣୁ ଚିଲିକାକୂଳରେ ସରକାରୀ ଲାଞ୍ଚ ମଧ୍ୟ ପ୍ରସ୍ତୁତ ହୋଇଥାଏ । ଚା ପିଇ ସାରିଲା ପରେ ରାଜ୍ୟପାଳ ଚିଲିକା ଭିତରକୁ ଯିବାକୁ ମନା କଲେ । ମାତ୍ର ତାଙ୍କ କନ୍ୟା ଯିବାକୁ ପ୍ରସ୍ତୁତ ହେଲାରୁ, ମୁଁ ତାଙ୍କୁ ସରକାରୀ ଲଞ୍ଚରେ ନେଇ ଚିଲିକା ଭିତରକୁ ଗଲି । ଫଗୁଣ ମାସ ଶେଷ ହେଲା ବେଳକୁ ଚିଲିକାକୁ ବାହାରୁ ଆସିଥିବା ଚଢ଼େଇ ପ୍ରାୟ ଚାଲିଯାଇଥିଲେ । ଯିବା ବାଟରେ ଅଳ୍ପ କିଛି ଚଢ଼େଇ ଦେଖିଲୁ । ସନ୍ଧ୍ୟା ପାଖେଇ ଆସୁଥିବା ଯୋଗୁ, ଆମେ କାଳିଜାଇ ପାଖରୁ ଫେରିଲୁ । ବଙ୍ଗଳାକୁ ଫେରିଲା ପରେ ରାଜ୍ୟପାଳ ମିଃ ବ୍ରାଉ ମୋତେ ପଚାରିଲେ "ଏ ଅଞ୍ଚଳରେ ଆଉ କ'ଣ ଦେଖିବାକୁ ଅଛି ?" ମୁଁ ତାଙ୍କୁ କହିଥିଲି, ବାଲୁଗାଁଠାରୁ ୩୦ କିଲୋମିଟର ଦୂରରେ ବାରବରା ଜଙ୍ଗଲ । ଜଙ୍ଗଲ ବହୁତ ସୁନ୍ଦର, ବନ୍ୟ ଜନ୍ତୁରେ ପରିପୂର୍ଣ୍ଣ । ସୁନ୍ଦର ପୁରୁଣା ଡାକବଙ୍ଗଳା ଅଛି ।" ରାଜ୍ୟପାଳଙ୍କ କନ୍ୟା ଏକଥା ଶୁଣି କହିଲେ ସେ ବାରବରା ଜଙ୍ଗଲ ଦେଖିବାକୁ ଯିବେ । ରାଜ୍ୟପାଳଙ୍କ ବିନା ପ୍ରୋଗ୍ରାମରେ ଗୋଟିଏ ସ୍ଥାନକୁ ଯିବା କଥା ନୁହେଁ । ତେଣୁ ଆମେ କାହିଁକି ଭାବିବୁ, ରାଜ୍ୟପାଳ ଭୁବନେଶ୍ୱର ନ ଫେରି ବାରବରା ଜଙ୍ଗଲ ଦେଖି ଯିବେ ବୋଲି । ତାଙ୍କ କନ୍ୟା ବାରବରା ଜଙ୍ଗଲ ଯିବାକୁ ଯିଦ୍ କରିବାରୁ ମିଃ ବ୍ରାଉ ସେ ଦିନ ଭୁବନେଶ୍ୱର ନଫେରି ବରକୁଲ ଡାକବଙ୍ଗଳାରେ ରାତିରେ ରହିବେ ବୋଲି କହିଥିଲେ । ଏକଥା ଶୁଣି, ସବ୍‌କଲେକ୍ଟର ଶରତଚନ୍ଦ୍ରନ୍ ମୋ ଉପରେ ଖଡ୍‌ଗହସ୍ତ । ମୁଁ କହିଲି "ଆରେ ଭାଇ, ମୁଁ ବାରବରା ଜଙ୍ଗଲର ସୌନ୍ଦର୍ଯ୍ୟ, ବନ୍ୟଜନ୍ତୁଙ୍କ କଥା କହିଲି ମୁଁ କ'ଣ କହିଥିଲି, ତାଙ୍କୁ ସେଠାକୁ ଯିବା ପାଇଁ" । ସେ କହିଲେ, "ବିନା ପ୍ରୋଟୋକଲ୍‌ରେ ରାଜ୍ୟପାଳ ଯିବା ଠିକ୍ ହବନି ତେଣୁ ତାଙ୍କୁ କିପରି ମନାକର ।" ମୁଁ ରାଜ୍ୟପାଳଙ୍କୁ କହିଲି "ସାର୍, ଆସନ୍ତା କାଲି ହୋଲି, ରାସ୍ତାରେ ଗଲାବେଳେ ଲୋକମାନେ ରଙ୍ଗପାଣି ପକାଇ ପାରନ୍ତି, ତା'ଛଡା ପ୍ରାୟ ପନ୍ଦର କିଲୋମିଟର ରାସ୍ତାରେ ରାଜ୍ୟପାଳଙ୍କ କାର୍ ଯାଇପାରିବନି । ଜଙ୍ଗଲ ବିଭାଗର ଅଫିସରମାନେ ମଧ୍ୟ ଏକଥା ଜାଣନ୍ତିନି । ହୋଲି ଯୋଗୁ ସେମାନେ ଆସିବା ବି କଷ୍ଟକର ହେବ" । ମୋ କଥା ଶୁଣି ସାରିଲାପରେ, ସେ କହିଲେ "ତୁମେ ଜିପ୍ ଚଲାଇ ଜାଣ" । ମୁଁ ହଁ କହିଲାରୁ ସେ କହିଲେ, ଯେତେବାଟ କାର ଯିବ, କାର୍‌ରେ ଯିବା, ଯେଉଁଠି କାର୍ ଯାଇ ନପାରିବ, ସେଇଠାରୁ ଜିପ୍ ତୁମେ ଚଳାଇବ, ଆମେ ଆଗରେ ବସିଯିବୁ । ଏଠାରେ ଜଙ୍ଗଲ ବିଭାଗର ଯେଉଁ ସ୍ଥାନୀୟ ଅଫିସରଥିବେ, ତାଙ୍କୁ ଖବର ଦେଇଦିଅ । ସେ ଆମ ସାଙ୍ଗରେ ଯିବେ" । ମିଃ ଶରତଚନ୍ଦ୍ରନ୍ ବାଧ୍ୟ ହୋଇ, ଫରେଷ୍ଟ ରେଞ୍ଜର ଗଗନ ଦାସଙ୍କୁ ଏ ଖବର ଦେଲେ ଏବଂ ଖୋର୍ଦ୍ଧାର ଇରିଗେସନ୍ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କୁ ଆସିବାକୁ ଖବର ଦେଲେ । ରାଜ୍ୟପାଳ ଏକଥା କହି ରୁମ୍‌କୁ ଗଲା ପରେ, ତାଙ୍କ ଝିଅ ଆସି ମୋତେ ପଚାରିଲେ, "ଏଠି ମୁଣ୍ଡରେ ପିନ୍ଧିବାକୁ ହ୍ୟାଟ୍ ମିଳିବ କି ? ଯଦି ସ୍ଥାନୀୟ ହ୍ୟାଟ୍ କିଛି ମିଳେ, ଗୋଟେ ମଗାଇ ଦିଅ । କାଲି ଜିପ୍‌ରେ ଗଲାବେଳକୁ ପିନ୍ଧି କରି ଯିବି ।" ହ୍ୟାଟ୍ କଥା ଶୁଣି ଶରତଚନ୍ଦ୍ରନ୍ କିଛି ଦୂରକୁ ଯାଇ ମୋତେ କହିଲେ "ଏଥରକ ହ୍ୟାଟ୍ ଫ୍ୟାଟ୍ କର୍ଥା ତୁମେ ବୁଝ ।" କ'ଣ କରିବି, ବାଲୁଗାଁ ବଜାରକୁ ଗଲି । ଶେଷକୁ ଗୋଟେ ବାଉଁଶ ଝାମ୍ପି ମିଳିଲା ।

ସେଇ ବାଉଁଶ ବୁଣା ଝାମ୍ପିଟିକୁ ଆଣିଲି । କାଳେ ସେଇଟା ପସନ୍ଦ ନହେବ, ତେଣୁ ଆମ ହାବିଲ୍‌ଦାରଙ୍କର ଗୋଟେ ସ୍କାଉଟ୍ ହ୍ୟାଟ୍ ଦେହରେ ରଙ୍ଗବେରଙ୍ଗର କନାଲଗାଇ ଆଉ ଗୋଟେ ହ୍ୟାଟ୍ ଦରଜି ଦୋକାନରେ ସିଲେଇ କଲି ।

ସକାଳୁ ସକାଳୁ ବାଲୁଗାଁ ରୁ ଯାଇ ବରକୁଳ ବଙ୍ଗଳାରେ ପହଞ୍ଚିଲୁ । ଫରେଷ୍ଟ ରେଞ୍ଜର ଗଗନ ଦାସ ସକାଳୁ ଗୋଟେ ଟ୍ରକ୍‌ରେ କିଛି କୋକାକୋଲା ବରଫ ବାକ୍ସରେ ପୁରାଇ ବାରବରା ବଙ୍ଗଳାକୁ ଚାଲିଯାଇଥାଏ । ଆମେ ପହଞ୍ଚିଲା ବେଳକୁ ରାଜ୍ୟପାଳ ସକାଳ ବ୍ରେକ୍‌ଫାଷ୍ଟ ଖାଇ ପ୍ରସ୍ତୁତ ହୋଇ ଯାଇଥାନ୍ତି । ଆଠଟା ବେଳକୁ ଆମେ ବରକୁଳ ବଙ୍ଗଳା ଛାଡ଼ିଲୁ । ବାଲୁଗାଁ ବାଣପୁର ଦେଇ, ପ୍ରତାପ ପର୍ଯ୍ୟନ୍ତ ଗଲା ପରେ, ସେଠାରୁ କାର୍ ଆଉ କେନାଲ ବନ୍ଧରେ ନଯିବାରୁ ମୋ ଜିପ୍‌ରେ ମିଃ ବ୍ରାର ଏବଂ ତାଙ୍କ କନ୍ୟା ମୁଣ୍ଡରେ ଝାମ୍ପିଦେଇ ବସିଲେ । ବାଟରେ କିଛି ସମୟ ପାଇଁ ମିଡ଼ିୟମ୍ ଇରିଗେସନ ପ୍ରୋଜେକ୍ଟ ଦେଖି, ବାର୍‌ବରା ବଙ୍ଗଳାରେ ପହଞ୍ଚିଲା ବେଳକୁ ଦିନ ସାଢ଼େ ଦଶଟା । ବଙ୍ଗଳାରେ ପହଞ୍ଚିଲା ପରେ, ରାଜ୍ୟପାଳ ବାର୍‌ବରା ବଙ୍ଗଳାକୁ ଦେଖି ବେଶ୍ ଖୁସି ହୋଇଗଲେ । ମିଃ ଗଗନ ଦାସ ଥଣ୍ଡା କୋକାକୋଲା ପିଇବାକୁ ଦେଲେ । ରାଜ୍ୟପାଳଙ୍କ କନ୍ୟା କୋକାକୋଲା ପିଇସାରିଲାପରେ ପଚାରିଲେ,"ଜଙ୍ଗଲରେ ବନ୍ୟଜନ୍ତୁ କେତେ ପରିମାଣରେ ଅଛନ୍ତି ?" ଗଗନ ବାବୁ ସଙ୍ଗେ ସଙ୍ଗେ ଉତ୍ତର ଦେଲେ "ମ୍ୟାଡ଼ାମ୍ ଅଳ୍ପକ୍ଷଣ ପୂର୍ବରୁ ବଙ୍ଗଳା ପରିସରଦେଇ ଗୋଟିଏ ଦଳହରିଣ ଜଙ୍ଗଲ ଆଡ଼େ ଯାଇଛନ୍ତି । ଏକଥା କହି ସେ ତାଙ୍କୁ ବଙ୍ଗଳା ବାଡ ପାଖକୁ ଲାଗି ପଡ଼ିଥିବା କେତେଗୁଡ଼ିଏ ସଦ୍ୟ ଯନ୍ତୁ ଖୁରା ଚିହ୍ନ ଦେଖାଇଲେ । ମିସ୍ ବ୍ରାର୍ ସେଇ ଯନ୍ତୁ ଖୁରାର ଫଟୋ ଚିତ୍ର ନେଲେ । ଫଟୋ ନେଇ ଫେରିଲା ପରେ ସେ ପୁଣି ପଚାରିଲେ,"ୱେଲ, ଫରେଷ୍ଟ ଅଫିସର, ଏ ଜଙ୍ଗଲରେ କେତେ ବାଘ ଅଛନ୍ତି ?" ଗଗନ ବାବୁ ମୋ ଆଡ଼କୁ ଚାହିଁଲେ, ମୁଁ ତାଙ୍କୁ କହିଲି "କେତେ ବାଘ ଅଛନ୍ତି କୁହ ?" ସେ,"କହିଲେ ମ୍ୟାଡ଼ାମ୍, ୧୪ଟି ବାଘ ଅଛନ୍ତି ।" ସେ ପୁଣି ପଚାରିଲେ,"କେତୋଟି ଅଣ୍ଡିରା, କେତୋଟି ମାଈ ବାଘ ଅଛନ୍ତି ?" ହଠାତ୍ ଗଗନ ବାବୁଙ୍କ ମୁହଁରୁ କିଛି କଥା ବାହାରିବା ନଦେଖି, ମୁଁ କହିଲି,"ମ୍ୟାଡ଼ାମ୍, ଚାରିଟି ଅଣ୍ଡିରା, ଓ ଛଅଟା ମାଈ, ଚାରୋଟି ଛୁଆ ।" ଏତିକି କହିଲା ବେଳେ ମିଃ ଶରତଚନ୍ଦ୍ରନ୍ ସେଠୁ ପଳାଇ ଯାଇ ବାହାରେ ପେଟେ ହସିଲେ । ମୁଁ ସେଇପରି ବସିଥାଏ । କିଛି ସମୟପରେ ମିସ୍ ବ୍ରାର୍ କହିଲେ "Can I see a tiger now ?" ମୁଁ କହିଲି,"ନିଶ୍ଚୟ ଦେଖିବାକୁ ପାଇବା, ମାତ୍ର ଏଠାରୁ ଦଶ କିଲୋମିଟର ଜିପ୍‌ରେ ଯାଇ, ପୁଣି ତିନି କିଲୋମିଟର ଚାଲି କରି ପାଣି ପିଇବା ସ୍ଥାନରେ ପହଞ୍ଚିଲେ, ବାଘ ଦେଖି ପାରିବା, ତଥାପି କହି ହେବନି ।" ରାଜ୍ୟପାଳ ଏକଥା ଶୁଣି କହିଲେ,"ଆଉ ଦିନେ ଆସିବା ।" ସେଦିନ ଆମେ ସେଇଠୁ ଫେରିଲୁ । ମାତ୍ର କିଛି ଦିନ ପରେ ସେ ପୁଣି ଥରେ ବାରବରାକୁ ଗସ୍ତ ପକାଇ ଥିଲେ । ମୁଁ ତାଙ୍କୁ ବାରବରା ନେଇଥିବା ଯୋଗୁ ଜଙ୍ଗଲ ବିଭାଗର ମୁଖ୍ୟ କର୍ତ୍ତାମାନେ ଆଦୌ ମୋ ଉପରେ ଖୁସି ନଥିଲେ । କିନ୍ତୁ ଏକଥା ଯେତେବେଳେ ମିଃ ଶରତଚନ୍ଦ୍ରନ୍ ଅନ୍ୟମାନଙ୍କୁ କହିଲେ, ସମସ୍ତେ ରାଜ୍ୟପାଳଙ୍କ ବାରବରା ଗସ୍ତ ବିଷୟରେ ମୋତେ ପଚାରନ୍ତି ।

ଜନତା ସରକାର କେନ୍ଦ୍ର ଏବଂ ରାଜ୍ୟମାନଙ୍କରେ ସରକାର ଗଢ଼ିଲା ପରେ, ଜରୁରୀ କାଳୀନ ସମୟରେ କଂଗ୍ରେସ୍ ସରକାର ଯେଉଁ ସବୁ କାର୍ଯ୍ୟ, ମୁଖ୍ୟତଃ ରାଜନୈତିକ ନେତାମାନଙ୍କୁ ଗିରଫ, ବେଆଇନ୍ ଘରଭଙ୍ଗା ଇତ୍ୟାଦି କାର୍ଯ୍ୟକୁ ଇମ୍‌ରଜାନ୍ସି, ଏକ୍‌ସେସ୍ କହି କେନ୍ଦ୍ର ଏବଂ ରାଜ୍ୟମାନଙ୍କରେ ଇମ୍‌ରଜାନ୍ସି ଏକ୍‌ସେସ୍ କମିଶନ ବସାଇ ତଦନ୍ତ ଆରମ୍ଭ କଲେ । ଓଡ଼ିଶାରେ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ଜଣେ ସିଟିଂ ଜଜ୍ କେ.ବି. ପଣ୍ଡାଙ୍କୁ ତଦନ୍ତ କମିଶନର ଦାୟିତ୍ୱ ଦେଲେ । ନ୍ୟାୟମୂର୍ତ୍ତୀ କେ.ବି. ପଣ୍ଡା, କମିଶନ ଅଫ୍ ଇନ୍‌କ୍ୱାରୀ ଆକ୍ଟ ଅନୁସାରେ ତଦନ୍ତ ଆରମ୍ଭ କଲେ । ତାଙ୍କୁ ତଦନ୍ତରେ ସାହାଯ୍ୟ କରିବା ପାଇଁ ପୁଲିସ୍ ତରଫରୁ ବିଦ୍ୟାଭୂଷଣ ମହାନ୍ତି, ଲୋକନାଥ ମିଶ୍ର, ଦୁଇ ଜଣ ଏସ୍.ପି ମୂତୟନ ହେଲା ବେଳେ, ଓଡ଼ିଶାରେ କେନ୍ଦ୍ରରେ ବସିଥିବା ତଦନ୍ତ କମିଶନ ଶାହା କମିଶନକୁ ସାହାଯ୍ୟ କରିବା ପାଇଁ ବିପିନ୍ ବିହାରୀ ମିଶ୍ର , ନଳିନୀକାନ୍ତ ପଟ୍ଟନାୟକ ନିଯୁକ୍ତ ହେଲେ । ଏଇ ଇମ୍‌ରଜାନ୍ସି ଏକ୍‌ସେସ୍ କମିଶନ ଆଗରେ ମୋ ବିରୁଦ୍ଧରେ ୩୫ ଗୋଟି ଅଭିଯୋଗ ଫର୍ଦ୍ଦ ଦାଖଲ କରାଯାଇ ଥିଲା । ଏଇ ଅଭିଯୋଗ ଫର୍ଦ୍ଦରୁ ପ୍ରାୟ ୩୨ଟି, କଟକ ସହରର ବେଆଇନ୍ ଜବରଦଖଲକାରୀଙ୍କ ଘର ଏବଂ ଦୋକାନଭଙ୍ଗାକୁ କେନ୍ଦ୍ର କରିଥିଲା । କେବଳ ମୋତେ ନୁହେଁ, ମୋ ସାଙ୍ଗେ ଏଇ ଅଭିଯୋଗ ଫର୍ଦ୍ଦ ମାନଙ୍କରେ ଜିଲ୍ଲା ଏସ.ପି., କଲେକ୍ଟର, ମୁନିସିପାଲ୍ଟି ଅଫିସରମାନେ ମଧ୍ୟ ଥିଲେ । ଏହାଛଡ଼ା ରାଜନୈତିକ ନେତା ଭାଗବତ ବେହେରା ତାଙ୍କୁ ମିସାରେ ଗିରଫ କରିବା ଅଭିଯୋଗ ମଧ୍ୟ କରିଥିଲେ ।

ପୁଲିସ୍ ଆଇ.ଜି. ନରସିଂହ ସ୍ୱାଇଁଙ୍କୁ ପଣ୍ଡା କମିଶନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମୋ ବିରୁଦ୍ଧରେ ହୋଇଥିବା ଅଭିଯୋଗର ଉତ୍ତରରେ, ମୁଁ କମିଶନ ପାଖରେ ଆଫିଡେ଼ଭିଟ୍‌ରେ କହିଥିଲି ଯେ, କଲେକ୍ଟରଙ୍କ ନିର୍ଦ୍ଦେଶ ଅନୁସାରେ, ବେଆଇନ୍ ଭାବେ ଜବରଦଖଲ କରିଥିବା ସ୍ଥାନରୁ ମୁନିସିପାଲଟି ଉଚ୍ଛେଦ କରୁଥିବା ବେଳେ, ପୁଲିସ ସେଇ ସ୍ଥାନ ମାନଙ୍କରେ ଆଇନ୍-ଶୃଙ୍ଖଳା ରକ୍ଷା କରିଥିଲା ଏବଂ ରାସ୍ତାରେ ପ୍ରବଳ ଜନ ସମାଗମ ହେତୁ ଯାତାୟତ ନିୟନ୍ତ୍ରଣ କରୁଥିଲା । ମୁଁ ଏ ସବୁର ସୁପରଭାଇଜିଂ ଦାୟିତ୍ୱରେ ଥିଲି । ଘର ଭାଙ୍ଗିବାରେ ପୁଲିସ୍‌ର ଭୂମିକା କିଛି ନଥିଲା । ଭାଗବତ ବେହେରାଙ୍କ ମାମଲାରେ ମଧ୍ୟ ଆଫିଡେ଼ଭିଟ୍ ମାଧ୍ୟମରେ ଉତ୍ତର ଦେଇଥିଲି । କମିଶନ ତଦନ୍ତ କଲା ପରେ, ତାଙ୍କ ତଦନ୍ତ ରିପୋର୍ଟରେ କଲେକ୍ଟର ଏବଂ ଏସ.ପି.ଙ୍କୁ "gross abuse of power''କରିଥିଲେ ବୋଲି କହିଥିଲେ । ସେହିପରି ତତ୍‌କାଳୀନ ଆର.ଡି.ସି. ଏନ.କେ.ପଣ୍ଡାଙ୍କୁ ମଧ୍ୟ ମାତ୍ରାଧିକ କାର୍ଯ୍ୟପାଇଁ ଦାୟୀ କରିଥିଲେ । କେନ୍ଦ୍ର ଏବଂ ରାଜ୍ୟର କମିଶନମାନ ତଦନ୍ତ କରି, ସେମାନଙ୍କର ତଦନ୍ତ ରିପୋର୍ଟ ଦାଖଲ କଲାବେଳକୁ କେନ୍ଦ୍ର ଏବଂ ରାଜ୍ୟମାନଙ୍କରୁ ଜନତା ସରକାର ଯାଇ କଂଗ୍ରେସ ସରକାର ଆସିଯାଇଥାନ୍ତି । ତେଣୁ ସେ ସମସ୍ତ ତଦନ୍ତ କମିଶନ ରିପୋର୍ଟ ଉପରେ କାହାବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନଥିଲା ।

୧୯୭୭ ମସିହା ଶେଷବେଳକୁ ମୋର ନାମ ପ୍ରମୋଶନ ପାଇଁ ଯାଇଥିଲା । ଓଡ଼ିଶା ପୁଲିସ୍ ସେବାରେ, ମୋର ଠିକ୍ ଆଠବର୍ଷ ପୂର୍ଣ୍ଣ ହୋଇଥିଲା । ଡିସେମ୍ବର ମାସରେ ପ୍ରମୋଶନ

ବୋର୍ଡ଼ ବସି ମୋତେ ଭାରତୀୟ ପୁଲିସ୍ ସେବା ପଦ ପାଇଁ ମନୋନୀତ କରିଥିଲା । ସେଇବର୍ଷ ମୋ ସଙ୍ଗେ ସାତ ଜଣ ଓଡ଼ିଶା ପୁଲିସ୍ ସେବା ଅଫିସର ପଦୋନ୍ନତି ପାଇବା ପାଇଁ କେନ୍ଦ୍ର ସାଧାରଣ ସେବା ଆୟୋଗ ଦ୍ୱାରା ମନୋନୀତ ହୋଇଥିଲେ । ୧୯୭୮ ମସିହା, ଫେବୃୟାରୀ ମାସରେ ଆମର ଭାରତୀୟ ପୁଲିସ ସେବାରେ ଜଏନ୍ କରିବା ପାଇଁ ନିର୍ଦ୍ଦେଶ ଆସିଥିଲା ଏବଂ ମୁଁ ଖୋର୍ଦ୍ଧାରୁ ରିଲିଭ୍ ହୋଇ ମାର୍ଚ୍ଚମାସ ଏଗାର ତାରିଖ ଦିନ, ରାଉରକେଲାରେ ଅତିରିକ୍ତ ଏସ.ପି. ଭାବେ ଜଏନ୍ କରିଥିଲି ।

## ମୋ ରାଉରକେଲା ପୋଷ୍ଟିଂ :

ଭାରତୀୟ ପୁଲିସ୍ ସେବାକୁ ପଦୋନ୍ନତି ପାଇଲା ପରେ, ମାର୍ଚ୍ଚମାସ ଏଗାର ତାରିଖ ୧୯୭୮ ମସିହା ଦିନ, ମୁଁ ରାଉରକେଲା ପୁଲିସ୍ ଜିଲ୍ଲାର ଅତିରିକ୍ତ ଏସ.ପି. ଭାବେ ଜଏନ୍ କଲି । ରାଉରକେଲା ସହର, ଓଡ଼ିଶାର ଏକମାତ୍ର ଶିଳ୍ପ ନଗରୀ ହୋଇଥିବା ଯୋଗୁ ଏଠାକାର ଆଇନ୍ ଶୃଙ୍ଖଳା ପରିସ୍ଥିତି, ଅପରାଧ, ଅନ୍ୟ ଜିଲ୍ଲାମାନଙ୍କଠାରୁ କେତେକାଂଶରେ ଭିନ୍ନ ଧରଣର । ରାଉରକେଲା ଇସ୍ପାତ କାରଖାନା ମୁଖ୍ୟ ଶିଳ୍ପଉଦ୍ୟୋଗ ହୋଇଥିଲାବେଳେ, ଏହାର ସାହାଯ୍ୟକାରୀ ଛୋଟ ଛୋଟ ଶିଳ୍ପ ଉଦ୍ୟୋଗମାନ, ରାଉରକେଲାର ବିଭିନ୍ନ ସ୍ଥାନରେ ଗଢ଼ିଉଠିଥାଏ । କେବଳ ଓଡ଼ିଶା ନୁହେଁ, ପଡ଼ୋଶୀ ରାଜ୍ୟରୁ ମଧ ବ୍ୟବସାୟୀମାନେ ଏଇ ସହରରେ ବ୍ୟବସାୟ କରିବାକୁ ଆସି ଶିଳ୍ପ ଅନୁଷ୍ଠାନ ସହିତ ଜଡ଼ିତ ଥା'ନ୍ତି । ଇସ୍ପାତ୍ କାରଖାନା ସମୃଦ୍ଧି ପଥରେ ଆଗେଇ ଥାଏ । କାରଖାନାର ସମୃଦ୍ଧି ସହିତ, ଶିଳ୍ପ ନଗରୀ ରାଉରକେଲାର ମଧ ସମୃଦ୍ଧି ଘଟୁଥାଏ । ପ୍ରାୟ ପ୍ରତ୍ୟେକ ଦିନ ଏହାର ଲୋକସଂଖ୍ୟା ବଢ଼ିବାରେ ଲାଗିଥାଏ । ଲୋକସଂଖ୍ୟା ବଢ଼ିବା ଏବଂ ସହରରେ ବ୍ୟବସାୟ ବଢ଼ିବା ସାଙ୍ଗକୁ ଛୋଟ ବଡ଼ ଅପରାଧ, ଆଇନ୍ ଶୃଙ୍ଖଳା ପରିସ୍ଥିତି ମଧ ବଢୁଥାଏ ।

ମୁଁ ଅତିରିକ୍ତ ଏସ.ପି. ଭାବେ ଜଏନ୍ କଲା ବେଳେ ଜିଲ୍ଲାର ଏସ.ପି. ଥା'ନ୍ତି ମିଃ ବର୍ମା । ମାତ୍ର ଅଳ୍ପ ଦିନ ରହଣି ପରେ ସେ ସେଠାରୁ ବଦଳି ହୋଇ ବାହାରକୁ ଯିବା ପରେ ତାଙ୍କ ସ୍ଥାନରେ ସୁଚିତ୍ ଦାସ, ଏସ.ପି. ହୋଇ ଆସିଥିଲେ । ସେଇପରି ଜିଲ୍ଲା ପ୍ରଶାସନରେ ଏ.ଡି.ଏମ୍ ଆଲେକ୍ସେ ବଦଳି ହୋଇ ହରମୋହନ ପଟ୍ଟନାୟକ ଏବଂ ସବ୍ କଲେକ୍ଟର ଭାବେ ଜୟନ୍ତ ଦେବ୍ ଜଏନ୍ କଲେ । ରାଉରକେଲା ପୁଲିସ୍ ଏବଂ ପ୍ରଶାସନରେ ଯେଉଁମାନେ ଜଏନ୍ କରନ୍ତି ଇସ୍ପାତ କାରଖାନାର ପ୍ରଶାସନ ସେମାନଙ୍କ ଉପରେ ନଜର ରଖନ୍ତି । ସେତେବେଳେ ଇସ୍ପାତ କାରଖାନାର ପରିଚାଳନା ନିର୍ଦ୍ଦେଶକ ଡକ୍ଟର ଦତାର ଥିଲେ ଏବଂ ଜରୁରୀକାଳୀନ ପରିସ୍ଥିତି ସମୟରେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ପ୍ରଫୁଲ୍ଲ ଚନ୍ଦ୍ର ରଥ , ଜନତା ସରକାର ଆସିଲା ପରେ ବଦଳି ହୋଇ ରାଉରକେଲା ଇସ୍ପାତ କାରଖାନାକୁ ସି.ଆଇ.ଏସ୍.ଏଫ୍‌ର ଡି.ଆଇ.ଜି. ଭାବେ ଆସିଥାନ୍ତି । ତାଙ୍କ ଯୋଗୁ ଇସ୍ପାତକାରଖାନା ଏବଂ ଜିଲ୍ଲା ପ୍ରଶାସନର ସମନ୍ୱୟ ଭଲ ଥାଏ । ଇସ୍ପାତ କାରଖାନାର ମୁଖ୍ୟ ସମସ୍ୟା ହେଲା ଶ୍ରମିକ ଆନ୍ଦୋଳନ ଯୋଗୁ, କାରଖାନାରେ

ଆଇନ୍ ଶୃଙ୍ଖଳା ପରିସ୍ଥିତି ଏବଂ କାରଖାନା ପରିସର ମଧ୍ୟରୁ ଚୋରୀ । ପ୍ରତ୍ୟେକ ଦିନ, ଇସ୍ପାତ କାରଖାନାରୁ ଟନ୍ ଟନ୍ ଖାଦଲୁହା ବା କଚଡ଼ା କାରଖାନା ପରିସରରୁ, ଡମ୍ପର ସାହାଯ୍ୟରେ ବାହାରକୁ ବାହାର କରି ଦିଆଯାଉଥାଏ । ଲୁହା ପଥରକୁ, ତରଳାଇ ତରଳ ଲୁହାକୁ କାରଖାନାରେ ରଖାଗଲା ପରେ, ତରଳ ଲୁହା ମିଶା ପଥରକୁ ବାହାରକୁ ଫୋପାଡ଼ି ଦିଆଯାଉଥାଏ । ଫୋପାଡ଼ି ଦିଆଯାଉଥିବା ଲୁହାଖାଦକୁ କେତେଗୁଡ଼ିଏ ସଂଗଠିତ ଦଳ, ଶହ ଶହ ଛୁଆ ଠାରୁ ଆରମ୍ଭ କରି ସ୍ତ୍ରୀ, ପୁରୁଷ ଶ୍ରମିକମାନଙ୍କୁ ଲଗାଇ ସଂଗ୍ରହ କଲା ପରେ ଏହାକୁ କଲିକତା, ରାଞ୍ଚି, ଏପରିକି ପଞ୍ଜାବକୁ ପଠାଇ ଥା'ନ୍ତି । ସେ ସବୁ ସଂଗଠିତ ଦଳ ମଧ୍ୟ କାରଖାନାର କର୍ମଚାରୀମାନଙ୍କୁ ହାତ କରି ଅଧିକ ପରିମାଣରେ ଲୁହାଅଂଶ ଖାଦଲୁହା ସଂଗେ ବାହାରକୁ ନେଇ ଆସିଥାନ୍ତି । କେବଳ ସେତିକି ନୁହେଁ, ଡମ୍ପର ସାହାଯ୍ୟରେ କାରଖାନା ପରିସର ମଧ୍ୟରୁ ଅଳିଆ ଆଣିଲା ବେଳେ, ଛୋଟ ବଡ଼ ଲୁହା ଖଣ୍ଡ ମଧ୍ୟ ବାହାରକୁ ଚାଲିଆସି ଏମାନଙ୍କ ହାତରେ ପଡ଼େ । ତେଣୁ କଚଡ଼ା ବ୍ୟବସାୟ ସେତେବେଳେ ରାଉରକେଲା ସହରର ଏକ ବଡ଼ ଏବଂ ଅତ୍ୟନ୍ତ ଲାଭଜନକ ବ୍ୟବସାୟ ଥିଲା । ପ୍ରତ୍ୟେକ ଦିନ ହଜାର ହଜାର ଶ୍ରମିକ ଏସବୁ ସଂଗ୍ରହ କରିବାରେ ଲାଗିଥିଲାବେଳେ, କେତେକ ସଂଗଠିତ ଅପରାଧି ଦଳ, କାରଖାନାର ପାଚେରୀକୁ ଭାଙ୍ଗି, ମଣିଷ ପ୍ରବେଶ କଲା ଭଳି ବାଟ କରି, ରାତ୍ରିରେ କାରଖାନା ପରିସର ମଧ୍ୟରୁ ପଡ଼ିଥିବା ଲୁହା, ଲୁହାଖଣ୍ଡ ଚୋରୀ କରି ଏଇ ଦଳମାନଙ୍କୁ ବିକ୍ରି କରିଥାନ୍ତି । ପାଚେରୀ ଡେଇଁ ଚୋରୀ କରିବା ପ୍ରାୟ ପ୍ରତ୍ୟେକ ଦିନ ଘଟଣା । ସି.ଆଇ.ଏସ୍.ଏଫ କର୍ମଚାରୀମାନେ ପ୍ରତ୍ୟେକ ସ୍ଥାନରେ ନଥିବା ଯୋଗୁ, ଅପରାଧି ଦଳ ଏହାର ସୁଯୋଗ ନେଉଥିଲେ ଏବଂ ଏଇ ଚୋରୀ ଲାଗି ଚୋର ଏବଂ ନିରାପତ୍ତା ରକ୍ଷୀମାନଙ୍କ ମଧ୍ୟରେ ଦଙ୍ଗାହଙ୍ଗାମା ଠାରୁ ଆରମ୍ଭ କରି ଗୁଳି ବିନିମୟ ହେଉଥାଏ । ଚୋର ଦଳମାନଙ୍କୁ ସଂଗଠିତ କରିବାରେ କଚଡ଼ା ବ୍ୟବସାୟୀମାନେ ସାହାଯ୍ୟ କରୁଥାନ୍ତି । ଏସବୁ କଥା ସ୍ଥାନୀୟ ପୁଲିସ୍ ମଧ୍ୟ ଜାଣନ୍ତି ମାତ୍ର କାର୍ଯ୍ୟାନୁଷ୍ଠାନ ସେପରି ହୁଏ ନାହିଁ । ସଂଗଠିତ କଚଡ଼ା ବ୍ୟବସାୟୀ ଦଳ, ପ୍ରତ୍ୟେକ ଥାନାକୁ ହାତରେ ରଖିଥିବା ବେଳେ, ଉପରିସ୍ଥ ପୁଲିସ୍ ଏବଂ ପ୍ରଶାସନକୁ କରଗତ କରିବା କଥା କୁହାଯାଉଥିଲା । ବେଳେ ବେଳେ ସ୍ଥାନୀୟ ପୁଲିସ୍ ଚଢ଼ାଉ କରି, ସହରରୁ ବାହାରକୁ ଚାଲାଣ କଲା ବେଳେ ଏ ସବୁ ମାଲ ଜବତ୍ କରୁଥିଲା । ସେଥିଯୋଗୁ ପ୍ରତ୍ୟେକ ପୁଲିସ୍ ଷ୍ଟେସନ ପରିସରରେ ଶହ ଶହ ଟ୍ରକଲୋଡ଼ କଚଡ଼ା ଜମା ହୋଇଥାଏ । କହି କହି ମଧ୍ୟ କାରଖାନାର କର୍ତ୍ତୃପକ୍ଷ ତାକୁ ନେଉନଥାନ୍ତି । ଏସବୁ ଅବସ୍ଥାକୁ ସମ୍ଭାଳିବା ପାଇଁ ମିଃ ରଥଙ୍କ ସହଯୋଗରେ କେତେକ ଆଖିଦୃଷ୍ଟିଆ ଚଢ଼ାଉ କଲା ପରେ କେତେକାଂଶରେ ଅପରାଧ କମିଯାଇଥିଲା । ମାତ୍ର ସଂଗଠିତ ଦଳ, ବାହାରେ ଫୋପାଡ଼ା ଯାଉଥିବା ଖାଦକୁ ସଂଗ୍ରହ କରିବାରେ କିଛି ନିୟମ ନଥିବାଯୋଗୁଁ ସେଇ ବ୍ୟବସାୟ ମାଧ୍ୟମରେ ଚୋରା କାରବାର ଚଳାଇଥିଲେ । ଏଇ କାରବାରରେ ପ୍ରତିଯୋଗିତା ଏତେ ଅଧିକ ଥିଲା ଯେ, ସଂଗଠିତ ଦଳ ମଧ୍ୟରେ ଦଙ୍ଗାଠାରୁ ଆରମ୍ଭ କରି ହତ୍ୟାକାଣ୍ଡ ମଧ୍ୟ ଘଟୁଥିଲା । ପରବର୍ତ୍ତୀକାଳରେ ଇସ୍ପାତ କାରଖାନା ଏଇ କଚଡ଼ାକୁ ନିଲାମ କରି, ଲକ୍ଷ ଲକ୍ଷ ଟଙ୍କା ପାଇଲା ଏବଂ ଆଇନ୍ ଶୃଙ୍ଖଳା

କମିଲା । ୧୯୭୮ ମସିହା ଶେଷ ଆଡ଼କୁ ରାଉରକେଲା ସହରରେ ''ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା'' ତରଫରୁ ଆଇନ୍ ଶୃଙ୍ଖଳା ପରିସ୍ଥିତି ଦେଖାଦେଲା । ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା ବିହାରର କେତେକ ସ୍ଥାନରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରି କେତେକ ଜିଲ୍ଲାରେ, ଜିଲ୍ଲା ପ୍ରଶାସନକୁ ଅଚଳ କରିଦେବାକୁ ବସିଥାନ୍ତି । ଏପରିକି, ଓଡ଼ିଶାର ସୀମା ଅଞ୍ଚଳର ବ୍ଲକ ଅଫିସ୍‌ରେ ବ୍ଲକ ଅଫିସରମାନେ ଭୟରେ ଅଫିସ୍ ଛାଡ଼ି ଚାଲିଯିବାର ଖବର ମିଳୁଥାଏ । ନଭେମ୍ବର ମାସରେ, ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ରାଉରକେଲାରେ ଝାଡ଼ଖଣ୍ଡ ରାଜ୍ୟ ଦାବୀ କରି ଶୋଭାଯାତ୍ରା ଇତ୍ୟାଦି କରିବାକୁ ପ୍ରଚାର ପତ୍ର ପ୍ରିଣ୍ଟିଂକରିଥିଲେ । ସ୍ୱତନ୍ତ୍ର ଝାଡ଼ଖଣ୍ଡ ରାଜ୍ୟ ଦାବୀରେ, ଆଦିବାସୀମାନେ ରାଉରକେଲାରେ ଆଇନ୍‌ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିବେ ବୋଲି ପ୍ରଚାର ହେଲା । ସେମାନଙ୍କୁ କେତେଜଣ ମୁସ୍‌ଲମାନ ନେତା ସାହାଯ୍ୟ କରୁଥାନ୍ତି । ସେମାନଙ୍କ ସାହାଯ୍ୟ ମୂଳରେ ଯାହାଥାଉନା କାହିଁକି, ଲୋକେ କହିବାକୁ ଆରମ୍ଭ କଲେ, ୧୯୬୪ ମସିହା ସାଂପ୍ରଦାୟିକ ଗଣ୍ଡଗୋଳ ସମୟରେ ଆଦିବାସୀମାନେ, ମୁସଲମାନ ସଂପ୍ରଦାୟ ବିରୁଦ୍ଧରେ ଯାଇଥିଲେ । ତେଣୁ ସେମାନଙ୍କୁ ହାତରେ ରଖିବା ପାଇଁ କେତେଜଣ ମୁସଲ୍‌ମାନ ନେତା, ରାଉରକେଲାରେ ଆଦିବାସୀମାନଙ୍କର ଝାଡ଼ଖଣ୍ଡ ରାଜ୍ୟ ଆନ୍ଦୋଳନକୁ ସାହାଯ୍ୟ କରୁଥାନ୍ତି । ସେମାନଙ୍କର ଦାବୀ ଥାଏ, ସୁନ୍ଦରଗଡ଼, ମୟୁରଭଞ୍ଜ ଜିଲ୍ଲାକୁ ଝାଡ଼ଖଣ୍ଡ ରାଜ୍ୟ ସହିତ ମିଶ୍ରଣ କରିବା । ବଡ଼ ଧରଣର ଆଇନ ଶୃଙ୍ଖଳା ପରିସ୍ଥିତି ଆଶଙ୍କାକରି ପୁଲିସ୍ ବନ୍ଦୋବସ୍ତ କରାଗଲା ଏବଂ ଏଥିପାଇଁ ରାଜ୍ୟ ସରକାର ମଧ ଚିନ୍ତିତ ଥିଲେ ।

ନିର୍ଦ୍ଦିଷ୍ଟ ଦିନ, ପ୍ରାୟ ଦଶ ହଜାର ଆଦିବାସୀ ପାଞ୍ଚ ଛଅ ହଜାର ମହିଳାମାନଙ୍କ ସହ ଧନୁତୀର, ବର୍ଚ୍ଛାଧରି ରାଉରକେଲା ସହର ପାନ୍‌ପୋଷ ଛକ ଠାରୁ ଶୋଭାଯାତ୍ରା ଆରମ୍ଭ କରି, ଏ.ଡ଼ି.ଏମ୍ ଅଫିସ୍ ସାମ୍ନାରେ ବିକ୍ଷୋଭ ପ୍ରଦର୍ଶନ କରିବା ପାଇଁ ବାହାରିଲେ । ଶୋଭାଯାତ୍ରାକୁ ଉଦିତନଗର ବଜାର କିମ୍ୱା ଏ.ଡି.ଏମ୍‌ଙ୍କ ଅଫିସ୍ ପର୍ଯ୍ୟନ୍ତ ଆସିବାକୁ ଦିଆଯିବ ନାହିଁ ବୋଲି ନିଷ୍ପତ୍ତି ନିଆଯାଇ, ଉଦିତ୍‌ନଗର ଠାରୁ ଖଣ୍ଡେ ଦୂରରେ ସେମାନଙ୍କୁ ଅଟକାଇବାକୁ ପଡ଼ିଥିଲା ଏବଂ ଉଦିତନଗର ସହରାଞ୍ଚଳରେ ୧୪୪ ଧାରା ଜାରି କରାଯାଇଥିଲା । ଆଗରୁ ପ୍ରଶାସନ ଖବର ପାଇଥିଲା ଯେ ବିହାରରେ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ଶୋଭାଯାତ୍ରା ସରିଲାପରେ ବଜାରରେ ଦୋକାନମାନଙ୍କରୁ ଜିନିଷପତ୍ର ଲୁଟ୍ ଇତ୍ୟାଦି କରୁଥିଲେ । ମୁଁ, ଏସ.ପି. ଏବଂ ଏ.ଡ଼ି.ଏମ୍. ଶୋଭାଯାତ୍ରାର ଆଗରେ ରହି ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲୁ । ଏହା ଗୋଟିଏ ଅତି ସଂବେଦନଶୀଳ ଘଟଣା ହୋଇଥିବା ଯୋଗୁ, ସେମାନଙ୍କ ସଙ୍ଗେ ପ୍ରଶାସନର ବ୍ୟବହାର ଅତ୍ୟନ୍ତ ଉତ୍ତମ ଏବଂ ଶୋଭନୀୟ ଥିଲା । ତେଣୁ ସେମାନେ ଆମ କଥାମାନି, ଧନୁ,ତୀର, ବର୍ଚ୍ଛା ଇତ୍ୟାଦିକୁ ଶୋଭାଯାତ୍ରା ସମୟରେ ପ୍ରଦର୍ଶନ କରିନଥିଲେ କିମ୍ବା ୧୪୪ ଧାରା ଭାଙ୍ଗିନଥିଲେ । ମାତ୍ର ସମସ୍ତେ ଗିରଫ ହେବାପାଇଁ ଆଗେଇ ଆସିଲେ । ଆଦିବାସୀ ମହିଳାମାନେ ଗିରଫହେବା ପାଇଁ ଜିଦ୍ ଧରି ବସି ରହିଲେ । ପ୍ରାୟ ୫୦୦ ମହିଳାଙ୍କୁ ଗିରଫ କରି ଉଦିତନଗର ଜେଲକୁ ପଠାଗଲା । ପରଦିନ ଠିକ୍ ସେଇପରି ଭାବେ ଶୋଭାଯାତ୍ରା ଆସିଲା, ଏବଂ ମହିଳା,

ପୁରୁଷମାନେ ଗିରଫ ହେଲେ । ଦୁଇ, ଚାରିଦିନ ମଧ୍ୟରେ ଜେଲ୍‌ରେ ସ୍ଥାନ ନମିଳିବାରୁ ଆଉ ଗୋଟିଏ ଅସ୍ଥାୟୀ ଜେଲ୍ କରାଗଲା । ସେ ଯାହାହେଉ ଅଳ୍ପଦିନ ମଧ୍ୟରେ ଝାଡ଼ଖଣ୍ଡ ମୁକ୍ତିମୋର୍ଚ୍ଚା ଆନ୍ଦୋଳନ ସ୍ଥଗିତ ରହିଲା । ଏଇ ଆନ୍ଦୋଳନକୁ ଉପଯୁକ୍ତ ଭାବେ ଏବଂ ସମ୍ଭାବ୍ୟ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ନକରି ତୁଟେଇ ଦେଇଥିବାଯୋଗୁ ରାଜ୍ୟ ସରକାର, ରାଉରକେଲା ପ୍ରଶାସନ, ଏବଂ ପୁଲିସ୍ ପ୍ରଶାସନଙ୍କୁ ପ୍ରଶଂସା କରିଥିଲେ । ଏଇ ଘଟଣା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ଯେ, ସମ୍ବେଦନଶୀଳ ଘଟଣା ଏବଂ ପରିସ୍ଥିତିକୁ ଉପଯୁକ୍ତ ଭାବେ ପୁଲିସ୍ ଯଦି ଅନୁଭବ କରି ଉତ୍ତେଜିତ କିମ୍ବା ଆତଙ୍କିତ ନହୋଇ ଠିକ୍ ସମୟରେ ନୀରପେକ୍ଷ ଭାବେ ସହାନୁଭୂତିଶୀଳ ହୋଇ କାର୍ଯ୍ୟକରେ, ତାହେଲେ ଯେତେ ଉତ୍ତେଜିତ ପରିସ୍ଥିତି ହୋଇଥିଲେ ମଧ୍ୟ ତାକୁ ସମ୍ଭାଳିବା କିମ୍ବା ସମାଧାନ କରିବାରେ ଅସୁବିଧା ସୃଷ୍ଟି ହୁଏ ନାହିଁ । ଯେଉଁ ଆଦିବାସୀ ଭାଇମାନେ ବିହାର ରାଜ୍ୟରେ ଆଇନ୍ ଶୃଙ୍ଖଳା ସୃଷ୍ଟି କରି ଆତଙ୍କ ସୃଷ୍ଟି କରିଥିଲେ, ସେମାନେ ରାଉରକେଲାରେ ଅତ୍ୟନ୍ତ ଶୋଭନୀୟ ଭାବେ ତାଙ୍କର ଦାବୀ ଉପସ୍ଥାପିତ ଶୋଭାଯାତ୍ରା, ବିକ୍ଷୋଭ ପ୍ରଦର୍ଶନ ମାଧ୍ୟମରେ କରିପାରିଥିଲେ ।

ଆଉ ଗୋଟିଏ ଘଟଣା ମଧ୍ୟ ସେଇପରି ସମ୍ବେଦନଶୀଳ ଏବଂ ଅତ୍ୟନ୍ତ ବିସ୍ଫୋରକ ଥିଲା, ଯାହାକୁ ସମୟୋପଯୋଗୀ କାର୍ଯ୍ୟାନୁଷ୍ଠାନ ଯୋଗୁ ଦମନ କରାଯାଇ ପାରିଥିଲା । ସମସ୍ତେ ଜାଣନ୍ତି ରାଉରକେଲା ସହର କେତେକ ଦୃଷ୍ଟିରୁ ଏକ ସ୍ୱତନ୍ତ୍ର ସହର । ୧୯୬୪ ମସିହା ସାଂପ୍ରଦାୟିକ ଘଟଣା ପରଠାରୁ ଏହି ସହର ସାଂପ୍ରଦାୟିକ ଉତ୍ତେଜନାପୂର୍ଣ୍ଣ ସହରଭାବେ ପରିଚିତ ହୋଇଛି । ସାମାନ୍ୟ ଘଟଣାକୁ କେନ୍ଦ୍ରକରି, ଉତ୍ତେଜନା ସୃଷ୍ଟି ହୁଏ ଏବଂ ଏପରି ଉତ୍ତେଜନା ସୃଷ୍ଟି କରିବା ପାଇଁ କର୍ମକର୍ତ୍ତା ରାଉରକେଲାରେ କମ୍ ନାହାଁନ୍ତି । ଘଟଣାଟି ହେଲା, ସେଇ ବର୍ଷ ରାମନବମୀ ଶୋଭାଯାତ୍ରା ସମୟରେ ଜାମ୍‌ସେଦପୁର ସହରରେ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି ହୋଇ ହାଣକାଟ ଘଟି ବହୁ ସଂପତ୍ତି ନଷ୍ଟ ହେଲା । ଅଳ୍ପ ସମୟ ମଧ୍ୟରେ ଏହି ଦଙ୍ଗା ବିହାର ରାଜ୍ୟର କେତେକ ସହରକୁ ବ୍ୟାପିଗଲା । ଜାମ୍‌ସେଦପୁର ସାଂପ୍ରଦାୟିକ ଦଙ୍ଗାର ପ୍ରତିକ୍ରିୟା ପାଖଆଖ ଅଞ୍ଚଳରେ ପଡ଼ିଥିଲା ବେଳେ ରାଉରକେଲା ସହର, ଏ ବିଷୟରେ ଏକ ସମ୍ବେଦନଶୀଳ ସହର ହୋଇଥିବା ଯୋଗୁ,ତାର ପ୍ରତିକ୍ରିୟା ସାଂପ୍ରଦାୟିକ ଦଙ୍ଗାରେ ପରିଣତହେବ,ଏଥିରେ କିଛି ସନ୍ଦେହ ନଥିଲା । ଜାମ୍‌ସେଦ୍‌ପୁର ଠାରେ ଯେଉଁଦିନ ଉପରବେଳା ଏ ଘଟଣା ଘଟିଲା, ସେଇଦିନ ଏ.ଡି.ଏମ୍. ଏସ.ପି. ମୁଁ ଘଟଣା କ୍ରମେ ରେଲୱେ ଷ୍ଟେସନ ଆଡ଼େ ସନ୍ଧ୍ୟା ସମୟରେ ପାଟ୍ରୋଲିଂ ଦେଖିବାପାଇଁ ଯାଇଥିବା ସମୟରେ ଜାମ୍‌ସେଦ୍‌ପୁର ଆଡୁ ଆସୁଥିବା ଟ୍ରେନ୍‌ର କେତେକ ତିର୍ଥଯାତ୍ରୀ ଷ୍ଟେସନରେ ଆମମାନଙ୍କୁ ଏଘଟଣା ଜଣାଇଥିଲେ । ସେତେବେଳକୁ ସହରରେ ଏ ବିଷୟରେ କେହି ଜାଣିନଥାନ୍ତି । ଷ୍ଟେସନରୁ, ଏସ.ପି. ଅଫିସକୁ ଫେରି ଘଣ୍ଟାକ ମଧ୍ୟରେ, ପାଖରେ ଥିବା ଯେତେକ ଫୋର୍ସ, ମୁଖ୍ୟସ୍ଥାନମାନଙ୍କରେ ପୋଷ୍ଟିଂ କରି, ସହର ମଧ୍ୟରେ ଚାରୋଟି ମୋବାଇଲ ପାଟ୍ରୋଲିଂ ଗାଡ଼ି ଦେଇ ସଂଖ୍ୟାଲଘୁ ସଂପ୍ରଦାୟ ଯେଉଁ ଅଞ୍ଚଳରେ ରହୁଥିଲେ ତାକୁ ସୁରକ୍ଷା ବଳୟ ମଧ୍ୟରେ ରଖି ତା ସଙ୍ଗେ ସଙ୍ଗେ ବାଟେଲିୟାନରୁ ଗୋଟେ କମ୍ପାନୀ ମଗାଇ ଛକ

ସ୍ଥାନ ଏବଂ ପ୍ଲାଣ୍ଟସାଇଟ୍ ପୁଲିସ୍ ଷ୍ଟେସନରେ ରଖି ଦେଲୁ । ଜାମ୍‌ସେଦ୍‌ପୁର ସଂପ୍ରଦାୟ ଦଙ୍ଗାଖବର ସେ ପର୍ଯ୍ୟନ୍ତ ସରକାର ସ୍ତରରେ ମଧ୍ୟ ପହଞ୍ଚିନଥିଲା । ପର ଦିନ ସକାଳୁ ଯେତେବେଳେ ସମସ୍ତ ସହର ଜାମ୍‌ସେଦପୁର ଦଙ୍ଗା ବିଷୟରେ ଜାଣିଲେ ସେତେବେଳକୁ ପୁଲିସ୍ ସମ୍ଭାବ୍ୟ ଆଇନ୍ ଶୃଙ୍ଖଳା ପରିସ୍ଥିତି ପାଇଁ ପ୍ରସ୍ତୁତ ହୋଇ ସାରିଥାଏ ଏବଂ ଏପରି ଘଟଣା ସୃଷ୍ଟିକରିବା ପରି କର୍ମକର୍ତ୍ତାମାନଙ୍କ ହାବଭାବ ଉପରେ ଦୃଷ୍ଟି ରଖିଥାଏ । ସରକାର ଜାମ୍‌ସେଦପୁର ଦଙ୍ଗା ଖବର ପାଇ ତତ୍‌କାଳୀନ ଆଇ.ଜି. ଶ୍ରୀ ବି.କେ. ରାୟଙ୍କୁ ରାଉରକେଲା ପଠାଇଥିଲେ, ମାତ୍ର ସେତେବେଳକୁ ସ୍ଥାନୀୟ ପୁଲିସ ପ୍ରଶାସନ ଅବସ୍ଥାକୁ ସମ୍ଭାଳି ସାରିଥାଏ । ଆଇ.ଜି.ଙ୍କ ଠାରୁ ଆରମ୍ଭ କରି ସରକାର ପର୍ଯ୍ୟନ୍ତ ସମସ୍ତେ ଆମ କାର୍ଯ୍ୟକୁ ପ୍ରଶଂସା କରିଥିଲେ । କିନ୍ତୁ ଏଠାରେ ଗୋଟିଏ କଥା ଯାହାକି ରାଉରକେଲା ସହରରେ ଯେକୌଣସି ପରିସ୍ଥିତିକୁ ସମ୍ଭାଳିବାରେ ସାହାଯ୍ୟ କରିଥାଏ, ତା ହେଲା ପୁଲିସ୍ ଏବଂ ପ୍ରଶାସନ ମଧ୍ୟରେ ଉପଯୁକ୍ତ ସମନ୍ୱୟ । ସେତେବେଳେ ପ୍ରଶାସନ ଏବଂ ପୁଲିସ୍ ଗୋଟିଏ ହୋଇ କାମ କରୁଥିବା ଯୋଗୁ ରାଉରକେଲା ସହରରେ କୌଣସି ପ୍ରକାର ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇନଥିଲା ।

ଏହାର ଅଳ୍ପ ଦିନ ପରେ ମେ ମାସରେ ସିଭିଲ୍ ଟାଉନ୍‌ସିପ୍‌ରେ ଗୋଟିଏ ପେଟ୍ରୋଲ ପମ୍ପ, ପେଟ୍ରୋଲରେ କିରୋସିନ୍ ମିଶାଇ ବିକ୍ରି କରିବା ଏବଂ ପାଖରେ ଯଥେଷ୍ଟ କିରୋସିନି, ବେଆଇନ୍ ଭାବେ ରଖିବାର ଖବର ପାଇ ମୁଁ ଏସ.ପି., ଏ.ଡି.ଏମ୍ ଯାଇ ସେଇ ପେଟ୍ରୋଲ ପମ୍ପ ଉପରେ ଚଢ଼ାଉ କରି, ଚୋରାଭାବେ ରଖାଯାଇଥିବା କିରୋସିନି ଧରିଥିଲୁ ଏବଂ ପେଟ୍ରୋଲ ଦେହରେ କିରୋସିନି ମିଶାଇ ବିକ୍ରି କରୁଥିବା ବିଷୟରେ ମଧ୍ୟ ତଦନ୍ତ କରି, ମାମଲା ରୁଜୁ କରି ଥିଲୁ । ପେଟ୍ରୋଲ ପମ୍ପ, ମାଲିକ ବିରୁଦ୍ଧରେ ଅତ୍ୟାବଶକୀୟ ଆଇନ୍ ଅନୁସାରେ ମାମଲା ରୁଜୁକରି, ତାଙ୍କୁ ଗିରଫ କରି କୋର୍ଟକୁ ଚାଲଣ କଲୁ । କିନ୍ତୁ ସେ ଗିରଫ ହେବାପରେ, ତାଙ୍କୁ ବେଲ୍ ଦେଇ ଦେବା ପାଇଁ ସରକାରୀ ଦଳର ଚାପ ପଡ଼ିଥିଲା । ମାତ୍ର ଦଳୀୟଚାପକୁ ଏସ.ପି. ଶୁଣିନଥିଲେ, ଏପରିକି ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫୋନ୍ ଆସିଲା, ଅପରାଧିକୁ କୋର୍ଟକୁ ନପଠାଇ, ସେଇଠି ବେଲ୍ ଦେଇଦେବାକୁ । ମାତ୍ର ମୁଖ୍ୟମନ୍ତ୍ରୀଙ୍କ ଦପ୍ତରକୁ କୁହାଗଲା ଯେ ତାଙ୍କୁ କୋର୍ଟକୁ ପଠାଇ ଦିଆଗଲାଣି । ସେଥିରେ ଉତ୍‌କ୍ଷିପ୍ତ ହୋଇ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ, ଏସ.ପି.ଙ୍କୁ ବଦଳି କରିବାର ନିର୍ଦ୍ଦେଶ ଆସି ପହଞ୍ଚିଲା ଏବଂ ଏସ.ପି. ଶ୍ରୀ ଦାସ ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଅନୁସାରେ ମୋତେ ଦାୟିତ୍ୱ ହସ୍ତାନ୍ତର କରି ୧୮.୫.୭୯ରେ କଟକ ରେଲୱେ ଏସ.ପି. ଭାବେ ଜଏନ୍ କରିବାକୁ ଚାଲିଲେ । ସେ ଗଲାପରେ, ଆମ ଗ୍ୟାଙ୍ଗ ଅଫ୍‌ଫୋରରେ ତିନିଜଣ ରହିଲେ । (ସେତେବେଳେ ଯେ କୌଣସି ସରକାରୀ କାର୍ଯ୍ୟକୁ ଗଲାବେଳେ, ଆମେ ଚାରିଜଣ, ଏସ.ପି. ଏ.ଡି,ଏମ୍. ଆଡ଼ିସ୍‌ନାଲ ଏସ.ପି. ଏବଂ ସବ୍‌କଲେକ୍ଟର ଯାଉଥିଲୁ ବୋଲି ରାଉରକେଲାରେ ଆମ ଦଳକୁ ''ଗ୍ୟାଙ୍ଗ ଅଫ୍ ଫୋର'' ବୋଲି ଡାକୁଥିଲେ ।

**ପୁଲିସ୍ ଆନ୍ଦୋଳନ :** ପୁଲିସ୍ ଗୋଟିଏ ଶୃଙ୍ଖଳିତ ସେବା ସଂଗଠନ । ପୁଲିସ ସେବାର କର୍ମଚାରୀମାନେ ଆଇନ୍ ଏବଂ ଶୃଙ୍ଖଳା ରକ୍ଷାକାରୀ ହୋଇ ଶୃଙ୍ଖଳା ଭଙ୍ଗ ହେବା ପରି କାର୍ଯ୍ୟ

କରିବା ଏଭ ସେବାର ବିରୋଧାତ୍ମକ କାର୍ଯ୍ୟକ୍ରମ । ତେଣୁ ସ୍ୱାଧୀନତା ପରେ, ଓଡ଼ିଶା ପୁଲିସ୍ କେବେହେଲେ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ପାଇଁ ରାଜରାସ୍ତାକୁ ଓହ୍ଲାଇ ଆସିନଥିଲା । ମାତ୍ର ଏହାର ବ୍ୟତିକ୍ରମ ୧୯୭୯ ମସିହା ଜୁନ୍ ମାସରେ ଦେଖା ଦେଇଥିଲା । ଅବଶ୍ୟ ଓଡ଼ିଶା ପୁଲିସ୍ ଆନ୍ଦୋଳନ ପାଇଁ କେତେକ ପରିସ୍ଥିତି ଦାୟୀ । ଜରୁରୀକାଳୀନ ପରିସ୍ଥିତି ସମୟରେ ସେବାସଂଘ ହେଉ କିମ୍ୱା ରାଜନୈତିକ ସଂଘ ହେଉ, ସେ ସମସ୍ତ ସଂଘର କାର୍ଯ୍ୟକଳାପ ଉପରେ ନିଷେଧାଜ୍ଞା ଜାରି କରାଯାଇଥିବା ଯୋଗୁ, ସେମାନେ ପାଟି ଫିଟାଇ ପାରିନଥିଲେ । ଜରୁରୀ ପରିସ୍ଥିତି ଉଠିଗଲା ପରେ ସବୁ ସଂଘ ସେମାନଙ୍କର ବିଭିନ୍ନ ଅସୁବିଧା ଦର୍ଶାଇ ଆନ୍ଦୋଳନାତ୍ମକ କାର୍ଯ୍ୟ ପନ୍ଥା ଗ୍ରହଣ କରିବାକୁ ଆଗେଇ ଆସିଲେ । ଓଡ଼ିଶାର ତଳିଆପୁଲିସ୍ କର୍ମଚାରୀମାନେ ବିଭିନ୍ନ କାରଣରୁ ଅଶାନ୍ତ ବାତାବରଣ ମଧ୍ୟ ଦେଇ ଗତି କରୁଥିଲେ । ସେମାନଙ୍କର ଅସୁବିଧା କେବଳ ଜିଲ୍ଲାର ଏସ.ପିଙ୍କ ମାଧ୍ୟମରେ କହିପାରୁଥିଲେ କିମ୍ୱା ଜିଲ୍ଲା ଏସ.ପି. ଯେତେବେଳେ ଆଲୋଚନା ସଭା କରୁଥିଲେ, ସେତେବେଳେ କହୁଥିଲେ । ମାତ୍ର ସେମାନଙ୍କର ସମୂହ ଉନ୍ନତି, ଅସୁବିଧାର ଦୂରୀକରଣ ପାଇଁ ସେପରି କିଛି ସଂସ୍ଥା ନଥିଲା । ସେତେବେଳେ ଓଡ଼ିଶାର କନେଷ୍ଟବଲମାନଙ୍କର ଦରମା ଥିଲା ମାସକୁ ୨୪୦ ଟଙ୍କା, ନାଏକ ଏବଂ ହାବିଲଦାରଙ୍କ ଦରମା ଟ୨୫୫ଙ୍କା ଥିଲା ବେଳେ, ଏ.ପି.ଆର୍ ସ୍ୱତନ୍ତ୍ର ଦରମା ଥିଲା ମାତ୍ର ୩ଟଙ୍କା, ରେଲୱେ କନେଷ୍ଟବଲଙ୍କ ସ୍ୱତନ୍ତ୍ର ଦରମା ଥିଲା ୫ଟଙ୍କା, କ୍ରାଇମବ୍ରାଞ୍ଚ ପୁଲିସ ଟ୍ରେନିଂ କଲେଜକୁ ଯେଉଁ କନେଷ୍ଟବଳମାନେ ଯାଉଥିଲେ, ସେମାନେ ସ୍ୱତନ୍ତ୍ର ଦରମା ପାଉଥିଲେ ମାତ୍ର ୩ଟଙ୍କା । ସେଇପରି ହାବିଲଦାର ଡ୍ରାଇଭରଙ୍କର ସ୍ୱତନ୍ତ୍ର ଦରମା ୫ଟଙ୍କା ଥିଲାବେଳେ, ସହକାରୀ ଗାଡ଼ିଚାଳକଙ୍କ ସ୍ୱତନ୍ତ୍ର ଦରମା ଥିଲା ୨ଟଙ୍କା । ସେମାନେ ସେମାନଙ୍କର ସ୍ୱତନ୍ତ୍ର ଦରମା ବଢ଼ାଇବାକୁ ବହୁବାର ସରକାରଙ୍କ ଦୃଷ୍ଟି ଆକର୍ଷଣ ବିଭାଗୀୟ ଅଧିକାରୀଙ୍କ ମାଧ୍ୟମରେ କରିଥିଲେ ମଧ୍ୟ ତାର ଫଳ କିଛି ହୋଇନଥିଲା । କେବଳ ସେତିକି ନୁହେଁ, କନେଷ୍ଟବଳମାନେ ଅଫିସରଙ୍କ ଘରେ ଘରୋଇ ଚାକରଭାବେ କାର୍ଯ୍ୟ କରୁଥିଲେ । ଜଣେ ଜଣେ ଅଫିସର, ଚାରିପାଞ୍ଚଜଣ କନେଷ୍ଟବଳଙ୍କୁ ନିଜ ଘର କାମରେ ନିୟୋଜିତ କଲାବେଳେ କେତେକ ଅଫିସର କନେଷ୍ଟବଳମାନଙ୍କୁ ତାଙ୍କ ଗ୍ରାମରେ ଚାଷବାସ ବୁଝିବା ପାଇଁ ପଠାଉଥିଲେ । ଏପରି କାର୍ଯ୍ୟରେ ନିୟୋଜିତ କରିବା ବିରୁଦ୍ଧରେ, କନେଷ୍ଟବୁଲାରୀ ପ୍ରତିବାଦ କରିଥିଲେ ମଧ୍ୟ ତାହା ବନ୍ଦ ହୋଇ ନଥିଲା କିମ୍ୱା ସେପରି କାର୍ଯ୍ୟରେ ଲିପ୍ତ ରହୁଥିବା ପଦାଧିକାରୀମାନଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ ହେଉନଥିଲା ।

୧୯୭୯ ମସିହା ମେ ମାସ ବେଳକୁ ପଞ୍ଜାବର ଗୋଟିଏ କାର୍ଯ୍ୟରତ ବନେଷ୍ଟବଳଙ୍କୁ, ଜଣେ ରାଜନୈତିକ ନେତା ଜନସାଧାରଣରେ ମାଡ଼ ମାରିଥିଲେ । ପଞ୍ଜାବ, ହରିୟାନା, ଚଣ୍ଡିଗଡ଼ରେ ମଧ୍ୟ ତଳିଆ ପୁଲିସ୍ କର୍ମଚାରୀମାନଙ୍କର ଅବସ୍ଥା ଭଲ ନଥିଲା । ନାନା ପ୍ରକାର ହଇରାଣ, ହରକତ ଭିତରେ ସେମାନେ କାର୍ଯ୍ୟ କରୁଥିଲେ । କର୍ତ୍ତବ୍ୟରତ କନେଷ୍ଟବଲ ଉପରେ ମାଡ଼କୁ କେନ୍ଦ୍ରକରି, ପୂର୍ବରୁ କୁହୁଳୁଥିବା ଅଶାନ୍ତ ବାର୍ତ୍ତାବରଣ ହଠାତ୍ ଲେଲିହାନ ରୂପ ଧାରଣ କରିଥିଲା । ପଞ୍ଜାବ କନେଷ୍ଟବଲମାନେ ଆନ୍ଦୋଳନ ଆରମ୍ଭ କଲା ପରେ ସେମାନଙ୍କୁ ସମର୍ଥନ

କରି ହରିୟାନା, ଚଣ୍ଡିଗଡ଼ର ପୁଲିସ୍ କର୍ମଚାରୀମାନେ ଆନ୍ଦୋଳନ ଆରମ୍ଭ କରିଦେଲେ । ପରେ ପରେ ବିହାରରେ ପୁଲିସ କନେଷ୍ଟବଲମାନେ ଆନ୍ଦୋଳନ ଆରମ୍ଭ କଲେ । ପ୍ରତ୍ୟେକ ଦିନ ଜାତୀୟ ଏବଂ ଓଡ଼ିଶାର ସ୍ଥାନୀୟ ସମ୍ବାଦ ପତ୍ର ମାନଙ୍କରେ ପୁଲିସ୍ ଆନ୍ଦୋଳନ ବିଷୟରେ ସମ୍ବାଦ ପ୍ରକାଶ ପାଇବା ଦ୍ୱାରା, ଓଡ଼ିଶାର ତଳିଆ ପୁଲିସ୍ କର୍ମଚାରୀମାନେ ସେମାନଙ୍କ ଅଭାବ, ଅସୁବିଧାକୁ କେନ୍ଦ୍ରକରି, ଆନ୍ଦୋଳନାତ୍ମକ ପନ୍ଥା ଗ୍ରହଣକରିବାକୁ ମାନସିକ ପ୍ରସ୍ତୁତିଆରମ୍ଭ କରିଦେଇଥାନ୍ତି । ସେମାନଙ୍କର ଦରମା, ଭତ୍ତା, ସ୍ୱତନ୍ତ୍ର ଦରମା ଇତ୍ୟାଦି ଦାବୀକୁ ଛାଡ଼ିଦେଲେ, ସେମାନଙ୍କ ପାଇଁ ବାସଗୃହର ଅଭାବ, କେତେକ ଗଡ଼ଜାତ ଜିଲ୍ଲାରେ ରାଜୁଡ଼ା ଅମଳର ବାସଗୃହ ଏବଂ ଥାନା ଗୃହମାନଙ୍କର ମରାମତି ଇତ୍ୟାଦି ପାଇଁ ସେମାନେ ବର୍ଷବର୍ଷ ଧରି ସରକାରଙ୍କ ପାଖେ ଆପତ୍ତି ଅଭିଯୋଗ କରିଆସୁଥିଲେ । ପଞ୍ଜାବ, ହରିୟାନା ପୁଲିସ୍ କର୍ମଚାରୀଙ୍କ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମପରେ ପଞ୍ଜାବ, ହରିୟାନା ସରକାର ସେମାନଙ୍କୁ ଦରମା, ସ୍ୱତନ୍ତ୍ର ଦରମା, ଭତ୍ତା ଏବଂ ଘରଭଡ଼ା ଇତ୍ୟାଦିରେ କେତେକ ଆଖି ଦୃଶିଆ ସୁବିଧା ଦେଲେ ଏବଂ ସେ ସମ୍ବାଦ ମଧ୍ୟ ଓଡ଼ିଶା ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ଓଡ଼ିଶା ପୁଲିସ୍ କନେଷ୍ଟବୁଲାରୀ ସେମାନେ ପାଉଥିବା ଦରମା, ସ୍ୱତନ୍ତ୍ର ଦରମା ସଙ୍ଗେ ବିଭିନ୍ନ ଶିକ୍ଷାନୁଷ୍ଠାନ, ଜାତୀୟକରଣ ବ୍ୟାଙ୍କମାନଙ୍କରେ କାମକରୁଥିବା ସେଇ ସ୍ତରର କର୍ମଚାରୀମାନେ ପାଉଥିବା ଦରମା ଏବଂ ଅନ୍ୟାନ୍ୟ ସୁବିଧା ସଙ୍ଗେ ତୁଳନା କରୁଥାନ୍ତି ! ପୂର୍ବରୁ ଦରମା କମିଶନ ଯେଉଁ ତଦନ୍ତ ରିପୋର୍ଟ ଦେଇଥିଲେ ଏବଂ ସେଇ ରିପୋର୍ଟରେ ଯେଉ ସବୁ ବିଷୟରେ ସୁପାରିଶ କରିଥିଲେ, ତାକୁ ମଧ୍ୟ କାର୍ଯ୍ୟକାରୀ କରିବାକୁ ସରକାର ଟାଳଟୁଳ ନୀତି ଧରିଥାନ୍ତି । ତେଣୁ ପଞ୍ଜାବ, ହରିୟାନା ଆନ୍ଦୋଳନ ପରେ, ଓଡ଼ିଶାରେ ଯୁବ ପୁଲିସ୍‌କର୍ମଚାରୀଗୋଷ୍ଠୀ ମୁଖ୍ୟତଃ ଆନ୍ଦୋଳନରେ ଭାଗନେବାପାଇଁ ତତ୍ପରତା ଦେଖାଉଥାନ୍ତି । ଜିଲ୍ଲାସ୍ତରରେ ଏ.ପି.ଆର, ବାଟେଲିୟାନ୍‌ର ହାବିଲଦାର, ସିପାହୀମାନେ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଲାବେଳେ, ଚାଳିଶ ବର୍ଷରୁ ଊର୍ଦ୍ଧ୍ୱକନେଷ୍ଟବଲମାନେ ସେମାନଙ୍କୁ ସହାନୁଭୂତି ଜଣାଇବାକୁ ଆଗେଇ ଆସିଲେ । ସାରା ଓଡ଼ିଶାରେ ବିଭିନ୍ନ ସ୍ଥାନମାନଙ୍କରେ ଗୁପ୍ତ ବୈଠକ ମାଧ୍ୟମରେ, ସେମାନେ ପଞ୍ଜାବ-ହରିୟାନା ଧରଣର ଆନ୍ଦୋଳନ ପାଇଁ ଭବିଷ୍ୟତ ପନ୍ଥା ନିର୍ଦ୍ଧାରଣ କରୁଥାନ୍ତି । ରାଉରକେଲା ଜିଲ୍ଲା ପୁଲିସ୍ ଉପରେ ଏହାର ପ୍ରଭାବ ପଡ଼ିଥିଲା । ମାତ୍ର ସେମାନଙ୍କର କାର୍ଯ୍ୟକଳାପ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖାଯାଇଥାଏ ।

ପଞ୍ଜାବ ପରେ ସର୍ବଭାରତୀୟ ସ୍ତରରେ କେନ୍ଦ୍ର ରିଜର୍ଭପୁଲିସ୍‌ରେ, ସିପାହୀ, ହାବିଲଦାରମାନେ ସେମାନଙ୍କର ଦାବୀ ଜଣାଇ ଆନ୍ଦୋଳନ ଆରମ୍ଭକଲେ । ଗୋଟିଏ ବାଟେଲିୟାନ୍‌ର ଏହି ଆନ୍ଦୋଳନ ଅନ୍ୟ ବାଟେଲିୟାନକୁ ଡେଇଁଲାବେଳେ କେନ୍ଦ୍ର ଶିଳ୍ପ ସୁରକ୍ଷା ବାହିନୀରେ ଆନ୍ଦୋଳନ ଦେଖାଦେଲା । ମେ ମାସ ୧୫ ତାରିଖ ଦିନ ରାଉରକେଲା ସି.ଆଇ.ଏସ.ଏଫ୍ ଗୋଟିଏ ସଂଘ ଗଠନ କରି, ସେଇ ଦିନ ସନ୍ଧ୍ୟା ବେଳକୁ ଗୋଟେ ପ୍ରଚାର ପତ୍ର ବାଣ୍ଟିଥିଲେ । ସେଇ ପ୍ରଚାରପତ୍ରରେ ସେମାନେ ଯେଉଁ ସବୁ ଦାବୀ ଜଣାଇଥିଲେ ଓଡ଼ିଶା

ପୁଲିସ୍ ଅନୁରୂପ ଦାବୀ ପତ୍ର ୧୯୭୪ ମସିହାରେ ଗୋଟିଏ ଅଣପୁଲିସ୍ ଅନୁଷ୍ଠାନ ମାଧ୍ୟମରେ ବାଣ୍ଟିଥିଲେ । ସି.ଆଇ.ଏସ.ଏଫ. ରାଉରକେଲାରେ ସଂଘ ଗଠନ କରି ପ୍ରଚାର ପତ୍ର ବାଣ୍ଟିବା ପରେ ତାର ପ୍ରଭାବ ସୁନ୍ଦରଗଡ଼ ଏବଂ ରାଉରକେଲା ପୁଲିସ୍ ଉପରେ ପଡ଼ିଥିଲା ଏବଂ ସେମାନଙ୍କ ମଧ୍ୟରେ ଗୁପ୍ତ ମନ୍ତ୍ରଣା ମଧ୍ୟ ଚାଲିଥିଲା । ପୁଲିସ୍ ତଳିଆକର୍ମଚାରୀମାନେ ଆନ୍ଦୋଳନ କଲା ପରେ ପଞ୍ଜାବ, ହରିୟାନାରେ ଯେଉଁ ସବୁ ସୁବିଧା, ଦରମା, ସ୍ୱତନ୍ତ୍ର ଦରମା, ଭତ୍ତା ଇତ୍ୟାଦି ସରକାରଙ୍କ ଠାରୁ ପାଇଲେ, ଏହା ଅନ୍ୟ ପ୍ରଦେଶର ତଳିଆ କର୍ମଚାରୀମାନଙ୍କୁ ପରୋକ୍ଷଭାବରେ ଜଣାଇ ଦେଲା ଯେ ବିନା ଆନ୍ଦୋଳନରେ ସରକାରଙ୍କଠାରୁ କିଛି ପାଇବା ପାଇଁ ଆଶା କରିବା ବୃଥା । ପୁଲିସ୍ କର୍ମଚାରୀଙ୍କ ଆନ୍ଦୋଳନ ପଛାକୁ ସେଇ ସ୍ତରର ଅନ୍ୟ ବିଭାଗରେ କର୍ମଚାରୀମାନେ ମଧ୍ୟ ସହାନୁଭୂତି ଜଣାଇବା ପାଇଁ ଆଗେଇ ଆସିଲେ । କେବଳ ସେମାନେ ନୁହଁନ୍ତି, କଂଗ୍ରେସ, ସି.ପି.ଆଇ, ସି.ପି.ଆଇ.ଏମ୍‌ର କେତେକ ନେତା କର୍ମଚାରୀମାନଙ୍କ ଦାବୀ ପ୍ରତି ସହାନୁଭୂତି ପ୍ରଦର୍ଶନ କରି ସମ୍ବାଦ ପତ୍ରମାନଙ୍କରେ ସେମାନଙ୍କର ବିବୃତ୍ତି ଦେଲେ । ରାଜନୈତିକ ନେତାମାନଙ୍କର ପରୋକ୍ଷ ପ୍ରରୋଚନା, ସେମାନଙ୍କ ମନୋବଳକୁ ଆହୁରି ଦୃଢ଼କରି ଦେଇଥିଲା । ତେଣୁ ଓଡ଼ିଶାରେ ଜୁନ୍‌ମାସ ତିନି ଚାରି ତାରିଖ ଆଡ଼କୁ ପୁଲିସ୍ କନେଷ୍ଟବଳ, ହାବିଲଦାରମାନେ ଆନ୍ଦୋଳନ କରିବେ ବୋଲି ଖବର ପ୍ରଚାର ହେଉଥାଏ । ମାତ୍ର ମେ ମାସ ୨୬ ତାରିଖ ଦିନ ସନ୍ଧ୍ୟା ଆଲୋଚନା ସଭା ପରେ, ସପ୍ତମ ବାଟେଲିୟାନ୍‌ର ସିପାହୀ, ହାବିଲଦାରମାନେ ପୋଷାକ ପରିଧାନ କରି ସେତେବେଳର ଲକ୍ଷ୍ମୀସାଗର ବାଟେଲିୟାନ୍ କ୍ୟାମ୍ପରୁ ଶୋଭାଯାତ୍ରାରେ ବାହାରି ମୁଖ୍ୟ ରାଜରାସ୍ତା ଦେଇ ମୁଖ୍ୟମନ୍ତ୍ରୀଙ୍କ ବାସଭବନ ଆଗକୁ ଆସିଥିଲେ । ରାସ୍ତାରେ ଆସିଲାବେଳେ ସେମାନେ [illegible] ଅଗ୍ନିସେବା ସଂସ୍ଥାର ପୁଲିସ୍ ଏବଂ କ୍ୟାପିଟାଲ ଥାନାର କନେଷ୍ଟବଳମାନଙ୍କୁ ସେମାନଙ୍କ ସଙ୍ଗେ ଯୋଗ ଦେବାକୁ ଆମନ୍ତ୍ରଣ କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ହାବିଲଦାର ଏଏଚ୍ ଲତିଫୁର୍ ରହେମନଙ୍କ ନେତୃତ୍ୱରେ ୧୨ ଦଫା ଦାବୀପତ୍ର ଦେଇ ଫେରିଲା ବାଟରେ, ଏ.ଜି.ଛକ ପାଖେ ସଭାକରି, ସେମାନଙ୍କର ଆଭିମୁଖ୍ୟ ଏବଂ ଆନ୍ଦୋଳନର ଭବିଷ୍ୟତ ରୂପରେଖ ବିଷୟରେ ଆଲୋଚନା କରିଥିଲେ । ସେଇ ନିଷ୍ପତ୍ତି ଅନୁଯାୟୀ ସେମାନେ ଶସ୍ତ୍ରାଗାରର ଦାୟିତ୍ୱ ତାଙ୍କ ହାତରେ ରଖିବେ, ନିଜେ ନିଜେ ରୋଲକଲ କରିବେ ଏବଂ ୨୭ ତାରିଖ ଠାରୁ ପି.ଟି. ପ୍ୟାରେଡ଼ରେ ଯୋଗ ଦେବେନାହିଁ । ପରେ ୨୭.୫.ଦିନ ଗୋଟିଏ କାର୍ଯ୍ୟକାରୀ କମିଟି ଗଠନ କରାଗଲା । ସପ୍ତମ ବାଟାଲିୟାନ୍‌ର ସିପାହୀ ଫରିଜ୍ ମହମ୍ମଦ ଏହାର ପ୍ରେସିଡେଣ୍ଟ ହେଲେ, ସିପାହୀ ରଘୁମହାନ୍ତି, ହାବିଲ୍‌ଦାର ଲତିଫୁର ରହେମନ ଇତ୍ୟାଦି ଏହାର ଉପସଭାପତି ରହିଲେ । ୨୭ ତାରିଖ ଦିନ, ଏଇ କାର୍ଯ୍ୟକାରୀ କମିଟିର ସଭ୍ୟମାନେ, ଭୁବନେଶ୍ୱର ରିଜର୍ଭପୁଲିସ୍ ଲାଇନ୍‌କୁ ଯାଇଥିଲେ ଏବଂ ସେଠାରେ ଜିଲ୍ଲା ପୁଲିସ୍‌କୁ ଆନ୍ଦୋଳନରେ ଯୋଗ ଦେବାପାଇଁ ମତାଇବାରେ ସଫଳ ହେଲେ । ୨୭ ତରିଖରୁ ସେମାନେ ଅଫିସର ମାନଙ୍କଘରୁ ଅଡ଼ର୍ଲିମାନଙ୍କୁ ନେଇ ଆସିଲା ବେଳେ ଅଫିସରମାନଙ୍କ ଘରେ ଯେଉଁ ଗାଡ଼ିଡ୍ରାଇଭରମାନେ ଥିଲେ ସେମାନଙ୍କୁ ମଧ୍ୟ ନେଇଆସିଲେ । ଭୁବନେଶ୍ୱରରୁ ସେମାନଙ୍କର

ପ୍ରତିନିଧି ଦଳ ଅନ୍ୟ ଜିଲ୍ଲାମାନଙ୍କୁ ଯାଇଥିଲେ । ଗୋଟିଏ ପ୍ରତିନିଧି ଦଳ କେଉଁଝର ଦେଇ ରାଉରକେଲାରେ ପହଞ୍ଚିଲା ଏବଂ ରାଉରକେଲା ବାଟେଲିୟାନ୍ ଏବଂ ଜିଲ୍ଲା କନେଷ୍ଟବଳ, ହାବିଲ୍‌ଦାରମାନଙ୍କ ସଙ୍ଗେ ଗୋପନରେ କଥାବାର୍ତ୍ତା ଆରମ୍ଭ କରିଥିଲେ । ଏହାପୂର୍ବରୁ, ରାଉରକେଲାଠାରେ ଥିବା ସି.ଆଇ.ଏସ.ଫ୍ ସଂସ୍ଥାର ସିପାହୀମାନେ ମଧ୍ୟ ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତଥିଲେ । ରାଉରକେଲାରେ ପୁଲିସ୍ ଆନ୍ଦୋଳନ ସମୟର ସମସ୍ତ ଦାୟିତ୍ୱ, ମୋଉପରେ ପଡ଼ିଥିଲା । ସି.ଆଇ.ଏସ.ଫ୍, ବ୍ୟାରେକରେ ଗଣ୍ଡଗୋଳ ଖବର ପାଇ, ମୁଁ, ଏ.ଡି.ଏମ୍ ସବ୍‌କଲେକ୍ଟର, ଡି.ଆଇ.ଜି ପ୍ରଫୁଲ୍ଲ ରଥଙ୍କ ସଙ୍ଗେ ସଙ୍ଗେ ରାତ୍ରିରେ ସେଠାକୁ ଯାଇଥିଲୁ ଏବଂ ସେମାନଙ୍କୁ ବୁଝାଇବାକୁ ଚେଷ୍ଟା କରିଥିଲୁ । ସେତେବେଳକୁ ସେମାନେ, ଅର୍ମରୀର ଚାବି ସେମାନଙ୍କ ହାତରେ ରଖିସାରିଥାନ୍ତି ଏବଂ ସୁରକ୍ଷା କାର୍ଯ୍ୟ କରୁନଥାନ୍ତି । ଇସ୍ପାତ୍ କାରଖାନାରେ ଚୋରୀ ବଢ଼ିବାର ସମ୍ଭାବନା ଥିବା ଯୋଗୁ, ଅଫିସରମାନେ ପ୍ରତ୍ୟେକ ଦିନ ସନ୍ଧ୍ୟା ଠାରୁ ପେଟ୍ରୋଲିଂ କରୁଥାନ୍ତି । ରାଉରକେଲାରେ ଆଇନ୍ ଶୃଙ୍ଖଳା ବ୍ୟାଘାତ ହେବାର ଆଶଙ୍କାକରି, ଜିଲ୍ଲାପ୍ରଶାସନ ତରଫରୁ ଅଧିକ ସେଣ୍ଟ୍ରାଲ ଫୋର୍ସ ମାଗାଯାଇଥିଲା କାରଣ ଶିଳ୍ପ ନିରାପତ୍ତା ବାହିନୀ ରାଉରକେଲା, ଭିଲାଇ,ଦୁର୍ଗାପୁର, ଇସ୍ପାତକାରଖାନା ମାନଙ୍କରେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିଥାନ୍ତି । ଖବର ମଧ୍ୟ ପହଞ୍ଚିଥାଏ ଯେ ଭିଲାଇରେ ନିରାପତ୍ତାବାହିନୀ ଶସ୍ତ୍ରାଗାର ହାତକୁ ନେଲାପରେ, ତାକୁ ଛାଡୁନଥାନ୍ତି । ସେଣ୍ଟ୍ରୁ ସେଠାକୁ ସୈନ୍ୟବାହିନୀ ଯାଇ ଶସ୍ତ୍ରାଗାରକୁ ଅକ୍ତିଆର କଲାବେଳେ, ସେଠାରେ ସେମାନଙ୍କ ମଧ୍ୟରେ ଗୁଳି ବିନିମୟ ଯୋଗୁ ବହୁ ନିରାପତ୍ତା ବାହିନୀର ସିପାହୀ ମୃତ୍ୟୁବରଣ କରିଥାନ୍ତି । ଅନ୍ୟ ଇସ୍ପାତ କାରଖାନାର ଅବସ୍ଥା ତଦ୍‌ରୂପ । କେବଳ ରାଉରକେଲା ଠାରେ, ଡି.ଆଇ.ଜି ପ୍ରଫୁଲ୍ଲରଥଙ୍କ ଯୋଗୁ ସେପରି ଘଟଣା ଘଟିନଥିଲେ ମଧ୍ୟ ପରିସ୍ଥିତି ଅତ୍ୟନ୍ତ ବିସ୍ଫୋରକ ଥାଏ । ତାଛଡ଼ା ଜିଲ୍ଲା ପୁଲିସ୍ ଏବଂ ୪ର୍ଥ ବାଟେଲିୟାନ୍ ପୁଲିସ୍ ବାହିନୀ ମଧ୍ୟ ଆନ୍ଦୋଳନରେ ଭାଗନେବା ଖବର ଥିବା ଯୋଗୁ, ଶାନ୍ତି ଶୃଙ୍ଖଳା ରକ୍ଷାପାଇଁ, ବି.ଏସ୍.ଏଫ୍‌ର ଗୋଟେ ବାଟେଲିୟାନ କମାଡାଣ୍ଟ, ଡେପୁଟୀ କମାଣ୍ଡଙ୍କ ନେତୃତ୍ୱରେ ପହଞ୍ଚି ରାଉରକେଲା ସରକାରୀ ମହାବିଦ୍ୟାଳୟରେ ରହୁଥାନ୍ତି । ବି.ଏସ୍.ଏଫ୍ ଆସିଗଲା ପରେ, ଆମର ସାହସ ବଢ଼ିଗଲା ଏବଂ ଶିଳ୍ପ ନିରାପତ୍ତା ବାହିନୀ ଯେଉଁ ଧମକ ଚମକ ଦେଖାଉଥିଲେ, ସେମାନେ ମଧ୍ୟ ଟିକିଏ ଦବିଯାଇଥିଲେ ଏବଂ କଥାବାର୍ତ୍ତା କଲାପରେ, ଶସ୍ତ୍ରାଗାରର ଚାବି ହସ୍ତାନ୍ତର କରି ଦେଇଥିଲେ । ସେମାନେ କାମକରିବାକୁ ଯାଉନଥିଲେ ମଧ୍ୟ ବ୍ୟାରେକ ମଧ୍ୟରେ ରହୁଥିଲେ । ଖବର ମିଳିଲା ଯେ ମେ ମାସ ୨୮ ତାରିଖ ଦିନ, ସପ୍ତମ ବାଟେଲିୟାନର ସିପାହୀ, ଯେଉଁମାନେ ପୁରୀରେ ରହୁଥିଲେ, ସେମାନେ ଜିଲ୍ଲା ପୁଲିସ୍‌ର ହାବିଲଦାର କନେଷ୍ଟବଳମାନଙ୍କ ସହ, ପ୍ରସେସନରେ ଯାଇ ଏସ୍.ପି ପୁରୀଙ୍କୁ ଦାବୀପତ୍ର ଦେଇ, ଜିଲ୍ଲାପାଳଙ୍କୁ ଦେଖାକରିଥିଲେ । ପୁରୀରେ ହାବିଲ୍‌ଦାର ରଘୁ ମହାନ୍ତି ନେତୃତ୍ୱ ନେଉଥାନ୍ତି । ରାଉରକେଲା ଜିଲ୍ଲାପୁଲିସ୍ ହାବିଲ୍‌ଦାର, କନେଷ୍ଟବଳମାନେ ପ୍ରତ୍ୟେକ ଦିନ, ରାଜ୍ୟର କେଉଁଜିଲ୍ଲାରେ କ'ଣ ଘଟୁଛି, ତାର ଖବର ରଖିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଦିନ

ସନ୍ଧ୍ୟା ପରେ, ରିଜର୍ଭଲାଇନ୍ ପଡ଼ିଆରେ ବୈଠକ କରି ସେମାନଙ୍କ କାର୍ଯ୍ୟପନ୍ଥା, ଆନ୍ଦୋଳନଲାଗି ଚାନ୍ଦା ଆଦାୟ କରିବାରେ ଲାଗିଥାନ୍ତି ।

ମେ ୨୯ ତରିଖ ଦିନ ସକାଳୁ ମୋତେ ଖବର ମିଳିଲା ଯେ, ହାବିଲ୍ ଦାର, କନେଷ୍ଟବଲମାନେ ଶୋଭାଯାତ୍ରା କରି ଏସ୍.ପି ଅଫିସ୍‌କୁ ଆସିବେ । ଏ ଖବର ପାଇଲ ମାତ୍ରେ, ମୁଁ ଏଡ଼ି.ଏମ୍ ହରମୋହନଙ୍କୁ ଧରି, ରାସ୍ତାରେ ଶୋଭାଯାତ୍ରା ନକରିବା ପାଇଁ, ରିଜର୍ଭ ପୁଲିସ୍ ଲାଇନ୍‌କୁ ନିଜେ ଗାଡ଼ି ଚଳେଇ ଗଲି । ମୋତେ ଲାଇନ୍ ମଧକୁ ଆସୁଥିବାର ଦେଖି, ଶୋଭାଯାତ୍ରା ପାଇଁ ଏକଜୁଟ୍ ହୋଇଥିବା ଆନ୍ଦୋଳନକାରୀମାନେ, ସଙ୍ଗେ ସଙ୍ଗେ ଅନ୍ୟବାଟ ଦେଇ ରାସ୍ତାକୁ ବାହାରିପଡ଼ିଲେ । ସେମାନେ ବିନା ସ୍ଲୋଗାନରେ ଦୁଇଧାଡ଼ି କରି, ମୋ ଅଫିସ୍ ଆଡ଼େ ଚାଲିଥାନ୍ତି । ଏସ୍.ପି ଅଫିସ୍‌ରେ ପହଞ୍ଚି ସେମାନେ ମୋତେ ଦାବୀ ପତ୍ର ଦେଲାପରେ, ଡି.ଆଇ.ଜିଙ୍କୁ ତାଙ୍କ ଅଫିସ୍‌ରେ ଦାବୀ ପତ୍ର ଦେବେ ବୋଲି କହିଲେ । ମୁଁ ଏକଥା ଡି.ଆଇ.ଜିଙ୍କୁ ଟେଲିଫୋନ୍ କରି ଏବଂ  ଡି.ଆଇ.ଜିଙ୍କୁ ମୋ ଅଫିସକୁ ଆସିବାକୁ ଅନୁରୋଧ କଲି । ଡି.ଆଇ.ଜି ଶ୍ରୀଯୁକ୍ତ ଶଙ୍କର ସେନ୍ ଆସି ମୋ ଅଫିସରେ ପହଞ୍ଚିଯାଇଥିଲେ । ପ୍ରସେସନରେ ଆସି ସେମାନେ ପହଞ୍ଚିଲା  ପରେ ମୁଁ, ଡି.ଆଇ.ଜି ଏବଂ ଏବଂ ଏ.ଡି.ଏମ୍ ସେମାନଙ୍କୁ ବୁଝାଇଲୁ ଏବଂ ତାଙ୍କର ଦାବୀପତ୍ର ଗ୍ରହଣ କଲୁ । ସେମାନଙ୍କୁ କୁହାଗଲା, ଡି.ଆଇ.ଜିଙ୍କ ଅଫିସ୍‌କୁ ଆଉ ପ୍ରସେସନ କରିନଯିବା ପାଇଁ । ଯଦିଓ ସେମାନଙ୍କ ନେତା ପ୍ରତିଶ୍ରୁତି ଦେଲେ, ମାତ୍ର ଏସ୍.ପି ଅଫିସରୁ ବାହାରିଲା ପରେ, ଯୁବ କନେଷ୍ଟବଲମାନଙ୍କ ଦାବୀରେ ଶୋଭାଯାତ୍ରାକାରୀମାନେ ଶୋଭାଯାତ୍ରା ନେଇ ଡି.ଆଇ.ଜି ଅଫିସ୍‌ଆଡ଼େ ବାହାରିଲେ । ବାଟରେ ଆଇନ୍ ଶୃଙ୍ଖଳା ଆଶଙ୍କା କରି ସବ୍‌କଲେକ୍ଟର ଏବଂ ମୁଁ, ପ୍ରସେସନ ପଛେ ପଛେ ଖଣ୍ଡେଦୂରରେ ଯାଉଥାଉ । ପ୍ରସେସନ କୋଣାର୍କ ସିନେମାହଲ ପାଖେ ପହଞ୍ଚିଲାପରେ, ଡ଼ି.ଆଇ.ଜିଙ୍କ ଅଫିସ୍ ଆଡ଼େ ଯିବା ପରିବର୍ତ୍ତେ, ସେମାନେ ୪ର୍ଥ ବାଟେଲିୟାନ୍ କ୍ୟାମ୍ପସ୍ ଆଡ଼କୁ ଚାଲିଲେ । ସେତେବେଳକୁ ଦିନ ପ୍ରାୟ ୧୧ଟା ହେବ ଏବଂ ବାଟେଲିଆନ୍ ଭିତରେ ଇଣ୍ଟରକମ୍ପାନୀ ପ୍ରତିଯୋଗିତା ଚାଲିଥାଏ । ଜିଲ୍ଲା ହାବିଲ୍‌ଦାର, କନେଷ୍ଟବଲମାନଙ୍କ ଶୋଭାଯାତ୍ରା ଗେଟ୍ ପାଖରେ ପହଞ୍ଚିଲା ପରେ, ସେମାନେ ପଡ଼ିଆରେ ପ୍ରତିଯୋଗିତାରେ ଥିବା ସିପାହୀମାନଙ୍କୁ ତାଙ୍କ ସଙ୍ଗେ ଯୋଗଦେବା ପାଇଁ ଆହ୍ୱାନ ଦେଲେ । ବାଟେଲିୟାନ୍‌ର ସିପାହୀମାନେ କାଳେ, ସେମାନଙ୍କ ସଙ୍ଗେ ଯୋଗଦେବେ ବୋଲି, କମାଣ୍ଡାଣ୍ଟ ଏବଂ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟମାନେ ସତର୍କଥା'ନ୍ତି । ପ୍ରସେସନରେ ଆସିଥିବା କନେଷ୍ଟବଲମାନଙ୍କ ଆହ୍ୱାନ ସତ୍ତ୍ୱେ ସିପାହୀମାନେ ପ୍ରତିଯୋଗିତା ଛାଡ଼ି ଯାଇନଥିଲେ । ସେଇ ସମୟରେ ବାଟେଲିୟାନର ଜଣେ ନିଲମ୍ବିତ ସିପାହୀ ଅଜୟ ମହାପାତ୍ର, ସିପାହୀ ଏବଂ ହାବିଲ୍‌ଦାରମାନଙ୍କୁ, ଜିଲ୍ଲା କନେଷ୍ଟବଲମାନଙ୍କ ସଙ୍ଗେ ଯୋଗ ଦେବା ପାଇଁ ଉସ୍‌କାଉ ଥାଏ । ସେ ମଧ ସେମାନଙ୍କୁ ନାନା ପ୍ରକାର ଉତ୍ତେଜିତ କଥା କହୁଥାଏ । ତାଙ୍କର ଉସ୍‌କାଇବା କାମ ଦେଖି, ପ୍ରତିଯୋଗିତାକୁ ପରିଚାଳନା କରୁଥିବା ସହାୟକ ଦୁର୍ଗପତି ଗୋପବନ୍ଧୁ ବିଶ୍ୱାଳ, ତାଙ୍କୁ ସେପରି ନ କରିବାକୁ କହିଲେ ମାତ୍ର ସେ ତାଙ୍କ କଥା ନମାନି ବୁଲି ବୁଲି ସିପାହୀମାନଙ୍କୁ, ଜିଲ୍ଲା

ସିପାହୀମାନଙ୍କ ସଙ୍ଗେ ଯୋଗ ଦେବା ପାଇଁ କହିବା ଯୋଗୁ ରାଗରେ ସହାୟକ ଦୁର୍ଗପତି ଶ୍ରୀ ବିଶ୍ୱାଳ ହାତରେ ଧରିଥିବା ତାଙ୍କ ବାଟେନ୍ ଦେହରେ, ନିଲମ୍ବିତ ସିପାହୀ ଅଜୟ ମହାପାତ୍ର ମୁଣ୍ଡରେ ଗୋଟେ ପାହାର ଦେଲେ । ସେଇ ମାଡ଼ରେ ତାଙ୍କ ମୁଣ୍ଡରୁ ରକ୍ତ ଧାର ଧାର ହୋଇ ବହିଲା ଏବଂ ଅଜୟ ମାହାପାତ୍ରଙ୍କୁ ବିଶ୍ୱାଳ ମାରିଥିବା ଦେଖି ସମସ୍ତ ସିପାହୀ, ହାବିଲ୍‌ଦାର ଏକଜୁଟ୍ ହୋଇ୍ ପାଟି ତୁଣ୍ଡ ଆରମ୍ଭ କରିଦେଲେ । ସେମାନଙ୍କ ମଧ୍ୟରୁ କେତେଜଣ ବିଶ୍ୱାଳ ଏବଂ ଦୁର୍ଗପତି ସାଚାରଙ୍କୁ ଖରାପ ବ୍ୟବହାର ଦେଖାଇଲେ । ବାଟେଲିୟାନ୍ ଭିତରେ ଏକପ୍ରକାର ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହୋଇଗଲା । ସେତିକିବେଳେ, ମୁଁ ଏବଂ ସବ୍‌କଲେକ୍ଟର ଜୟନ୍ତ ଦେବେ ସେଠାରେ ପହଞ୍ଚି, ବିଶ୍ୱାଳଙ୍କୁ ତାଙ୍କ ଘରପାଖକୁ ନେଇଗଲୁ । କମାଣ୍ଡଣ୍ଟ ସାଚାର, ସେତେବେଳକୁ ତାଙ୍କ ସରକାରୀ କ୍ୱାଟରକୁ ଚାଲିଯାଇଥିଲେ । ହାବିଲ୍‌ଦାର, ସିପାହୀମାନଙ୍କ ମଧ୍ୟରୁ କେତେକ ଅତ୍ୟନ୍ତ ଅଶ୍ଳିଳ ଭାଷାରେ ଅଫିସରମାନଙ୍କୁ ଗାଳି ଗୁଲଜ କରୁଥାନ୍ତି । ସେମାନେ ସଙ୍ଗେ ସଙ୍ଗେ ରକ୍ତାକ୍ତ ହୋଇଥିବା ଅଜୟ ମହାପାତ୍ରଙ୍କୁ ସାଙ୍ଗରେ ଧରି, ବାଟେଲିୟାନ୍ କ୍ୟାମ୍ପସରୁ ବାହାରକୁ ଶୋଭାଯାତ୍ରା ବାହାର କରି ଜିଲ୍ଲା କନେଷ୍ଟବଲମାନଙ୍କ ଶୋଭାଯାତ୍ରାରେ ମିଶିଲେ । ବାଟରେ ଗଲାବେଳେ, ସେମାନଙ୍କ ମଧ୍ୟରୁ ବହୁତ ସିପାହୀ ଅଫିସରମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରୁଥାନ୍ତି । ଆଇନ୍ ଶୃଙ୍ଖଳା ଆଶଙ୍କାକରି ଆମେ ଦୁହେଁ, ସେମାନଙ୍କ ପଛରେ ଯାଉଥାଉ । ଶୋଭାଯାତ୍ରାକାରୀ ସମସ୍ତେ ଆମ୍ବବାଗାନ ଛକ ପାଖରେ ଏକାଠି ହୋଇ ସଭାକଲେ । ଏଇ ମିଟିଂରେ ତତ୍‌କାଳିନ୍ ଏମ.ଏଲ.ଏ ଶ୍ରୀ ବି.କେ.ମହାନ୍ତି ଭାଷଣ ଦେଲେ । ଡି.ଆଇ.ଜି ସେନ୍ ଏବଂ ମୁଁ ମଧ୍ୟ, ସମସ୍ତଙ୍କୁ ଉଦବୋଧନ ଦେଇ, ଉତ୍ତେଜିତ ନହେବା ପାଇଁ ଅନୁରୋଧ କଲୁ । ମାତ୍ର ଓ.ଏସ୍.ପିର ହାବିଲଦାର, ସିପାହୀମାନେ ଅତ୍ୟନ୍ତ କ୍ରୋଧର ବଶବର୍ତ୍ତୀ ହୋଇ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲେ । ଅବସ୍ଥା ଅଲଗା ପ୍ରକାର ହେବାକୁ ଯାଉଥିବାର ଦେଖି, ମୁଁ ମୋ ଜିଲ୍ଲାର କନେଷ୍ଟବଲମାନଙ୍କୁ ତାଙ୍କ ସଙ୍ଗେ ଉତ୍ତେଜିତ ନହେବାକୁ କହି, କେତେକାଂଶରେ ସଫଳ ହେଲି । ଜିଲ୍ଲା କନେଷ୍ଟବଳମାନେ, ସଭାପରେ ଅଲଗା ବାଟ ଦେଇ ଚାଲିଗଲେ । ଚତୁର୍ଥ ଦୁର୍ଗ ପରିସର ମଧ୍ୟରେ ଯାହାଘଟିଲା, ତାର ଗୋଟେ ରିପୋର୍ଟ ସେଇ ଦିନ ସନ୍ଧ୍ୟାରେ ଆଇ.ଜିଙ୍କ ପାଖକୁ ଗଲା ଏବଂ ଦୁଇ ଦିନପରେ ମିଲିଟାରୀ ପୁଲିସ୍‌ର ଡି.ଆଇ.ଜି ଶ୍ରୀ ନିରୋଦ ମହାନ୍ତି, ପହଞ୍ଚି ଘଟଣାର ଅନୁସନ୍ଧାନ କଲେ । ସିପାହୀ ମହାପାତ୍ର, ରିପୋର୍ଟ ଉପରେ ବିଶ୍ୱାଳଙ୍କ ନାମରେ ଗୋଟେ କ୍ରିମିନାଲ୍ କେସ୍ ମଧ୍ୟ ହୋଇଥିଲା । ଡି.ଆଇ.ଜିଙ୍କ ତଦନ୍ତ ପରେ ବିଶ୍ୱାଳଙ୍କୁ ନିଲମ୍ବିତ କରାଗଲା । ପରେ ସେମାନେ ଡି.ଆଇ.ଜିଙ୍କୁ ୩୦ମେ ଦିନ ତାଙ୍କର ଦାବୀ ପତ୍ର ଦେଲେ ଏବଂ ବାଟେଲିୟାନ୍‌ରେ ଗୋଟିଏ କାର୍ଯ୍ୟକାରୀ କମିଟି ଗଠନ କରାଗଲା ।

ଜୁନ୍ ମାସ ପହିଲା ବେଳକୁ ସାରା ରାଜ୍ୟରେ ପୁଲିସ୍ ଆନ୍ଦୋଳନ ମୁଣ୍ଡଟେକି ସାରିଥାଏ । କେବଳ କଟକ, ପୁରୀ, ଭୁବନେଶ୍ୱର,ରାଉରକେଲା ନୁହେଁ, ପ୍ରାୟ ପ୍ରତ୍ୟେକ ଜିଲ୍ଲା ସଦର ମହକୁମାରେ, ହାବିଲ୍‌ଦାର ସିପାହୀମାନେ ଅସ୍ଥାୟୀ କାର୍ଯ୍ୟକାରୀ କମିଟି ଗଠନ କରି ଜିଲ୍ଲା ଏସ୍.ପି, ଜିଲ୍ଲାପାଳଙ୍କୁ ସେମାନଙ୍କ ଦାବୀ ପତ୍ର ଦେଇଥାନ୍ତି । ଓ.ମ୍.ପି ସପ୍ତମ

ବାଟେଲିୟାନର ସିପାହୀ ହାବିଲ୍ଦାରମାନେ ମେ ମାସ ତା୨୭ ରୁ ୩୧ ପର୍ଯ୍ୟନ୍ତ କାମବନ୍ଦ ଆନ୍ଦୋଳନ କରି, ସରକାରୀ କାର୍ଯ୍ୟ କରିନଥିବା ହେତୁ, ସେମାନଙ୍କ ଦରମା ବନ୍ଦ କରାଯାଇଥିଲା ଏବଂ ଏଇ ପାଞ୍ଚଦିନ ବିନା ଦରମା ହୋଇଗଲା । ସେଥିଲାଗି ଜୁନ୍‌ମାସରେ ସପ୍ତମ ବାଟେଲିୟାନର ସିପାହୀମାନେ ଦରମା ନେଲେନି ମାତ୍ର ପରେ ମୁଖ୍ୟମନ୍ତ୍ରୀଙ୍କ କହିବା ପରେ ସେମାନେ ପାଞ୍ଚଦିନର ଦରମା ଛାଡ଼ି ବାକି ଦରମା ନେଇଥିଲେ ।

ଜୁନ୍‌ମାସ ୬ ତାରିଖରେ, ମୁଖ୍ୟମନ୍ତ୍ରୀମାନଙ୍କର ଦିଲ୍ଲୀରେ ଗୋଟିଏ ଜରୁରୀ ମିଟିଂ ବିଭିନ୍ନ ରାଜ୍ୟରେ ପୁଲିସ୍ ଆନ୍ଦୋଳନକୁ କେନ୍ଦ୍ରକରି ହୋଇଥିଲା ଏବଂ ଏହି ମିଟିଂରେ ହୋଇଥିବା ନିଷ୍ପତ୍ତି ସେଦିନ ସନ୍ଧ୍ୟା ଆକାଶ ବାଣୀ ମାଧ୍ୟମରେ ପ୍ରସାର ହୋଇଥିଲା । କେନ୍ଦ୍ର ଗୃହମନ୍ତ୍ରୀଙ୍କ ଚେତାବନୀ ବିରୁଦ୍ଧରେ ହାବିଲ୍ଦାର ଲତିଫୁର ରହେମାନଙ୍କ ନେତୃତ୍ୱରେ ଗୋଟିଏ ଗୁପ୍ତ ମିଟିଂ ସପ୍ତମ ବାହିନୀରେ ବସି ଓଡ଼ିଶା NGO co-ordination କମିଟି ସଙ୍ଗେ, ଏମାନେ ସମ୍ପର୍କ ସ୍ଥାପନକରି ଆନ୍ଦୋଳନକୁ ଆହୁରି ଜୋରଦାର କରିବାକୁ ଚେଷ୍ଟାକଲେ । ଜୁନମାସ ୨୬ ତାରିଖରେ ରଥଯାତ୍ରା ପଡୁଥାଏ । ରଥଯାତ୍ରା ଲାଗି ପୁରୀକୁ ବିଭିନ୍ନ ଜିଲ୍ଲା ଏବଂ ବାଟେଲିୟାନ୍‌ରୁ ଫୋର୍ସ ପ୍ରତ୍ୟେକ ବର୍ଷପରି, ସେ ବର୍ଷ ମଧ୍ୟ ମୋବିଲାଇଜ୍ ହୋଇଥାନ୍ତି ଏବଂ ପୁରୀରେ ପହଞ୍ଚିବାକୁ ଲାଗିଥାନ୍ତି । ଜୁନ୍ ୨୩ ତାରିଖ ଦିନ ପୁରୀ ଜିଲ୍ଲାର ହାବିଲ୍ଦାର ରଘୁମହାନ୍ତିଙ୍କ ନେତୃତ୍ୱରେ ପ୍ରାୟ ୧୫୦ ସିପାହୀ, ହାବିଲଦାର ସକାଳୁ ସକାଳୁ ପ୍ରସେସନରେ ବାହାରି, ଅନ୍ୟଜିଲ୍ଲାମାନଙ୍କରୁ ଆସିଥିବା ଫୋର୍ସମାନଙ୍କୁ ସାଙ୍ଗରେ ଧରିପ୍ରାୟ ୪୦୦ରୁ ଊର୍ଦ୍ଧ୍ୱ ସଂଖ୍ୟାରେ ଏସ୍.ପିଙ୍କୁ ଦାବୀ ପତ୍ର ଦେଲାପରେ, ଜିଲ୍ଲାପାଳକୁ ଦାବୀ ପତ୍ର ଦେଇ ଫେରିଲେ । ସେମାନଙ୍କର ମୁଖ୍ୟ ଦାବୀଥିଲା ଯଦି ଜୁନ୍‌ମାସ ୨୫ ତାରିଖ ସୁଦ୍ଧା ସରକାର ସେମାନଙ୍କ ଦାବୀ ଗ୍ରହଣ ନକରନ୍ତି, ତାହେଲେ ଜୁନ୍ ୨୬ ତାରିଖକୁ ସେମାନେ ରଥଯାତ୍ରା କର୍ତ୍ତବ୍ୟରେ ଯୋଗ ଦେବେନାହିଁ । ମୁଣ୍ଡ ଉପରେ ରଥଯାତ୍ରା ଥିବା ଯୋଗୁ ସେଇଦିନ ସନ୍ଧ୍ୟାରେ ଆଇ.ଜି. ପୁଲିସି ପୁରୀଆସି ପୁରୀ ରିଜର୍ଭପୁଲିସ ଲାଇନ୍‌ରେ ପ୍ରତ୍ୟେକ ଜିଲ୍ଲାରୁ ମୋବିଲାଇଜ୍ ହୋଇ ଆସିଥିବା ଫୋର୍ସମାନଙ୍କ ସଙ୍ଗେ ଆଲୋଚନା କଲେ । ଆଲୋଚନା ଶେଷ ଆଡ଼କୁ ଦଳେ ''ମୁଖ୍ୟମନ୍ତ୍ରୀ ପୁରୀ ଆସି ତାଙ୍କ ଦାବୀ ସଂର୍ପକରେ କୁହନ୍ତୁ'' ବୋଲି କହିଲା ବେଳେ,ଭୁବନେଶ୍ୱର ଜିଲ୍ଲାର ଜଣେ ହାବିଲ୍ଦାର ଆଇ.ଜିଙ୍କୁ ସେଇଠି ଘେରୋଉ କରାଯାଉ'' ବୋଲି କହିବାର ଶୁଣାଗଲା ଏବଂ ଆଇ.ଜି ମୁର୍ଦାବାଦ୍ ବୋଲି ପଛରୁ ପାଟିକଲେ । ତେଣୁ ରଥଯାତ୍ରା ସମୟରେ ପୁଲିସ୍ ଫୋର୍ସ କର୍ତ୍ତବ୍ୟ କରିବେ କି ନାହିଁ ତାହା ଜଣା ନପଡ଼ିଥିଲେ ମଧ, ପୁଲିସ ତଳିଆ କର୍ମଚାରୀ ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତ ରହିବେ ବୋଲି ସେଦିନ ସ୍ପଷ୍ଟ ହୋଇଯାଇଥିଲା ।

ପୁରୀରେ ଏଇ ଆଲୋଚନାସଭା ଘଟଣା, ସେଇଦିନ ସବୁଆଡ଼କୁ ପ୍ରଚାର ହୋଇଗଲା । ରାଉରକେଲାରେ ମଧ, ସେଇ ଦିନ ରାତ୍ରି ୧୨ଟା ସୁଦ୍ଧା ଟେଲିଫୋନ୍ ଯୋଗେ ଖବର ଆସିଗଲା । ଜୁନ୍ ମାସ ୨୫ ତାରିଖ ବେଳକୁ ପୁଲିସ୍ ସିପାହୀ, କନେଷ୍ଟବଲ, ହାବିଲ୍ଦାରମାନେ କାମବନ୍ଦ ଆନ୍ଦୋଳନ କରିବେ ବୋଲି ଜଣା ପଡ଼ିଗଲା । ଜୁନ୍ ୨୬ ତାରିଖ

ସକାଳୁ ସକାଳୁ ପ୍ରାୟ ୨୫୦ ଜଣ କନେଷ୍ଟବଲ, ହାବିଲ୍‌ଦାର ରାଉରକେଲା ରିଜର୍ଭପୁଲିସ ଲାଇନ୍‌ରେ ଏକାଠିହୋଇ ଆନ୍ଦୋଳନ କରିବାଲାଗି ନିଷ୍ପତ୍ତି ନେଲେ । ଯେଉଁ ସବୁ ଯାଗାରେ ଏ.ପି.ଆର୍, ଆଇନ୍ ଶୃଙ୍ଖଳାରକ୍ଷା ପାଇଁ ମୁତୟନ ହୋଇଥିଲେ ସେମାନେ ସେ ସ୍ଥାନ ଛାଡ଼ି ଆସିଲେ । କେତେ ଯାଗାରେ ଜଣେ, ଦୁଇଜଣ ନାମକୁ ମାତ୍ର ରହିଲେ । ସେମାନେ ସବୁ ସ୍ଥାନ ଛାଡ଼ିଲା ପରେ ଆମ ହାତରେ ଥିବା ବି.ଏସ୍.ଏଫ୍ ଜଓ୍ୟାନ୍‌ମାନଙ୍କୁ ଦାୟିତ୍ୱ ଦେଲୁ । ଜୁନ୍ ୨୭ ତାରିଖ ସକାଳୁ ପ୍ରାୟ ୨୦୦ କନେଷ୍ଟବଳ ମାଗାଜିନ୍ ଗାର୍ଡ଼ପାଖେ ଧାରଣାରେ ବସିଲେ । ୧.୩୦ ବେଳକୁ ପ୍ରାୟ ସମସ୍ତେ ଖାଇବାକୁ ଯାଇ ପୁଣି ୩ଟା ବେଳକୁ ଏକାଠି ହେଲେ ଏବଂ ଗୋଟିଏ କାର୍ଯ୍ୟକାରୀ କମିଟି ଗଠନ କରି ରବି ମହାନ୍ତି ହାବିଲ୍‌ଦାରଙ୍କୁ, ତାର ସଭାପତି ରୂପେ ବାଛିଲେ । ତା'ପରଦିନ, ପ୍ରାୟ ସମସ୍ତେ ଆନ୍ଦୋଳନରେ ଯୋଗ ଦେଲେ । ଯେଉଁମାନେ ଆନ୍ଦୋଳନରେ ଯୋଗ ଦେଇନଥିଲେ, ସେମାନଙ୍କୁ ଜବରଦସ୍ତ କରି ତାଙ୍କ ସାଙ୍ଗରେ ମିଶାଇଲେ ।

ଜୁନ୍ ୨୬ ତାରିଖ ଦିନ ୧୦ଟା ବେଳକୁ ଖବର ପହଞ୍ଚିଲା ଯେ, କଟକରୁ ସେଦିନ ସକାଳୁ ଆଇ.ଜି ଶ୍ରୀ ବି.କେ. ରାଏ ପୁରୀ ରଥଯାତ୍ରା ପାଇଁ ବାହାରିଲା ବେଳକୁ କଟକ ଜିଲ୍ଲାର ପ୍ରାୟ ୨୦୦ରୁ ଊର୍ଦ୍ଧ୍ୱ କନେଷ୍ଟବଲ, ହାବିଲ୍‌ଦାର, ଏକତ୍ରିତ ହୋଇ ଆଇ.ଜିଙ୍କ କାଣ୍ଟନମେଣ୍ଟ ୪ନମ୍ବର ବଙ୍ଗଳା ଗେଟ୍ ସାମ୍ନାରେ ଧାରଣା ଦେଇ ଆଇ.ଜିଙ୍କୁ ପୁରୀ ଯିବାପାଇଁ ଦେଲେନି । ସେତେବେଳେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ଶ୍ରୀ ଡି.ଏନ୍ ସିଂହ ଥା'ନ୍ତି, ସେ ମଧ୍ୟ ଆସି ଫେରିଗଲେ । ଏଣେ ପୁରୀକୁ ଆସିଥିବା ସମସ୍ତ ଫୋର୍ସ ଆନ୍ଦୋଳନରେ ଯୋଗ ଦେଇଥିବା ଯୋଗୁ, ରଥଯାତ୍ରାରେ କେବଳ ଅଫିସର ହୋମଗାର୍ଡ଼ ଏବଂ ଗୁର୍ଖା ସିପାହୀମାନଙ୍କୁ ଧରି, ତତ୍‌କାଳୀନ ପୁରୀ ଏସ.ପି. ବାଉରୀବନ୍ଧୁ ନନ୍ଦ ଆରମ୍ଭ କରିଥାନ୍ତି । ଜନସାଧାରଣ ମଧ୍ୟ ଅଦ୍‌ଭୁତ ପ୍ରକାର ସାହାଯ୍ୟ କରିଥିଲେ ଏବଂ ଜଗନ୍ନାଥଙ୍କ ରଥ ଯାତ୍ରା ସୁରୁଖୁରୁରେ ଆରମ୍ଭ ହୋଇଥିଲା । ଏସ୍.ପି. ବାଉରୀବନ୍ଧୁ ନନ୍ଦ, ଜନସହଯୋଗ ଯୋଗୁ ଶ୍ରୀଗୁଣ୍ଡିଚା ଯାତ୍ରା ଭଲରେ ଭଲରେ କରାଇ ନେଲେ । ଠାକୁରଙ୍କ ତିନି ରଥ ପରଦିନ ମାଉସୀମା ମନ୍ଦିରରେ ଲାଗି ଗଲା । ରଥଯାତ୍ରା ସମୟରେ କୌଣସି ପ୍ରକାର ଶାନ୍ତିଭଙ୍ଗ କିମ୍ବା ଦୁର୍ଘଟଣା ଘଟିନଥିଲା । ରାଉରକେଲାରେ ଆନ୍ଦୋଳନ ଯୋଗୁ କନେଷ୍ଟବଲମାନେ କେହି ରଥଯାତ୍ରାରେ ଯୋଗ ଦେଇନଥିଲେ ମଧ୍ୟ ବି.ଏସ୍. ଏଫ୍ ଙ୍କ ସାହାଯ୍ୟରେ ରଥଯାତ୍ରା କାମ ଶେଷ ହୋଇଥିଲା । ତା ଛଡ଼ା ଜନସାଧାରଣ, କାରଖାନାର କର୍ମଚାରୀମାନେ ମଧ୍ୟ ପୁଲିସ ଆନ୍ଦୋଳନ ସମୟରେ ଜିଲ୍ଲା ପୁଲିସ୍‌କୁ ଅକୁଣ୍ଠିତ ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ । ଜୁନ୍ ୨୬ ତାରିଖରେ ସାରା ଓଡ଼ିଶାରେ ପୁଲିସ୍ ଆନ୍ଦୋଳନ ଯୋଗୁ ଜନ ସାଧାରଣଙ୍କ ମନରେ ଭୟ ଏବଂ ଆତଙ୍କ ଖେଳିଯାଇଥିଲା । କାରଣ ରାତ୍ରିରେ ପୁଲିସ୍ ପେଟ୍ରୋଲିଂ ପ୍ରାୟ ବନ୍ଦ ହୋଇଯାଇଥିଲା ବେଳେ ଟ୍ରାଫିକ ଛକମାନଙ୍କରେ ଟ୍ରାଫିକ କାର୍ଯ୍ୟ କରିବା ପାଇଁ କେହି ନଥିଲେ । ତା

ଛଡ଼ା, କୋର୍ଟ ଡ୍ରେଜେରି କାମ ପାଇଁ କେହି ନଥିବା ଯୋଗୁଁ କୋର୍ଟରେ ମୁଦଲାମାନଙ୍କୁ ପହଞ୍ଚାଇବା କଷ୍ଟକର ହୋଇଥିଲା ।

ପୁଲିସ ଆନ୍ଦୋଳନକୁ ସାମ୍ନା କରିବା ପାଇଁ ସରକାର ଦୃଢ଼ ନିଷ୍ପତ୍ତି ଗ୍ରହଣ କଲେ । ଯେଉଁମାନେ ଏହାର ନେତୃତ୍ୱ ନେଇ ଅନ୍ୟମାନଙ୍କୁ ଉସ୍‌କାଇଥିଲେ, ସେମାନଙ୍କୁ ସମ୍ବିଧାନର ୩୧୧ ଧାରା ଅନୁସାରେ କାର୍ଯ୍ୟରୁ ବହିଷ୍କାର କରାଗଲା ଏବଂ ପୁରୀ, କଟକରେ ଏହି ନିର୍ଦ୍ଦେଶ ନାମା ଜୁନ୍ ୨୯ ତାରିଖରେ ଜାହିର ହେଲାବେଳେ, ଅନ୍ୟ ଜିଲ୍ଲାମାନଙ୍କରେ ମଧ ଜାହିର ହେବା ଆରମ୍ଭ ହେଲା । ରାଉରକେଲାରୁ ଦୁଇଜଣଙ୍କୁ ବହିଷ୍କାର ଆଦେଶ ଦିଆଗଲା । ଜୁନ୍‌ମାସ ୩୦ ତାରିଖରେ ରାଉରକେଲା ପୁଲିସ୍‌ର ୩ ଜଣ ପ୍ରତିନିଧି ଏସ୍.ପିଙ୍କୁ ଦେଖାକରି ସେମାନଙ୍କ ବିରୁଦ୍ଧରେ ପ୍ରତିଶୋଧମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରିବାକୁ ଅନୁରୋଧ କରି, ଗୋଟିଏ ମେମୋରାଣ୍ଡମ୍ ଦେଲେ ଏବଂ ଜୁଲାଇ ଦୁଇ ତାରିଖରୁ ଆନ୍ଦୋଳନ ପ୍ରତ୍ୟାହାର କରିନେଲେ । ଜୁଲାଇ ମାସ ପ୍ରଥମ ସପ୍ତାହରେ ପୁଲିସ୍ ଆନ୍ଦୋଳନର ଅବସାନ ଘଟିଲା । ପ୍ରତ୍ୟେକ ଜିଲ୍ଲାରେ ପୁଲିସ୍ ଆରକ୍ଷୀ ଅଧକ୍ଷକମାନେ ଆଲୋଚନା ମାଧମରେ ସରକାର ପୁଲିସ୍ ତଳିଆ କର୍ମଚାରୀ ମାନଙ୍କ ପାଇଁ କେଉଁପ୍ରକାର ଆସୁ ପଦକ୍ଷେପମାନ ନେଇଛନ୍ତି, ସେ ବିଷୟରେ ବୁଝାଇ ଦେଲେ । ଅଳ୍ପ କେତେଦିନ ପରେ ଯେଉଁମାନେ କାର୍ଯ୍ୟରୁ ଅନ୍ତର ହୋଇଥିଲେ, ସେମାନେ ଲିଖିତ ଆକାରରେ ଭବିଷ୍ୟତରେ ଏପରି ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତ ରହିବେନି ବୋଲି ପ୍ରତିଶ୍ରୁତି ଦେବା ପରେ, ସେମାନଙ୍କୁ ପୁଣି କାର୍ଯ୍ୟରେ ନିଆଗଲା; ମାତ୍ର ୧୬ ଜଣଙ୍କୁ ନିଆଗଲା ନାହିଁ । ସେମାନଙ୍କ ମଧରେ ଲତିଫର ରହେମନ୍ ଥା'ନ୍ତି ।

ପୁଲିସ୍ ଆନ୍ଦୋଳନ ପରେ, ପ୍ରତ୍ୟେକ ପୁଲିସ ଜିଲ୍ଲାମାନଙ୍କରେ ପୁଲିସ୍ କନେଷ୍ଟବଲ, ହାବିଲଦାରମାନଙ୍କର ସଂଘ ଏବଂ ସାରା ରାଜ୍ୟରେ ପୁଲିସ କନେଷ୍ଟବଳ, ହାବିଲଦାର ସିପାହୀମାନଙ୍କର ମହାସଂଘ ହେବାର ନିଷ୍ପତ୍ତି ମଧ ହେଲା । ଏଇ କର୍ମଚାରୀମାନଙ୍କର ଦରମା, ସ୍ୱତନ୍ତ୍ର ଭତ୍ତା, ଇତ୍ୟାଦିରେ ପରିବର୍ତ୍ତନ କରାଯିବା ପାଇଁ ସରକାର ନିଷ୍ପତ୍ତି ଗ୍ରହଣ କଲେ । ପୁଲିସ୍ ଆନ୍ଦୋଳନ ସବୁ ସମୟ ପାଇଁ ନିମ୍ନ କର୍ମଚାରୀମାନଙ୍କ ପୁରୁଣା ଇତିହାସକୁ ଭବିଷ୍ୟତ ପାଇଁ ବଦଳାଇ ଦେଇଥିଲା । କନେଷ୍ଟବଳମାନେ ଅଫିସରଙ୍କ ଘରେ ଅର୍ଦ୍ଦଲିଭାବେ ରହୁଥିଲେ, ସେ ପ୍ରଥା ଉଠିଗଲା । ସେମାନଙ୍କ ସ୍ଥାନରେ ଫଲୋର ଅର୍ଦ୍ଦଲି ପ୍ରଥା ସୃଷ୍ଟି ହେଲା । ପୁଲିସ୍ ଆନ୍ଦୋଳନ ଭବିଷ୍ୟତ ପାଇଁ ଏକ ନିର୍ଦ୍ଦିଷ୍ଟ ଦିଗ ନିରୂପଣ କରି ଦେଇଗଲା ।

ପୁଲିସ୍ ଆନ୍ଦୋଳନ ଚାଲିଥିବା ଭିତରେ, ଶ୍ରୀ କେ.ସି. ମହାପାତ୍ର ଏସ୍.ପି ରାଉରକେଲା ଭାବେ ଜଏନ୍ କଲେ । ସେତେବେଳକୁ ଆନ୍ଦୋଳନ ଧିମେଇ ଯାଇଥାଏ ଏବଂ ଆଇନ୍ ଶୃଙ୍ଖଳା ପରିସ୍ଥିତି ସଂପୂର୍ଣ୍ଣ ନିୟନ୍ତ୍ରଣ ଥାଏ ।

## ଆନ୍ଦୋଳନ ପରେ:

ଅଗଷ୍ଟ ମାସ ପ୍ରଥମ ସପ୍ତାହରେ ମୋର ରାଉରକେଲାରୁ ଭୁବନେଶ୍ୱର ସପ୍ତମ ବାହିନୀକୁ ଦୁର୍ଗପତି ଭାବେ ବଦଳି ହେଲା । ପୂର୍ବତନ ଦୁର୍ଗପତି ମିଃ ହଚିନ୍‌ଙ୍କୁ କଟକ ବଦଳି କରାଗଲା ।

ଏହି ବାହିନୀ ପ୍ରଥମେ, ପୁଲିସ୍ ଆନ୍ଦୋଳନ ଆରମ୍ଭ କରିଥିଲେ ଏବଂ ବିଶୃଙ୍ଖଳିତ ବାହିନୀ ବୋଲି ନାମ ଅର୍ଜନ କରିଥାନ୍ତି । ଆନ୍ଦୋଳନ ସମୟରେ ସେମାନଙ୍କର ଦାବୀ ଥିଲା ଯେ ଜଣେ ଆଇ.ପି.ଏସ୍. ଅଫିସରଙ୍କୁ ସପ୍ତମ ବାହିନୀର ଦୁର୍ଗପତି ଭାବେ ପୋଷ୍ଟିଂ କରିବା ପାଇଁ । ରାଉରକେଲାରୁ ରିଲିଭ ହୋଇ ମୁଁ ସପ୍ତମ ବାହିନୀରେ ଅଗଷ୍ଟ ଆଠ ତାରିଖରେ ଯୋଗ ଦେଲି । ସେତେବେଳେ ବାହିନୀର ନିଜସ୍ୱ ଅଫିସ୍ ଗୃହ ନଥାଏ । କଟକ, ପୁରୀ ରାସ୍ତାର ପଣ୍ଡା କମ୍ପାନୀ ପାଖେ ଗୋଟେ ଭଡ଼ା ଘରେ ଦୁର୍ଗପତିଙ୍କ ଅଫିସ୍ ଏବଂ ଲକ୍ଷ୍ମୀସାଗରର ବର୍ତ୍ତମାନର ଯାତାୟାତ ନିମନ୍ତ୍ରଣ ପ୍ରଶିକ୍ଷଣ ବିଦ୍ୟାଳୟରେ ସିପାହୀମାନେ ଦୁଇଟି ବ୍ୟାରେକ୍‌ରେ ରହୁଥାନ୍ତି । ରହିବା ଘର ଅଭାବ, ବ୍ୟାରେକ୍‌ର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଯୋଗୁଁ ପ୍ରାୟ ସମସ୍ତେ ଅଶାନ୍ତିରେ ଥା'ନ୍ତି । ମୁଁ ଏଠାରେ ଜଏନ୍ କଲାପରେ, ଦେଖିଲି ବାହିନୀରେ ଛଅ ଜଣ ଡ଼ାଇରେକ୍ଟ ସହାୟକ ଦୁର୍ଗପତି, ସିଧାସଳଖ ଭାବେ ଜଏନ୍ କରିଥାନ୍ତି । ଆଉ ଜଣେ ସହାୟକ ଦୁର୍ଗପତି ମିଃ କବି ପୋଖତ ଅଫସିର । ସେମାନଙ୍କୁ ନେଇ ବାହିନୀରେ କାର୍ଯ୍ୟ କରିବାରେ କିଛି କଷ୍ଟକର ନଥିଲା । ମୁଁ ଜଏନ୍ କଲାପରେ, ପ୍ରଥମେ ଅଗଷ୍ଟ ପନ୍ଦର ପ୍ୟାରେଡ୍ କମାଣ୍ଡ କଲି ଏବଂ ପରେ ପରେ ବାହିନୀର ଅବସ୍ଥାକୁ ସୁଧାରିବା ପାଇଁ ଚେଷ୍ଟା ଆରମ୍ଭ କଲି । ସେତେବେଳକୁ ବର୍ତ୍ତମାନ ଯେଉଁଠି ବାହିନୀର ମୁଖ୍ୟ କାର୍ଯ୍ୟାଳୟ ଅଛି ସେଠି କାମ ଚାଲିଥାଏ । ଗୋଟିଏ ଦୁଇଟି ବ୍ୟାରେକ୍‌ରେ କାର୍ଯ୍ୟ ସଂପୂର୍ଣ୍ଣ ହୋଇଥିଲେ ମଧ ପାଣି, ବିଜୁଳିର ସୁବିଧା ନଥାଏ । ଅଫିସ୍ ଗୃହ ସଂପୂର୍ଣ୍ଣ ହୋଇନଥାଏ ।

ଏଥି ମଧରେ ପୁଲିସ୍ ଆନ୍ଦୋଳନ ସରିଲା ପରେ ପରେ ଆଇ.ଜି ବି.କେ.ରାଏଙ୍କୁ ବଦଳି କରି ଦିଆଗଲା । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ରାଉତରାଏ, ବି.କେ ରାଏଙ୍କ କାର୍ଯ୍ୟକଳାପ ଉପରେ ସନ୍ତୁଷ୍ଟ ନଥିଲେ । ଏ ବିଷୟରେ ସେ ତାଙ୍କ ଆତ୍ମ ଜୀବନୀ ''କିଛି ସ୍ମୃତି କିଛି ଅନୁଭୂତି''ରେ ବର୍ଣ୍ଣନା କରିଛନ୍ତି । ଶ୍ରୀଯୁକ୍ତ ରାଏ, ଓଡ଼ିଶାରୁ ବଦଳି ହୋଇ ଜାତୀୟ ଆରକ୍ଷୀ ଏକାଡ଼େମୀରେ ମହାନିର୍ଦ୍ଦେଶକ ଭାବେ ହାଇଦ୍ରାବାଦରେ ଯୋଗ ଦେଲେ । ତାଙ୍କ ସ୍ଥାନରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ, ଆଇ.ଜି. ଭାବେ ଯୋଗ ଦେଲେ ଏବଂ ବାହିନୀର ଅଫିସଗୃହ ଏବଂ କର୍ମଚାରୀଙ୍କ ଅସୁବିଧା ଦୂର କରିବା ବିଷୟରେ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା କଲାପରେ, ସେ ପୁଲିସ୍ କଲ୍ୟାଣ ପାଣ୍ଠିରୁ ୬୦,୦୦୦ ଟଙ୍କା ଦେଇ ନୂତନ ଭାବେ ନିର୍ମାଣ ହୋଇଥିବା ଦୁର୍ଗପତିଙ୍କ ଅଫିସ ଗୃହକୁ ବିଜୁଳି ଆଣିବାର ବନ୍ଦୋବସ୍ତ କଲେ । ପ୍ରତ୍ୟେକ ଦିନ, ଅଫିସର ଏବଂ ସିପାହୀମାନେ, ସାଇଡ଼୍‌ର ଜଙ୍ଗଲ କାଟି ପରିଷ୍କାର କରିବା ସଙ୍ଗେ ସଙ୍ଗେ ଏଠାରେ ରହିବା ପାଇଁ ବନ୍ଦୋବସ୍ତ କରୁଥାନ୍ତି । ଏଥିମଧ୍ୟରୁ ଦୁଇଟି ବ୍ୟାରେକ୍ ମଧ ଠିକ୍ ହୋଇଗଲା ଏବଂ ସିପାହୀମାନେ ଆସି ନୂଆବାରେକ୍‌ରେ ରହିବାକୁ ଆରମ୍ଭ କଲେ । ଆଗରୁ ଅଫିସରମାନଙ୍କ ପାଇଁ ହୋଇଥିବା ଗୃହରେ ଅତିରିକ୍ତ ଦୁର୍ଗପତି ଏବଂ କେତେଜଣ ସହାୟକ ଦୁର୍ଗପତିମାନେ ପରିବାର ସହ ସେଠାରେ ରହୁଥାନ୍ତି । କିଛି ଦିନ ମଧ୍ୟରେ ବାହିନୀର ନୂଆ କ୍ୟାମ୍ପସ୍‌ର ଉନ୍ନତି ଘଟିଲା ଏବଂ ଦୁର୍ଗପତିଙ୍କ ସରକାରୀ ଅଫିସ ଭଡ଼ା ଘରୁ ଆସି ନୂଆ ଅଫିସରେ କାର୍ଯ୍ୟ ଆରମ୍ଭ ହେଲା ।

ପୁଲିସ୍ ଆନ୍ଦୋଳନରେ ଏଇ ବାହିନୀ ବିଶେଷଭାବେ ବିଶୃଙ୍ଖଳିତ ହୋଇଥିଲେ ବୋଲି ସମସ୍ତଙ୍କର ଦୃଷ୍ଟି ଏଇ ବାଟେଲିୟାନ ଉପରେ ଥାଏ ମାତ୍ର କେତେଦିନ ମଧ୍ୟରେ ଏହାର ଏକ ପରିବର୍ତ୍ତନ ଘଟିଲା । ଆଇ.ଜି.ଶ୍ରୀ ପାଢ଼ୀ ଗୃହ ବିଭାଗ ସଚିବ ଶ୍ରୀ ମହାପାତ୍ର ଏବଂ ଅନ୍ୟମାନେ ଏଇ ବାହିନୀର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ମୁଁ ଏଠାରେ ଦୁର୍ଗପତି ଥିଲା ସମୟରେ ଦେଶର ରାଜନୀତି କ୍ଷେତ୍ରରେ ହଟଚମଟ ଚାଲିଥାଏ । ଜରୁରୀ ଅବସ୍ଥା ପରେ ପରେ କଂଗ୍ରେସର ଶୋଚନୀୟ ପରାଜୟ ଘଟିଲା ଏବଂ ଭାରତର ପ୍ରଧାନମନ୍ତ୍ରୀ ଭାବେ ମୋରାର୍ଜୀ ଦେଶାଇ ଦାୟିତ୍ୱ ନେଲେ । ଓଡ଼ିଶାରେ ମଧ୍ୟ କଂଗ୍ରେସ ଗଲାପରେ ଜନତା ନେତା ନୀଳମଣୀ ରାଉତରାୟ ମୁଖ୍ୟମନ୍ତ୍ରୀ ହେଲେ । କେନ୍ଦ୍ରରୁ କଂଗ୍ରେସ ସରକାର ଗଲାପରେ, ଇନ୍ଦିରାଗାନ୍ଧିଙ୍କୁ ଜରୁରୀକାଳୀନ ଅବସ୍ଥା ସମୟର କେତେକ ଘଟଣାରେ ଦାୟୀ କରି ତାଙ୍କୁ ଗିରଫ କରାଗଲା । ସେ ବେଲରେ ଯିବାକୁ ମନାକଲାରୁ, ତାଙ୍କୁ ଜେଲ୍‌କୁ ପଠାଗଲା । ଏ ସମସ୍ତ ଘଟଣା ପ୍ରତ୍ୟେକ ଦିନ ଜାତୀୟ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଉଥାଏ । ସଞ୍ଜୟ ଗାନ୍ଧି ମଧ୍ୟ, ତାଙ୍କ ବାହିନୀ ମାଧ୍ୟମରେ ଏପରି କାର୍ଯ୍ୟ କରୁଥାନ୍ତି, ଯାହାକି ସମ୍ବାଦ ପତ୍ରମାନଙ୍କର ପୃଷ୍ଠା ମଣ୍ଡନ କରୁଥାଏ । ଏଣେ ଜନତା ସରକାରଙ୍କ ଠାରୁ ଜନତା ଯାହା ଆଶା କରୁଥିଲା, ତାହା ଦିବା ସ୍ୱପ୍ନରେ ପରିଣତ ହେଲା । ଜରୁରୀ ଅବସ୍ଥାରେ ଯେପରି ଭାବେ ଅଫିସ ଠାରୁ ଆରମ୍ଭ କରି, ରେଳ ଚଳାଚଳ ସବୁ ଠିକ୍ ସମୟରେ ହେଉଥିଲା, ତାହା ଆଉ ଦେଖିବାକୁ ପାଇଲେନି । ଜନତା ଦଳ ମଧ୍ୟରେ କନ୍ଦଳ ସୃଷ୍ଟି ହେବା ଦ୍ୱାରା ତାର ପ୍ରତିକ୍ରିୟା ସାଧାରଣ ଜନତା ଉପରେ ପଡ଼ିଲା । ମୋରାର୍ଜୀ ଦେଶାଇଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ହଟାଇବା ପାଇଁ ଚରଣସିଂହ ଲାଗି ପଡ଼ିଲେ ଏବଂ ତାଙ୍କୁ ମଧ୍ୟ କେତେକ ଜନତା ଦଳର ଏମ୍.ପି ସହଯୋଗ ଦେଲେ । କଂଗ୍ରେସ ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ । ତେଣୁ କଂଗ୍ରେସ ଭିତରେ ଭିତରେ ଚରଣସିଂହଙ୍କୁ ପ୍ରଧାନମନ୍ତ୍ରୀ ପଦ ପାଇଁ ସାହାଯ୍ୟ କରିବ ବୋଲି ପ୍ରତିଶୃତି ଦେଲା । ଏସବୁ ରାଜନୈତିକ କାର୍ଯ୍ୟ ସଞ୍ଜୟଗାନ୍ଧିଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହେଉଥାଏ । ଏଣେ କଂଗ୍ରେସ, ଜନତା ସରକାରଙ୍କ କାର୍ଯ୍ୟକଳାପକୁ ସମାଲୋଚନା କରୁଥାନ୍ତି । ଜନତା ସରକାରର ମାତ୍ର ତିନିବର୍ଷ ନ ପୂରୁଣୁ, ଲୋକମାନେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ ଏବଂ ଇନ୍ଦିରା ଗାନ୍ଧିଙ୍କ ସରକାର ସହିତ ତୁଳନା କରିବାକୁ ଲାଗିଲେ । ଏଥିମଧ୍ୟରେ କଂଗ୍ରେସ ସହଯୋଗରେ କେନ୍ଦ୍ରରେ ଚରଣ ସିଂହ ମନ୍ତ୍ରୀମଣ୍ଡଳ ଗଢ଼ିଲେ । ମୋରାର୍ଜୀ ଦେଶାଇ, ରାଜନୀତିରୁ ସବୁଦିନ ପାଇଁ ବିଦାୟ ନେଲେ । କେନ୍ଦ୍ରରେ ମନ୍ତ୍ରୀମଣ୍ଡଳ ବଦଳିଲା ପରେ ଓଡ଼ିଶାରେ ମଧ୍ୟ ତାର ରାଜନୈତିକ ପ୍ରଭାବ ପଡ଼ିଥିଲା । ମାତ୍ର ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ତାକୁ ସମ୍ଭାଳି ନେଇଥିଲେ । ଥରେ ଚରଣ ସିଂହ, କଂଗ୍ରେସ ସାହାଯ୍ୟରେ ମନ୍ତ୍ରୀମଣ୍ଡଳର ଦାୟିତ୍ୱ ନେଲାପରେ, ରାଜ୍ୟରେ କଂଗ୍ରେସ ଦଳ ତାଙ୍କର ପ୍ରଭାବ ବିସ୍ତାର କରିବାକୁ ଆରମ୍ଭ କଲା ।

ମୁଁ ସପ୍ତମ ବାହିନୀର ଦୁର୍ଗପତି ଥିଲା ବେଳେ, ପ୍ରଫୁଲ୍ଲଚନ୍ଦ୍ର ମିଶ୍ର ଭୁବନେଶ୍ୱର ଏସ୍. ପି. ଥା'ନ୍ତି । ପ୍ରଫୁଲ୍ଲ ମିଶ୍ର ଭୁବନେଶ୍ୱରର ସଂଭ୍ରାନ୍ତ ସମାଜ ସଙ୍ଗେ ଅତ୍ୟନ୍ତ ଭଲ ଭାବେ

ଜଣାଶୁଣା । ମୋତେ ସେତେବେଳେ ଘରମିଳି ନଥିବା ଯୋଗୁଁ ମୁଁ ସହିଦ୍‌ନଗର, ମୋ ଶ୍ୱଶୁରଙ୍କ ଘରେ ରହୁଥାଏ । ପିଲାମାନେ ପାଠପଢ଼ା ଯୋଗୁ ରାଉରକେଲା ଅତିରିକ୍ତ ଏସ୍.ପିଙ୍କ କ୍ୱାଟରରେ ଥା'ନ୍ତି । ପ୍ରତ୍ୟେକ ଦିନ କାମ ସରିଲା ପରେ ଶ୍ରୀ ମିଶ୍ର ମୋତେ ସାଙ୍ଗରେ ନେଇ ଯାଆନ୍ତି ଏବଂ ଫେରିଲା ବେଳକୁ ମଧ୍ୟ ନିଜେ ତାଙ୍କ ଗାଡ଼ିରେ ଆଣି ଘରେ ଛାଡ଼ି ଦେଇ ଯାଆନ୍ତି । ତାଙ୍କ ଯୋଗୁଁ ମୁଁ ଭୁବନେଶ୍ୱରରେ ମୁଖ୍ୟତଃ କେତେକ ସମ୍ଭ୍ରାନ୍ତ ପରିବାର ସହିତ ପରିଚୟ ହେବାରୁ ସୁଯୋଗ ମଧ୍ୟ ପାଇଲି । ପ୍ରତ୍ୟେକ ଦିନ ସନ୍ଧ୍ୟାପରେ ବନ୍ଧୁ ରାଜେନ୍ଦ୍ର ପଟ୍ଟନାୟକଙ୍କ ଘରେ ଏକାଠି ହେଉ । ରାଜେନ୍ଦ୍ର ସେତେବେଳେ ବିତ୍ତ ବିଭାଗ ମନ୍ତ୍ରୀ ରାମପ୍ରସାଦ ମିଶ୍ରଙ୍କ ସ୍ୱକୀୟ କର୍ମ ସଚିବ । ସେ ଅତ୍ୟନ୍ତ ମେଳାପୀ ଏବଂ ସାହାଯ୍ୟକାରୀ ବ୍ୟକ୍ତି । ଭୁବନେଶ୍ୱର ଏସ୍.ପି. ଭାବେ ଶ୍ରୀ ମିଶ୍ର ଦୁଇ ବର୍ଷରୁ ଅଧିକା ରହିଥିବାଯୋଗୁଁ ସେ ଅନ୍ୟଯାଗାକୁ ବଦଳି ହୋଇଯିବା ପାଇଁ ଚାହୁଁଥାନ୍ତି ଏବଂ ତାଙ୍କ ସ୍ଥାନରେ ମୋତେ ସେଠାରେ ଏସ.ପି. ହେବା ପାଇଁ ସେ ମୋତେ କହିଥିଲେ । ୧୯୭୯ ମସିହା ଶେଷ ଆଡ଼କୁ ଦେଶର ରାଜନୈତିକ ବାତାଚରଣରେ ଏକ ବିରାଟ ପରିବର୍ତ୍ତନର ଆଭାସ ମିଳିବାକୁ ଲାଗିଲା । ଚରଣ ସିଂହ, କଂଗ୍ରେସ ଦଳର ସାହାଯ୍ୟରେ ପ୍ରଧାନମନ୍ତ୍ରୀ ହେଲାପରେ, କଂଗ୍ରେସ ଦୟା ଉପରେ ନିର୍ଭର କରି ନିଜ ସ୍ଥାନ ରକ୍ଷା କରିବାରେ ବ୍ୟସ୍ତ ଥିଲେ । ସଞ୍ଜୟ ଗାନ୍ଧି ଏହାର ପୂର୍ଣ୍ଣ ସୁଯୋଗ ନେଇ ଠିକ୍ ସମୟରେ, କଂଗ୍ରେସ ତାର ସମର୍ଥନ ଚରଣ ସିଂହଙ୍କ ଠାରୁ ପ୍ରତ୍ୟାହାର କରିନେଲା । କଂଗ୍ରେସ ତାର ସମର୍ଥନ ପ୍ରତ୍ୟାହାର କରିନେଲା ପରେ, ଦେଶରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା ଏବଂ ନୂତନବର୍ଷର ପ୍ରାରମ୍ଭକୁ ନିର୍ବାଚନ ହେବାପାଇଁ ପ୍ରସ୍ତୁତିପର୍ବ ଆରମ୍ଭ ହୋଇଗଲା । ସାରାଦେଶ କଂଗ୍ରେସ ସରକାରକୁ ଜରୁରୀକାଳୀନ ପରିସ୍ଥିତି ପରେ, ପ୍ରତ୍ୟାଖ୍ୟାନ କରି ଜନତା ଦଳକୁ ବିପୁଳ ସଂଖ୍ୟାରେ ସମର୍ଥନ ଜଣାଇଥିଲେ ମାତ୍ର ତିନିବର୍ଷ ମଧ୍ୟରେ ସେଇ ଜନତା, ଜନତା ଦଳ ପ୍ରତି ବିମୁଖ ହୋଇ ଉଠିଲେ । ଦେଶରେ କଂଗ୍ରେସ ଛଡ଼ା ଅନ୍ୟ ରାଜନୈତିକ ଦଳ, ଶାସନ କରି ପାରିବ ନାହିଁ ବୋଲି ସମ୍ଭାବନା ସୃଷ୍ଟି ହେଲା । ୧୯୮୦ ମସିହା ଜାନୁଆରୀ ମାସରେ ଲୋକସଭା ପାଇଁ ଯେଉଁ ନିର୍ବାଚନ ହେଲା, ସେଥିରେ କଂଗ୍ରେସ ଇନ୍ଦିରାଗାନ୍ଧିଙ୍କ ନେତୃତ୍ୱରେ ବିପୁଳ ସମର୍ଥନ ପାଇ ନିର୍ବାଚିତ ହୋଇ ଆସି, କେନ୍ଦ୍ରରେ ଶାସନ ଭାର ଗ୍ରହଣ କଲା ପରେ ରାଜ୍ୟମାନଙ୍କରେ ମୁଖତଃ ଯେଉଁ ସବୁ ରାଜ୍ୟରେ ଜନତା ଦଳ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ, ତାର ପ୍ରତିକ୍ରିୟା ପଡ଼ିଥିଲା ଏବଂ ରାଜନୈତିକ ଅସ୍ଥିରତା ଦେଖା ଦେଇଥିଲା ।

ଓଡ଼ିଶାରେ, ନୀଳମଣି ରାଉତରାଏ ମନ୍ତ୍ରୀମଣ୍ଡଳ ଟଳମଳ ହେବାକୁ ଲାଗିଲା । ଜନତା ସରକାର ଜରୁରୀ ପରିସ୍ଥିତି ପରେ କେନ୍ଦ୍ରରେ ମନ୍ତ୍ରୀମଣ୍ଡଳ ଗଠନ କଲାପରେ କଂଗ୍ରେସ ଶାସିତ ରାଜ୍ୟମାନଙ୍କରୁ ସରକାର ଭାଙ୍ଗି ଦେଇ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ କରାଇଥିଲେ । ଏବେ ପୁଣି କଂଗ୍ରେସ କେନ୍ଦ୍ରକୁ ଆସିଲା ପରେ ଜନତା ଶାସିତ, ରାଜ୍ୟ ମାନଙ୍କରେ ସେଇ ଆଶଙ୍କା ଦେଖା ଦେଲା । ଭୁବନେଶ୍ୱର ରାଜଧାନୀ ସହର ହିସାବରେ ଏଠାକାର ଏସ୍.ପି ଶ୍ରୀ ମିଶ୍ର ପୁରା

ଜନତା ସରକାର ଅମଳରେ ଥିବା ଯୋଗୁଁ ସେ ଜନତାଦଳ ସମର୍ଥିତ ଅଫିସର ଭାବେ ପରିଚିତ ହେଉଥିଲେ । ତେଣୁ ସେ ଭୁବନେଶ୍ୱରରୁ ଯିବା ପୂର୍ବରୁ ମୋତେ ନେଇ ମୁଖ୍ୟମନ୍ତ୍ରୀ ନିଳମଣୀ ରାଉତରାଏଙ୍କ ସଙ୍ଗେ ପରିଚୟ କରାଇଦେଇଥିଲେ । ଅବଶ୍ୟ ତାଙ୍କ ସଙ୍ଗେ ମୋର ପରିଚୟ ଛାତ୍ର ଆନ୍ଦୋଳନ ସମୟରୁ ଥିଲେ ମଧ ତାହା ସମୟର ଗତି ଭିତରେ ବିସ୍ମୃତ ହୋଇଯାଇ ଥିଲା । ପ୍ରଫୁଲ୍ଲ ବାବୁ ମୋତେ ଏସ୍.ପି. କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କୁ କହିଲାପରେ, ମୋର ଭୁବନେଶ୍ୱର ଜିଲ୍ଲାକୁ ଏସ.ପି. ଭାବେ ବଦଳି ହେବା ପ୍ରାୟ ସ୍ଥିର ହୋଇ ଯାଇଥିଲା । ମାତ୍ର ମଝିରେ ଜନତା ଦଳ ଡି. ଆଇ.ଜି. ଡି.ଏନ୍. ସିଂହ, ମୋ ପୋଷ୍ଟିଂକୁ ବିରୋଧ କରିଥିଲେ । ସେ ମୁଖ୍ୟମନ୍ତ୍ରୀଙ୍କୁ କହିଲେ ଯେ ମୁଁ, ନନ୍ଦିନୀ ଦେବୀ ଏବଂ ନରସିଂହ ସ୍ୱାଇଁଙ୍କ ଲୋକ । ମାତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ରାଉତରାଏ ଯେ କି ପୁଲିସ୍ ବିଭାଗକୁ ଓତଃପ୍ରୋତଃ ଭାବେ ଜାଣିଥିଲେ ସେ ତାଙ୍କ କଥାରେ କାନ ନ ଦେଇ, ମୋର ପୋଷ୍ଟିଂ ଏସ୍.ପି ଭାବେ ଭୁବନେଶ୍ୱରକୁ କଲେ । ମୁଁ ଭୁବନେଶ୍ୱର ଏସ.ପି. ଭାବେ ୧୯୮୦ ମସିହା ଫେବୃଆରୀ ମାସ ଚାରି ତାରିଖରେ ଯୋଗ ଦେଲି । ମିଃ ମିଶ୍ର ଭୁବନେଶ୍ୱରରୁ ସମ୍ବଲପୁର ବଦଳି ହୋଇ ଏସ.ପି. ଭିଜିଲାନ୍ସ ଭାବେ ଜଏନ୍ କଲେ । ସେଇ ଫେବୃୟାରୀ ମାସ ପ୍ରଥମ ସପ୍ତାହରେ ବିଧାନସଭା ଆରମ୍ଭ ହୋଇଥାଏ । ପ୍ରଫୁଲ୍ଲବାବୁ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ମୋତେ ନେଇ ବିଧାନସଭା ସମୟରେ ପୁଲିସ ବନ୍ଦୋବସ୍ତ କିପରି ହୁଏ ଏବଂ ଅନ୍ୟାନ୍ୟ ବିଷୟରେ ବୁଝାଇ ଦେଇଥିଲେ ।

## ଏସ୍.ପି. ଭୁବନେଶ୍ୱର

ଭୁବନେଶ୍ୱର, ପୁରୀ ଜିଲ୍ଲାରୁ ଅଲଗା ହୋଇ, ସ୍ୱତନ୍ତ୍ର ପୁଲିସ୍ ଜିଲ୍ଲା ଭାବେ ୧୯୭୫ ମସିହାରୁ କାର୍ଯ୍ୟ ଆରମ୍ଭ କଲା । ପୁରୀ ଜିଲ୍ଲାରୁ ଅଲଗା ହୋଇ, ସ୍ୱତନ୍ତ୍ର ପୁଲିସ ଜିଲ୍ଲା ଭାବେ କାର୍ଯ୍ୟ କଲାବେଳେ ଏହାର ପୁଲିସ୍ ସଂଖ୍ୟା ଥିଲା ଜଣେ ଏସ୍.ପି., ଜଣେ ଡି.ଏସ୍. ପି, ପାଞ୍ଚ ଜଣ ଇନ୍‌ସପେକ୍ଟର, ୬୦ ଜଣ ସବ୍ ଇନ୍‌ସପେକ୍ଟର, ୨୯ ଜଣ ଏ.ଏସ୍ .ଆଇ ଏ.ପି. ଆର ଏବଂ ଓ.ଆର୍ ଆର୍.ହାବିଲଦାର ୬୨ । କନେଷ୍ଟବଳ, ଏ.ପି.ଆର ୨୭୨, ଓ.ଆର କନେଷ୍ଟବଳ ୩୫୭ । ପୁଲିସ୍ ଜିଲ୍ଲାରେ ଥାନା ସଂଖ୍ୟା ଥିଲା ମାତ୍ର ସାତଗୋଟି । ଏଇ ସାତଗୋଟି ଥାନାରୁ, ବାଲିପାଟଣା, ବାଲିଅନ୍ତା, ଚନ୍ଦକା ମଫସଲ ପୁଲିସ୍ ଷ୍ଟେସନ ଥିଲା ବେଳେ କ୍ୟାପିଟାଲ, ସହିଦନଗର,ପୁରୁଣା ଭୁବନେଶ୍ୱର ଏବଂ ଜଟଣୀ, ଟାଉନ୍ ପୁଲିସ୍ ଷ୍ଟେସନ ଭାବେ କାମ କରୁଥିଲା । ମୁଁ ୧୯୮୦ ମସିହାରେ, ଜିଲ୍ଲାର ଏସ୍.ପି. ଭାବେ ଜଏନ୍ କଲାବେଳେ ମଧ ଜିଲ୍ଲାର ପୁଲିସ୍ ସଂଖ୍ୟା ସେତିକି ଥିଲା ଯଦିଓ ଏଇ ୬ ବର୍ଷ ମଧରେ ପୁଲିସ୍ ଜିଲ୍ଲାର ଲୋକ ସଂଖ୍ୟା ପ୍ରାୟ ୩ ଗୁଣ ବଢ଼ିଯାଇଥିଲା । ସେତେବେଳକୁ ଭୁବନେଶ୍ୱର ମୁନିସ୍‌ପାଲଟିର ଲୋକସଂଖ୍ୟା ୨,୧୯,୪୧୯(୧୯୮୧ ମସିହା ଜନଗଣନା ଅନୁସାରେ) ଥିଲା ବେଳେ, ପ୍ରତ୍ୟେକ ଦିନ ସହରର ଫ୍ଲୋଟିଂ ଲୋକସଂଖ୍ୟା ୩୦,୦୦୦ ହଜାର ପାଖାପାଖି ଥିଲା । ଲୋକ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଗାଡ଼ି ମଟର ସଂଖ୍ୟା ମଧ ସେଇ ପରିମାଣରେ ବଢ଼ିଥିଲା । ୧୯୮୦ ମସିହାରେ ଭୁବନେଶ୍ୱର ଆର.ଟି ଓ ମୁନିସ୍‌ପାଲଟିଙ୍କ ରେଜିଷ୍ଟ୍ରେସନ ନମ୍ବର ଅନୁସାରେ

ଭୁବନେଶ୍ୱର ସହରରେ୧୨୪୯ କାର୍, ୧୩୯ ଟି ଟାକ୍ସି, ୧୯୫ ଟି କଂଟ୍ରାକ୍ଟ କ୍ୟାରେଜ, ୬୩୩ ମାଲ ବୁହା ଗାଡ଼ି, ୯୫୧ ଟି ଷ୍ଟେସନ ଓ୍ୱାଗନ, ୬୯୬୪ଟି ଦୁଇ ଚକିଆ ଗାଡ଼ି, ୧୭୦ ଟ୍ରେକର, ୩୦,୦୦୦ ହଜାର ସାଇକେଲ, ୨୫୦୦ ରିକ୍ସା, ୬୦୦ ଶଗଡ଼ ଏବଂ ୧୦୧ ଟି ଠେଲାଗାଡ଼ି ସହର ମଧ୍ୟରେ ଯାତାୟତ କରୁଥିଲା । ଏ ସମସ୍ତ ଗାଡ଼ିଗୁଡ଼ିକୁ ଛାଡ଼ିଦେଲେ ସହର ମଧ ଦେଇ ଯାଇଥିବା ପାଞ୍ଚ ନମ୍ବର ଜାତୀୟ ରାଜ ପଥରେ ଯାନ ବାହନ ଯାତାୟତର ସଂଖ୍ୟା ମଧ ପର୍ଯ୍ୟାପ୍ତ ପରିମାଣରେ ବଢ଼ିଯାଇଥିଲା । ସହରର ଅପରାଧ ସହ ସହର ତଳି ଅଞ୍ଚଳରେ ମଧ ଅପରାଧ ପରିମାଣ ମଧ ବଢ଼ିଥିଲା । ୧୯୮୦ ମସିହାରେ ଭୁବନେଶ୍ୱର ସ୍ୱତନ୍ତ୍ର ପୁଲିସ୍ ଜିଲ୍ଲାର ସାତଗୋଟି ପୁଲିସ୍ ଷ୍ଟେସନରେ ବାର୍ଷିକ ଅପରାଧ ପଞ୍ଜିକରଣର ସଂଖ୍ୟା ଥିଲା ୨୬୩୭ । ତା ପୂର୍ବ ବର୍ଷ ଅର୍ଥାତ୍ ୧୯୭୯ ମସିହାରେ, ଜିଲ୍ଲାରେ୨୪୦୮ ଗୋଟି ଅପରାଧ ପଞ୍ଜିକରଣ ହୋଇଥିଲା । ପ୍ରତ୍ୟେକ ବର୍ଷ ଅପରାଧ ବଢୁଥିଲେ ମଧ ସେଇପରିମାଣରେ ପୁଲିସ୍ ଥାନା କିମ୍ୱା ଜିଲ୍ଲା ପୁଲିସର ଅଫିସର, କନେଷ୍ଟବଳ ସଂଖ୍ୟା ବଢ଼ିନଥିଲା ୧୯୮୧ ମସିହାରେ, ଭୁବନେଶ୍ୱର ସହରରେ ୨୭୪ ଥର ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଥିଲା ବେଳେ, ଏଇ ଆଇନ ଶୃଙ୍ଖଳା ପରିସ୍ଥିତିକୁ ସମ୍ଭାଳିବା ପାଇଁ ବହୁ ସଂଖ୍ୟାରେ କନେଷ୍ଟବଳ, ଅଫିସର ଏବଂ ଓ.ଏସ୍.ପି. ପରସନେଲେ ମୃତୟନ ହୋଇଥିଲେ ।

ଏସ୍.ପିଙ୍କର ସେତେବେଳେ ନିଜସ୍ୱ ଅଫିସ୍ ଗୃହ ନଥିବା ଯୋଗୁଁ, ଏସ୍.ପି. ସଚିବାଳୟ ପଛ ପଟେ ଥିବା ଅବିବାହିତ ଅଧିକାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ବ୍ୟାରେକରେ ଅଫିସ୍ କରୁଥାନ୍ତି । ଜିଲ୍ଲାର କନେଷ୍ଟବଳମାନଙ୍କ ପାଇଁ ଯଥେଷ୍ଟ ପରିମାଣରେ ଘର ନଥିବା ଯୋଗୁଁ କନେଷ୍ଟବଳମାନେ ଝୁମ୍ପୁଡ଼ି ବାସିନ୍ଦାମାନଙ୍କସହ କେତେ ସ୍ଥାନରେ ରହୁଥାନ୍ତି । ସେଇପରି ଏ.ପି.ଆର୍‌ମାନଙ୍କ ପାଇଁ ରିଜର୍ଭ ଲାଇନ୍‌ରେ ବ୍ୟାରେକ୍ ନଥିଲା । ଗୋଟିଏ ବ୍ୟାରେକ୍‌ରେ ଚାଳିଶ ଜଣଙ୍କରୁ ପଚାଶ ରହିପାରୁନଥିଲେ । ତେଣୁ ଜିଲ୍ଲାରେ ନାନା ପ୍ରକାର ଅସୁବିଧା ଥିଲା । ସେହି ଅସୁବିଧା ଭିତର ଦେଇ ମୁଁ ଭୁବନେଶ୍ୱର ଜିଲ୍ଲାରେ କାମ ଆରମ୍ଭ କରିଥିଲି ।

ମୋର ଜଏନ୍ କରିବାର ମାତ୍ର ସାତଦିନ ପରେ ଫେବୃଆରୀ ୧୧ ତାରିଖରୁ ବିଧାନସଭାର ବଜେଟ୍ ଶେସନ ଆରମ୍ଭ ହେବାକୁ ଥାଏ । ସେଇଦିନକୁ କଂଗ୍ରେସ ଦଳ, ଆସେମ୍ବ୍ଲି ଘେରାଉ କରିବା ପାଇଁ ଡାକରା ଦେଇଥାନ୍ତି ଏବଂ ସାରା ଓଡ଼ିଶାରୁ ତାଙ୍କ ଦଳର କର୍ମୀମାନଙ୍କୁ ଭୁବନେଶ୍ୱର ଆସି ଘେରାଉରେ ଭାଗ ନେବାକୁ ନିର୍ଦ୍ଦେଶ ଦିଆଯାଇଥାଏ । ବିଧାନସଭା ଗୃହ ଚାରିପଟେ ପୁଲିସ୍ ବନ୍ଦୋବସ୍ତ, ସାଧାରଣତଃ ଆସେମ୍ବ୍ଲି ସମୟରେ ହୋଇଥିଲେ ମଧ, ଫେବୃୟାରୀ ଏଗାର ତାରିଖରେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଲକ୍ଷ୍ୟ କରି ସ୍ୱତନ୍ତ୍ର ବ୍ୟବସ୍ଥା କରାଗଲା । ଆଇ.ଜି, ପାଢ଼ୀଙ୍କୁ ପୁଲିସ୍ ବନ୍ଦୋବସ୍ତ ବିଷୟରେ ସୂଚନା ଦେଇଥିଲି । ଏଗାର ତାରିଖ ଦିନ ବିଧାନ ସଭା ବଜେଟ୍ ଅଧିବେସନ ଆରମ୍ଭ ହେଲା । ଏଗାରଟା ବେଳକୁ ପ୍ରାୟ ୫୦୦୦ କଂଗ୍ରେସ କର୍ମୀ ବିଭିନ୍ନ ଦିଗରୁ ଶୋଭାଯାତ୍ରା କରି, ୧୪୪ ଧାରା ଭାଙ୍ଗିବାକୁ ଆଗେଇ ଆସିଲେ । ସେମାନଙ୍କ ମଧ୍ୟରେ କଂଗ୍ରେସ ସାଂସଦ ବିଧାନସଭା ସଦସ୍ୟମାନେ ଥା'ନ୍ତି ।

ପି.ଏମ୍. ଜି ଛକ ପାଖେ ଶୋଭାଯାତ୍ରାକାରୀମାନଙ୍କୁ ଅଟକାଇ ୧୪୪ଧାରା ଭାଙ୍ଗିଥିବା ଯୋଗୁଁ ୧୫୧ ଧାରାରେ ଗିରଫ କରି ସ୍ଥାନାନ୍ତରିତ କରାଗଲା । ମାତ୍ର ଅକ୍ଷୟ ପଣ୍ଡା, ଗୁରୁପଦନନ୍ଦ, ଏମାନେ ଏମ୍.ଏଲ୍.ଏ କଲୋନୀ ଆଡୁ ବିଧାନ ସଭାର ମୁଖ୍ୟ ଫାଟକ ଉପରେ ଚଢ଼ି,ବିଧାନ ସଭାପରିସର ମଧ୍ୟକୁ ପ୍ରବେଶ କରିବାକୁ ଚେଷ୍ଟା କଲାବେଳେ, ମୁଁ ସେଠାରେ ପହଞ୍ଚି ସେମାନଙ୍କୁ ସେଠାରୁ ଗିରଫ କରିଥିଲି । ସାଂବାଦିକମାନେ ଖବର ସଂଗ୍ରହ ପାଇଁ ବୁଲୁଥାନ୍ତି ଏବଂ ଘେରାଉ ନାଟକ ଦେଖୁଥାନ୍ତି । ଘେରାଉ ନାଟକର ଅବସାନ ପ୍ରାୟ ଏକ ଘଣ୍ଟା ପରେ ଘଟିଥିଲା । ଯଦିଓ ୫୦୦୦ ସଂଖ୍ୟକ କଂଗ୍ରେସ କର୍ମୀ ଏଇ ଆନ୍ଦୋଳନରେ ଯୋଗ ଦେଇଥିଲେ, ମାତ୍ର କୌଣସି ପ୍ରକାର ଅପ୍ରିତିକର ପରିସ୍ଥିତି ଘଟିନଥିଲା । ୫୦୦ ଶହରୁ ଉର୍ଦ୍ଧ୍ୱ ଆନ୍ଦୋଳନକାରୀ ଗିରଫ ହୋଇଥିଲେ । ସନ୍ଧ୍ୟାବେଳକୁ ଆଞ୍ଚଳିକ ସଂବାଦରେ ୫୦୦ ଶହରୁ ଉର୍ଦ୍ଧ୍ୱ କଂଗ୍ରେସ କର୍ମୀ ଗିରଫ ହୋଇଥିବା ଖବର ପରିବେଷଣ ହେଲା ପରେ, ଲୋକଦଳ ଏମ୍.ପି. ବିଜୁବାବୁ, ମୋତେ ଟେଲିଫୋନ୍ କରି ଏକଥା ପଚାରିଲେ । ଏତେ ସଂଖ୍ୟକ କର୍ମୀ ଗିରଫ ହେବା ଖବର ମୁଁ କାହିଁକି ପ୍ରେସକୁ ଦେଲି ବୋଲି, ମୋ ଉପରେ ବିରକ୍ତି ପ୍ରକାଶ କଲେ । ଆକାଶବାଣୀର ନିଜ ସାଂବାଦିକ ଘଟଣା ସ୍ଥଳରେ ଉପସ୍ଥିତ ଥିଲେ ଏବଂ ସେ ଏଇ ସଂବାଦ ଦେଇଥିବା କହିଥିଲେ ମଧ୍ୟ ସେ ସନ୍ତୁଷ୍ଟ ହୋଇ ନ ଥିଲେ । ଆଇନ୍ ଶୃଙ୍ଖଳା ପରିସ୍ଥିତି ସରିବା ପରେ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କଲି ଏବଂ ମୁଖ୍ୟମନ୍ତ୍ରୀ ପୁଲିସ୍ ବନ୍ଦୋବସ୍ତ ଏବଂ ଆଇନ୍ ଶୃଙ୍ଖଳା ପରିସ୍ଥିତି ପରିଚାଳନା ସୁନ୍ଦରଭାବେ କରିଥିବାରୁ, ସନ୍ତୋଷ ପ୍ରକାଶ କରିଥିଲେ । ବିଧାନସଭା ଘେରାଉରେ କୌଣସି ପ୍ରକାର ଅପ୍ରତିକର ଘଟଣା ନଘଟି ସରିଯାଇଥିବା ଯୋଗୁଁ ଉଭୟ କଂଗ୍ରେସ, ଜନତା ଦଳ ଏବଂ ପ୍ରେସ୍ ମଧ୍ୟ ସନ୍ତୋଷ ପ୍ରକାଶ କରିଥିଲେ । ତାପର ଦିନ ମୁଁ ବିଧାନ ସଭା ସମ୍ମୁଖ ପୁଲିସ୍ କ୍ୟାମ୍ପ ଅଫିସରେ ବସିଥିଲା ବେଳେ ହଠାତ୍ ଖବର ଆସିପହଞ୍ଚିଲା ମାଷ୍ଟର କାଣ୍ଟିନ ଛକ ପାଖେ ଗୋଟେ ଘରୋଇ ବସ୍, ରିକ୍ସା ଏବଂ ସାଇକେଲ ଚଢ଼ାଳୀଙ୍କୁ ଧକ୍କା ଦେବା ଫଳରେ, ରାସ୍ତା ଉପରେ ଦୁଇଜଣ ମରି ପଡ଼ିଥିଲା ବେଳେ, ଆଉ ଦୁଇଜଣ ରାଜଧାନୀ ହସ୍‌ପିଟାଲକୁ ଶୋଚନୀୟ ଅବସ୍ଥାରେ ଯାଇଛନ୍ତି । ଏ ଖବର ପାଇଲା ପରେ ମୁଁ ଡି.ଏସ୍.ପି ରାଜୁ ଦାସଙ୍କୁ, ଘଟଣାସ୍ଥଳକୁ ପଠାଇଲି । ପ୍ରାୟ ୧୫ ମିନିଟ୍ ପର୍ଯ୍ୟନ୍ତ କିଛି ଖବର ଆସିଲାନି । ବହୁତ ଲୋକ ଘଟଣା ସ୍ଥଳରେ ଜମିଛନ୍ତି ବୋଲି ଖବର ମିଳିଲା । ମୁଁ ପୁଲିସ୍ କଂଟ୍ରୋଲ ରୁମ୍‌ରୁ ଜଣେ ସବଇନସ୍‌ପେକ୍ଟରଙ୍କୁ ସାଙ୍ଗରେ ଧରି ଘଟଣା ସ୍ଥଳକୁ ବାହାରିଲି । କନଭେଣ୍ଟ ଛକପାଖେ ପହଞ୍ଚି ଦେଖିଲି, ମାଷ୍ଟର କାଣ୍ଟିନ୍ ଛକ ତଳକୁ ଭଞ୍ଜପ୍ରଭା ସାମ୍ନା ରାସ୍ତା ଉପରେ ଗୋଟେ ପ୍ରାଇଭେଟ୍ ବସ୍ ନିଆଁରେ ଜଳୁଛି, ଗୋଟେ ପ୍ଲାଟୁନ୍ ଫୋର୍ସ ପାଖରେ ଠିଆ ହୋଇଛନ୍ତି ଏବଂ ଡି.ଏସ୍,ପି ଗୋଟେ କ୍ୟାବିନ୍ ନିକଟରେ ଠିଆ ହୋଇଥାନ୍ତି । ଅଳ୍ପଦୂରରେ ଗୋଟେ ଫାୟାର୍ ବ୍ରିଗେଡ୍ ଗାଡ଼ି ଅଚଳ ଜଖମ୍ ହୋଇ ରାସ୍ତା ଉପରେ ଠିଆ ହୋଇଥାଏ । ଉତ୍ୟକ୍ତ ଜନତା ନିଆଁ ଲିଭାଇବା ପାଇଁ ଦମ୍‌କଳକୁ ଛାଡୁନଥାନ୍ତି । ମୁଁ ଘଟଣା ସ୍ଥଳରେ ପହଞ୍ଚିଲା ପରେ, ଅବସ୍ଥାକୁ ସମ୍ଭାଳିବା ପାଇଁ ଠିଆ ହୋଇଥିବା ଲୋକମାନଙ୍କୁ ରାସ୍ତା ଉପରୁ ବାହାର କଲା ବେଳେ, ପାଖ ଗଳିରୁ ଭୀଷଣ

ଟେକାପଥର ବୃଷ୍ଟି ହେଲା । ଅଳ୍ପ ଦୂରରେ ମାଳିସାହି । ମାଳିସାହିରେ ବହୁତ ଅସାମାଜିକ ଲୋକ ରହୁଥାନ୍ତି । ଗଣ୍ଡଗୋଳର ସୁଯୋଗ ନେଇ ସେମାନେ ମଧ ମିଶିଗଲେ । ମାଜିଷ୍ଟ୍ରେଟ୍‌ଙ୍କୁ ଖୋଜିଲା ବେଳେ, ସେ ମଧ ସେ ସ୍ଥାନ ଛାଡ଼ି ଚାଲିଯାଇଥାନ୍ତି । ବାଧ ହୋଇ ବେଆଇନ୍ ଜନତାକୁ ଘଉଡ଼ାଇ ଦେବା ପାଇଁ କେତେ ରାଉଣ୍ଡ ଲୁହାବୁହା ଗ୍ୟାସ ପ୍ରୟୋଗ କରାଗଲା ମାତ୍ର ଟେକାପଥର ବୃଷ୍ଟି ନ କମିଲାରୁ, ପୁଲିସ୍ ବାଧ ହୋଇ ଲାଠି ଧରି ଗୋଡ଼ାଇବା ଆରମ୍ଭ କଲା ଏବଂ ଅଳ୍ପ ସମୟରେ ପରିସ୍ଥିତି ନରମାଲ ହୋଇଗଲା । ଅବସ୍ଥା ଶାନ୍ତହେଲାପରେ, ଭୁବନେଶ୍ୱର ଏସ୍.ଡ଼ି.ଓ କାନୁନ୍‌ଗୋ ବାବୁ ଆସି ପହଞ୍ଚିଲେ । ସେ କହିଲେ ଯେ ସେ ଉପସ୍ଥିତ ନଥିବା ଯୋଗୁଁ ଇଏଣ୍ଟ ରିପୋର୍ଟରେ ଦସ୍ତଖତ କରିବେନି । ଯାହା ହେଉ, ଭୁବନେଶ୍ୱର ଏ.ଡ଼ି.ଏମ୍ ବିଶୋଇ ବାବୁ, ପହଞ୍ଚି ସବୁକଥା ଠିକ୍ କଲେ । ସେ ଦିନ ରାତ୍ରିରେ ଜଣେ ମନ୍ତ୍ରୀ, ଯେକି ସେଇ ପାଖରେ ରହୁଥାନ୍ତି, ଟେଲିଫୋନ୍ କରି କହିଲେ ଗୋଟେ ସେକ୍‌ସନ ଫୋର୍ସ ତାଙ୍କ ଘର ଜଗିବା ପାଇଁ ପଠାଇବାକୁ । ମୁଁ ତାଙ୍କୁ କହିଲି ଯେ ଫୋର୍ସ ଜଗିବାର ଅବସ୍ଥା ନ ଥିବା ଯୋଗୁଁ ଗୋଟେ ସେକ୍‌ସନ୍ ଫୋର୍ସ ଦେବା ଦରକାର ପଡୁନି, କାରଣ ସେହି ରାସ୍ତାରେ ପୁଲିସ୍ ପାଷ୍ଟ୍ରେଲିଂ ଦିଆଯାଇଛି । ସେ କିନ୍ତୁ ଜିଦ୍ କଲେ ଯେ ତାଙ୍କ ଘର ଜଗିବା ପାଇଁ ଗୋଟେ ସେକସନ୍ ଫୋର୍ସ ଦବା ପାଇଁ । ମୁଁ ମନାକରି କହିଲା ପରେ ସେ ଧମକ ଦେବାକୁ ଲାଗିଲେ । ମୁଁ ଫୋନ୍ ଥୋଇ ଦେଲି ଏବଂ ମୋ କାମରେ ଚାଲିଗଲି । ସେ ସେତେବେଳେ ଉପମନ୍ତ୍ରୀ ଥା'ନ୍ତି । ଆଜି ପର୍ଯ୍ୟନ୍ତ ତାଙ୍କର ସେହି ରାଗ ମୋ ଉପରୁ ଗଲାନି । ଅବଶ୍ୟ ସେ ଜଣେ ମାର୍କା ମରା ମନ୍ତ୍ରୀ- ସବୁ ଗୁଣରେ ମାର୍କାମରା । ମୁଁ ଜଏନ୍ କରିବାର ମାତ୍ର ସାତଦିନ ଭିତରେ ଏପରି ଦୁଇ ତିନୋଟି ଘଟଣା ଘଟିଲା ପରେ ମୋତେ ଯେତିକି କଷ୍ଟ ଲାଗିଲା, ଭୁବନେଶ୍ୱରରେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ସମ୍ମୁଖୀନ ହେବା ପାଇଁ ସେତିକି ସାହସ ବଢ଼ିଲା ।

ବିଧାନସଭା ଚାଲିଥିବା ବେଳେ, ଖବର ଶୁଣାଗଲା ଯେ ଓଡ଼ିଶାର ଜନତା ସରକାରକୁ ଭାଙ୍ଗି ଦେଇ,ଗଭର୍ଣ୍ଣରସ୍ ରୁଲ କରାଯିବ । ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାଏ ଏକଥା ଜାଣିଥାନ୍ତି । କେବଳ ସମୟକୁ ଅପେକ୍ଷା କରାଯାଇଥାଏ । ଜନତା ସରକାର ଯେତେବେଳେ ଯିବା ପ୍ରାୟ ନିଶ୍ଚିତ ହୋଇଗଲା ସେତେବେଳେ ପୁଲିସ୍ ଆନ୍ଦୋଳନରେ ଭାଗ ନେଇଥିବା ୪୮ ଜଣ କନେଷ୍ଟବଳ ଯେଉଁମାନେ ସମ୍ବିଧାନର ୩୧୧ ଧାରାରେ ଚାକିରୀରୁ ବରଖାସ୍ତ ହୋଇଥିଲେ, ସେମାନେ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି, ତାଙ୍କୁ କ୍ଷମା ଦେଇ, ଆଉ ଥରେ ପୁଲିସ୍‌ରେ ନେବା ପାଇଁ ଅନୁରୋଧ ଜଣାଇଲେ । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ପୁଣି ଥରେ ଚାକିରୀରେ ନେବାପାଇଁ ଆଇ.ଜିଙ୍କ ପରାମର୍ଶ ଲୋଡ଼ିଥିଲେ ଏବଂ ଆଇ.ଜି ଶ୍ରୀ ପାଢ଼ି, ସେମାନଙ୍କୁ କେତେକ ସର୍ତ୍ତରେ ଚାକିରୀରେ ପୁନଃ ମୃତୟନ ଦେବା ପାଇଁ ସୁପାରିଶ କଲେ । ତାଙ୍କ ସୁପାରିଶ ଅନୁସାରେ ନୀଳମଣିବାବୁ ଯିବା ପୂର୍ବରୁ ୪୮ ଜଣ କନେଷ୍ଟବଳ, ହାବିଲଦାର ଓ ସିପାହୀକୁ ସେମାନଙ୍କ ଚାକିରୀ ଫେରାଇ ଦେଲେ । ଫେବୃୟାରୀ ୧୫ ଦିନ ମୁଖ୍ୟମନ୍ତ୍ରୀ ନୀଳମଣି ବାବୁ, ଭୁବନେଶ୍ୱର ବାହାରକୁ ଯାଇଥିବା ବେଳେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରିହେଲା ।

ରାଷ୍ଟ୍ରପତି ଶାସନ ପ୍ରଚଳନ ହେବାର ଚାରିଦିନ ପରେ, ଭୁବନେଶ୍ୱର ସହରରେ ଆଉ ଏକ ଘଟଣା ଘଟିଥିଲା, ଯାହାକି ଭୁବନେଶ୍ୱର ପୁଲିସ୍ ପାଇଁ ଏକ ଉଲ୍ଲେଖନୀୟ ଘଟଣା ହେଲା । ୧୯ ତାରିଖ ସକାଳୁ, ଷ୍ଟୁଆର୍ଟ୍ ବିଦ୍ୟାଳୟର ଭାଇସ୍ ପ୍ରିନିସ୍‌ପାଲ୍ ମିଃ ଆମ୍ବ୍ରସ୍‌ଙ୍କ ୧୬ ବର୍ଷ ବୟସ୍କ ଆଦିବାସୀ ଘରୋଇ ଚାକର, ଶୋଇବା କୋଠରୀର ଫ୍ୟାନ ଦେହରେ ଦଉଡ଼ି ଲଗାଇ ଆତ୍ମହତ୍ୟା କଲା । ଏଇ ଘଟଣା କ୍ୟାପିଟାଲ୍ ପୁଲିସ୍‌ରେ ଜଣାଇବା ପରେ ପୁଲିସ୍ ଆତ୍ମହତ୍ୟାର କାରଣ ବିଷୟରେ ତଦନ୍ତ କରିବା ଆରମ୍ଭ କଲା ଏବଂ ଗୋଟିଏ ଅପମୃତ୍ୟୁ ମାମଲା ରୁଜୁ କରି, ମୃତ ଦେହକୁ ଶବ ବିଚ୍ଛେଦ ପାଇଁ ପଠାଇଥିଲା । ତଦନ୍ତ ବେଳେ ପିଲାର ବାପା ଏବଂ ତାର ସବୁ ବନ୍ଧୁମାନେ ମଧ ମିଃ ଆମ୍ବସ୍‌ଙ୍କ ଘରେ ଉପସ୍ଥିତ ଥିଲେ । ପୁଲିସ୍ ତଦନ୍ତ ସାରି ମୃତ ବାଳକର ଶବ ବିଚ୍ଛେଦ ପରେ ପିଲାର ଶବ ତା ବାପାକୁ ହସ୍ତାନ୍ତର କରିଥିଲେ ଏବଂ ପିଲାର ବାପ, ମିଃ ଆମ୍ବସ୍‌ଙ୍କ ପାଖରୁ ୨୦୦ ଟଙ୍କା ନେଇଥିଲେ । ସେ ଟଙ୍କା ନେଲାପରେ ସେମାନେ ମଦ ପିଇଲେ ଏବଂ ଗୋଟିଏ ଟ୍ରଲି ରିକ୍ସାରେ ମୃତ ଦେହକୁ ସତ୍ୟନଗର ଶଶ୍ମାନକୁ ନେଉଥିବା ବାଟରେ କେତେ ଜଣ ଛାତ୍ର ତାଙ୍କୁ ବତାଇ ଦେଲେ ଯେ ସେ ବାଳକଟିକୁ ହତ୍ୟା କରାଯାଇଛି । ତେଣୁ ସେମାନେ ମୃତ ଦେହକୁ ନ ପୋଡ଼ି ରାଜ୍ୟପାଳଙ୍କ ନିକଟକୁ ନିଅନ୍ତୁ । ପୁଲିସର ଅଜାଣତରେ ଅଧାବାଟରୁ ମୃତ୍ୟୁ ଦେହକୁ ସେମାନେ ଫେରାଇ, ରାଜଭବନ ଗେଟ୍ ପାଖକୁ ନେଲେ ଏବଂ ରାଜ୍ୟପାଳ ଆସନ୍ତୁ ବୋଲି ଦାବୀ କଲେ । ପରେ ସେମାନଙ୍କୁ ରାଜ ଭବନର କର୍ମଚାରୀମାନେ ବୁଝାଇ ଦେଲା ପରେ, ସେମାନେ ସେଇ ଟ୍ରଲି ରିକ୍ସାରେ ଶବକୁ ଧରି ପୁଣି ସତ୍ୟନଗର ଶ୍ମଶାନ ଆଡ଼େ ଆସିଲେ । ସେତେବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଯାଇଥାଏ । ଆସିଲା ବେଳେ ତାଙ୍କୁ ସେଇଲୋକମାନେ ବାଣୀ ବିହାର ପିଲାମାନଙ୍କ ସାହାଯ୍ୟ ନେବା ପାଇଁ ମତାଇଲେ । ମତାଇବା ଲୋକମାନେ ଷ୍ଟୁଓ୍ୟାର୍ଟ୍ ସ୍କୁଲର କେତେକ ବ୍ୟକ୍ତି ଯେଉଁମାନେ ମିଷ୍ଟର ଏବଂ ମିସେସ୍ ଆମ୍ବ୍ରସେଙ୍କର ବିରୋଧିଥିଲେ ମାତ୍ର ସେକଥା ପୁଲିସ୍ ଜାଣି ପାରିନଥିଲା କିମ୍ବା ସେଥିପ୍ରତି ଗୁରୁତ୍ୱ ଦେଇ ନଥିଲା । ସନ୍ଧ୍ୟା ବେଳକୁ କେତେଜଣ ବାଣୀବିହାର ଛାତ୍ର ଟ୍ରଲି ସହିତ ଶବକୁ ବାଣୀବିହାର ମଧକୁ ନେଇଗଲେ ଏବଂ ପ୍ରଥମ ଛାତ୍ରାବାସ ସାମ୍ନାରେ ରଖି ଶବ ସତ୍କାର ହେବାପାଇଁ ଛାଡ଼ିଲେନି । ଛାତ୍ରମାନେ ଦାବୀକଲେ ଯେ, ଏହା ଏକ ହତ୍ୟାକାଣ୍ଡ ପୁଲିସ୍ ଜାଣିଶୁଣି ଏହାକୁ ଏକ ଅପମୃତ୍ୟୁ କହି ମାମଲାକୁ ଚପାଇ ଦେବା ପାଇଁ ଚେଷ୍ଟା କରୁଛି । ରାତିପ୍ରାୟ ଆଠଟା ବେଳକୁ ମୁଁ ଏ ଘଟଣା ଜାଣିବାକୁ ପାଇଲି ଏବଂ ଡି.ଏସ୍.ପି ରାଜୁ ଦାସଙ୍କୁ ଶହିଦ ନଗର ପୁଲିସ୍ ଷ୍ଟେସନକୁ ଯାଇ ଘଟଣା ଦେଖିବାକୁ କହିଲି । ଡି.ଏସ୍.ପି. ଶହିଦ ନଗର ଥାନାକୁ ଆସି ଜଣେ ପୁଲିସ୍ ସବ୍‌ଇନସ୍‌ପେକ୍ଟରକୁ ଧରି, ବାଣୀବିହାର ଭିତରକୁ ଗଲେ ଏବଂ ଛାତ୍ରମାନଙ୍କୁ ବୁଝାଇବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କ କଥାକୁ କେହି ଶୁଣିଲେନି । ବରଂ ତାଙ୍କୁ ପ୍ରଥମ ଛାତ୍ରାବାସର ଅଫିସ୍ ଗୃହ ମଧରେ ଏକ ପ୍ରକାର ଘେରାଉ କରି ରଖିଲେ । ମୋତେ ଏ ବିଷୟରେ ଖବର ମଧ ଦେଲେ ନାହିଁ । ପ୍ରାୟ ରାତି ୧୧.୩୦ ବେଳକୁ ଆଇ.ଜି. ଶ୍ରୀ ପାଢ଼ି ମୋତେ ଫୋନ କରି କହିଲେ ଯେ ମୁଁ ବାଣୀବିହାରକୁ ଯାଇ, ଛାତ୍ରମାନଙ୍କ ସଙ୍ଗେ କଥାବାର୍ତ୍ତା କରି

ବିଷୟକୁ ସମାଧାନ କରିଦେବାକୁ । ମୁଁ ସେତେବେଳେ ଅର୍ଥମନ୍ତ୍ରୀ ରାମ ପ୍ରସାଦ ମିଶ୍ରଙ୍କ ଘରେ ଆଉ ଗୋଟିଏ ସମସ୍ୟା ସମାଧାନ ପାଇଁ ଯାଇଥାଏ । ଖବର ପାଇ, ମୁଁ ଶହିଦ ନଗର ଥାନାରେ ପହଞ୍ଚି, ଶୁଣିଲି ଡି.ଏସ୍.ପି ଦାସ ଏବଂ ଜଣେ ଏସ୍.ଆଇ ବାଣୀବିହାର ଭିତରେ ସନ୍ଧ୍ୟା ବେଳରୁ ଅଟକ ଅଛନ୍ତି । ଅନ୍ୟମାନେ ସାହସ କରି ବାଣୀବିହାର ଭିତରକୁ ଯାଉନାହାଁନ୍ତି । ତା ଭିତରେ ଘଟଣା କ'ଣ ସେ ବିଷୟରେ ମଧ୍ୟ କିଛି ଖବର ନଥାଏ । ତେଣୁ ମୁଁ ବାଧ୍ୟ ହୋଇ ରାତ୍ରି ହୋଇଥିଲେ ମଧ ଇନିସ୍‌ପେକ୍ଟରକୁ ସାଙ୍ଗରେ ଧରି ବାଣୀବିହାର ଭିତରକୁ ପ୍ରବେଶ କଲି । ସାଙ୍ଗରେ ଫୋର୍ସ ନେଇ ନଥାଏ କାରଣ ଫୋର୍ସ ଗୋଟିଏ ସେକସନ୍ ଛଡ଼ା ଅଧିକ ଶହିଦନଗର ଥାନାରେ ନ ଥାନ୍ତି । ଗୋଟିଏ ସେକସନ୍ ଫେର୍ସନେଇ ପ୍ରବେଶ କରିବାମାନେ ଅଯଥା ଉତ୍ତେଜନା ସୃଷ୍ଟି କରିବା ଛଡ଼ା କିଛି ନୁହେଁ । ତେଣୁ ମୁଁ ଗୋଟେ ରିସ୍କି ନେଇ, ବାଣୀବିହାର ଭିତରକୁ ଗଲି । ମୁଁ ପହଞ୍ଚି ଦେଖିଲି, ଟ୍ରଲି ଉପରେ ଶବ ପଡ଼ିଛି, ପ୍ରାୟ ୧୦୦ ଜଣ ଛାତ୍ର ପ୍ରଥମ ଛାତ୍ରାବାସ ସାମ୍ନାରେ ବସିଥାନ୍ତି । ମୋତେ ଦେଖି ଛାତ୍ରମାନେ ଜମା ହେଲେ । ପ୍ରଥମେ ମୁଁ ଡି.ଏସ.ପି. ଏବଂ ଏସ.ଆଇଙ୍କୁ ସେଇ ଘରୁ ବାହାରକୁ ଆଣି ତାଙ୍କୁ ଥାନାକୁ ଫେରିଯିବା ପାଇଁ କହିଲି ଏବଂ ଛାତ୍ରମାନଙ୍କର ଯାହା ଦାବୀ ସେମାନେ ମୋତେ କହନ୍ତୁ ବୋଲି ତାଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କଲି । ଡି.ଏସ.ପି. ଥାନାକୁ ଫେରିଗଲେ । ଛାତ୍ରମାନେ ମୋ ସଙ୍ଗେ କଥାବାର୍ତ୍ତା କଲେ ଏବଂ ଦାବୀ କଲେ ଯେ ଏହାକୁ ଏକ ହତ୍ୟାକାଣ୍ଡ ବୋଲି ଘୋଷଣା କରି ମୁଖ୍ୟ ଆସାମୀକୁ ଆରେଷ୍ଟ କରନ୍ତୁ । ତାଛଡ଼ା ମୃତ୍ୟୁ ବାଳକର ବାପକୁ କ୍ଷତିପୂରଣ ସରକାର ଦିଅନ୍ତୁ ଇତ୍ୟାଦି । କଥାବାର୍ତ୍ତା ଚାଲିଥିବାବେଳେ, ମୁଁ ସେମାନଙ୍କୁ ହତ୍ୟାକାଣ୍ଡ ପାଇଁ ତା ବାପ ଗୋଟିଏ ଏଫ.ଆଇ.ଆର. ଦିଅନ୍ତୁ ବୋଲି କହିବାରେ, ସେମାନେ ତା ବାପକୁ ଖୋଜିଲେ, ମାତ୍ର ତା ବାପ ଶବକୁ ଛାଡ଼ି ଚାଲିଯାଇଥାଏ । ଯେତେ ବୁଝାଇଲେ ସେମାନେ ଶବକୁ ଛାଡ଼ିବାକୁ ରାଜି ହେଉନଥାନ୍ତି । ଶେଷକୁ ମୁଁ ତାଙ୍କୁ କହିଲି, ତା ବାପ ନଥିଲେ, ତୁମମାନଙ୍କ ମଧ୍ୟରୁ ଜଣେ କିଏ ହତ୍ୟାକାଣ୍ଡ ବିଷୟରେ ଲେଖିଦେଲେ ମୁଁ କେସ୍ କରିବି ମାତ୍ର ଲେଖିଦେବା କଥା ଶୁଣି ସମସ୍ତେ ପ୍ରାୟ ପଳାଇଗଲେ । ତଥାପି ପ୍ରାୟ ୨୦ରୁ ଅଧିକ ପିଲା ରହି ଅଯଥା ଦାବୀ କରୁଥାନ୍ତି ଏବଂ କେତେଜଣ ପୁଣି ସେଇ ପିଲାର ବାପକୁ ଖୋଜିବାକୁ ଯାଇଥାନ୍ତି । ପ୍ରାୟ ରାତ୍ରି ୨.୩୦ ମିନିଟ୍ ବେଳକୁ ସେମାନେ ତା ବାପକୁ ଧରି ପହଞ୍ଚିଲେ । ମୁଁ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରୁଥିବା ସମୟରେ, ସ୍ପେସାଲ ବ୍ରାଞ୍ଚ କିଛି ନ ବୁଝି, ଆଇ.ଜି; ଘରୋଇ ବିଭାଗ ସଚିବ ଏବଂ ମୁଖ୍ୟ ଶାସନ ସଚିବଙ୍କୁ ଖବର ଦେଲା ଯେ, ଏସ.ପି.ଙ୍କୁ ଛାତ୍ରମାନେ ଘେରାଉ କରି ରଖିଛନ୍ତି । ରାତ୍ରିରେ କିଛି ଅଘଟଣ ଘଟିପାରେ । ଘରୋଇ ସଚିବ ଏକଥା ଶୁଣିଲା ପରେ ଡି.ଆଇ.ଜି, ଡି.ଏନ୍ ସିଂହଙ୍କୁ ନିର୍ଦ୍ଦେଶ ଦେଲେ, ଯାଇ ଘଟଣା ସଂପର୍କରେ ବୁଝିବା ପାଇଁ । କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଡି.ଏନ୍ ସିଂହ ରାତି ଅଧରେ ଏପରି ନିର୍ଦ୍ଦେଶପାଇ ଏକଦମ୍ ଖପା । ମାତ୍ର ତାଙ୍କର ମଧ ସାହସ ନଥାଏ ଆସିବା ପାଇଁ । ସେ କଟକ ଏସ.ପି., ପି.କେ. ସେନାପତିଙ୍କୁ ସାଙ୍ଗରେ ଧରି ଗୋଟେ ପ୍ଲାଟୁନ୍ ଓ.ଏସ୍.ପି.ଫୋର୍ସ ସହିତ କଟକରୁ ବାହାରିଲେ ଭୋର୪.୩୦ ବେଳକୁ ।

ଏଣେ ଛାତ୍ରମାନେ, ମୃତ ବାଳକର ବାପକୁ ପାଖ ମଦଭାଟିରୁ ଧରିଆଣି, ଗୋଟିଏ ଏଫ.ଆଇ.ଆର ଲେଖି ତାର ଟିପଚିହ୍ନ ନେଇ ମୋତେ ଦେଲେ । ଏଫ.ଆଇ.ଆରକୁ ହତ୍ୟାମାମଲା ଭାବେ ଗ୍ରହଣ କରି, ମାମଲା ଉପଯୁକ୍ତ ଭାବେ ତଦନ୍ତ ହେବ ବୋଲି, କହି ମୁଁ ବାଣୀବିହାର ଭିତରୁ ବାହାରିଲା ବେଳକୁ ଛାତ୍ରମାନେ କହିଲେ ଯେ, ଏକଥା ସେଇ ରାତ୍ରିରେ କୁଳପତି ବିଦ୍ୟାଧର ମିଶ୍ରଙ୍କୁ କହିକରି ଯିବା ପାଇଁ । ତେଣୁ ମୁଁ ଏବଂ କେତେଜଣ ଛାତ୍ର କୁଳପତିଙ୍କ ବାସଭବନ ଆଡ଼େ ଗଲୁ । ଆମେ ଗଲାବେଳେ, ଭୁବନେଶ୍ୱର ଏ.ଡ଼ି.ଏମ୍. ଶ୍ରୀଯୁକ୍ତ ବିଶୋଇ ଏ ଖବର ପାଇ ଏକୁଟିଆ, କୁଳପତିଙ୍କ ଘର ଆଡ଼େ ଆସୁଥିଲେ । ସେ ମୋ ଠାରୁ ସବୁ କଥା ବୁଝିଲା ପରେ ଆମେ ସମସ୍ତେ କୁଳପତିଙ୍କୁ ଦେଖାକରି ଘଟଣା ବିଷୟରେ କହି ମୃତ ବ୍ୟକ୍ତିର ଶବକୁ ଦାହ କରିବା ପାଇଁ ବାଣୀ ବିହାରରୁ ବାହାରି ଶହିଦ୍‌ନଗର ଥାନାରେ ପହଞ୍ଚିଲା ବେଳକୁ ଭୋର ଚାରିଟା ହୋଇଯାଇଥାଏ । ଆମେ ଥାନାରେ ବସି କଥାବାର୍ତ୍ତା ହେଲାବେଳେ, କେନ୍ଦ୍ରାଞ୍ଚଳ ଉପମହାଆରକ୍ଷୀ ନିରୀକ୍ଷକ ଶ୍ରୀଯୁକ୍ତ ଡି.ଏନ୍.ସିଂହ, ସେନାପତିଙ୍କୁ ଧରି ସହିଦ୍‌ନଗର ଥାନାରେ ପହଞ୍ଚି ଆଗ ମୋତେ ଗାଳି ଦେବାକୁ ଆରମ୍ଭ କଲେ । ତାଙ୍କର କଥାହେଲା, ମୁଁ କାହିଁକି ରାତ୍ରିରେ ବିନା ଫୋର୍ସରେ ବାଣୀବିହାର ମଧ୍ୟକୁ ଗଲି । ଅବଶ୍ୟ ପୁଲିସ୍ ଦୃଷ୍ଟି କୋଣରୁ ଦେଖିଲେ, ରାତ୍ରିରେ ସେପରି ଅବସ୍ଥାରେ ମୋର ଯିବାଟା ଠିକ୍ ହୋଇ ନଥିଲା । ମାତ୍ର ମୁଁ ତାଙ୍କୁ ବୁଝାଇ କହିଲି ଯେ, ମୁଁ ଯାଇନଥିଲେ ମଧ୍ୟ ଆଗରୁ ଡ଼ି.ଏସ୍.ପି ଏବଂ ଜଣେ ଏସ.ଆଇ. ବାଣୀବିହାରରେ ଛାତ୍ରମାନଙ୍କ ଅଟକରେ ରହିଥାନ୍ତି । ତେଣୁ ସେମାନଙ୍କୁ ନ ଆଣିବା ପର୍ଯ୍ୟନ୍ତ, ମୋତେ ଅପେକ୍ଷା କରିବାକୁ ପଡ଼ିଥାନ୍ତା । ତାଛଡ଼ା ଆଇ.ଜି. ପୁଲିସ୍ ମୋତେ ବାଣୀବିହାର ଭିତରକୁ ଯାଇ ଛାତ୍ରମାନଙ୍କ ସଙ୍ଗେ କଥାବାର୍ତ୍ତା କରି ଘଟଣାର ସମାଧାନ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏକଥା ଶୁଣି ବୋଧେ ମିଃ ସିଂହ ବିଶ୍ୱାସ କରିପାରିଲେନି । ସେ ସଙ୍ଗେ ସଙ୍ଗେ ପୁଲିସ୍ ଷ୍ଟେସନରୁ ଆଇ.ଜି. ପାଢ଼ୀଙ୍କ ପାଖକୁ ଫୋନ କଲେ । ଫୋନ୍‌ରେ ସେ ପଚାରିଲେ ଯେ, ସେ ମୋତେ ଏପରି ନିର୍ଦ୍ଦେଶ ଦେଇଥିଲେ କି ନାହିଁ । ମିଃ ପାଢ଼ୀ କହିଲେ ଯେ ସେ ସେଇପରି ନିର୍ଦ୍ଦେଶ ଦେଇଥିଲେ । ମିଃ ସିଂହଙ୍କ ରାଗ ମୋ ଉପରୁ କମି, ଆଇ.ଜି.ଙ୍କ ଉପରକୁ ଖସିଲା । ଏତିକି ବେଳେ, ଏ.ଡି.ଏମ୍ ଶ୍ରୀ ବିଶୋଇ ତାଙ୍କୁ ସବୁକଥା ବୁଝାଇ ଦେଇ କହିଥିଲେ ଯେ ମୁଁ ବାଣୀବିହାରକୁ ଯାଇ ଆପୋଷରେ ଯାହା ସମାଧାନ କଲି ତାକୁ ଅନ୍ୟ ପ୍ରକାରରେ ପରିଚାଳନା କରିଥିଲେ ନିଶ୍ଚିତ ଭାବେ ଆଇନ୍ ଶୃଙ୍ଖଳା ପରିସ୍ଥିତି ଘଟିଥାନ୍ତା । ତାଛଡ଼ା ଉପରିସ୍ଥ ହାକିମ୍ ମାନଙ୍କୁ ବାଣୀବିହାର ହତାମଧ୍ୟରେ କ'ଣ ଘଟୁଛି ସେ ବିଷୟରେ ସଠିକ୍ ଖବର ନଥାଇ ଅଯଥା ଆତଙ୍କିତ ରିପୋର୍ଟ ଦେଇଥିବା ହେତୁ, ସେମାନଙ୍କୁ ଅଯଥାରେ ଆସିବାକୁ ପଡ଼ିଲା । ମିଃ ସିଂହ ବୁଝିଲା ପରେ, ଆମେ ସମସ୍ତେ ଘରୋଇ ସଚିବଙ୍କ ଘରକୁ ସକାଳୁ ସକାଳୁ ଯାଇ, ସମସ୍ତ କଥା ବୁଝାଇ ଦେଇଥିଲୁ । ସେଇ ହତ୍ୟାକାଣ୍ଡ ଘଟଣା ତଦନ୍ତ ପରେ, ଫାଇନାଲ୍ ରିପୋର୍ଟ ମିସିଟେ୍‌କ ଅଫ୍ ଫାକ୍ଟ୍ ଭାବେ ଦିଆ ଯାଇଥିଲା ।



ରାଷ୍ଟ୍ରପତି ଶାସନ ହେବାପରେ, ୧୯୮୦ ମସିହା ଏପ୍ରିଲ୍ ଶେଷ ଆଡ଼କୁ ଓଡ଼ିଶାରେ ନିର୍ବାଚନ ହେବାର ଘୋଷଣା ହେଲା ଏବଂ ଇନ୍ଦିରାଗାନ୍ଧି ମେ ମାସ ୯ତାରିଖରେ ଓଡ଼ିଶା ଆସିବେ ବୋଲି ଜଣାଗଲା । ସେ ଖୋର୍ଦ୍ଧା, ପିପିଲିରେ ସାଧାରଣ ସଭାରେ ଭାଷଣ ଦେବେ । ସେତେବେଳେ ଜେ.ବି.ପଟ୍ଟନାୟକ, କଟକ ସଦରରୁ ସାଂସଦଭାବେ ଲୋକସଭାକୁ ନିର୍ବାଚିତ ହୋଇ ଯାଇଥାନ୍ତି ଏବଂ କେନ୍ଦ୍ରରେ ମନ୍ତ୍ରୀ ଥା'ନ୍ତି । ଓଡ଼ିଶାରେ କଂଗ୍ରେସ ନିର୍ବାଚନକୁ ସେ ପରିଚାଳନା କରୁଥାନ୍ତି । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସ୍ ୧୨୦ଟି ସ୍ଥାନରେ ଜୟଯୁକ୍ତ ହେଲା । ସ୍ୱାଧୀନତା ପରେ କେବେ କେଉଁଦଳ ଏତେ ସଂଖ୍ୟାରେ ନିର୍ବାଚନରେ ଜିତି ନଥାନ୍ତି । ବିଧାନସଭା ନିର୍ବାଚନ ପରେ, ଜାନକୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାପାଇଁ କଂଗ୍ରେସ ଦଳ ନିଷ୍ପତ୍ତି ନେଲା ଏବଂ ଜାନକୀବାବୁ ମନ୍ତ୍ରୀମଣ୍ଡଳ ଗଠନ କଲେ । ତାଙ୍କ ମନ୍ତ୍ରୀମଣ୍ଡଳରେ ପ୍ରଥମଥର ନିର୍ବାଚନରେ ଲଢ଼ି ବସନ୍ତ ବିଶ୍ୱାଳ ଆସିଥାନ୍ତି । ସେତେବେଳେ ସେ ଜାନକୀ ବାବୁଙ୍କ ଅତ୍ୟନ୍ତ ପାଖଲୋକ । ସେ ମଧ୍ୟ ମନ୍ତ୍ରୀମଣ୍ଡଳରେ ମିନିଷ୍ଟର ଅଫ୍ ଷ୍ଟେଟ୍ (ସ୍ୱାଧୀନ) ଭାବେ ଯୋଗ ଦେଇ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱରେ ରହିଲେ । ଜାନକୀବାବୁ, ବସନ୍ତ ବିଶ୍ୱାଳଙ୍କୁ ନ ପଚାରିଲେ କିଛି କରୁନଥିଲେ । କିଛି ଦିନ ପରେ ତାଙ୍କୁ ଲୋକମାନେ ସୁପର ଚିଫ ମିନିଷ୍ଟର ବୋଲି ଆଖ୍ୟା ଦେଲେ । କଂଗ୍ରେସ୍ ମନ୍ତ୍ରୀମଣ୍ଡଳ ଗଢ଼ିଲା ପରେ, ପୁଣି ଶାସନ ବିଭାଗରେ ଅଦଳ ବଦଳ ଆରମ୍ଭ ହେଲା । ପ୍ରଥମେ ପୁଲିସ୍‌ମୁଖ୍ୟଙ୍କ ପାଳି । ଜନତା ସମୟରେ ନରସିଂହ ସ୍ୱାଇଁଙ୍କୁ, କେନ୍ଦ୍ରକୁ ତଡ଼ି ଦିଆଯାଇଥିଲା ଏବଂ ସାହା କମିଶନ, ପଣ୍ଡା କମିଶନରେ ତାଙ୍କୁ ବହୁତ ହଇରାଣ ହରକତ କରାଯାଇଥିଲା । କଂଗ୍ରେସ ମନ୍ତ୍ରୀମଣ୍ଡଳ ହେଲା ପରେ, ମିଃ ସ୍ୱାଇଁ କେନ୍ଦ୍ରରୁ ଫେରିଲେ ଏବଂ ଓଡ଼ିଶାର ପ୍ରଥମ ପୁଲିସ୍ ମହାନିର୍ଦ୍ଦେଶକ ହୋଇଥିଲେ । ତାଙ୍କର ଫେରିବା ପରେ, ସେ କିଛିଦିନ ଭୁବନେଶ୍ୱରରେ ରହିଲେ । ତାଙ୍କର ଇଚ୍ଛାଥିଲା ପୁଲିସ୍ ହେଡ୍‌କ୍ୱାଟରକୁ କଟକରୁ

ଭୁବନେଶ୍ୱର ଆଣିବା ପାଇଁ । ମାତ୍ର ତିନି ଚାରିମାସ ପରେ ସେ ଭୁବନେଶ୍ୱରରୁ କଟକ ଚାଲିଗଲେ ଏବଂ କଟକରୁ ଭୁବନେଶ୍ୱର ପୁଲିସ୍ ମୁଖ୍ୟଦପ୍ତର ଆଣିବା ଚିନ୍ତାଧାରା ବଦଳିଗଲା । ସେ ପୁଲିସ୍‌ର ମହାନିର୍ଦ୍ଦେଶକ ହେବାପରେ, ପୁଲିସ୍‌ରେ କେତେକ ଉନ୍ନତି ପାଇଁ ଚେଷ୍ଟା କରିଥିଲେ । କଂଗ୍ରେସ ଆସିଲା ପରେ ଘରୋଇ ସଚିବ ମିଃ ମହାପାତ୍ରଙ୍କ ବଦଳି ହୋଇ ମିଃ ସୁମେୟା ଘରୋଇ ସଚିବ ହେଲେ । ତାଙ୍କ ସହିତ ମୋର ସଂପର୍କ ବାଣୀବିହାରରେ ପାଠ ପଢ଼ିଲା ଦିନଠାରୁ । ତାଙ୍କର ସାନ ଭଉଣୀ ମୋର କ୍ଲାସ୍‌ମେଟ୍ ଏବଂ ଭଲ ସାଙ୍ଗ । ସେ ଆଇ.ଏ.ଏସ୍ ପାଇଁ ଦିଲ୍ଲୀରେ ଥାଏ । ପୁଲିସ୍ ପ୍ରଶାସନରେ ମଧ ବହୁ ଅଦଳ ବଦଳ ହେଲା । ମୁଁ ଆଶା କରୁଥିଲି, ମୋର ମଧ ଅଦଳ ବଦଳ ହେବ କାରଣ ମୁଁ ଜନତା ସରକାର ସମୟରେ ଆସିଥିଲି । ମାତ୍ର ମୋର ବଦଳି ହୋଇନଥିଲା ।

ମିଃ ସ୍ୱାଇଁ, ଜଏନ୍ କଲା ପରେ କେନ୍ଦ୍ରାଞ୍ଚଳ ଉପଆରକ୍ଷୀ ମହାନିରୀକ୍ଷକ ମିଃ ସିଂହଙ୍କ ବଦଳି ହେଲା ଏବଂ ତାଙ୍କ ସ୍ଥାନରେ ବି.ବି. ପଣ୍ଡା ଆସିଲେ । କଟକ ଠାରୁ ଆରମ୍ଭ କରି ପ୍ରତ୍ୟେକ ଜିଲ୍ଲାର ଏସ.ପି.ମାନେ ବଦଳି ହେଲେ । ଏଇ ସମୟ ମଧରେ ପୁଲିସ୍ କନେଷ୍ଟବଳ, ହାବିଲ୍‌ଦାର ମହାସଂଘ, ଏବଂ ଜିଲ୍ଲାମାନଙ୍କରେ ପୁଲିସ ସଂଘର ସୃଷ୍ଟି ହେଲା । ହାବିଲ୍ଦାର ଲତିଫୁର୍ ରହମନ୍, ଯେ କି ପୁଲିସ୍ ଆନ୍ଦୋଳନରେ ମୁଖ୍ୟ ଭୂମିକା ଗ୍ରହଣ କରି ଚାକିରୀରୁ ବରଖାସ୍ତ ହୋଇଥିଲା ମାତ୍ର ଜନତା ସରକାର ଯିବା ପୂର୍ବରୁ ସେମାନଙ୍କୁ ପୁନଃ ନିଯୁକ୍ତି ପ୍ରଦାନ କରିଥିଲା, ସେ କନେଷ୍ଟବଲ୍, ହାବିଲ୍‌ଦାର ଏବଂ ସିପାହୀମାନଙ୍କର ମହାସଂଘର ସଭାପତି ରୂପେ ନିର୍ବାଚିତ ହେଲା । ମିଃ ସ୍ୱାଇଁ, ପୁଲିସ୍ ଆସୋସିଏସନ୍ ପାଇଁ ନୂତନ ଭାବେ ସମ୍ବିଧାନ ଗଢ଼ିଲେ ଏବଂ ସେଇ ସମ୍ବିଧାନ ଅନୁସାରେ, ସରକାରଙ୍କ ନିଷ୍ପତ୍ତି ଏବଂ ନିର୍ଦ୍ଦେଶରେ ପ୍ରତ୍ୟେକ ଜିଲ୍ଲାରେ ପୁଲିସ୍ ଆସୋସିଏସନ୍ ସୃଷ୍ଟି ହେଲା ଏବଂ ଆସୋସିଏସନ୍‌ର ସମ୍ବିଧାନ ଅନୁସାରେ ସବୁ ଜିଲ୍ଲାରେ ନିର୍ବାଚନ ହୋଇ ଜିଲ୍ଲାସ୍ତରୀୟ ସଂଘ କାମ କଲା । ମହାସଂଘର ପ୍ରଥମ ଅଧିବେସନରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜେ.ବି. ପଟ୍ଟନାୟକ, ଡି.ଜି. ମିଃ ସ୍ୱାଇଁ ଆସିଥାନ୍ତି । ମୋତେ ସମ୍ମାନିତ ଅତିଥି ଭାବେ ନିମନ୍ତ୍ରିତ କରିଥାନ୍ତି । ହାବିଲ୍‌ଦାର ଲତିଫୁର ରହେମନ୍‌ର, ସଭାପତିତ୍ୱରେ ପ୍ରଥମ ଅଧିବେସନ ଶେଷ ହେଲା । ସେଇଦିନ, ଜେ.ବି. ପଟ୍ଟନାୟକ, ହାବିଲଦାର, କନେଷ୍ଟବଳ, ସିପାହୀମାନଙ୍କ ପାଇଁ କେତେକ ସୁବିଧା, ସୁଯୋଗ ଦେବାପାଇଁ ଘୋଷଣା କଲେ । ଆନ୍ଦୋଳନ ସମୟରେ ସେମାନଙ୍କର ଯେଉଁସବୁ ଦାବୀଥିଲା, ସେଥିମଧରୁ କେତେକ ଦାବୀ ସରକାର ପୂର୍ଣ୍ଣ କଲେ ।

ପୁଲିସ୍ ଆସୋସିଏସ୍‌ନ ହେଲାପରେ ପ୍ରତ୍ୟେକ ଜିଲ୍ଲାରେ କନେଷ୍ଟବଳ, ସିପାହୀମାନଙ୍କ ମନରେ ଏକ ନୂତନ ଆଶା-ଉଲ୍ଲାସ ଖେଳିଗଲା । ସେମାନେ ଆସୋସିଏସନ୍ ମାଧମରେ ତାଙ୍କର ଦାବୀ ଉପସ୍ଥାପିତ କରିପାରିବେ ବୋଲି ଆଶା ସଞ୍ଚାର ହେଲା । ତଳିଆ ପୁଲିସ୍ କର୍ମଚାରୀଙ୍କ ମନୋବଳ ବଢ଼ିଯାଇଥିଲା । ଯେଉଁ ଅଭାବ, ଅସୁବିଧାକୁ ସେମାନେ ଉଚ୍ଚ ପଦସ୍ଥ ଅଫିସରଙ୍କ

ଜରିଆରେ ବର୍ଷ ବର୍ଷ ଧରି ସୁଧାରି ପାରୁନଥିଲେ, ଏବେ ପୁଲିସ୍ ସଂଘ ମାଧ୍ୟମରେ ତାର ସମାଧାନ ବାଟ ଖୋଲିଲେ ! ଗୋଟିଏ ଦୃଷ୍ଟିରୁ ସଂଘ ଏବଂ ମହାସଂଘ ପୁଲିସ୍ ପରିବାର ପାଇଁ ଏକ ଉତ୍ତମ ଅନୁଷ୍ଠାନ ହୋଇଥିଲେ ମଧ ପରବର୍ତ୍ତୀ କାଳରେ କେତେକ ସ୍ୱାର୍ଥାନ୍ୱେଷୀ ବ୍ୟକ୍ତି ସଂଘକୁ ଭୁଲବାଟରେ ପରିଚାଳନା କରି, ଜିଲ୍ଲାମାନଙ୍କରେ ବିଶୃଙ୍ଖଳା ସୃଷ୍ଟି କରିଥିଲେ । ଅବଶ୍ୟ ସଂଘ ହେବା ପରେ ପରେ, ପୁଲିସ୍ ପ୍ରଶାସନରେ ବ୍ରିଟିଶ ଅମଳରୁ ଯେଉଁ ପ୍ରକାର ଶୃଙ୍ଖଳା ଚଳି ଆସିଥିଲା ତା'ଦେହରେ କେତେକ ବ୍ୟତିକ୍ରମ ଦେଖାଦେଲା । ଭୁବନେଶ୍ୱର ପୁଲିସ ଜିଲ୍ଲାରେ ଯୋଗଦେବା ଦିନଠାରୁ ଆଇନ୍, ଶୃଙ୍ଖଳା ପରିସ୍ଥିତି ସମ୍ଭାଳିବାକୁ ମୋର ସମୟ ନଥାଏ । ନିର୍ବାଚନ ପରେ, ନିଶ୍ୱାସ ମାରିବାକୁ ଟିକିଏ ସମୟ ମିଳିଲା । ଏଇ ସମୟ ଭିତରେ, ମୋତେ ଜିଲ୍ଲା ପୁଲିସ୍ ପ୍ରଶାସନ, ଅପରାଧ ନିରାକରଣ ଦିଗରେ କେତେକ ପଦକ୍ଷେପ ନେବାକୁ ସମୟ ମିଳିଥିଲା । ଅପରାଧିମାନଙ୍କୁ ଧରିବା ପାଇଁ ରାତ୍ରି ପାଟ୍ରୋଲିଂ ,ବ୍ଲକିଂ ଏବଂ ବିଭିନ୍ନ ସ୍ଥାନରେ ଘେରାଉ କରିବା ଯୋଗୁ, ବହୁ ଅପରାଧି ଧରାହେଲେ ଏବଂ ବହୁ ଚୋରୀ, ରାହାଜାନୀ ମାମଲାରେ ଚୋରି ଯାଇଥିବା ଜିନିଷର ସଂଧାନ ମିଳିଥିଲା । ଜିଲ୍ଲାରେ ସେତେବେଳେ, ଜଣେ ଏସ.ପି., ଜଣେ ଡି.ଏସ.ପି ଙ୍କ ଛଡ଼ା ମାତ୍ର କେତେଜଣ ଇନସ୍‌ପେକ୍ଟର । କ୍ରମବୃଦ୍ଧି ସହର ପାଇଁ ଯେତିକି ପୁଲିସ୍ ଦରକାର ତାହା ଜମା ନଥାଏ । ଏଥିଲାଗି ପ୍ରତ୍ୟେକ ଦିନ ରାତ୍ରିରେ ମୋତେ ପାଟ୍ରୋଲିଂ ଠାରୁ ଆରମ୍ଭ କରି ଗାଡ଼ି ଚେକିଂ ପର୍ଯ୍ୟନ୍ତ କରିବାକୁ ପଡୁଥାଏ । ମୁଁ ରାତ୍ରିରେ ବୁଲିବା ଯୋଗୁ, ଥାନା ଅଫିସର, ଇନିସ୍‌ପେକ୍ଟରମାନେ ମଧ ରାତିରେ ବୁଲା ବୁଲି କରିବାଦ୍ୱାରା ଅପରାଧ କମିବାକୁ ଲାଗିଲା । ଜିଲ୍ଲାକାମରେ ଲାଗି ଥିବା ବେଳେ ସେପ୍ଟେମ୍ବରମାସ ୨୦ ତାରିଖ ଦିନ ଖବରପହଞ୍ଚିଲା ଯେ ମହାନଦୀ କାଠଯୋଡ଼ିରେ ପ୍ରବଳ ବନ୍ୟା ଆସୁଛି । ତଳି ଅଞ୍ଚଳକୁ ସତର୍କ କରାଗଲା । କିନ୍ତୁ ପରଦିନ ସକାଳକୁ (୨୧.୯) ଦୟା, କୁଶଭଦ୍ରା, ନଦୀମାନଙ୍କରେ ପ୍ରବଳ ବନ୍ୟା ମାଡ଼ିଆସିଲା । ଏହି ବନ୍ୟାଦ୍ୱରା ବାଲିପାଟଣା, ବାଲିଅନ୍ତା, ପୁରୁଣା ଭୁବନେଶ୍ୱର ଅଞ୍ଚଳରେ ବହୁ ଗ୍ରାମ ବନ୍ୟା ପ୍ଳାବିତ ହେବା ସଙ୍ଗେ ସଙ୍ଗେ ବହୁ ଘରଦ୍ୱାର କ୍ଷତିଗ୍ରସ୍ତ ହେଲା । ବନ୍ୟାପାଣି ମାଡ଼ି ଯିବା ଯୋଗୁ ବହୁତ ଲୋକ ଜାତୀୟ ରାଜପଥ ଉପରକୁ ଉଠି ଆସିଲେ । ମୋ ପାଖରେ ଯେତିକି ପୁଲିସ୍ ଥିଲେ, ସେମାନଙ୍କ ସାହାଯ୍ୟରେ ମୁଁ ଧଉଳି ପାଖେ ଲୋକମାନଙ୍କୁ ପ୍ରଥମେ ରିଲିଫ୍ ଦବା ଆରମ୍ଭ କରିଥିଲି । ତିନିଦିନ ଧରି ଭୁବନେଶ୍ୱର ପୁଲିସ ଲୋକମାନଙ୍କୁ ବୁଡ଼ି ଅଞ୍ଚଳରୁ ଉଧାର କରି ଆଣିବା ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ ରିଲିଫ୍ ଯୋଗାଇ ଦେବାରେ ସାହାଯ୍ୟ କରିଥିଲେ । ପୁଲିସ୍‌ର କାର୍ଯ୍ୟକୁ ସରକାର ମଧ ପ୍ରଶଂସା କରିଥିଲେ ।

ଯଦିଓ ଏହି ବନ୍ୟା, ମହାନଦୀର ତ୍ରିକୋଣଭୂମୀ ଅଞ୍ଚଳରେ ବିଶେଷ କ୍ଷତି କରିନଥିଲା, ବନ୍ୟା ଅସମ୍ଭବ ଭାବେ ସମ୍ବଲପୁର ଜିଲ୍ଲାରେ କ୍ଷତି କରିଥିଲା । ଏପରିକି ସମ୍ବଲପୁର ସହର ମଧ ବନ୍ୟା ଦ୍ୱାରା ବହୁ କ୍ଷତିଗ୍ରସ୍ତ ହେଲା । ବନ୍ୟା ପରେ ପରେ ସମ୍ବଲପୁର ଜିଲ୍ଲାର ଗଙ୍ଗାଧର ମେହେର କଲେଜର ଛାତ୍ରନେତା ସୁରେଶ ପୂଜାହାରୀଙ୍କ ନେତୃତ୍ୱରେ ସମ୍ବଲପୁର ସହରରେ ବନ୍ୟା ପ୍ରପୀଡ଼ିତ

ଲୋକମାନଙ୍କ ପାଇଁ ବନ୍ୟାଚାନ୍ଦା ଆଦାୟ କଲେ । ଚାନ୍ଦା ଆଦାୟକୁ କେନ୍ଦ୍ରକରି ଛାତ୍ରମାନଙ୍କ ସଙ୍ଗେ ସମ୍ବଲପୁର ବ୍ୟବସାୟୀଗୋଷ୍ଠୀଙ୍କର ସଂଘର୍ଷ ଆରମ୍ଭ ହେଲା । ବ୍ୟବସାୟୀ ଗୋଷ୍ଠୀ ମୁଖ୍ୟତଃ ମାରୁଆଡ଼ି ଶ୍ରେଣୀର ଥିଲେ । ଛାତ୍ରମାନେ ବ୍ୟବସାୟୀମାନଙ୍କ ସଙ୍ଗେ ସେମାନଙ୍କ କଳହକୁ କେନ୍ଦ୍ରକରି, ସେମାନଙ୍କର ବ୍ୟବସାୟ ପ୍ରତିଷ୍ଠାନ ଉପରେ ଆକ୍ରମଣ କରି ଲୁଟ ତରାଜକରି କେତେକ ବ୍ୟବସାୟ କେନ୍ଦ୍ରରେ ନିଆଁ ଲଗାଇ ଦେଲେ । ଫଳରେ ପୁଲିସ୍ କାର୍ଯ୍ୟାନୁଷ୍ଠାନ କରିବାକୁ ବାଧ ହୋଇଥିଲା । ପୁଲିସ୍ କାର୍ଯ୍ୟାନୁଷ୍ଠାନ ପରେ, ସମ୍ବଲପୁରରେ ବଡ଼ ଧରଣର ଛାତ୍ର ଆନ୍ଦୋଳନ ଦେଖାଦେଲା ଏବଂ ତାର ନେତୃତ୍ୱ ସୁରେଶ ପୂଜାରୀ ନେଲେ । ସମ୍ବଲପୁରରେ ଏଇ ସଂଘର୍ଷର ପ୍ରତିକ୍ରିୟା ପଶ୍ଚିମ ଓଡ଼ିଶାର ଅନ୍ୟ ଜିଲ୍ଲା ମାନଙ୍କରେ ପଡ଼ିଥିଲା । କେତେକ ବ୍ୟକ୍ତି ବିଶେଷ ଏହି ଘଟଣାକୁ ଛାତ୍ର-ବ୍ୟବସାୟୀମାନଙ୍କ ମଧ୍ୟରେ ସୀମିତ ନରଖି ଏହାକୁ ମାରୁଆଡ଼ି ଓଡ଼ିଆଙ୍କ ମଧ୍ୟରେ ଲଗାଇ ଦେଲେ । ସମ୍ବଲପୁର ପରେ ବଲାଙ୍ଗୀର ସହରରେ ଏଇ ଆନ୍ଦୋଳନ ଅତ୍ୟନ୍ତ ତୀବ୍ରତର ହେଲା । ଛାତ୍ରମାନଙ୍କୁ ଛାଡ଼ିଦେଲେ, ଅସାମାଜିକ ଲୋକମାନେ ମାରୁଆଡ଼ି ବ୍ୟବସାୟୀଙ୍କ ଦୋକାନ ଏପରିକି ସେମାନଙ୍କ ରହିବା ଘରକୁ ଆକ୍ରମଣ କରି ଲୁଟ୍‌ପାଟ୍ କରିବା ସଙ୍ଗେ ସଙ୍ଗେ ବହୁ ଘରଦ୍ୱାର ପୋଡ଼ି ଦେଲେ । ଅବସ୍ଥା ଅସମ୍ଭାଳ ହେବାଯୋଗୁ ବହୁସ୍ଥାନରେ ପୁଲିସ୍ ଗୁଳିଚାଳନା କରିବାକୁ ବାଧ ହୋଇଥିଲା । ଅବସ୍ଥା ଏପରିହେଲା ଯେ କଟକରୁ ଡ଼ି.ଜି. ମିଃ ସ୍ୱାଇଁ ବଲାଙ୍ଗୀର ଯିବାକୁ ବାଧ ହେଲେ । ବନ୍ୟାରେ ରାସ୍ତାଘାଟର ଅସୁବିଧା ଥିବା ଯୋଗୁ ଆଇନ୍ ଶୃଙ୍ଖଳା ସମ୍ଭାଳିବା ପାଇଁ ଯେତିକି ପୁଲିସ୍ ଦରକାର, ତାହା ବଲାଙ୍ଗୀରରେ ନଥିଲେ । କେବଳ ସେତିକି ନୁହେଁ ବଲାଙ୍ଗୀର ଜିଲ୍ଲାର ମଫସଲ ମାନଙ୍କରେ ମଧ୍ୟ ଅସାମାଜିକ ଲୋକମାନେ ମାରୁଆଡ଼ି ବ୍ୟବସାୟୀଙ୍କ ଘର ଏବଂ ବ୍ୟବସାୟ ପ୍ରତିଷ୍ଠାନ ପୋଡ଼ିବାରେ , ଲୁଟ୍‌କରିବାରେ ଲାଗିଯାଇଥିଲେ । ମାରୱାଡ଼ି ବ୍ୟବସାୟୀଙ୍କ ଉପରେ ଏ ଯେଉଁ ପ୍ରକାର ହିଂସାତ୍ମକ କାର୍ଯ୍ୟକଳାପ ଦେଖାଦେଲା, ତାହା ସେମାନଙ୍କର ବହୁଦିନର କ୍ଷୋଭ ଆଉ ରାଗ ବୋଲି କୁହାଗଲା । ଛାତ୍ରଆନ୍ଦୋଳନର ସୁଯୋଗ ନେଇ ବିରୋଧି ରାଜନୈତିକ ଦଳ ଏହି ଆନ୍ଦୋଳନକୁ ପଶ୍ଚିମ ଓଡ଼ିଶାରେ ସୀମିତ ନରଖି, ସାରା ଓଡ଼ିଶାରେ କଂଗ୍ରେସ ସରକାର ବିରୁଦ୍ଧରେ ଆରମ୍ଭ କରିବାକୁ ଚେଷ୍ଟାକଲେ । କେତେକ ବିରୋଧି ଦଳ ନେତା ମୁଖ୍ୟତଃ ଲୋକଦଳ ନେତା ଖୋଲାଖୋଲିଭାବେ ଏହି ଆନ୍ଦୋଳନକୁ ସମର୍ଥନ କରି ସାରାରାଜ୍ୟରେ ଛାତ୍ରଆନ୍ଦୋଳନ କରିବାକୁ ଆଗେଇ ଆସିଲେ, ମାତ୍ର ତାହା ସେତେବେଳେ ସଫଳ ହେଲାନି । ଆନ୍ଦୋଳନ କେବଳ ପଶ୍ଚିମ ଓଡ଼ିଶାରେ ସୀମିତ ରହିଲା ।

କଂଗ୍ରେସ୍ ସରକାର ବିରୁଦ୍ଧରେ ଆନ୍ଦୋଳନକୁ ଉଦ୍‌ଜୀବିତ କରିରଖିବା ପାଇଁ ବିରୋଧି ଦଳ ଛାତ୍ରମାନଙ୍କୁ ଉସ୍‌କାଉ ଥାଏ । ସେତେବେଳକୁ ସମ୍ବଲପୁରଠାରେ ଛାତ୍ରକ୍ରିୟାନୁଷ୍ଠାନ କମିଟି ଗଢ଼ାଯାଇ, ସୁରେଶ ପୂଜାରୀ ତାର ନେତୃତ୍ୱ ନେଉଥାନ୍ତି ଏବଂ ଭୁବନେଶ୍ୱରରେ ବିରୋଧି ଦଳ ସହିତ ସମ୍ପର୍କ ରଖିଥାନ୍ତି । ବିରୋଧିଦଳର ସହଯୋଗରେ ନଭେମ୍ବର ମାସ ୨୧ ତାରିଖରେ ଭୁବନେଶ୍ୱର ଠାରେ ସେକ୍ରେଟାରୀଏଟ୍ ଘେରାଉ କରିବା ପାଇଁ ଏଇ କ୍ରିୟାନୁଷ୍ଠାନ କମିଟି ନିଷ୍ପତ୍ତି ନେଇ ବିଭିନ୍ନ ଛାତ୍ର ସଂଘଟନକୁ ଆହ୍ୱାନ ଦେଲା । ନଭେମ୍ବର ୨୧ ତାରିଖ ଦିନ ବହୁଛାତ୍ର

ସେକ୍ରେଟାରୀଏଟ୍ ସାମ୍ନା ପଡ଼ିଆ (ବର୍ତ୍ତମାନର ଇନ୍ଦିରାଗାନ୍ଧିପାର୍କ) ରେ ମିଳିତ ହେବେ ବୋଲି ଖବର ପାଇ ମୁଁ ପୁଲିସ୍ ବ୍ୟବସ୍ଥା କରିଥିଲି । ୨୧ତାରିଖ ଦିନ, କେନ୍ଦ୍ରାଞ୍ଚଳ ଉପ ପୁଲିସ ମହାନିରୀକ୍ଷକ ବି.ବି ପଣ୍ଡା, ଏବଂ ପୁରୀ ଜିଲ୍ଲାପାଳ ଶ୍ରୀଯୁକ୍ତ ଅଶୋକ ମିଶ୍ର, ସେକ୍ରେଟାରୀଏଟ୍‌ର ମୁଖ୍ୟ ଫାଟକ  ନିକଟରେ ଉପସ୍ଥିତ ଥା'ନ୍ତି । ଆଗର ନିଷ୍ପତ୍ତି ଅନୁସାରେ, ଛାତ୍ରମାନେ ୧୪୪ ଧାରା ଭାଙ୍ଗିବାକୁ ଆସିଲେ, ପୁଲିସ୍ ଆରେଷ୍ଟ କରି ସେମାନଙ୍କୁ ଦୂରକୁ ନେଇ ଛାଡ଼ି ଦେବ ବୋଲି ବ୍ୟବସ୍ଥା ହୋଇଥିଲା । ସେଇ ଅନୁସାରେ ସକାଳ ୧୧ଟା ପରେ, ଯେତେବେଳେ ସେମାନେ ଶୋଭାଯାତ୍ରାରେ ଆସି ୧୪୪ ଧାରା ଭାଙ୍ଗିଥିଲେ ସେମାନଙ୍କୁ ପୁଲିସ୍ ଗାଡ଼ିରେ ନେଇ, ଚନ୍ଦକା, ବାଲିପାଟଣା, ବାଲିଅନ୍ତା ଥାନାରେ ରଖି ଦିଆଗଲା । ମାତ୍ର ସେଇ ଥାନାମାନଙ୍କରେ ଯଥେଷ୍ଟ ପରିମାଣରେ ପୁଲିସ୍ ଗିରଫ ହୋଇଥିବା ଛାତ୍ରମାନଙ୍କୁ ଜଗିବା ପାଇଁ ନଥିବା ଯୋଗୁ ପୁଲିସ୍ ଗାଡ଼ିରେ ସେମାନଙ୍କୁ ଛାଡ଼ିଦେଇ ଆସିଲା ପରେ ସେମାନେ ଥାନାରୁ ଚାଲି ଚାଲି ବହୁ ବାଟ ଆସିଲାପରେ ରାସ୍ତାରେ ଯାଉଥିବା ଗାଡ଼ି ମଟର ଅଟକାଇ ପୁଣି ଭୁବନେଶ୍ୱର ସହରକୁ ଫେରି ଆସିଲେ । ସେମାନେ ଫେରିଲା ବେଳକୁ ସେକ୍ରେଟାରୀଏଟ୍ ଭିତରେ ଗଣ୍ଡଗୋଳ ଆରମ୍ଭ ହୋଇଯାଇଥାଏ । କାରଣ  ପ୍ରଥମ ବ୍ୟାଚରେ ଆସିଥିବା ପ୍ରାୟ ୫୦୦ ଛାତ୍ରଙ୍କୁ ଆଠଦଶଟା ଗାଡ଼ିରେ ନେଇଗଲା ପରେ, ଠିକ୍ ୨ଟା ବେଳକୁ ପ୍ରାୟ ୪୦୦ ଛାତ୍ର ବିଭିନ୍ନ ଆଡୁ ଅଳ୍ପ ଅଳ୍ପ ସଂଖ୍ୟାରେ ଆସି ପ୍ୟାରେଡ୍ ପଡ଼ିଆରେ ଏକାଠି ହୋଇ, ସେମାନେ ସେକ୍ରେଟାରୀଏଟ୍ ସାମ୍ନାରେ ଠିଆ ହୋଇଥିବା ପୁଲିସ୍ ଆଡ଼କୁ ଟେକାପଥର ମାରିବାରେ ଲାଗିଲେ । ଟେକାପକାଇବା ଯୋଗୁ  ପୁଲିସ୍ ସେମାନଙ୍କୁ ଗୋଡ଼େଇ ଘଉଡ଼ାଇ ଦେଲେ । ପୁଲିସ୍ ଗୋଡ଼େଇ ଯିବା ସମୟରେ ମୁଖ୍ୟଫାଟକଦେଇ ସେକ୍ରେଟାରୀଏଟ୍‌ର ଜଣେ ପିଅନ୍ ଗଲାବେଳେ ତା' ହାତରେ ପୁଲିସ ଲାଠି ବାଜିଥିଲା । ସେତିକିରେ   ସେକ୍ରେଟାରୀଏଟ୍ ଭିତରକୁ ଯାଇ, ସେକ୍ରେଟାରୀଏଟ୍ ଛାତଉପରେ ଠିଆହୋଇ ବାହାରେ ଛାତ୍ର-ପୁଲିସଙ୍କ ନାଟ ଦେଖୁଥିବା କର୍ମଚାରୀମାନଙ୍କୁ କହିଥିଲା । ଏହି ଘଟଣାରେ କେତେକ ବିରୋଧିଦଳ  ସମର୍ଥୀତ ସେକ୍ରେଟାରୀଏଟ୍ କର୍ମଚାରୀ କାହିଁକି ପୁଲିସ୍ ପିଅନକୁ ମାରିଲା ବୋଲି ଦଳବାନ୍ଧି, ଘରୋଇ ସଚିବ ଶ୍ରୀ ସୁମୀୟାଙ୍କ କୋଠରୀ ପାଖକୁ ମାଡ଼ି ଆସିଲେ । ଚାହୁଁଚାହୁଁ ପ୍ରାୟ ୫୦୦ରୁ  ୬୦୦ କର୍ମଚାରୀ ଘରୋଇ ବିଭାଗ ସଚିବଙ୍କ ଆଗରେ ଏକାଠି ହୋଇ ପୁଲିସ୍ ବିରୁଦ୍ଧରେ ସ୍ଲୋଗାନ ଦେବାକୁ ଆରମ୍ଭ କଲେ । ସେକ୍ରେଟାରୀଏଟ୍ ଭିତରେ ପ୍ରବଳ ହଟ୍ଟଗୋଳ ସୃଷ୍ଟି ହେଲା । ସେମାନଙ୍କ ମଧ୍ୟରୁ କେତେକ  ସେକ୍ରେଟାରୀଏଟ୍‌ର ମୁଖ୍ୟଫାଟକ ପାଖକୁ ଚାଲିଆସି, ପୁଲିସ୍ ଗାଡ଼ିକୁ ପେଲି ବାହାର କରିବାକୁ ଲାଗିଲେ । ଆଉ କେତେକ ଅସଭ୍ୟ ଭାଷାରେ ପୁଲିସ୍‌କୁ ଗାଳି ଗୁଲଜ ଦେବାରେ ଲାଗିଲେ । ପ୍ରାୟ ୫୦୦ କର୍ମଚାରୀ ଘରୋଇ ସଚିବଙ୍କ କୋଠରୀରେ ପଶି ତାଙ୍କୁ ଗାଳି କଲାବେଳେ କେତେକ କର୍ମଚାରୀ ଛାତଉପରୁ  ଟେକାପଥର ପୁଲିସ୍ ଉପରକୁ ଫିଙ୍ଗିବାକୁ ଆରମ୍ଭ କଲେ । ହଠାତ୍ ପୁଲିସ୍ ସେକ୍ରେଟାରୀଏଟ୍ ଭିତରେ ଏବଂ ବାହାରେ ଦୁଇପଟୁ ଆକ୍ରମଣର ଶିକାର ହେଲା । ବାହାରେ ଯେଉଁ ଛାତ୍ର ଥିଲେ ସେମାନେ ଟେକାପଥର ଫିଙ୍ଗିଲା ବେଳକୁ

ଭିତରେ କର୍ମଚାରୀମାନେ ଟେକା ପକାଇଲେ । ଯେଉଁମାନଙ୍କୁ ସହର ବାହାରେ ଛାଡ଼ିଦିଆଯାଇଥିଲା ସେମାନେ ଆସି ଆନ୍ଦୋଳନକାରୀଙ୍କ ସଙ୍ଗେ ପୁଣି ଯୋଗ ଦେଲେ । କେତେ ଅସାମାଜିକ ବ୍ୟକ୍ତି ଏହାର ସୁଯୋଗ ନେଇ ରାସ୍ତାରେ ଯାଉଥିବା ସରକାରୀ ବସ୍ ଏବଂ ଜିପ୍‌ମାନଙ୍କରେ ନିଆଁ ଲଗାଇଦେଲେ । ସାରା ସହରରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେଲା ।

ଏଣେ ଘରୋଇ ସଚିବ ତାଙ୍କ କୋଠରୀରେ କର୍ମଚାରୀମାନଙ୍କ ସଙ୍ଗେ କଥାବାର୍ତ୍ତା କଲା ପରେ କୁହାଗଲା ଯେ ଏସ.ପି. ଏବଂ କଲେକ୍ଟର ଆସି କର୍ମଚାରୀମାନଙ୍କୁ କ୍ଷମା ମାଗନ୍ତୁ । ଯଦିଓ ସଚିବ ଶ୍ରୀ ସୁମାୟା ଏହା ଚାହୁଁନଥିଲେ ମାତ୍ର ସେତେବେଳର ଅବସ୍ଥାକୁ ଦେଖି ସେ ମୋତେ ଏବଂ କଲେକ୍ଟରଙ୍କୁ ତାଙ୍କ କୋଠାରୀକୁ ଯିବା ପାଇଁ ଖବର ପଠାଇଲେ । ମୁଁ ମୁଖ୍ୟ ଫାଟକ ପାଖେ ଥାଏ । କଲେକ୍ଟର ସହର ଭିତରକୁ ଯାଇଥା'ନ୍ତି । ଖବର ପାଇ ମୁଁ ଏକଥା ସେଠାରେ ଉପସ୍ଥିତ ଥିବା ଏସ.ଡି.ଓ ଶ୍ରୀରାଉତରାଏ ଏବଂ ଡି.ଆଇ.ଜିଙ୍କ ସଙ୍ଗେ କଥାବାର୍ତ୍ତା ହେଲି । ପ୍ରଥମେ ଯିବିକି ନାହିଁ ବୋଲି ଭାବୁଥିଲି ମାତ୍ର ଅବସ୍ଥା ଦୃଷ୍ଟିରୁ ଏବଂ ଘରୋଇ ସଚିବ ସୁମାୟା ଖବର ଦେଇଥିବା ହେତୁ ଯିବାପାଇଁ ନିଷ୍ପତ୍ତି ନେଲି । ମୁଁ, ଏସ.ଡ଼ି.ଓ ଶ୍ରୀ ରାଉତରାଏ, ମୁଖ୍ୟ ଫାଟକ ପାଖରୁ ଚାଲିଚାଲି, ଗୃହ ବିଭାଗ ଆଡ଼କୁ ଗଲା ବେଳେ ଆମ ସଙ୍ଗରେ ପ୍ରାୟ ୩୦୦ କର୍ମଚାରୀ ଯାଉଥାନ୍ତି । ସେମାନଙ୍କ ମଧ୍ୟରୁ ବହୁଲୋକ, ଏସ.ଡ଼ି.ଓଙ୍କୁ ଅଭଦ୍ରଭାଷାରେ ଶୋଧାଶୋଧି କରି ଗାଳି କରୁଥାନ୍ତି । ମୁଁ ଆସିବାପରେ, ଘରୋଇ ସଚିବ ବାହାରକୁ ଆସିଲେ ଏବଂ ସେମାନଙ୍କୁ ବୁଝାଇ ଦେଲା ପରେ ମୋତେ କହିଲେ କର୍ମଚାରୀମାନଙ୍କୁ କହିବାକୁ । ମୁଁ ଗୋଟେ ଚେୟାର ଉପରେ ଠିଆ ହୋଇ ଘଟଣା କହିଲା ପରେ ମୁଁ କହିଲି, ଅଜଣାତରେ ଏବଂ ଉଦ୍ଦେଶ୍ୟ ନଥାଇ, ଯଦି କୌଣସି ପୁଲିସ୍ କର୍ମଚାରୀ ସେକ୍ରେଟାରୀଏଟ୍‌ର ପିଅନ୍ ଆସିଲା ବେଳେ ତାଙ୍କୁ ଆଘାତ କରିଥାନ୍ତି ସେଥିଲାଗି ମୁଁ ଦୁଃଖିତ । ଏତକ କହି ମୁଁ ସିଧା ଗେଟ୍ ଆଡ଼କୁ ଆସିଲି ଏବଂ ଘରୋଇ ସଚିବ ତାଙ୍କ କୋଠରୀକୁ ଗଲେ । ସେତେବେଳକୁ ପ୍ରାୟ ୫ଟା ବାଜିଯାଇଥାଏ । ତେଣୁ କର୍ମଚାରୀମାନେ ମଧ୍ୟ ଅଫିସ୍ ଛାଡ଼ି ଘରକୁ ଗଲେ । ସେମାନେ ଗଲା ପରେ ମୁଁ କଲେକ୍ଟର ପୁଣି ପୁଲିସ୍‌କୁ ଏକାଠି କରି ସହର ମଧ୍ୟରେ ଚାଲିଥିବା ଭଣ୍ଡାଳିଚ୍ଛିମ୍‌କୁ ରୋକିବାପାଇଁ ଫୋର୍ସ ଧରି ଗଲୁ । କେତେକ ସ୍ଥାନରେ ଅସାମାଜିକ ବ୍ୟକ୍ତିମାନେ ଗାଡ଼ି ରୋକିବା ସମୟରେ ସେମାନଙ୍କୁ ଧରାଗଲା । ପ୍ରାୟ ରାତି ବାରଟା ବେଳକୁ ସହରରେ ଶାନ୍ତି ଆସିଲା । ଆମେ ସମସ୍ତେ କ୍ୟାପିଟାଲଥାନାକୁ ପ୍ରାୟ ରାତ୍ରି ୧୨ଟାକୁ ଫେରି ସବୁକଥାକୁ ନେଇ ବିଚାର କଲାପରେ ଜଣାପଡ଼ିଲା ଯେ ମୁଖ୍ୟତଃ, ସେକ୍ରେଟାରୀଏଟ୍ ମଧ୍ୟରେ କେତେକ ବିରୋଧିଦଳ ସମର୍ଥକ କର୍ମଚାରୀ ଏପରି ଗୋଟିଏ ଘଟଣା ଘଟାଇବାର ପୂର୍ବ ନିଷ୍ପତ୍ତି ବିଷୟରେ ଆମ ପାଖରେ କିଛି ଖବର ନଥିଲା । ଯେଉଁଥିପାଇଁ ସେକ୍ରେଟାରୀଏଟ୍ ଭିତରେ ଯେଉଁ ଗଣ୍ଡଗୋଳ ସୃଷ୍ଟି ହେଲା ତାକୁ ସମାଧାନ କରିବାକୁ ଅଢ଼େଇ ଘଣ୍ଟା ସମୟ ଲାଗିଲା ଏବଂ ସେଇ ସମୟ ମଧ୍ୟରେ ସହରରେ ବିରୋଧିଦଳ ପ୍ରରୋଚିତ ବ୍ୟକ୍ତିମାନେ ଜଳାପୋଡ଼ା କାମ ଆରମ୍ଭ କରିଦେଲେ ।

ଦ୍ୱିତୀୟରେ ଆନ୍ଦୋଳନକାରୀମାନଙ୍କୁ ଗିରଫ କରି ଗାଡ଼ିରେ ନେଇ ଦୂରରେ ଛାଡ଼ିବା ଏବଂ ସେମାନଙ୍କୁ ନଜଗିବା ଆଉ ଏକ ବିରାଟ ଭୁଲ । ଏହାଦ୍ୱାରା ଆମ ପାଖରେ ଥିବା ଗାଡ଼ି ଗୁଡ଼ିକ ବହୁଦୂରକୁ ଚାଲିଗଲା ଏବଂ ଶୀଘ୍ର ଫେରି ପାରିଲା ନାହିଁ । ତେଣୁ ଦରକାର ବେଳେ ଗାଡ଼ି ଅଭାବରୁ ପୁଲିସ୍ ଫୋର୍ସ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯାଇ ପାରିଲେ ନାହିଁ । ତାଛଡ଼ା ଆମ ପାଖେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ସମ୍ଭାଳିବା ପାଇଁ ଯେତିକି ପୁଲିସ୍ ଦରକାର ତାହାଠାରୁ ବହୁତ କମ୍ ଥିଲା । ଆଗରୁ ସ୍ୱତନ୍ତ୍ର ପୁଲିସ ସଂସ୍ଥା ଏ ବିଷୟ କିଛି ଖବର ଦେଇନଥିଲେ ।

ବାରଟା ବେଳେ, ଏକାମ ସାରି ଡଏଣ୍ଟ ରିପୋଟ ଲେଖି, ଘରକୁ ଫେରିଲା ବେଳକୁ ପ୍ରାୟ ସକାଳ ହୋଇଯାଇଥାଏ । ସେ ଦିନ ୨୨ ତାରିଖ, ପୁଣି ଡି.ଏସ.ଓ., ଏ.ଆଇ.ଏସ୍.ଏଫ୍ ଏମାନେ ରାସ୍ତାରୋକ କରିବେ ବୋଲି ଧମକ୍ ଦେଇଥାନ୍ତି । ଯେତିକି ପୁଲିସ ଦରକାର ଆମ ପାଖରେ ନଥିବା ହେତୁ ଆଇ.ଜିଙ୍କୁ କହି ଭୁବନେଶ୍ୱରରେ ଥିବା ସି.ଆର.ପି.ଏଫ୍ ବାଟାଲିୟାନ୍‌ରୁ ଗୋଟେ କମ୍ପାନୀ ଆଣିଲୁ । ୨୨ତାରିଖ ଦିନ ଛାତ୍ରମାନଙ୍କର ଶୋଭାଯାତ୍ରା ଭଲରେ ଭଲରେ ସମାପ୍ତ ହୋଇଥିଲା । ଯଦିଓ ବାମପନ୍ଥୀ ଛାତ୍ରମାନେ ଗଣ୍ଡଗୋଳ କରିବା ପାଇଁ ଚେଷ୍ଟା କରିଥିଲେ, ମାତ୍ର ବହୁ ସଂଖ୍ୟାରେ ପୁଲିସ୍ ବନ୍ଦୋବସ୍ତ ଦେଖି ଗଣ୍ଡଗୋଳ କରିବାକୁ ସାହସ କରିନଥିଲେ । ସେମାନେ ଶୋଭାଯାତ୍ରା କଲାପରେ, ୨୫ତାରିଖ ଦିନ ଅଖିଳଭାରତୀୟ ବିଦ୍ୟାର୍ଥୀ ପରିଷଦ ସେକ୍ରେଟାରୀଏଟ୍ ସାମ୍ନାରେ ଧାରଣା ଦେବେ ବୋଲି ଡାକରା ଦେଲେ । ଆଗରୁ ତାଙ୍କ ନେତାମାନଙ୍କ ସହ କଥାବାର୍ତ୍ତା ହେଲା ଏବଂ ସେମାନେ ପ୍ରତିଶ୍ରୁତି ଦେଲେ ଯେ ଧାରଣା ସମୟରେ କୌଣସି ପ୍ରକାର ଗଣ୍ଡଗୋଳ କରିବେ ନାହିଁ । ସେ ଯାହାହେଉ ୨୨ ତାରିଖ ପରି ପୂର୍ଣ୍ଣମାତ୍ରାରେ ପୁଲିସ୍ ବନ୍ଦୋବସ୍ତ କରାଗଲା । ସେମାନଙ୍କ ଶୋଭାଯାତ୍ରାକୁ ସଚିବାଳୟ ସାମ୍ନାପଡ଼ିଆକୁ ଆଣିବାକୁ ଦିଆନଯିବାର ବନ୍ଦୋବସ୍ତ ମଧ କରାଗଲା । ପି.ଏମ୍.ଜି. ଛକ ପାଖେ ୨୫ ତାରିଖ ଦିନ ସକାଳ ଏଗାରଟା ବେଳକୁ ପ୍ରାୟ ଏକହଜାର ଶୋଭାଯାତ୍ରାକାରୀ ଆସି ପହଞ୍ଚିଲା ପରେ, ହଠାତ୍ ସେମାନେ ପୁଲିସ କର୍ଡ଼ନ ଭାଙ୍ଗିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ପଛପଟୁ ଟେକାପଥର ବୃଷ୍ଟି କଲେ । ସେମାନଙ୍କ ସାଙ୍ଗରେ ମଧ କେତେ ଅସାମାଜିକ ବ୍ୟକ୍ତି ଆସିଥାନ୍ତି । ଗଣ୍ଡଗୋଳ କରିବା ପାଇଁ ସେମାନେ ଆଗରୁ ନିଷ୍ପତ୍ତି ନେବା ସଙ୍ଗେ ସଙ୍ଗେ ପ୍ରସ୍ତୁତ ହୋଇ ଆସିଥିଲେ । ମାତ୍ର ସେମାନଙ୍କର ନେତା ପୁଲିସ୍ ପାଖରେ ପ୍ରତିଶ୍ରୁତି ଦେଇଥିଲେ ଯେ ଧାରଣା ସମୟରେ କୌଣସି ଗଣ୍ଡଗୋଳ କରିବେ ନାହିଁ ।

ଟେକାପଥର ମାରିବା ଯୋଗୁ ଆଇନ୍ ଶୃଙ୍ଖଳା ରକ୍ଷାକରୁଥିବା ପୁଲିସ୍ ଖଣ୍ଡିଆ ଖାବରା ହେଲେ । ମୁଁ ଆଗରେ ଥାଏ । ମୋଦେହରେ ମଧ ପଥର ମାଡ଼ ହେଲା । କଲେକ୍ଟର, ବେଆଇନ୍ ଜନତାକୁ ଘଉଡ଼ାଇବା ପାଇଁ ଆଦେଶ ଦେଲେ । ତେଣୁ ପି.ଏମ.ଜି. ଛକପାଖେ, କେତେ ରାଉଣ୍ଡ ଲୁହାବୁହା ବାଷ ମାରିଲା ପରେ, ଆନ୍ଦୋଳନକାରୀମାନେ ଛତ୍ରଭଙ୍ଗ ଦେଇ ଚାଲିଯାଇ, ନିକଟସ୍ଥ ଅଫିସ୍, ବାସଗୃହମାନଙ୍କରେ ପଶି, ପୁଲିସ ଉପରକୁ ଟେକାପକାଇଲେ । ବହୁତ

ଆନ୍ଦୋଳନକାରୀ, ପି.ଏମ୍.ଜି. ଅଫିସ ଭିତରେ ପଶି ସେଇଠୁ ମଧ ପୁଲିସ୍ ଉପରକୁ ଟେକାମାରିଲେ । କେତେ ଜଣ ସରକାରୀ ବାସଭବନ ମଧରେ ରହି ଟେକା ପଥର ମାରିଲେ । ପୁଲିସ୍ ସେମାନଙ୍କୁ ଘଉଡ଼ାଇବା ବେଳେ କେତେକ ଏ.ଜି ଛକ ଦେଇ ସଚିବାଳୟର ନାଲି କୋଠା ଭିତରେ ପଶି ଯାଇ କର୍ମଚାରୀମାନଙ୍କ ସାଙ୍ଗରେ ମିଶି ସଚିବାଳୟ ମଧରୁ ଟେକା ପକାଇଲେ । ପୁଲିସ୍ ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ପିଟିବାକୁ ଆରମ୍ଭ କଲା । ମୃତୟନଥିବା ସି.ଆର.ପି.ଏଫ୍ ନାଲିକୋଠା ଭିତରେ ପଶି ଟେକାପକାଉଥିବା ଟୋକାମାନଙ୍କୁ ପିଟିଲେ । ସେମାନେ ନାଲିକୋଠା ପାହାଚ ଉଠୁ ଉଠୁ ସଚିବାଳୟର କର୍ମଚାରୀମାନେ, ଅଫିସଛାଡ଼ି ସିଧା ଚାଲିଲେ ମୁଖ୍ୟ ଶାସନ ସଚିବଙ୍କ ଅଫିସ ଆଡ଼େ । ସେଇଠି ରହି ସେମାନେ ପାଟି ତୁଣ୍ଡ ଆରମ୍ଭ କରିଦେଲେ । ସେମାନଙ୍କର ଦାବୀ ହେଲା ପୁଲିସ କାହିଁକି ସଚିବାଳୟ ମଧରେ ପ୍ରବେଶ କଲା ଆଉ ମାଡ଼ ଦେଲା । ଏଣେ ପି.ଏମ.ଜି. ଅଫିସ ହତା ଭିତରେ ରହି ପୁଲିସକୁ ଟେକାମାରୁଥିବା ଆନ୍ଦୋଳନକାରୀଙ୍କୁ ଧରିବା ପାଇଁ ପୁଲିସ ହତାଭିତରେ ପ୍ରବେଶ କଲାବେଳେ, ସେଠାକାର କର୍ମଚାରୀମାନଙ୍କ ସଙ୍ଗେ ଗଣ୍ଡଗୋଳ ହେବା ଦ୍ୱାରା, ସେମାନେ ଅଫିସ୍ ଛାଡ଼ି ପ୍ରତିବାଦ ଆରମ୍ଭ କରିଦେଲେ । ଏହାକୁ ବଡ଼ଧରଣର ଘଟଣା କରିବାକୁ ଆଗେଇ ଆସି ଅଫିସ ବନ୍ଦ କରିବା, ଉଚ୍ଚଅଫିସରଙ୍କୁ ଘେରାଉ କରିବା ଆରମ୍ଭ କଲେ । ଆନ୍ଦୋଳନକାରୀମାନେ ତାଙ୍କର ଷ୍ଟ୍ରାଟେଜୀରେ ପୁରାମାତ୍ରାରେ ସଫଳ ଲାଭ କଲେ । ସେମାନେ ମଧ କେତେକ କର୍ମଚାରୀମାନଙ୍କୁ ହାତକରି ସଚିବାଳୟପଛପଟ ମୁଖ୍ୟ ଦପ୍ତରରେ ମଧ ଗଣ୍ଡଗୋଳ କଲେ । ପ୍ରାୟ ତିନିଚାରିଘଣ୍ଟା ଲାଗି ସଚିବାଳୟ ଏବଂ ତାର ପାରିପାର୍ଶ୍ୱରେ ଥିବା ଅଫିସମାନଙ୍କରେ ଏକ ଅତ୍ୟନ୍ତ ଅଶୋଭନୀୟ ପରିସ୍ଥିତି ଉପୁଜିଲା । ଅଫିସ୍‌ମାନଙ୍କରେ ଗଣ୍ଡଗୋଳ ହେଲାପରେ, ଆନ୍ଦୋଳନକାରୀମାନେ ସହର ମଧରେ ପ୍ରବେଶ କରି କେତେକ ବସ୍‌କୁ ଟେକା ମାରି ଅଟକାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ପୁଲିସ୍ ପାଟ୍ରୋଲିଂ ଯୋଗୁ ତାହା ସମ୍ଭବ ହେଲାନି । ମାତ୍ର ସେମାନେ ଷ୍ଟେସନକୁ ଦଳ ଦଳ ହୋଇ ଫେରିଲା ବାଟରେ କେତେକ ମନ୍ତ୍ରୀଙ୍କ ଘରକୁ ମଧ ଟେକାପଥର ପକାଇଥିଲେ ।

ସେ ଦିନ ଗଣ୍ଡଗୋଳ ପରେ, ସଚିବାଳୟର କର୍ମଚାରୀମାନଙ୍କ ଦାବୀ ଅନୁସାରେ ନାଲିକୋଠାରେ ପୁଲିସ୍ ପଶି, କର୍ମଚାରୀଙ୍କୁ ମାଡ଼ ଦେବା ଅଭିଯୋଗରେ ପ୍ରଶାସନିକ ତଦନ୍ତ ପାଇଁ ମିଃ ମୋଦି, ସେକ୍ରେଟାରୀ, ଏଗ୍ରିକଲଚରଙ୍କୁ ନିର୍ଦ୍ଦେଶ ଦିଆଗଲା ବେଳେ, ମୁଖ୍ୟ ଦପ୍ତରରେ ପୁଲିସ୍ ପ୍ରବେଶ କରିବା ଅଭିଯୋଗକୁ ମିଃ ଭୂଜବଳ, ତଦନ୍ତ କରିବେ ବୋଲି କୁହାଗଲା । ଅବଶ୍ୟ ସେ ଦୁହେଁ କ'ଣ ତଦନ୍ତ କଲେ କିମ୍ବା କି ରିପୋର୍ଟ ଦେଲେ, ସେ କଥା ଜଣାନଥିଲା । କାରଣ ତଦନ୍ତ ପାଇଁ ମୋତେ କିମ୍ବା କୌଣସି ପୁଲିସ୍ କର୍ମଚାରୀଙ୍କୁ ସାକ୍ଷ୍ୟ ପ୍ରଦାନ ପାଇଁ ଡକାଯାଇନଥିଲା । ଏହାର କାରଣ ହୋଇପାରେ ଯେ, ସେ ଦିନ ସମସ୍ତେ ଦେଖିଛନ୍ତି ଗଣ୍ଡଗୋଳକାରୀମାନେ କର୍ମଚାରୀ ମାନଙ୍କ ସାଙ୍ଗରେ ସଚିବାଳୟ ଛାତ ଉପରୁ ପୁଲିସ୍ ଉପରକୁଟେକା ପଥର ଫିଙ୍ଗିବା ଦୃଶ୍ୟ । ତାହା ପୂର୍ବରୁ ସେକ୍ରେଟାରୀଏଟ୍ କର୍ମଚାରୀମାନେ ମଧ କେତେକ ଛୋଟ ଛୋଟ ଘଟଣାକୁ କେନ୍ଦ୍ରକରି ଅଫିସରମାନଙ୍କୁ ମାଡ଼ ଦେବା, ଘେରାଉ

ଘଟଣାମାନ ଆଗରୁ ଘଟିଯାଇଥାଏ । କର୍ମଚାରୀମାନେ ସଚିବ ଭାଗେ ଗୋବର୍ଦ୍ଧନଙ୍କୁ ମାଡ଼ ମାରିବା, ମୁଖ୍ୟ ଶାସନ ସଚିବଙ୍କୁ ଘେରାଉ କରିବା ଅନ୍ୟ ଅଫିସରମାନଙ୍କୁ ଧମକାଇବା ଘଟଣାମାନ ଆଗରୁ ଘଟିଯାଇଥାଏ ଏବଂ ଛୋଟ ଘଟଣାକୁ କେନ୍ଦ୍ରକରି, ସେମାନେ ସଚିବାଳୟ ମଧ୍ୟରେ ଅଶାନ୍ତିକର ପରିସ୍ଥିତି ସୃଷ୍ଟିକରି ଉଚ୍ଚପଦସ୍ଥ ଅଫିସରମାନଙ୍କୁ ଭୟଭୀତ କରାଉଥାନ୍ତି । ସହରରେ ଶାନ୍ତିଶୃଙ୍ଖଳା ପରିସ୍ଥିତି ବଜାୟ ରଖିବାପାଇଁ ପୁଲିସ ବନ୍ଦୋବସ୍ତ କିଛିଦିନ ପାଇଁ କରାଗଲା । ଏତିକି ବେଳକୁ ଖବର ମିଳିଲା ଯେ ଡିସେମ୍ବର ମାସ ଚାରିତାରିଖ ଦିନ ବ୍ରିଟେନର ଯୁବରାଜ ପ୍ରିନ୍ସ ଚାର୍ଲ୍ସ ଭୁବନେଶ୍ୱର ଆସୁଛନ୍ତି । ସେଥିପାଇଁ ସବୁପ୍ରକାର ପୁଲିସ୍ ବନ୍ଦୋବସ୍ତ କରାଗଲା ।




କଲେକ୍ଟର ପୁରୀରେ ରହୁଥିବା ଯୋଗୁ ଆଇନ ଶୃଙ୍ଖଳା ପରିସ୍ଥିତି ପାଇଁ, ମୁଖତଃ ଭୁବନେଶ୍ୱର ଏ.ଡି.ଏମ୍ ଙ୍କ ଉପରେ ନିର୍ଭର କରିବାକୁ ପଡୁଥାଏ । ଏ.ଡି.ଏମ୍ ମିଃ. ବିଶୋଇ ଜଣେ ଅତ୍ୟନ୍ତ ଭଦ୍ରଲୋକ ଏବଂ ସବୁକାମ ପାଇଁ ଆଗୁଆ । ସେଥିବା ଯୋଗୁ ମୋତେ ବିଶେଷ ଅସୁବିଧା ହୋଇନଥାଏ । ସବୁଥିରେ ତାଙ୍କର ପୂର୍ଣ୍ଣ ସହଯୋଗ ଏପରିକି କୌଣସିସ୍ଥାନରେ କିଛି ଘଟିବା ଶୁଣିଲେ ପୁଲିସ୍ ପହଞ୍ଚିବା ପୂର୍ବରୁ ସେ ପହଞ୍ଚି ଯାଉଥିଲେ ।

ଯଦିଓ ସହରର ପରିସ୍ଥିତି ସେତେ ଭଲନଥିଲା ତଥାପି ବ୍ରିଟେନ୍‌ର ଯୁବରାଜଙ୍କ ଭୁବନେଶ୍ୱର ଭ୍ରମଣ ସମୟରେ ଉତ୍ତମ ପୁଲିସ୍ ବନ୍ଦୋବସ୍ତ କରାଯାଇଥିଲା । ସେ ଡିସେମ୍ବର ଚାରିତାରିଖରେ ଭୁବନେଶ୍ୱର ବିମାନ ବନ୍ଦରରେ ଓହ୍ଲାଇ, ସିଧା କୋଣାର୍କ ଦେଖିବାକୁ ଗଲେ । ବିମାନ ବନ୍ଦର ଠାରୁ କୋଣାର୍କ ପର୍ଯ୍ୟନ୍ତ ରାସ୍ତାକଡ଼ରେ ଲୋକାରଣ୍ୟ । ଲକ୍ଷ ଲକ୍ଷ ଲୋକ ରାସ୍ତା କଡ଼ରେ ଠିଆହୋଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଉଥିଲେ । ଚାରି ତାରିଖରେ ସେ ଗଲା ପରେ ବିରୋଧିଦଳ ପାଞ୍ଚ ତାରିଖକୁ ଓଡ଼ିଶା ବନ୍ଦ ଡ଼ାକରା ଦେଲେ । ଯୁବରାଜ ଚାର୍ଲ୍ସ, ସେତେବେଳେ କୋଣାର୍କରୁ ଫେରି ରାଜଭବନରେ ଥାନ୍ତି । ୫ତାରିଖ ଦିନ ସକାଳୁ ବିମାନ ବନ୍ଦରରୁ ଦିଲ୍ଲୀ

ଫେରିଯିବେ । ଓଡ଼ିଶା ବନ୍ଦ ସତ୍ତ୍ୱେ, ବ୍ରିଟିଶ୍ ଯୁବରାଜଙ୍କ ଭ୍ରମଣ ସମୟରେ କୌଣସି ପ୍ରକାର ଅସୁବିଧା ହୋଇନଥିଲା । ଯୁବରାଜ ଚାର୍ଲ୍ସ ଗଲାପରେ ମୁଁ କଲେକ୍ଟର ସଚିବାଳୟ ମୁଖ୍ୟଫାଟକ ପାଖକୁ ଫେରିଲୁ । ଦୋକାନ ବଜାର ବନ୍ଦଥିଲେ ମଧ୍ୟ ଅଫିସ ପ୍ରାୟ ଖୋଲାଥିଲା । ଦିନ ଗୋଟାଏ ବେଳକୁ କେତେକ ବିରୋଧିଦଳ ନେତା ସଚିବାଳୟ ପଛପଟେ ଗଲାବେଳେ, ସେମାନଙ୍କ ସମର୍ଥକମାନେ ୧୪୪ଧାରା ଭାଙ୍ଗି ତାଙ୍କ ସାଙ୍ଗରେ ଯୋଗ ଦେଇ ସ୍ଲୋଗାନ ଦେବାକୁ ଆରମ୍ଭ କଲେ । ମୁଁ ପଛପଟକୁ ଯାଇ ସେମାନଙ୍କୁ ହଟାଇ ଦେବା ପରେ ସେଦିନ ମଧ୍ୟ ମୁଖ୍ୟ ଦପ୍ତରର କର୍ମଚାରୀମାନେ ପୁଲିସ୍ ଉପରକୁ ଟେକାପଥର ମାରିଥିଲେ ଏବଂ ପୁଲିସ୍ ଗୋଡ଼ାଇ ଗୋଡ଼ାଇ ପିଟିଥିଲା । ଦଳେ କର୍ମଚାରୀ, ମୁଖ୍ୟଦପ୍ତର ସାମ୍ନାରେ ଥିବା ପୁଲିସ୍ ବ୍ୟାରେକ୍ ମଧ୍ୟରେ ପଶି, ପୁଲିସ କର୍ମଚାରୀମାନଙ୍କ ଲୁଗାପଟା ଲୁଟି କରିବା ସହ ସେଠାରେ ଥିବା ଦୁଇଜଣ ଜଗୁଆଳୀ କନେଷ୍ଟବଲ ଉପରକୁ ଟେକା ମାରିଥିଲେ । ସେଣ୍ଟ୍ରି କନେଷ୍ଟବଲ, ଆତ୍ମରକ୍ଷା ପାଇଁ ଦୁଇ ରାଉଣ୍ଡ ଗୁଳି ଚଳେଇବାକୁ ବାଧ୍ୟ ହୋଇଥିଲେ ଏବଂ ଏଇ ଫାୟାରିଙ୍ଗରେ କେହି କ୍ଷତବିକ୍ଷତ ହୋଇନଥିଲେ ମଧ୍ୟ ସେମାନେ ସ୍ଥାନ ଛାଡ଼ି ପଳାଇ ଯାଇଥିଲେ । ଏ ଘଟଣା ପରେ ଅଳ୍ପ କିଛିଦିନ ପାଇଁ ସହରରେ ଉତ୍ତେଜନା ରହିଲା ମାତ୍ର ପରେ ବିଶେଷ କିଛି ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇନଥିଲା ।

ଏଇ ପରିସ୍ଥିତିରୁ ଆମେ କେତେଗୁଡ଼ିଏ କଥା ଶିଖିବାକୁ ପାଇଲୁ ଯାହାକି ଭବିଷ୍ୟତରେ ପୁଲିସ୍ ବନ୍ଦୋବସ୍ତ କରିବାରେ ସାହାଯ୍ୟ କରିଥିଲା । ମୁଖତଃ ଭବିଷ୍ୟତରେ ସମସ୍ତ ଶୋଭାଯାତ୍ରାକୁ ପି.ଏମ୍.ଜି. ଛକ ପାଖରେ ଅଟକାଗଲା । ସଚିବାଳୟ ଏବଂ ଏ.ଜି. ଅଫିସ ପଛପଟ ଆଗପଟରେ ୧୪୪ ଧାରା ରଖାଯାଇ ସେ ରାସ୍ତାରେ ଶୋଭାଯାତ୍ରା ବନ୍ଦ କରାଗଲା । ସଚିବାଳୟ ସମ୍ମୁଖ ପ୍ୟାରେଡ଼ ପଡ଼ିଆକୁ ପାର୍କ କରାଗଲା ଏବଂ ସଚିବାଳୟ କିମ୍ବା ବିଧାନସଭା ଘେରାଉ ଡ଼ାକରାଦେଲେ ପ୍ରତ୍ୟେକ ଅଫିସର ଗେଟ୍ ବନ୍ଦ ରଖାଗଲା ଯେପରିକି ବାହାର ଲୋକ ଭିତରକୁ ପ୍ରବେଶ କରିନପାରନ୍ତି ।

## ଚୌଧୁରୀ ହତ୍ୟାକାଣ୍ଡ :

ମୁଁ ଜଏନ୍ କଲା ଦିନଠାରୁ ୧୯୮୦ ମସିହା ଶେଷ ପର୍ଯ୍ୟନ୍ତ, ସହରରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ଲାଗି ରହିଥିବା ଯୋଗୁ ଟିକିଏ ନିଶ୍ୱାସ ମାରିବାକୁ ସମୟ ମିଳି ନଥିଲା । ଜିଲ୍ଲା ପୁଲିସ୍ ଶାସନ ଏବଂ ଅପରାଧ ନିରାକରଣ ସମ୍ବନ୍ଧରେ ମୁଁ ବିଶେଷ କିଛି କାର୍ଯ୍ୟ କରିପାରିନଥିଲି । ୧୯୮୧ ମସିହା ପ୍ରାରମ୍ଭରୁ ଏସବୁ ବିଷୟରେ ଦେଖିବାକୁ ଆରମ୍ଭକଲା ବେଳେ ଫେବୃୟାରୀ ମାସ ୩ତାରିଖରେ, ଭୁବନେଶ୍ୱରରେ ଗୋଟିଏ ଜଘନ୍ୟ ହତ୍ୟାକାଣ୍ଡ ଘଟିଲା । ଏହି ହତ୍ୟାକାଣ୍ଡ ପୁଲିସ ପାଇଁ ଏକ ଚାଲେଞ୍ଜ ରୂପେ ଦେଖା ଦେଇଥିଲା । ସେଇ ହତ୍ୟାକାଣ୍ଡ ଚଉଧୁରୀ ହତ୍ୟାକାଣ୍ଡ ରୂପେ ଜଣାଶୁଣା । ସେତେବେଳେ ମିଃ ଏଲ.କେ. ଚଉଧୁରୀ ସୁପରିନ୍‌ଟେଣ୍ଡେ ଇଂଜିନିୟରଭାବେ କାର୍ଯ୍ୟ କରୁଥାନ୍ତି ଏବଂ ଛଅନମ୍ବର ଇଉନିଟ୍‌ର ଗୋଟିଏ ଟାଇପ୍ ଫାଇଭ୍ କ୍ୱାଟରରେ ରହୁଥାନ୍ତି ।

ତାଙ୍କର ଗୋଟିଏ ଝିଅ କନେଭେଣ୍ଟରେ ପଢୁଥାଏ । ପୁଅଟି ଛୋଟ । ମିଃ ଚୌଧୁରୀଙ୍କ ଘରେ ଗୃହ କାମ କରିବା ପାଇଁ କାହ୍ନୁ ବାରିକ ନାମରେ ଜଣେ ଏନ୍.ଏମ. ଆର୍ ଲୋକ ଥାଏ । ଫେବୃଆରୀ ଦୁଇ ତାରିଖଦିନ, ମିଃ ଚଉଧୁରୀ ସରକାରୀ କାମରେ ବ୍ରହ୍ମପୁର ଗଲାପରେ, ପିଲା ଦୁହେଁ ସ୍କୁଲକୁ ଯାଇଥିଲେ । ଘରେ ମିସେସ୍ ଚଉଧୁରୀ ଏବଂ ବାହ୍ନୁ ବାରିକ ଥିଲେ । ଏଗାରଟା ବେଳକୁ ଆଉ ଜଣେ ପିଅନ୍ ଆସି ଝିଅପାଇଁ ଟିଫିନ୍ ନେଇଗଲା ଏବଂ ତାର ଘଣ୍ଟାକ ପରେ ପୁରୁଣା ଭୁବନେଶ୍ୱରରୁ ମିସେସ ଚୌଧୁରୀଙ୍କ ମାମୁଁ ଡ଼କ୍ଟର ମାହାପାତ୍ର ଆସି ତାଙ୍କୁ ଖୋଜିଥିଲେ । ସେତେବେଳକୁ ଦିନପ୍ରାୟ ଗୋଟାକ ଉପରେ । ଘରେ କେବଳ କାହ୍ନୁଆ ଥିଲା । ସେ ତାଙ୍କୁ କହିଲା ଯେ ମିସେସ୍ ଚଉଧୁରୀ,ଗୋଟେ ଧଳା ଆମ୍ବାସଡ଼ର କାରରେ କାହା ସାଙ୍ଗରେ ବାହାରକୁ ଗଲେ । ଏକଥା ଶୁଣି, ତାଙ୍କ ମାମୁଁ ତାଙ୍କ ଘରକୁ ଫେରିଗଲେ । ଚାରିଟା ବେଳକୁ ଝିଅ କନ୍‌ଭେଣ୍ଟ ବିଦ୍ୟାଳୟରୁ ଘରକୁ ଆସି ଘରେ ମାଙ୍କୁ ନଦେଖି ଅପେକ୍ଷା କଲା । ସେତେବେଳକୁ ଘରେ କାହ୍ନୁ ବାରିକ ଏକା ଥାଏ ଏବଂ ଝିଅ ପଚାରିବାରୁ ସେଇ କଥା କହିଲା । କିଛି ସମୟ ଝିଅ ଅପେକ୍ଷା କଲା ମାତ୍ର ସନ୍ଧ୍ୟା ହେବାରୁ ଏବଂ ମା ନ ଫେରିବାରୁ ସେ ତା ଅଜାପାଖକୁ ଫୋନ୍ କଲା । ପୁରୁଣା ଭୁବନେଶ୍ୱରରୁ ପୁଣି ଡ଼କ୍ଟର ମହାପାତ୍ର ଆସିଲେ ଏବଂ କାହ୍ନୁଆକୁ ପଚରା ପଚରି କଲେ ମାତ୍ର ସେ ସବୁବେଳେ ସେଇ ଗୋଟିଏ କଥା କହୁଥାଏ । ତେଣୁ ଡ଼କ୍ଟର ମହାପାତ୍ର ତାଙ୍କର ଜଣାଶୁଣା ବନ୍ଧୁ ମାନଙ୍କ ଘରକୁ ଫୋନ୍ କଲେ ମାତ୍ର କୌଣସି ସ୍ଥାନରେ ମିସେସ ଚଉଧୁରୀଙ୍କ ଖବର ପାଇଲେନି । ଏଣେ ମିଃ ଚଉଧୁରୀ ନଥିବା ହେତୁ ପୁଲିସ୍ ଷ୍ଟେସନରେ ଖବର ଦେବାପାଇଁ ସେ ଇଚ୍ଛା କରୁନଥାନ୍ତି । ରାତି ଦଶଟା ସୁଦ୍ଧା ମିସେସ୍ ଚଉଧୁରୀ ନଫେରିବାରୁ ସେ କାହ୍ନୁଆକୁ କହିଲେ ଯେ, ସେ ଜାଣିଜାଣି ଠିକ୍ କଥା କହୁନି । ତେଣୁ ପୁଲିସ୍‌ରେ ଖବର ଦେବେ । ପୁଲିସ୍‌ରେ ଖବର ଦେବା କଥା ଶୁଣି କାହ୍ନୁଆ ଘରର ପଛ କାନ୍ଥ ଡେ଼ଇଁ ପଳେଇ ଗଲା । କାହ୍ନୁଆ ହଠାତ୍ ପଳେଇ ଯିବାରେ ତାଙ୍କର ସନ୍ଦେହ ବଢ଼ିଲା ଏବଂ ସେ ପୁଲିସ୍ ଷ୍ଟେସନକୁ ଫୋନ କରି ଖବର ଦେଲେ । ଖବର ପାଇ କ୍ୟାପିଟାଲ ପୁଲିସ ଷ୍ଟେସନରୁ ଜଣେ ଏସ.ଆଇ ଆସିଲେ ଏବଂ ତାଙ୍କ ସହିତ ସେଇରାତିରେ କାହ୍ନୁଆକୁ ସହରରେ କେତେ ଯାଗାରେ ଖୋଜିଲେ, ମାତ୍ର ପାଇଲେନି । ସେଦିନ ରାତିରେ ମିସେସ୍ ଚୌଧୁରୀଙ୍କ ବିଷୟରେ କିଛି ଖବର ମିଳିଲାନି ମାତ୍ର ସନ୍ଦେହରେ ସମସ୍ତେ ରହିଲେ ।

ପ୍ରାୟ ସକାଳ ୬ଟାରେ, ଲିଫଟ୍ ଇରିଗେସନର ଚେୟାରମ୍ୟାନ୍ ମୋ କ୍ୱାଟରରେ ପହଞ୍ଚି ମୋତେ ଏ ଘଟଣା କହିଲେ । ମୁଁ ତାଙ୍କସାଙ୍ଗରେ ଚୌଧୁରୀଙ୍କ ଛନମ୍ବର କ୍ୱାଟରକୁ ଗଲି । ସବୁକଥା ଶୁଣିଲା ପରେ, ମୁଁ ପ୍ରଥମେ ଘର ବୁଲି ଦେଖିଲି ମାତ୍ର କିଛି ସନ୍ଧାନ ପାଇଲି ନାହିଁ । ଘରପଛପଟ କଦଳୀ ବଗିଚା ଦେଖିଲି । ଗୋଟେ ସ୍ଥାନରେ ଛୋଟ ଗାତଟେ ଖୋଳା ହେବା ଛଡ଼ା ଆଉ କିଛି ଦେଖି ପାରିଲିନି । ଫେରି ପୁଣି ସମସ୍ତଙ୍କୁ ପଚରା ଉଚରା କଲାପରେ ଜଣାପଡ଼ିଲା କାହ୍ନୁଆ କହିଥିବା କଥା ମିଛ । ମୋର ସନ୍ଦେହ ହେବାରୁ ମୁଁ ଦୁଆର କାନ୍ଥ ଉପରେ ଚଢ଼ି, ଛାତ ଉପରକୁ ଗଲାବେଳେ ଦେଖିଲି ପାଚେରୀ କାନ୍ଥକୁ ଲାଗି କଦଳୀ ବଗିଚାର ଗୋଟେ ସ୍ଥାନରେ ଶୁଖିଲା

କଦଳୀ ପତ୍ର ଜମା ହୋଇଛି । ପାଚେରୀ ଉପରେ ଥାଇ ମୁଁ ହାବିଲଦାରକୁ କହିଲି ସେ ଶୁଖିଲା ପତ୍ର କାଢ଼ିଦେବା ପାଇଁ । ଶୁଖିଲା କଦଳୀପତ୍ର କାଢ଼ି ଦେଲା ପରେ ଦେଖିଲୁ ମିସେସ୍ ଚୌଧୁରୀଙ୍କ ମୃତ ଦେହ । ଘରର ପାଚେରୀକାନ୍ଥ ପାଖେ ଯାଇଥିବା ନାଳି ଉପରେ କଦଳୀପତ୍ର ଘୋଡ଼ିଆ ହୋଇ ଗୋଟିଏ ପଲିଥିନ୍ ବ୍ୟାଗ୍ ମଧରେ ରଖାଯାଇଛି । ଦେହରୁ ମୁଣ୍ଡକୁ ଅଲଗା କରି କଟାମୁଣ୍ଡକୁ ସେଇ ପଲିଥିନ୍ ବ୍ୟାଗ୍‌ରେ ବାନ୍ଧି ପାଖ ନଳା ପାଖରେ ପକାଇ କଦଳୀ ପତ୍ର ଘୋଡ଼ାଇ ଦେଇଛି । ଏକଥା ଦେଖିବା ପାଇଁ ଶହ ଶହ ଲୋକ ଜମିଗଲେ ଏବଂ ଏକପ୍ରକାର ଅଶାନ୍ତି ବାତାବରଣ ସୃଷ୍ଟି ହେଲା । ଏପରି ହତ୍ୟାକାଣ୍ଡ କେବେ ଭୁବନେଶ୍ୱର ସହରରେ ଘଟିନଥିଲା । ସମସ୍ତେ ମୁଖ୍ୟତଃ ମହିଳାମାନେ ପୁଲିସ୍ ଆଡ଼େ ଚାହିଁଲେ । ମୃତ ଦେହ ବାହାରିଲା ପରେ, ମୁଁ ଘରକୁ ତନ୍‌ତନ୍ କରି ଖୋଜିଲା ବେଳେ ଦେଖିଲି ଗାଧୁଆ ଘର କାନ୍ଥରେ ରକ୍ତର ଛିଟା ଲାଗିଛି । ପରେ ପରେ ବିନ୍ଦୁ ବିନ୍ଦୁ ରକ୍ତ ଗାଧୁଆ ଘର ପାଖରୁ ଦୁଆର ଦେଇ, ପାଚେରୀ କାନ୍ଥପର୍ଯ୍ୟନ୍ତ ପଡ଼ିଥିଲା । କିନ୍ତୁ ସେଇ ରକ୍ତ ବିନ୍ଦୁମାନଙ୍କୁ ସେ ପୋଛି ଦେଇଥିବା ଯୋଗୁ ଶୁଖିଲା ରକ୍ତର ଦାଗ ଦେଖା ଯାଉଥାଏ । ବାହାରପଟ ପାଖ ଟାଙ୍କି ଭିତରୁ ଗୋଟେ ନୂଆ ରକ୍ତଲଗା କଟୁରୀ ମିଳିଲା । ପରେ ଗ୍ୟାରେଜ ଘର ତଲାସୀ କରିବାରେ ମିସେସ୍ ଚୌଧୁରୀଙ୍କ ରକ୍ତଲଗା ସୁନାକାଚ, କିଛି ବାଳ, ସିନ୍ଦୁର ମିଳିଲା । ଏତକ ମିଳିଲା ପରେ ସହରରେ ପ୍ରଚାର ହେଲା ଯେ, ମିସେସ୍ ଚୌଧୁରୀଙ୍କୁ ବଳିଦିଆଯାଇଛି । ନାନା ପ୍ରକାର ଗୁଜବ୍ ପ୍ରଚାର ଆରମ୍ଭ ହେଲା ।

ପ୍ରଚାର ଯାହା ହେଉ ନା କାହିଁକି ଆମ ଆଗରେ ଗୋଟିଏ କଥା କାହ୍ନୁଆକୁ ନ ଧରିଲେ ହତ୍ୟାକାଣ୍ଡ ବିଷୟରେ କିଛି ଆଗେଇ ହେବନି । କାହ୍ନୁଆ ଘର ଏବଂ ଶ୍ୱଶୁର ଘରର ଠିକଣା ଆଣି, ଡି.ଏସ.ପି. ରାଜୁଦାସଙ୍କୁ ତା' ଘରକୁ ପଠାଇଲି । ସେ ଦିନ ରାତିରେ ଡି.ଏସ.ପି. ତା ଶ୍ୱଶୁର ଘରୁ, କାହ୍ନୁଆର ଗୋଟେ ବାହାଘର ଫଟୋ ଜବତ୍ କରିଆସିଲେ । ଘର ଖାନତଲାସ କରି ଆସିଲା ବେଳେ ସେ ଏତିକି ଜାଣିପାରିଲେ ତାଙ୍କ ଗାଁରୁ ବହୁତ ଲୋକ ରାଉରକେଲାରେ କାମକରୁଛନ୍ତି । ଏତକ ଖବର ପାଇଁ ମୁଁ ସେଇଦିନ ରାତିରେ ଜଣେ ଭଲ ଅଫିସରଙ୍କୁ ରାଉରକେଲା ପଠାଇଲି । ରାଉରକେଲାର ଜଲ୍‌ଦା ଅଞ୍ଚଳରେ ନିରାକାରପୁରର କେତେକ ଲୋକ ମାଟି କାମ କରୁଥିଲେ । ଅଫିସର ଜଣଙ୍କ ଅଠର ନମ୍ବର ପାଣ୍ଡି ସାହାଯ୍ୟରେ ଜଲଦା ଯାଇ ନିରାକାରପୁର ଅଞ୍ଚଳର କେତେକ ଲୋକଙ୍କୁ ଆଣି ପଚରାଉଚରା କରିଥିଲେ । ପ୍ରଥମେ ସେମାନେ କିଛି ଜାଣନ୍ତି ନାହିଁ ବୋଲି କହିଲେ ମାତ୍ର ତାଙ୍କ କଥାରେ ଏପଟ ସେପଟ ଦେଖି ଅଫିସର ଜଣଙ୍କ ସେମାନଙ୍କ ମଧରୁ ଜଣକୁ ଗୋଟିଏ ଚଟକଣା ଦେବାରେ ସେମାନଙ୍କ ମଧରୁ ଜଣେ କହିଲେ ଯେ କାହ୍ନୁଆ ବୋଲି ଜଣେ ନିରାକାରପୁର ସାଇଡ଼ର ଲୋକ ଦୁଇ ଦିନ ତଳେ ସେଠାକୁ ଆସି ତାଙ୍କ ପାଖେଥିଲା ଏବଂ ସେ ଜଣେ ଇଞ୍ଜିନିୟରଙ୍କ ସ୍ତ୍ରୀକୁ ମାରିଦେଇଛି ବୋଲି କହୁଥିଲା । ଏକଥା ଶୁଣିଲାପରେ ସେମାନେ ତାକୁ ପାଖରେ ନରଖିବାରୁ, ସେ ସେଇଠି ଲଣ୍ଡା ହୋଇ ସେଇ ଦିନ ସକାଳୁ ସକାଳୁ ଉତ୍କଳ ଏକ୍ସପ୍ରେସରେ ଦିଲ୍ଲୀ ଚାଲିଗଲା । ଅଫିସର ଜଣଙ୍କ ରାଉରକେଲାରୁ ମୋତେ ଏକଥା ଫୋନ କରି ଜଣାଇଲେ । ଦିଲ୍ଲୀ ଚାଲିଯିବା କଥାଶୁଣି ମୁଁ

କାହ୍ନୁଆ ଧରାପଡ଼ିବା ଆଶା ଛାଡ଼ି ଦେଲି । ତଥାପି ଦିଲ୍ଲୀରେ ବାଣପୁର ଅଞ୍ଚଳର ଯୁଗଳପ୍ରଧାନ ଦାଦନ ଶ୍ରମିକ ନେଇ ଦିଲ୍ଲୀରେ କେତେଜାଗାରେ କାମ କରାନ୍ତି ବୋଲି ଆଗରୁ ଜାଣିଥିଲି । ତେଣୁ ବାଣପୁରକୁ ଫୋନ କରି ତାଙ୍କପାଖରୁ ଖବର ବୁଝି, କ୍ୟାପିଟାଲ ଥାନାରୁ ଜଣେ ଅଫିସର ଏବଂ କ୍ରାଇମ୍ ବ୍ରାଞ୍ଚର ଜଣେ ଇନିସ୍‌ପେକ୍ଟରଙ୍କୁ ଦିଲ୍ଲୀପଠାଇଲି । ଆଶା ବହୁତ କମ୍ ଥାଏ । ଏଣେ ସବୁ ପ୍ରେସ୍‌ରେ ପୁଲିସ୍‌ର କାର୍ଯ୍ୟକଳାପ ଉପରେ ପ୍ରତ୍ୟେକ ଦିନ ସମ୍ବାଦ ବାହାରୁଥାଏ ।

ଅଫିସର ଦୁଇଜଣ ଦିଲ୍ଲୀରେ ପହଞ୍ଚି, ଓଡ଼ିଆ ଦାଦନ ଶ୍ରମିକମାନେ ଟ୍ରାନ୍ସଯମୁନା ଅଞ୍ଚଳରେ କାମ କରୁଛନ୍ତି ବୋଲି ଶୁଣିଲେ ଏବଂ ମୋତେ ଟେଲିଫୋନ୍‌ରେ କହିଲେ । ମୁଁ ତାଙ୍କୁ ଟ୍ରାନ୍ସଯମୁନା ଆଡ଼େ ଯାଇ ଓଡ଼ିଆ କଂଟ୍ରାକ୍ଟରଙ୍କୁ ପଚାରିବାକୁ ନିର୍ଦ୍ଦେଶ ଦେଲି । ସେମାନେ ପରଦିନ ଟ୍ରାନ୍ସ ଯମୁନା  ଅଞ୍ଚଳରେ ଘର ନିର୍ମାଣ କାର୍ଯ୍ୟ ଚାଲିଥିବା ଅଞ୍ଚଳରେ ବୁଲାବୁଲି କରି କିଛି ଖବର ନପାଇ ଗୋଟେ ପାନ ଦୋକାନ ପାଖରେ ଠିଆ ହୋଇ ପାନ ଦିଖଣ୍ଡ ବରାଦ ଦେଇ ଓଡ଼ିଆରେ କଥାବାର୍ତ୍ତା ହେଲାବେଳେ ପାନଦୋକାନୀ ତାଙ୍କୁ ଓଡ଼ିଆ ଜାଣି ସେମାନଙ୍କୁ ଓଡ଼ିଆରେ ପଚାରିଲେ । ପାନ ଦୋକାନୀ ଜଣକ ଓଡ଼ିଆ । ପାନ ଦୁଇଖଣ୍ଡ ପାଟିରେ ପୁରାଇ ଅଫିସର ତାଙ୍କୁ କାହ୍ନୁଆର ଫଟୋ ଦେଖାଇ ପଚାରିଲେ ଯେ ସେ ଏପରି ଗୋଟେ ଲୋକକୁ ଦେଖିଛନ୍ତି କି ? ପାନଦୋକାନୀ ଫଟୋରୁ କାହ୍ନୁଆକୁ ଚିହ୍ନି କହିଲା ଏବେ ଏବେ ସେ ତା ପାଖରୁ ପାନ ଖାଇ, ସାମ୍ନା କୋଠାଘର ପାଖେ କାମ କରୁଛି । ପାନଦୋକାନି ପାଟିରୁ କଥା ନସରୁଣୁ ଅଫିସର ଦେଖିଲେ କାହ୍ନୁଆ ସେ ପଟୁ ମୁଣ୍ଡରେ ଗୋଟେ ବୋଝ ଧରି ଆସୁଛି । ଅଳ୍ପ ଦୂରରେ କାହ୍ନୁଆକୁ ଦେଖି ସେମାନେ ବିଶ୍ୱାସ କରି ପାରିଲେନି । ମାତ୍ର ରାଉରକେଲାରୁ ଶୁଣିଥିବା ଲଣ୍ଡିତ ମସ୍ତକ କାହ୍ନୁଆକୁ ଚିହ୍ନିନେଲେ । ସେମାନେ ସାଧା ପୋଷାକରେ ଥିଲେ ଏବଂ କାହ୍ନୁଆକୁ ମାଡ଼ି ବସିଲେ । ଏଖବର ସେମାନେ ମୋତେ ଟେଲିଫୋନରେ ଜଣାଇ ଦେଲା ପରେ ଖବର ଚାରିଆଡ଼େ ପ୍ରଚାର ହୋଇଗଲା । ଭୁବନେଶ୍ୱର ପୁଲିସ୍ ହତ୍ୟାକାରୀକୁ ଏତେ ଚଞ୍ଚଳ ଦିଲ୍ଲୀରୁ ଧରିପାରିଲା ଏକଥା ମଧ୍ୟ ସବୁ ଖବର କାଗଜରେ ବାହାରିଲା । ସେତେବେଳେ ନୂଆ ହୋଇ ବାହାରୁଥିବା ''ଇଣ୍ଡିଆ-ଟୁଡ଼େ''ରେ ଗୋଟେ ବଡ଼ ସମ୍ବାଦ ଏଇ ହତ୍ୟାକାଣ୍ଡ ଏବଂ ପୁଲିସ୍ ଦିଲ୍ଲୀରୁ ହତ୍ୟାକାରୀକୁ ସାତଦିନ ମଧ୍ୟରେ ଠାବ କରି ଧରିବା ଖବର ପ୍ରକାଶ ପାଇଥିଲା ।

କାହ୍ନୁଆକୁ ଧରି ସେମାନେ ତିନିଦିନ ପରେ ଭୁବନେଶ୍ୱରରେ ପହଞ୍ଚିଲେ । କାହ୍ନୁଆକୁ ପଚାରିବାରେ ଜଣାଗଲା ଯେ, ତାର ଏନ.ଏମ୍.ଆର. ଚାକିରୀ ସାତ ଆଠ ବର୍ଷ ଧରି ସ୍ଥାୟୀ ହେଉନଥିବା ଯୋଗୁ, ସେ ମିସେସ୍ ଚୌଧୁରୀଙ୍କୁ ଦାୟୀ କରି ତାଙ୍କୁ ହତ୍ୟା କରିବା ପାଇଁ ବହୁଆଗରୁ ପ୍ଲାନ୍ କରି, ଏକାମ୍ରର ମାର୍କେଟ୍‌ରୁ ଗୋଟେ ନୂଆ କଟୁରୀ ଆଣି ରଖିଥିଲା । ସେ ଦିନ କେହି ଘରେ ନଥବାର ସୁଯୋଗ ନେଇ ତାଙ୍କୁ ଗାଧୁଆଘରେ ହତ୍ୟାକଲା ପରେ ଗୋଟେ ପଲିଥିନ୍‌ରେ ବାନ୍ଧି ପଛପଟେ ଲୁଚାଇ ରଖିଥିଲା । ରାତିରେ ତାକୁ ବହୁଦୂରରେ ନେଇ ପକାଇଥାନ୍ତା ମାତ୍ର ତାକୁ ସନ୍ଧ୍ୟାବେଳେ ସନ୍ଦେହ କରିବାରୁ ସେ ଘରଛାଡ଼ି ପଳାଇ ଗଲା । ଏଇ ହତ୍ୟାକାଣ୍ଡରେ ପୁରୀ  ସେସନ୍‌ଜଜ୍ ଶ୍ରୀଯୁକ୍ତ ଆଚାର୍ଯ୍ୟ କାହ୍ନୁଆକୁ ମୃତ୍ୟୁଦଣ୍ଡ ଆଦେଶ ଦେଲେ, ମାତ୍ର ହାଇକୋର୍ଟ

ମୃତ୍ୟୁଦଣ୍ଡକୁ କମାଇ ଆଜୀବନ କାରାଦଣ୍ଡ ଦେଇଥିଲେ । କାହ୍ନୁଆ ପୁରୀ ଜେଲ୍‌ରେ ଦଣ୍ଡ ଭୋଗୁଥିବା ବେଳେ ମୃତ୍ୟୁବରଣ କରିଥିଲା ।

ଏଇ ହତ୍ୟାକାଣ୍ଡ ଘଟଣା ପୁଲିସ ଧରି ପାରିଲା ପରେ ଭୁବନେଶ୍ୱର ପୁଲିସ୍‌ର ଇମେଜ୍ ଯଥେଷ୍ଟ ପରିମାଣରେ ବଢ଼ିଯାଇଥିଲା । ଏ ଘଟଣା ପରେ, ପୁଣି ଜଣେ ଏନ.ଏମ୍. ଆର ଆଉ ଜଣେ ମୁଖ୍ୟମନ୍ତ୍ରୀଙ୍କ ସ୍ତ୍ରୀକୁ ପନିକିରେ ଗୋଡ଼ାଇ ଗୋଡ଼ାଇ ହାଣିବା ବେଳେ ଧରାପଡ଼ିଥିଲା । ସହରରେ ଏକ ପ୍ରକାର ଚାଞ୍ଚଲ୍ୟ ଖେଳିଗଲା ଏବଂ ଯେଉଁମାନଙ୍କ ଘରେ ଚାକର ଏନ୍.ଏମ୍.ଆର ଥିଲେ ସେମାନେ ସତର୍କ ହେଲେ ।

ଏ ଘଟଣା ପରେ ଭୁବନେଶ୍ୱରରେ ପ୍ରଥମ ଥର ପାଇଁ ଗୋଟିଏ କାର୍ ଚୋରୀ କେସ୍ ରିପୋର୍ଟ ହେଲା । କୃଷି ମହାବିଦ୍ୟାଳୟର କୁଳପତି ବୈଦ୍ୟନାଥ ମିଶ୍ର ସ୍ତ୍ରୀୟା ଟକିଜ୍‌କୁ ସିନେମା ଦେଖି ଯାଇଥିଲେ ଏବଂ ତାଙ୍କ ଫିଆଟ୍‌କାରକୁ ବାହାରେ ଚାବି ପକାଇ ରଖି ଦେଇଥିଲେ । ସନ୍ଧ୍ୟା ୫ଟା ବେଳେ ସିନେମାହଲ୍ ସାମ୍ନାରୁ କେହି, ସେ କାରକୁ ନେଇ ଚାଲିଗଲା । ମିଃ ମିଶ୍ର ଏ ଚୋରୀ ଘଟଣା ସନ୍ଧ୍ୟା ସାତଟା ବେଳକୁ ମୋତେ ଟେଲିଫୋନ କରି କହିଲେ । ମୁଁ ତାଙ୍କୁ ଥାନାରେ ଖବର ଦେବାକୁ କହି, ମୋ ଅଫିସ୍‌ରୁ ଏସ.ପି. ବରହମପୁର୍, ଫୁଲବାଣୀ, ବାଲେଶ୍ୱର, ମୟୂରଭଞ୍ଜ ଏବଂ ସମ୍ବଲପୁରକୁ ଜଣାଇଥିଲି ଏବଂ କାର୍‌ର ରଙ୍ଗ, ଇଂଜିନ୍ ନମ୍ବର, ଗାଡ଼ିନମ୍ବର ସବୁ ପରେ ପରେ ବେତାର ମାଧ୍ୟମରେ ପଠାଇଲି । ତାର ପରଦିନ ଖବର ମିଳିଲା ଯେ, ସେ ଗାଡ଼ି ଚୋର ସହିତ ବରଗଡ଼ରେ ଧରା ହୋଇଛି । ତଦନ୍ତ ବେଳେ ଜଣାଗଲା ଯେ, ସେ ଗାଡ଼ିଚୋର ଜଣକ ଓଡ଼ିଶା ବାହାର ଲୋକ । ନିଜକୁ ଜଣେ ଆର୍ମି କ୍ୟାପଟେନ୍ ବୋଲି ପରିଚୟ ନେଇ ବହୁତ ଲୋକଙ୍କୁ ଆଗରୁ ଠକି ଥିଲା । ଚାରିଦିନ ଆଗରୁ ଭୁବନେଶ୍ୱର ଆସି ଷ୍ଟେସନ୍ ପାଖ ଗୋଟେ ହୋଟେଲ୍‌ରେ ସୈନ୍ୟ ବିଭାଗର କ୍ୟାପଟେନ ବୋଲି କହିରହିଥିଲା । ସେ ଦିନ ୬ଟା ପରେ ଭୁବନେଶ୍ୱରରେ ବୁଲିବାକୁ ଯାଉଛି କହି ଖଣ୍ଡେ ହ୍ୟାଣ୍ଡବ୍ୟାଗ୍ ଧରି ସ୍ତ୍ରୀୟା ସିନେମା ହଲ ପାଖରେ ପହଞ୍ଚି ତା ପାଖରେ ଥିବା ମାଷ୍ଟର ଚାବିରେ ଫିଆଟ୍ କାରର କବାଟ ଖୋଲି ନେବା ପାଇଁ ଚେଷ୍ଟାକଲାବେଳେ ଗାଡ଼ିର ବେଟାରୀ ଡାଉନ ଥିବା ଯୋଗୁ ଗାଡ଼ି ଷ୍ଟାର୍ଟ ହୋଇନଥିଲା । ପାଖରେ ଥିବା କେତେ ଜଣ ରିକ୍ସାବାଲାଙ୍କୁ ପାଞ୍ଚଟଙ୍କା ଦେଇ ଗାଡ଼ି ଠେଲିକରି ଷ୍ଟାର୍ଟ କଲାପରେ ସିଧା ଗାଡ଼ିର ନମ୍ବର ପ୍ଲେଟ ନ ବଦଳାଇ ଚାଲିଲା । ଖୋର୍ଦ୍ଧା ପାଖେ ପେଟ୍ରୋଲ ପକାଇ, ନୟାଗଡ଼ ରାସ୍ତାରେ ଯାଇ ରାତି ୯ଟା ପରେ ବୌଦରେ ପହଞ୍ଚିଲା । ବୌଦରେ ପହଞ୍ଚି ସେଠାକାର ସରକିଟ୍ ହାଉସ୍‌ରେ ରହିବା ପାଇଁ ଏସ୍.ଡ଼ି.ଓଙ୍କୁ ଫୋନ୍ କରି ଗୋଟେ ରୁମ୍ ନେଇ ରହିଲା ଏବଂ ତାଙ୍କୁ ମଧ ସୈନ୍ୟ ବାହିନୀର କ୍ୟାପଟେନ୍ ବୋଲି ପରିଚୟ ଦେଲା ।

ପରଦିନ ସକାଳେ ଜଳଖିଆ ମଗାଇ ଖାଇଲା ପରେ ବୌଦରୁ ସୋନପୁର ଦେଇ ବଲାଙ୍ଗୀର ଗଲା । ବଲାଙ୍ଗୀର ବଜାରରେ ପାନ, ସିଗାରେଟ୍ ନେଇ ବରଗଡ଼ ଅଭିମୁଖେ

ବାହାରିଲା ବାଟରେ ଲୋହିସିଂଘା ପାଖେ, ଅରଜିନାଲ ନମ୍ବର ପ୍ଲେଟକାଢ଼ି ତା ବ୍ୟାଗରୁ ଆଉ ଗୋଟେ ନମ୍ବର ପ୍ଲେଟ ଲଗାଇ ବରଗଡ଼ ଆଡ଼େ ଗଲାବେଳେ ଅରଜିନାଲ ନମ୍ବର ପ୍ଲେଟକୁ ରାସ୍ତାକଡ଼ରେ ପୋପାଡ଼ି ଦେଇଥିଲା । ସେ ଯିବାର ଅଳ୍ପ ସମୟପରେ ସେଇ ବାଟରେ ଜଣେ କନେଷ୍ଟବଳ ଆଉ ଜଣେ ହୋମଗାର୍ଡ଼ ଥାନାକୁ ଫେରୁଥିବା ବେଳେ ରାସ୍ତାକଡ଼ରେ ଗାଡ଼ିର ନମ୍ବର ପ୍ଲେଟ୍ ପଡ଼ିଥିବାର ଦେଖି ତାକୁ ଆଣି ଥାନାରେ ଦାଖଲକରିଥିଲେ । ସେତେବେଳକୁ ଥାନାରେ ବେତାର ଖବର ପହଞ୍ଚିଥିଲା । ଥାନା ବଡ଼ବାବୁ ନମ୍ବରପ୍ଲେଟରୁ ଗାଡ଼ି ନମ୍ବରନେଇ ଏସ.ପି. ସମ୍ବଲପୁରକୁ ବେତାର ମାଧମରେ ଖବର ଦେଲେ । ଏସ.ପି. ସମ୍ବଲପୁର ମଧ ବରଗଡ଼ ଥାନାକୁ ଗାଡ଼ି ଚୋରୀ ବିଷୟରେ ଖବରଦେଇଥିଲେ । ଦିନ ଏଗାରଟା ବେଳେ, ବରଗଡ଼ ଥାନାବାବୁ ରାସ୍ତାରେ ଗାଡ଼ି ଚେକିଂ କଲାବେଳେ, ଚୋର ଗାଡ଼ିଧରି ସେଇଠି ପହଞ୍ଚିଥିଲା । ତାଙ୍କ ଗାଡ଼ିକୁ ଚେକ୍ କଲାବେଳେ ସେ ନିଜକୁ ସୈନ୍ୟବାହିନୀର ଅଫିସର କହି, ଥାନାବାବୁଙ୍କୁ ଗାଳିଗୁଲଜ କଲା ମାତ୍ର ଥାନାବାବୁ ସନ୍ଦେହରେ ତାଙ୍କୁ ଓ ତାଙ୍କ ଗାଡ଼ିକୁ ଥାନାକୁ ଆଣି ଇଂଜିନ୍ ନମ୍ବର ପରୀକ୍ଷା କରି ଦେଖିବାରେ ସେଇ ଗାଡ଼ି ଭୁବନେଶ୍ୱରରୁ ଚୋରୀ ହୋଇଛି ବୋଲି ଜଣାଗଲା । ତାକୁ ଧରି କରି ଭୁବନେଶ୍ୱର ଆସିଲା ପରେ ଜଣାଗଲା ଯେ, ସେ ଲୋକ ଜଣେ ଇଣ୍ଟରଷ୍ଟେଟ୍ ଦାଗୀ ଏବଂ ଆଗରୁ ବହୁ ରାଜ୍ୟରେ ଠକାମୀ ଚୋରୀରେ ସଂପୃକ୍ତ । ଏକାର ଚୋରୀର ମାତ୍ର ଅଳ୍ପଦିନ ପରେ ମାର୍ଚ୍ଚ ମାସ ୧୮ ତାରିଖରେ ଆଉଗୋଟେ ଆମ୍ବାସଡ଼ର ଗାଡ଼ିକୁ ସତ୍ୟନଗର ମଶାଣୀ ପାଖେ ତିନି ଲୋକ ଭୁଜାଲି ଏବଂ ବନ୍ଧୁକ ଦେଖାଇ ଛଡ଼ାଇ ନେଲେ । ଭୋରୁ ଭୋରୁ ମୋତେ ଏଖବର ମିଳିଲା । ପୂର୍ବ ପରି ମୁଁ ସଙ୍ଗେ ସଙ୍ଗେ ସମ୍ବଲପୁର, ବାଲେଶ୍ୱର ପ୍ରଭୃତି ବାହାର ରାଜ୍ୟକୁ ଯିବା ବାଟ ଜିଲ୍ଲା ଏସ.ପି.ମାନଙ୍କୁ ଖବର ଦେଲି । ସେମାନଙ୍କୁ ମଧ କୁହାଗଲା ଠିକ୍ କେଉଁସମୟରେ ଡକାୟତମାନେ ଗାଡ଼ି ନେଲେ ଏବଂ ଯଦି ସିଧା ସିଧା ସମ୍ବଲପୁର କିମ୍ବା ବାଲେଶ୍ୱର, ବରହମପୁର ଆଡ଼େ ଯାଆନ୍ତି ତେବେ କେଉଁ ସମୟ ମଧରେ ସେ ସ୍ଥାନମାନଙ୍କରେ ପହଞ୍ଚିବେ, ସେକଥା କୁହାଗଲା । ସମ୍ବଲପୁର ଏସ.ପି. ମୋ ଟେଲିଫୋନ ପାଇଁ ତାଙ୍କ ଅତିରିକ୍ତ ଏସ.ପି. ପ୍ରଫୁଲ୍ଲ କୁମାର ମିଶ୍ରଙ୍କୁ ଯୁଯୁମରା ପାଖେ ଗାଡ଼ି ଚେକିଂ କରିବାକୁ କହିଲେ । ସେ ଚେକିଂ କଲାବେଳେ, ଗୋଟେ ଆମ୍ବାସଡ଼ର ଗାଡ଼ି, ପୁଲିସ ଚେକିଂ ଦେଖି ବାଟ ଭାଙ୍ଗି ପଳେଇବାକୁ ଚେଷ୍ଟା କଲା । ମିଃ ମିଶ୍ର ଏବଂ ପୁଲିସ ଦଳ, ତାକୁ ଗୋଡ଼ାଇବାରେ ସେମାନେ ଜଙ୍ଗଲ ରାସ୍ତାରେ ଗଲେ ଏବଂ କିଛି ବାଟ ଗଲା ପରେ ଗାଡ଼ି ଛାଡ଼ି ଦେଇ ଜଙ୍ଗଲ ମଧରେ ପଳେଇଲେ । ଗାଡ଼ି ଜବତ୍ କଲା ପରେ ପୁଲିସ ବିଭିନ୍ନ ଯାଗାରେ ବସ ଚେକିଂ କରି ୩ଜଣ ଡକାୟତକୁ ଧରିଲା ଏବଂ ଗାଡ଼ିସହ ଡକାୟତ ଦଳ ମାତ୍ର ଦୁଇ ଦିନ ମଧରେ ଧରା ହୋଇ ଭୁବନେଶ୍ୱର ଆସିଲେ । ଏତେ ଚଞ୍ଚଳ ଚୋରାଗାଡ଼ି ଧରା ପଡୁଥିବାରୁ ସମ୍ବାଦପତ୍ରମାନେ ପ୍ରଂଶସା ସମ୍ବାଦ ପ୍ରକାଶ କଲେ ଏବଂ ଜନସାଧାରଣଙ୍କ ପୁଲିସ୍ ଉପରେ ଆସ୍ଥା ବଢ଼ିବାକୁ ଲାଗିଲା । ଛୋଟ ବଡ଼ ଚୋରୀ ବିଷୟରେ ପୁଲିସ୍କୁ ଖବର ଦେବା ପାଇଁ ସେମାନେ ଆଗେଇ ଆସିଲେ । ଯେକୌଣସି ଚୋରି କିମ୍ବା ଡକାୟତି, ନିଶ୍ଚିତ ଭାବରେ ଧରାପଡ଼ିପାରିବ, ଯଦି ପୁଲିସ୍ ଠିକ୍

ସମୟରେ ଏବଂ ନିଷ୍ପାପର ଭାବେ ତା ଉପରେ କାର୍ଯ୍ୟ କରିପାରିବ । ଉପରୋକ୍ତ ଦୁଇଟି ଘଟଣା ତାର ଉଦାହରଣ ମାତ୍ର ।

## ଛବିରାଣୀ ହତ୍ୟାକାଣ୍ଡ :

୧୯୮୦ ମସିହା ଅକ୍ଟୋବର ମାସ ଦୁଇତାରିଖ ଦିନ ରାତିରେ ସାମ୍ବାଦିକ ନବ ମହାପାତ୍ରଙ୍କ ପତ୍ନୀ ଛବିରାଣୀଙ୍କୁ କେତେକ ଦୁର୍ବୃତ୍ତ ବିରିଡ଼ି ଫାଣ୍ଡି ଅଞ୍ଚଳର ବିଲୁଆଖାଇ ନଦୀ ପଠାରେ ପାଶବିକ ଅତ୍ୟାଚାରକରି ହତ୍ୟା କରିଥିଲେ । ଏଇ ଘଟଣା ସେତେବେଳେ ଏକ ମୁଖ୍ୟ ସମ୍ବାଦ ଭାବେ, ପ୍ରତେକ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଘଟଣାରେ କେତେକ ସରକାରୀଦଳ ସମର୍ଥକ ସ୍ଥାନୀୟ ରାଜନୈତିକ ନେତା ଜଡ଼ିତ ଥିବା ସନ୍ଦେହ କରି ସମ୍ବାଦ ପତ୍ର ଏବଂ ବିରୋଧି ଦଳ, ତାଙ୍କ ବିରୁଦ୍ଧରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ପାଇଁ ଦାବୀ କରିଥିଲେ । ରାଜ୍ୟ ବିଧାନସଭାରେ ମଧ ଏଇ ଘଟଣାର ଆଲୋଚନା ସରଗରମ ହୋଇଥିଲା । ହତ୍ୟାଘଟଣା ଜଗତସିଂହପୁର ଥାନା ଅଞ୍ଚଳରେ ଘଟିଥିବା ହେତୁ, ଭୁବନେଶ୍ୱର ପୁଲିସ ଜିଲ୍ଲାର ତା ସହିତ କୌଣସି ସଂପର୍କ ନଥିଲେ ମଧ ବିଧାନସଭା ସମ୍ମୁଖରେ ଧାରଣା, ଏଇ ଘଟଣାକୁ କେନ୍ଦ୍ରକରି ବିରୋଧିଦଳ ସମର୍ଥୀତ କେତେକ ଦଳର ଭୁବନେଶ୍ୱରରେ ସଂଗଠିତ ଶୋଭାଯାତ୍ରା ମୋତେ ଏ ଘଟଣା ସହିତ ପରିଚିତ କରାଇ ଦେଇଥିଲା । ହତ୍ୟା ଘଟଣାରେ ତଦନ୍ତ ରାଜ୍ୟ ଅପରାଧ ବିଭାଗ କରୁଥିବା ବେଳେ, ସାମ୍ବାଦିକ ନବ ମହାପାତ୍ର ବିରିଡ଼ିରେ ରହୁଥିବା ସ୍ଥାନ ଛାଡ଼ି ଭୁବନେଶ୍ୱରର ଆଠନମ୍ବର ଇଉନିଟ୍‌ରେ ରହୁଥିଲେ । ତାଙ୍କୁ ସେଠାରେ ରଖିବାରେ କେତେକ ସରକାର ବିରୋଧି ସାମ୍ବାଦିକ, ଏବଂ ରାଜନୈତିକ ନେତା ସାହାଯ୍ୟ ଦେଉଥାନ୍ତି ।

ଦିନେ ନବ ମହାପାତ୍ର କ୍ୟାପିଟାଲ ଥାନାରେ ଗୋଟିଏ ବହୁପୃଷ୍ଠା ସମ୍ବଳିତ ଏତଲା ଦେଇ, ଉଲ୍ଲେଖ କରିଥିଲେ ଯେ, ତାଙ୍କୁ କେତେକ ଅଜଣା ଲୋକ ସେ ରହୁଥିବା ଘରୁ ଡାକିଆଣି, ଗୋଟିଏ ଆମ୍ବାସଡ଼ର ଗାଡ଼ିରେ ବସାଇ ତାଙ୍କ ଆଖିକୁ କଳାକନା ସାହାଯ୍ୟରେ ବାନ୍ଧି ସେଇ ଗାଡ଼ିରେ ନେଇଗଲାବେଳେ, ସେ କୌଣସିମତେ ରିଜିଓନାଲ କଲେଜପାଖ ରାସ୍ତା-୯ନମ୍ବର ବ୍ରିଜ୍ ଉପରେ ସେମାନଙ୍କ କବଳରୁ ଖସି ଆସି ଏ ଏତେଲା ଦେଲେ । ସେ ଦିନ ଏଇ ଘଟଣା ଗୋଟିଏ ସମ୍ବାଦ ପତ୍ରରେ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇଲା । ମାତ୍ର ଏ ଘଟଣା ଅନ୍ୟ ସମ୍ବାଦପତ୍ରରେ ସେପରି ଭାବେ ପ୍ରକାଶ ପାଇନଥିଲା । ''ନବ ମହାପାତ୍ରଙ୍କ ପତ୍ନୀ ଛବିରାଣୀଙ୍କୁ ହତ୍ୟା କରିବାର ଅଳ୍ପଦିନ ପରେ ତାଙ୍କ ସ୍ୱାମୀଙ୍କୁ ଅପହରଣ କରି ହତ୍ୟା କରିବାର ଅଭିପ୍ରାୟ ହୋଇଥିଲା'' ବୋଲି ଜଣେ ସାମ୍ବାଦିକ ସେହି ପତ୍ରିକାରେ ଲେଖିଥିଲେ । ଜନସାଧାରଣରେ ଏପରି ସମ୍ବାଦ ପୁଣି ଅସ୍ଥିରତା ସୃଷ୍ଟିକଲା ଏବଂ ଏହାକୁ ରାଜନୈତିକମୋଡ଼ ଦେବା ପାଇଁ ବିରୋଧି ଦଳ ଆଗେଇ ଆସିଲେ ।

ଭୁବନେଶ୍ୱର ସହରରେ ଏପରି ଘଟଣା ଘଟିଥିବା ଯୋଗୁ ଆଇ.ଜି. ମୋତେ ଏହାର ତଦନ୍ତ ଠିକ୍ ଭାବରେ ଦେଖିବାକୁ କହିଲେ । ମୁଁ ଘଟଣାଟି ଭଲଭାବେ ଦେଖିଲା ପରେ ଏବଂ

ନବ ମହାପାତ୍ରଙ୍କୁ ପଚାରିଲା ପରେ ଏହା ଏକ କପୋଳକଳ୍ପିତ ଘଟଣା ବୋଲି ଜଣା ପଡ଼ିଲା । ମୁଁ ଏଘଟଣା ତତ୍‌କାଳୀନ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଡ଼କ୍ଟର ବନବିହାରୀ ପଣ୍ଡାଙ୍କୁ କହିଲି । ସେ ଶୁଣିଲା ପରେ ସେ ମଧ ନବ ମହାପାତ୍ରଙ୍କୁ ଡାକି ମଧୁପାଟଣା ଥାନାରେ ପଚରାଉଚରା କରିଥିଲେ । ପଚାରିଲା ବେଳେ ମିଃ ମହାପାତ୍ର ସତଘଟଣା ପ୍ରକାଶ କରି କହିଥିଲେ ଯେ ତାଙ୍କୁ କେହି ଘରୁ ଆମ୍ବାସଡ଼ର କାର୍‌ରେ ଅପହରଣ କରିନାହିଁ । ସେ କେତେଜଣ ଲୋକଙ୍କ ଦ୍ୱାରା ପ୍ରରୋଚିତ ହୋଇ ଏପରି ଘଟଣା ସମ୍ବନ୍ଧରେ ଏତଲା ଥାନାରେ ଦେଇଛନ୍ତି । ସେ ମଧ ଏ ଘଟଣାରେ ସଂପୃକ୍ତ ବ୍ୟକ୍ତି ବିଶେଷ ଙ୍କ ସମ୍ବନ୍ଧରେ ଏବଂ ଘଟଣାକୁ କିପରି ଏକ ରାଜନୈତିକ ଚିତ୍ର ଦିଆ ଯିବା ପାଇଁ ଚେଷ୍ଟା କରାଯାଇଛି ସେ ବିଷୟରେ କହିଥିଲେ ସଂମ୍ବାଦ ପତ୍ରରେ ଛାପିଥିବା ସାମ୍ବାଦିକ ଜଣକ ପ୍ରାଥମିକ ରିପୋର୍ଟ, ନିଜେ ପ୍ରେସ୍‌ରେ ବସି ଡାକିଦେଇ ଥିଲେ । ତାଙ୍କର ସମସ୍ତ ବକ୍ତବ୍ୟକୁ ଟେପ୍ କରାଯାଇଥିଲା । ଡି.ଆଇ.ଜି.ଙ୍କ ଆଗରେ କହିଲା ପରେ, ତାଙ୍କୁ ଡି .ଜି. ନରସିଂହ ସ୍ୱାଇଁ ମଧ ପଚାରିଥିଲେ । ସେ ତାଙ୍କଠାରୁ ସମସ୍ତ ଘଟଣା ଶୁଣିଲା ପରେ ସମସ୍ତ ଘଟଣାକୁ ଗୋଟିଏ ପ୍ରେସ୍ କନଫରେନ୍ସରେ କହି ଜନସାଧାରଣଙ୍କୁ ସତ୍ୟ ଘଟଣା ଜଣାଇ ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମିଃ ମହାପାତ୍ର ସମସ୍ତ ଘଟଣା ସାମ୍ବାଦିକମାନଙ୍କ ସାମ୍ନାରେ କହିବେ ବୋଲି କହିଥିଲେ । ତେଣୁ ରାଜ୍ୟସରକାରଙ୍କ ଅତିଥିଭବନରେ ଗୋଟିଏ ବଡ଼ ଧରଣର ସାମ୍ବାଦିକ ସମ୍ମିଳନୀ ଡକାଯାଇଥିଲା । ଏହି ସମ୍ମିଳନୀକୁ ପି.ଟି.ଆଇ. ଠାରୁ ଆରମ୍ଭ କରି ସମସ୍ତ ଜାତୀୟ ସମ୍ବାଦ ପତ୍ରର ସାମ୍ବାଦିକ ଏବଂ ରାଜ୍ୟର ସମ୍ବାଦପତ୍ରମାନଙ୍କର ସାମ୍ବାଦିକଙ୍କୁ ଡକାଯାଇଥିଲା । ରାଜ୍ୟ ଅତିଥିଭବନର ଉପର ମହଲା ଲାଉଞ୍ଜରେ ସମ୍ମିଳନୀ ବସିଥିଲା । ଠିକ୍ ସମୟରେ ମିଃ ନବ ମହାପାତ୍ର ଗୋଟିଏ ଗାଡ଼ିରେ ଆସିଥିଲେ । ଅବଶ୍ୟ ପୁଲିସ୍ ତାଙ୍କୁ ଆସିବାରେ ସାହାଯ୍ୟ କରିଥିଲା । ସେ ଆସି କିଛି ସମୟ ପାଇଁ ଅତିଥିଭବନର ତଳ ମହଲାରେ ଅପେକ୍ଷା କରିଥିଲେ । ସେ ଅପେକ୍ଷା କରିଥିଲା ବେଳେ ଜଣେ ସାମ୍ବାଦିକ ତାଙ୍କ ରୁମ୍ ମଧକୁ ପ୍ରବେଶ କରି ତାଙ୍କ ସହିତ ଆଲୋଚନା କରିବାର ସୁଯୋଗ ପୁଲିସ୍ ଅଜଣାତରେ ପାଇଥିଲେ । ଏକଥା ମୁଁ କିମ୍ବା ସମ୍ମିଳନୀରେ ଉପସ୍ଥିତ ଥିବା ତତ୍‌କାଳୀନ ସୂଚନା ବିଭାଗର ସଚିବ ଶ୍ରୀ ଏ.ଏନ୍. ତିୱାରୀ, ଆ.ଇ.ଜି. ଶ୍ରୀ ସ୍ୱାଇଁ କେହି ଜାଣି ପାରିନଥିଲେ । ଯେଉଁ ପୁଲିସ୍ ସବ୍‌ଇନ୍‌ସପେକ୍ଟର ତାଙ୍କୁ ଆଣିଥିଲେ ତାଙ୍କର ଦାୟିତ୍ୱହୀନତା ଯୋଗୁ,ଏହା ଘଟିଥିଲା । ମିଃ ମହାପାତ୍ରଙ୍କୁ ସାମ୍ବାଦିକ ସମ୍ମିଳନୀରେ ପହଞ୍ଚାଇବା ପରେ ସେ ଆମ ଆଗରେ ଯାହା କହିଥିଲେ, ସେ କଥା କିଛି ନକହି ସେ ଦେଇଥିବା ଏତେଲା କଥା ସତ୍ୟ ବୋଲି କହିଲେ । ପରେ ପରେ ସେ ମଧ କହିଲେ ଯେ, ପୁଲିସ୍ ତାଙ୍କୁ ବାଧ କରିଛି, ଏପରି କହିବାକୁ ୩୦୦ ଟଙ୍କା ଦେଇଛି । ହଠାତ୍ ସାମ୍ବାଦିକମାନଙ୍କ ଆଗରେ ଏପରି କହିଲାବେଳେ, ଆମେ ସମସ୍ତେ ସ୍ତମ୍ଭିତ ହୋଇଗଲୁ । ମାତ୍ର ମୋ ପାଖରେ ଥିବା ଟେପ୍ ରେକଡ଼ ସାମ୍ବାଦିକମାନଙ୍କ ଆଗରେ ଶୁଣାଇଲା ପରେ, ସେମାନେ କେତେଗୁଡ଼ିଏ କ୍ରସ କୋଶ୍ଚିନ୍ ନବ ମହାପାତ୍ରଙ୍କୁ ପଚାରିଥିଲେ । ସେ ଯାହାହେଉ ଏତେ ବଡ଼ ସାମ୍ବାଦିକ ସମ୍ମିଳନୀରେ ନିଜେ ସୂଚନା ବିଭାଗର ସଚିବ, ଡି

.ଜି., ପୁଲିସ, ଡି.ଆଇ.ଜି. ସମସ୍ତେ ଥାଇ ଏପରି ଅପଦସ୍ତ ହେବା କେବେ ଘଟିନଥିଲା । ପରଦିନ ସାମ୍ବାଦିକ ସମ୍ମିଳନୀର ସମସ୍ତ ଘଟଣା ଜାତୀୟ ଏବଂ ରାଜ୍ୟର ସମସ୍ତ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ମୁଁ ଏଇ ବିଫଳତାରୁ ଗୋଟିଏ କଥା ଶିଖିଲି । ଯେଉଁ କାମଟି କରିବାକୁ ଯିବ ସେଇଟିକୁ ସଂପୂର୍ଣ୍ଣ କରିବା ପର୍ଯ୍ୟନ୍ତ ନିଜେ ତାର ତଦାରଖର ଦାୟିତ୍ୱରେ ରହିବ । ପାଞ୍ଚମିନିଟ୍‌ର ଭୁଲ୍‌ପାଇଁ ଏତେବଡ଼ ବିଫଳତାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପରେ ରାଜ୍ୟ କ୍ରାଇମବ୍ରାଞ୍ଚ ଏହି କେସ୍‌ର ତଦନ୍ତ କରି, ଘଟଣା ସତ୍ୟ ନୁହେଁ ବୋଲି ତଦନ୍ତ ରିପୋର୍ଟ ଦେଇଥିଲେ ।

## ସଚିବାଳୟ କର୍ମଚାରୀଙ୍କ ଧର୍ମଘଟ :

ଆଗରୁ ବହୁଥର ସଚିବାଳୟର କର୍ମଚାରୀମାନେ ଛୋଟ ଛୋଟ ଘଟଣାକୁ କେନ୍ଦ୍ରକରି, ସଚିବାଳୟ ପରିସର ମଧ୍ୟରେ ଅଶାନ୍ତି କର ପରିସ୍ଥିତି ସୃଷ୍ଟିକରିବାର ଦୃଷ୍ଟାନ୍ତ ଥାଏ । ଏପରିକି ସେମାନେ ଛୋଟ ଘଟଣାକୁ କେନ୍ଦ୍ରକରି ସଚିବ ସ୍ତରୀୟ ଅଧିକାରୀମାନଙ୍କୁ ମାଡ଼ ଦେବା, ଅଭଦ୍ରୋଚିତ ବ୍ୟବହାର କରିବା ଘଟଣା ଘଟିଥିଲା । ଫେବୃଆରୀ ଏବଂ ମାର୍ଚ୍ଚ ମାସରେ ସଚିବାଳୟ ମଧ୍ୟରେ ପୁଲିସ୍ ଏବଂ କର୍ମଚାରୀଙ୍କ ଗଣ୍ଡଗୋଳକୁ କେନ୍ଦ୍ରକରି ଘରୋଇ ସଚିବ ଏବଂ ମୁଖ୍ୟସଚିବଙ୍କୁ ଘେରାଉ, ଅଭଦ୍ରୋଚିତ ବ୍ୟବହାର ମଧ୍ୟ ଦୃଷ୍ଟିକୁ ଆସିଥିଲା । ଅବଶ୍ୟ ଏଥିରେ ସବୁ କର୍ମଚାରୀମାନେ ଯେ ସମର୍ଥନ କରୁଥିଲେ ଏକଥା ନୁହେଁ, ମାତ୍ର ସେମାନଙ୍କ ନେତୃତ୍ୱ ଯେଉଁମାନେ ନେଉଥିଲେ, ସେମାନେ ଯାହା କହୁଥିଲେ, ତାହାହିଁ ସମସ୍ତେ ମାନୁଥିଲେ । ମେ ମାସ ପୂର୍ବରୁ କର୍ମଚାରୀମାନେ ଅଫିସ ପରେ, ସଚିବାଳୟ ପରିସର ମଧ୍ୟରେ ଏବଂ ବାହାର ଗେଟ୍ ପାଖରେ ମିଟିଂମାନ କରି ସରକାରଙ୍କ ପାଖେ ସେମାନଙ୍କ ଦାବୀ ଜଣାଇବା ସଙ୍ଗେ ସଙ୍ଗେ ଯଦି ସରକାର ତାଙ୍କ ଦାବୀ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପୂରଣ ନକରନ୍ତି, ତାହେଲେ ସେମାନେ ସଚିବାଳୟ କାର୍ଯ୍ୟ ସଂପୂର୍ଣ୍ଣ ଭାବେ ବନ୍ଦ କରି ଦେବେ ବୋଲି ଧମକ ଦେଇଥିଲେ । ସେତେବେଳକୁ ଶ୍ରୀ ରବିନାରୟଣ ଦାସ ଘରୋଇ ବିଭାଗ ସଚିବ ହୋଇ ଆସିଥାନ୍ତି । ମୁଖ୍ୟମନ୍ତ୍ରୀ ଭାବେ ଜେ.ବି. ପଟ୍ଟନାୟକ ନେତୃତ୍ୱ ନେଲା ପରେ, ସେ କର୍ମଚାରୀ ମାନଙ୍କ କେତେକ ନାଯ୍ୟ ଦାବୀକୁ ଗ୍ରହଣ କରିବା ପାଇଁ କଥାବାର୍ତ୍ତା କରିଥିଲେ ମଧ୍ୟ କର୍ମଚାରୀମାନେ ସେମାନଙ୍କ ଦାବୀରେ ଅଟଳ ରହିବା ଯୋଗୁ, ସରକାର ଏବଂ କର୍ମଚାରୀ ମୁହାଁମୁହିଁ ହେବା ପାଇଁ ପ୍ରସ୍ତୁତ ହୋଇଗଲେ । କଥାବାର୍ତ୍ତାଦ୍ୱାରା ସମାଧାନ ହେବାର ବାଟ ଦେଖାଦେଲାନି । ସେତେବେଳେ କର୍ମଚାରୀମାନଙ୍କ ନେତୃତ୍ୱ ସି.ପି.ଆଇ ସମର୍ଥକଙ୍କ ହାତରେ ଥାଏ, ତେଣୁ କଂଗ୍ରେସ ସରକାର ତାଙ୍କ ନିଷ୍ପତ୍ତିରେ ଅଟଳ ରହିବାକୁ ସ୍ଥିରକରିବା ଦ୍ୱାରା, ଆନ୍ଦୋଳନାତ୍ମକ କାର୍ଯ୍ୟ ଘନୀଭୂତ ହେବାରେ ଲାଗିଲା ।

ଆଗରୁ କର୍ମଚାରୀମାନଙ୍କ ବ୍ୟବହାର ପୁଲିସ୍ ଭଲଭାବେ ଜାଣିଥିଲା ଏବଂ ଆଗ ଘଟଣାର ଦୃଷ୍ଟାନ୍ତରୁ, ଷ୍ଟ୍ରାଇକ୍ ସମୟରେ ସଚିବାଳୟ ମଧ୍ୟରେ ଯେପରି କୌଣସି ପ୍ରକାର

ଅପ୍ରୀତିକର ଘଟଣା ନ ଘଟେ, ସେଥିଲାଗି ସଜାଗ ରହିବାକୁ ସମସ୍ତ ପ୍ରକାର ପୁଲିସ୍ ବନ୍ଦୋବସ୍ତ କରାଗଲା । ମେ ମାସ ୧୫ ତରିଖରୁ, କର୍ମଚାରୀମାନେ ସେମାନଙ୍କର ଦାବୀକୁ ନେଇ ଧର୍ମଘଟ ଆରମ୍ଭ କରିଦେଲେ । ଏଇ ଧର୍ମଘଟରେ ପ୍ରାୟ ସମସ୍ତ କର୍ମଚାରୀମାନେ ଯୋଗ ଦେବାବେଳେ, କେବଳ ଷ୍ଟେନୋଗ୍ରାଫର ଆସୋସିଏସନ ଯୋଗ ଦେଲାନି । ତାଛଡ଼ା, ଘରୋଇ ସଚ଼ିବଙ୍କ ପରାମର୍ଶରେ ସରକାର ସେକସନ୍ ଅଫିସର ପଦବୀ ସୃଷ୍ଟି କରି ସେମାନଙ୍କୁ ଗୋଟିଏ ପାହ୍ୟା ଦେଇଦେଲେ ଯେହେତୁ ସେମାନେ ମିନିଷ୍ଟରିୟାଲ ଷ୍ଟାଫ୍ ଭାବେ ଗଣା ହେବେନି । ସେମାନଙ୍କୁ ଜାଣି ଜାଣି ଅଲଗା କରିଦିଆଗଲା । ତେଣୁ ଦପ୍ତରର ମୁଖ୍ୟ କିରାଣୀ ଭାବେ କାମକରିବାର ଦାୟିତ୍ୱ ସେକସନ ଅଫିସର ଉପରେ ନ୍ୟସ୍ତ ଥିଲାବେଳେ, ସେମାନେ ଟେକିନିକାଲି ଅଲଗା ହୋଇଗଲାରୁ କେତେକ ସେକ୍ସନ୍ ଅଫିସର ଧର୍ମଘଟକୁ ସହଯୋଗ ଦେଲେନି ।

ମେ ମାସ ପନ୍ଦର ପୂର୍ବରୁ, ମୋତେ ୧୯ ପ୍ଲାଟୁନ୍ ଓ.ଏସ୍.ପି ଫୋର୍ସ ଦିଆଗଲା ଏବଂ ମୋ ଜିଲ୍ଲା ବାହାରୁ ପ୍ରାୟ ୮୦ ଜଣ ଅଫିସର, ମୋବିଲାଇଜ୍ଡ୍ ହୋଇ ଆସିଲେ । ସଚିବାଳୟର ପ୍ରତ୍ୟେକ ବିଭାଗରୁ ଜଣେ ଲେଖାଏଁ ଅନୁଶାସନ ସଚିବ, ସଚିବାଳୟର ମୁଖ୍ୟ ଫାଟକ ପାଖେ ପ୍ରତ୍ୟେକ ଦିନ ସକାଳ ଦଶଟାରୁ ଉପସ୍ଥିତରହି ତନଖି କରିବେ ଯେ, ତାଙ୍କ ଦପ୍ତରର କେଉଁ କର୍ମଚାରୀ ଅଫିସକୁ ଆସୁଛନ୍ତି, କିଏ ଧର୍ମଘଟରେ ଯୋଗ ଦେଇନାହିଁ । ଯେଉଁମାନେ ଧର୍ମଘଟରେ ଯୋଗ ଦେଲେ, ସେମାନଙ୍କୁ ଭିତରକୁ ଛଡ଼ା ଗଲା ନାହିଁ । ସଚିବାଳୟର ଚାରିପଟେ ସୁଦୃଢ଼ ପୁଲିସ୍ ବନ୍ଦୋବସ୍ତ କରାଗଲା ଏବଂ ମୁଖ୍ୟ ରାସ୍ତା, ଗଳି କନ୍ଦିରେ ମଧ ପୁଲିସ୍ ପାଟ୍ରୋଲିଂର ବନ୍ଦୋବସ୍ତ କରାଯାଇ, ରାସ୍ତାରେ ଆସୁଥିବା ବେଳେ ଯଦି କୌଣସି ଇଚ୍ଛୁକ କର୍ମଚାରୀଙ୍କୁ ଧର୍ମଘଟକାରୀମାନେ ଅଟକାଇଲେ, ତାହେଲେ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରି, ଇଚ୍ଛୁକ କର୍ମଚାରୀମାନେ ଯେପରି ନିର୍ବିଘ୍ନରେ ଦପ୍ତରକୁ ଆସିପାରିବେ ତାର ବନ୍ଦୋବସ୍ତ କରାଗଲା । କେବଳ ସେତିକି ନୁହେଁ, ସହରର ମୁଖ୍ୟ ରାସ୍ତାରେ ଯେପରି ସେମାନେ ମିଟିଂ କରି ଉତ୍ତେଜନା ସୃଷ୍ଟି ନକରନ୍ତି, ସେଥିପାଇଁ ସଚ଼ିବାଳୟ ପାଖାପାଖି ଅଞ୍ଚଳରେ ୧୪୪ ଧାରା ଜାରିକରାଗଲା । ତାହାଛଡ଼ା ରାତ୍ରିରେ ଯେଉଁମାନେ ମିଟିଂ କଲେ ସେମାନଙ୍କ ମିଟିଂପାଖେ ମାଜିଷ୍ଟ୍ରେଟ୍ ରହି, ନେତାମାନେ ଦେଇଥିବା ଉତ୍ତେଜନାପୂର୍ଣ୍ଣ ଭାଷଣ ଇତ୍ୟାଦିକୁ ରେକର୍ଡ଼ କରି, ଆଇନ୍ ଅନୁସାରେ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ରେକଡ଼ ପ୍ରସ୍ତୁତ କରାଗଲା ।

ପ୍ରଥମ କେତେଦିନ ମଧରେ ବହୁନେତା ଏବଂ କର୍ମଚାରୀ, ଇଚ୍ଛୁକ କର୍ମଚାରୀମାନଙ୍କୁ ଅଟକାଉଥିବା ଅଭିଯୋଗରେ ବିଭିନ୍ନ ପ୍ରକାର ଅପରାଧରେ ଅଭିଯୁକ୍ତ ହୋଇ ଜେଲ୍‌ଗଲେ । ଯେଉଁମାନେ ଉତ୍ତେଜିତ ଭାଷଣ ଦେଇ, କର୍ମଚାରୀମାନଙ୍କୁ ଉତ୍ତେଜିତ କରୁଥିଲେ, ସେମାନଙ୍କ ବିରୁଦ୍ଧରେ ବିଭିନ୍ନ ଦଫାରେ ମାମଲା ହେବା ଦ୍ୱାରା, ସେମାନେ ପୁଲିସ୍ ଗିରଫ କାରିନେବା ଭୟରେ ଲୁଚିଲୁଚି ବୁଲିବାକୁ ଆରମ୍ଭ କଲେ । ପ୍ରତ୍ୟେକ ଦିନ ରାତିରେ ପୁଲିସ୍ ଖାନ୍‌ତଲାସି ଦଳ, ସହରର ବିଭିନ୍ନ ସ୍ଥାନରେ ଖାନ୍‌ତଲାସକରି, ସେମାନଙ୍କୁ ଧରିବାକୁ ଚେଷ୍ଟା କରିବାଦ୍ୱାରା, ଆନ୍ଦୋଳନ, ଧର୍ମଘଟ ଯେଉଁପରିଭାବେ ଚାଲିବା କଥା ସେପରି ଭାବେ

ଚାଲିପାରିଲା ନାହିଁ । ବହୁ କର୍ମଚାରୀ ପୁଲିସ୍ ଆରେଷ୍ଟ ଭୟରେ ସହର ଛାଡ଼ି ଗାଁକୁ ଚାଲିଗଲେ । ତଥାପି ଧର୍ମଘଟ ଚାଲିଲା । ଏଥିମଧ୍ୟରେ ଯେଉଁମାନେ ନେତୃତ୍ୱ ଦେଇ ଉତ୍ତେଜନା ସୃଷ୍ଟି କରି ସରକାରୀ କାର୍ଯ୍ୟବନ୍ଦ କରିଥିଲେ ସେମାନଙ୍କ ବିରୁଦ୍ଧରେ ସମ୍ବିଧାନର ୩୧୧ ଧାରା ଲାଗୁ କରାଯାଇ କେତେଜଣଙ୍କୁ ଚାକିରୀରୁ ବହିଷ୍କାର କରାଗଲା ।

ସଚିବାଳୟ କର୍ମଚାରୀମାନେ ଆଶା କରିଥିଲେ, ସେମାନଙ୍କ ଧର୍ମଘଟକୁ ମୁଖ୍ୟଦପ୍ତରର କର୍ମଚାରୀମାନେ ସମର୍ଥନ ଦେବେ, ମାତ୍ର ସେମାନେ ସମର୍ଥନ ଦେଲେନି । ଧର୍ମଘଟ ମାସେ ପୁରିଲାପରେ, ବହୁ କର୍ମଚାରୀ ଦରମା ନପାଇ ହଇରାଣ ହରକତ ହେଲେ । ଏପରିକି ଦୋକାନରୁ ମାସିକିଆ ସଉଦା ମିଳିବା କଷ୍ଟକର ହେଲା । ତଥାପି, ସେମାନେ ଧର୍ମଘଟ ଭାଙ୍ଗିଲେନି କିମ୍ବା ନିସର୍ତ୍ତ କଥାବାର୍ତ୍ତା ହେବାକୁ ଆସିଲେନି । ସରକାରୀକାମ, ସେକ୍ସନ ଅଫିସର, ପି.ଏ ଏବଂ ଷ୍ଟେନୋଗ୍ରାଫରଙ୍କୁ ଧରି ଚାଲିଥାଏ । ଅଫିସରମାନେ କାମ କରୁଥାନ୍ତି । ଅତ୍ୟାବଶ୍ୟକ କାର୍ଯ୍ୟରେ କିଛି ଅସୁବିଧା ନହେଉଥିବା ଯୋଗୁ ସରକାରଙ୍କ ତରଫରୁ କର୍ମଚାରୀଙ୍କ ଧର୍ମଘଟରେ ଆଶୁ ଅବସାନ ପାଇଁ ସେପରି କିଛି ଚେଷ୍ଟା ହେଉ ନଥାଏ ବରଂ ସରକାରଙ୍କ ପାଖରେ ଖବର ପହଞ୍ଚୁ ଥାଏ ଯେ, ଦିନକୁ ଦିନ ଧର୍ମଘଟକାରୀଙ୍କ ମନୋବଳ ଭାଙ୍ଗି ପଡ଼ିଲାଣି । କର୍ମଚାରୀଙ୍କ ଧର୍ମଘଟ ୬୦ ଦିନ ପର୍ଯ୍ୟନ୍ତ ଚାଲିଲା । ପ୍ରତ୍ୟେକଦିନ ପ୍ରାୟ ମୋତେ ଦୈନିକ ୧୮ଘଣ୍ଟା କାମ କରିବାକୁ ପଡୁଥାଏ । କେବଳ ୨ଜଣ ଡି.ଏସ୍.ପିଙ୍କୁ ଛାଡ଼ିଦେଲେ ସିନିୟର ଅଫିସର ମୋ ପାଖରେ ନଥାନ୍ତି । ବାହାରୁ ଆସିଥିବା ଇନସ୍‌ପେକ୍ଟର, ଏସ୍.ଆଇ ଏମାନେ ସିଫ୍ଟ ଡିଉଟି ସଚିବାଳୟରେ କରୁଥାନ୍ତି । ଜିଲ୍ଲାପୁଲିସ୍ ବାହାରେ ଆଇନଶୃଙ୍ଖଳା ଦେଖିବା ଛଡ଼ା, ଖାନତଲାସ, ଆରେଷ୍ଟ ଏସବୁ କାମ କରୁଥାଏ ।

ଦୁଇମାସ ଯେଉଁ ଦିନ ପୁରିଲା, କର୍ମଚାରୀ ମହାସଂଘ ବାଧହୋଇ ସରକାରଙ୍କ ସଙ୍ଗେ ନିସର୍ତ୍ତରେ କଥାବାର୍ତ୍ତା ପାଇଁ ରାଜି ହୋଇ, କଥାବାର୍ତ୍ତା ପୂର୍ବରୁ ଧର୍ମଘଟ ପ୍ରତ୍ୟାହାର କଲେ । ପ୍ରଥମଥର ପାଇଁ ଧର୍ମଘଟକାରୀ କର୍ମଚାରୀ ସରକାରଙ୍କ ପାଖେ ନିସର୍ତ୍ତରେ କଥାବାର୍ତ୍ତା ପାଇଁ ମୁଣ୍ଡ ନୁଆଁଇଥିଲେ । ଧର୍ମଘଟ ସମୟରେ କୌଣସି ପ୍ରକାର ଅଶାନ୍ତି, ବିଶୃଙ୍ଖଳା ସୃଷ୍ଟି ନ ହୋଇ ଏହାକୁ ସୁପରିଚାଳନା କରିଥିବା ଯୋଗୁ, ସରକାର ଜିଲ୍ଲା ପୁଲିସ୍ କାର୍ଯ୍ୟକୁ ବହୁଳ ଭାବେ ପ୍ରଶଂସା କରିଥିଲେ । ତାହାଛଡ଼ା, ସଚିବାଳୟ ମଧ୍ୟରେ ଛୋଟ ଛୋଟ ଘଟଣାକୁ କେନ୍ଦ୍ରକରି ଯେଉଁପ୍ରକାର ବିଶୃଙ୍ଖଳା କର୍ମଚାରୀମାନେ ସୃଷ୍ଟି କରୁଥିଲେ ତାହାମଧ୍ୟ ବହୁ ବର୍ଷ ପର୍ଯ୍ୟନ୍ତ ସଂପୂର୍ଣ୍ଣଭାବେ ବନ୍ଦହୋଇ ଯାଇଥଲା । ଜୁଲାଇ ୧୬ ତାରିଖରେ କର୍ମଚାରୀମାନେ କାର୍ଯ୍ୟରେ ଯୋଗ ଦେଲେ । ଅବଶ୍ୟ ଯେଉଁମାନଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇଥିଲା, ପ୍ରାୟ ବର୍ଷକ ପରେ ସେମାନଙ୍କୁ ସର୍ତ୍ତମୂଳକ ଚାକିରୀ ଫେରାଇ ଦିଆଯାଇଥିଲା । ଏଇ ଧର୍ମଘଟ ସଚିବାଳୟ କର୍ମଚାରୀଙ୍କ ମନୋବଳକୁ ବହୁଅଂଶରେ ଭାଙ୍ଗି ଦେଇଥିଲା । ତାହାଛଡ଼ା ଏହି ଧର୍ମଘଟ, ଅନ୍ୟ ଦପ୍ତରର କର୍ମଚାରୀମାନଙ୍କୁ ମଧ୍ୟ ଗୋଟିଏ ଶିକ୍ଷା ଦେଇଥିଲା ।

**ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କ ଫିଜିକ୍ସ ଇନ୍‌ଷ୍ଟିଟ୍ୟୁଟ ଉଦ୍‌ଘାଟନ ଓ ଛାତ୍ର ଆନ୍ଦୋଳନ –** ୧୯୮୧ ମସିହା,ସେପ୍ଟେମ୍ବର ଚାରି ତାରିଖ ଦିନ, Physic Institute, BBSR ପ୍ରଧାନମନ୍ତ୍ରୀ

ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ଦ୍ୱାରା ଉଦ୍‌ଘାଟିତ ହେବା ସ୍ଥିର ହୋଇଯାଇଥାଏ ଏବଂ ପ୍ରଧାନମନ୍ତ୍ରୀ ସେଇଦିନ ସକାଳ ୧୦.୩୦ ମିନିଟ୍‌ରେ ଭୁବନେଶ୍ୱର ବିମାନ ବନ୍ଦର ଠାରେ ପହଞ୍ଚୁଥାନ୍ତି । ତାର ଚାରିଦିନ ପୂର୍ବରୁ, ବାଣୀ ବିହାରର ଜଣେ ଛାତ୍ର ଫୁଲନଖରା ଠାରୁ ବାଣୀ ବିହାର ଘରୋଇ ବସରେ ଆସୁଥିବା ବେଳେ ବସ୍‌ଭଡ଼ା ଦେବାକୁ କେନ୍ଦ୍ରକରି ତାଙ୍କର ଏବଂ ଘରୋଇକମ୍ପାନୀ ବସ୍ କଣ୍ଡକ୍ଟରଙ୍କ ମଧ୍ୟରେ ପାଟିତୁଣ୍ଡ ହୋଇ କଣ୍ଡକ୍ଟର ଛାତ୍ରଙ୍କୁ ଖରାପ ବ୍ୟବହାର କରିବା ସଙ୍ଗେ ମାଡ଼ ମାରିଥିଲେ ବୋଲି ଅଭିଯୋଗ ହୋଇଥିଲା । ଛାତ୍ରଜଣକ ଏ ବିଷୟରେ ପୁଲିସ୍‌କୁ ଖବର ନଦେଇ, ବାଣୀବିହାର ଛାତ୍ରମାନଙ୍କୁ ଏକଥା କହିବାରେ ବାଣୀ ବିହାର ଛାତ୍ରମାନେ ଉତ୍ତେଜିତ ହୋଇ ସେପ୍ଟେମ୍ବର ଦୁଇତାରିଖ ରାତ୍ରିରେ ବାଣୀବିହାର ପରିସର ମଧ୍ୟରେ ମିଟିଂ କରି, ୩ ତାରିଖ ଦିନ ସକାଳୁ ସକାଳୁ, ବାଣୀବିହାର ମୁଖ୍ୟଫାଟକ ୫ନମ୍ବର ରାଜପଥକୁ ଆସି ୧୧ଗୋଟି ଘରୋଇ ଏବଂ ଓ.ଆର.ଟି ବସ୍ ହାଇଜାକ୍ କରି ବାଣୀବିହାର ପରିସର ମଧ୍ୟକୁ ନେଇଗଲେ ଏବଂ ପ୍ୟାସେଞ୍ଜରମାନଙ୍କୁ ଛାଡ଼ି ଦେଇ ପରିସର ମଧ୍ୟରେ ବସ୍‌ଗୁଡ଼ିକ ଅଟକ କରି ରଖିଲେ । ଏ ଖବର ପାଇ, ମୁଁ ଫୋର୍ସ ଧରି ସଙ୍ଗେ ସଙ୍ଗେ ଶହିଦ୍‌ନଗର ଥାନାକୁ ଯାଇ ସେଠୁ କୁଳପତି ମିଃ ମହେନ୍ଦ୍ର ରାଉତଙ୍କ ସଙ୍ଗେ କଥାବାର୍ତ୍ତା କଲି ଏବଂ ସେ ପୁଲିସ୍‌କୁ ପରମିଶନ ଦେଲେ, ପୁଲିସ୍ ପରିସର ମଧ୍ୟରେ ପ୍ରବେଶ କରି, ଗାଡ଼ି ଏବଂ ଗାଡ଼ି ସଙ୍ଗେ ଡ୍ରାଇଭର, କଣ୍ଡକ୍ଟରମାନଙ୍କୁ ଉଦ୍ଧାର କରିବେ, ମାତ୍ର କୁଳପତି ମିଃ ରାଉତ କହିଲେ ଯେ ସେ ପିଲାମାନଙ୍କ ସଙ୍ଗେ କଥାବାର୍ତ୍ତା କରି ଗାଡ଼ି ମୁକୁଳାଇବା ବନ୍ଦୋବସ୍ତ କରିବେ । ସେ ପିଲାମାନଙ୍କ ସଙ୍ଗେ କଥାବାର୍ତ୍ତା କଲେ, ମାତ୍ର ସେମାନେ ତାଙ୍କ କଥା ଶୁଣିଲେନି । ପ୍ରାୟ ଦିନ ୧ଟା ବେଳକୁ ମୋ ଅଫିସ୍‌ରେ, ଜିଲ୍ଲାପାଳ ମିଃ ମିଶ୍ର, କୁଳପତି ଡକ୍ଟର ରାଉତ ଏବଂ କେତେ ଜଣ ଛାତ୍ର ନେତା ବସି କଥାବାର୍ତ୍ତା କଲୁ । ଛାତ୍ରମାନେ ଦାବୀ କରୁଥାନ୍ତି ଯେ, ଯେଉଁ ବସର କଣ୍ଡକ୍ଟର ମାଡ଼ ମାରିଛି, ସେ ବସ୍ କଣ୍ଡକ୍ଟରଙ୍କୁ ତତ୍‌କ୍ଷଣାତ ଆଣି ତାଙ୍କ ଆଗରେ ସମର୍ପଣ କରାଯାଉ । ପ୍ରକୃତରେ ଯେଉଁ ବସର କଣ୍ଡକ୍ଟରଙ୍କ ସଙ୍ଗେ ଗଣ୍ଡଗୋଳ ହୋଇଥିଲା, ସେ ବସ୍ କଟକରୁ ଜୟପୁର ଯାଉଥିଲା ଏବଂ ସେତେବେଳକୁ ବସ୍ ଜୟପୁରରୁ ଫେରିନଥାଏ । ସେମାନଙ୍କୁ ଏକଥା କହିଲେ ମଧ୍ୟ ସେମାନେ କିଛି ବୁଝିବାକୁ ପ୍ରସ୍ତୁତ ନଥିଲେ । ଆମ କଥାବାର୍ତ୍ତା ଫେଲ୍ ମାରିଲା ପରେ, ମୁଁ ଡି.ଜି. ନରସିଂହ ସ୍ୱାଇଁ, ଘରୋଇ ସଚିବ ମିଃ ଦାସ ଓ ଆର୍ ଡି.ସି ଶ୍ରୀ ରମାକାନ୍ତ ମିଶ୍ରଙ୍କୁ ଜଣାଇଲି । ଜଣାଇବା ପରେ ସନ୍ଧ୍ୟା ସାତଟା ବେଳେ, ମୋ ଅଫିସରେ ସେମାନେ ସମସ୍ତେ ପହଞ୍ଚି ପୁଣିଥରେ ଛାତ୍ରମାନଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ପ୍ରଧାନମନ୍ତ୍ରୀ ଆସୁଥିବା ଦୃଷ୍ଟିରୁ କୌଣସି ପ୍ରକାର ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ନ କରିବା ପାଇଁ କୁଳପତି ଏବଂ ଛାତ୍ରମାନଙ୍କୁ କହିଥିଲେ । ମୋତେ ପ୍ରଧାନମନ୍ତ୍ରୀଙ୍କ ପାଇଁ ସମସ୍ତ ବନ୍ଦୋବସ୍ତ କରିବାକୁ ପଡୁଥାଏ । ବିମାନ ବନ୍ଦର, ବିମାନବନ୍ଦର ଠାରୁ ରାଜଭବନ ଏବଂ ରାଜଭବନରୁ ଫିଜିକ୍ସ ଇନ୍‌ଷ୍ଟିଚ୍ୟୁଟ୍, ଏସବୁ ଯାଗାରେ ପୁଲିସ୍ ବନ୍ଦୋବସ୍ତ କରି ତିନିତାରିଖ ଦିନ ରିହରସାଲ କଲି । ମୋତେ ସାହାଯ୍ୟ କରିବାକୁ ଜଣେ ଅତିରିକ୍ତ ଏସ୍.ପି କଟକରୁ ଆସିବେ ବୋଲି କୁହାଯାଇଥାଏ । ମୁଁ ରିହରସାଲ

ସାରି, ସନ୍ଧ୍ୟା ସାତଟାରେ ମୋ ଅଫିସ୍‌ରେ ପହଞ୍ଚିଲି । କଲେକ୍ଟର ଆସିଯାଇଥାନ୍ତି । କେନ୍ଦ୍ରାଞ୍ଚଳ ଡି.ଆଇ.ଜିଙ୍କ ଅସୁସ୍ଥତା ଯୋଗୁ ସେ ଆସିପାରିନଥିଲେ । ପ୍ରଧାନମନ୍ତ୍ରୀଙ୍କ ଭିଜିଟ୍ ଏସ୍.ପି. କଲେକ୍ଟରଙ୍କ ଦାୟିତ୍ୱ ଦୃଷ୍ଟିରୁ ଡି.ଜି ଆଉ କାହାକୁ ପଠାଇବା ପାଇଁ ଚାହିଁନଥିଲେ କିମ୍ବା ମୋର ଦରକାର ନଥିଲା । ଫିଜିକ୍‌ସ ଇନିଷ୍ଟିଟ୍ୟୁଟ୍ ବାଣୀବିହାର ସାଇଡ୍‌ରେ ହୋଇଥିବା ଦୃଷ୍ଟିରୁ, ଏବଂ ଛାତ୍ରମାନଙ୍କ ତରଫରୁ ରାସ୍ତାରୋକ କିମ୍ବା ସେଇପରି ବିଶୃଙ୍ଖଳା ଆଶାକରି ମୁଁ ଅଧିକା ଫୋର୍ସ ପାଇଁ ପୁଲିସ୍ ମୁଖ୍ୟଦପ୍ତରକୁ ଅନୁରୋଧ କରିଥିଲି । ଡି. ଜି. କିଛି ଫୋର୍ସ ଦେଲେ ଏବଂ ଜଣେ ଡି.ଏସ୍.ପି ଦେଇଥିଲେ । ଚାରି ତାରିଖ ଦିନ ସି.ଆର.ପି.ଏଫ୍ ଦୁଇ କମ୍ପାନୀ ଆସିବେ ବୋଲି ଆଦେଶ ପାଇଲି ।

ପ୍ରଧାନମନ୍ତ୍ରୀ, ବାଣୀବିହାର ପାଖକୁ ଆସୁଥିବା ଯୋଗୁ ବାଣୀବିହାରର ଛାତ୍ରମାନଙ୍କ ବିରୁଦ୍ଧରେ କୌଣସି ପ୍ରକାର ପୁଲିସ୍ କାର୍ଯ୍ୟାନୁଷ୍ଠାନ କରି, ପରିସ୍ଥିତିକୁ ଅଶାନ୍ତ କରିବାର ସପକ୍ଷରେ ମୁଁ ନଥିଲି । କେବଳ ବସ ଏବଂ ତାର ଚାଳକମାନେ ସୁରକ୍ଷିତ ରହିଲେ, ଗୋଟିଏ ଦିନ ପରେ ତାଙ୍କ ସହିତ ଡିଲି କରିବାରେ କିଛି ଅସୁବିଧା ହେବନି । ତିନି ତାରିଖ ଦିନ ସନ୍ଧ୍ୟା ଆଠଟା ପରେ, ମୋ ଅଫିସ୍‌ରେ ପୁଣି ଆଲୋଚନା ଲାଗି ବୈଠକ ବସିଲା । ଏଥିରେ ଘରୋଇ ସଚିବ, ଆର୍.ଡି.ସି. ଜିଲ୍ଲାପାଳ, ଡି.ଜି., ସମସ୍ତେ ଉପସ୍ଥିତ ଥିଲାବେଳେ, ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ କୁଳପତି ଡକ୍ଟର ରାଉତ, ରେଜିଷ୍ଟ୍ରାର ଏବଂ ଛାତ୍ର ସଂଘର ସଭାପତି ଶ୍ରୀ ଚାନ୍ଦ, ସଂପାଦକ ସୁଧାଂଶୁ, ଉପସ୍ଥିତ ରହିଲେ । ଆଲୋଚନା ଆରମ୍ଭ ହେବା ପରେ, ପ୍ରାୟ ୨୦୦ ଛାତ୍ର ବାଣୀବିହାରରୁ ଆସି ମୋ ଅଫିସ୍ ପରିସର ମଧ୍ୟରେ ଧାରଣା ଦେଲେ । ଆଲୋଚନା ରାତ୍ରି ୧୨ଟା ପର୍ଯ୍ୟନ୍ତ ଚାଲିଲା ମାତ୍ର ଛାତ୍ରମାନେ କୌଣସି କଥାରେ ରାଜି ନହେବାରୁ ସମସ୍ତେ ଫେରିଲେ । ଧାରଣା ଦେଇଥିବା ଛାତ୍ରମାନେ ମଧ୍ୟ ବାଣୀବିହାର ମଧ୍ୟକୁ ଫେରିଲେ । କେବଳ ଗୋଟିଏ କଥା କୁଳପତିଙ୍କୁ ଅନୁରୋଧ କରାଗଲା ଯେ, ପ୍ରଧାନମନ୍ତ୍ରୀ, ଫିଜିକ୍ସ ଇନ୍‌ଷ୍ଟିଚିଉଟ୍ ଯିବା ବାଟରେ ଯେପରି ଛାତ୍ରମାନେ ଅବରୋଧ ନକରନ୍ତି । କୁଳପତି ସମସ୍ତଙ୍କ ସମ୍ମୁଖରେ କହିଲେ ଯେ, ସେ ତାର ଦାୟିତ୍ୱ ନେବେ ଏବଂ ଦେଖିବେ ପ୍ରଧାନମନ୍ତ୍ରୀ ନଯିବା ପର୍ଯ୍ୟନ୍ତ ଛାତ୍ରମାନେ ଯେପରି ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରୁ ନ ବାହାରନ୍ତି । ସମସ୍ତେ ଗଲା ପରେ ପୁଣି ମୁଁ ଜିଲ୍ଲାପାଳ ମିଃ ମିଶ୍ର କୁଳପତିଙ୍କ ସଙ୍ଗେ କଥାବାର୍ତ୍ତା କଲୁ । କୁଳପତିଙ୍କ ଅନୁରୋଧରେ ରାତ୍ରି ଦୁଇଟାରେ ବାଣୀବିହାର ମଧ୍ୟକୁ ଯାଇ, ଏକ ନମ୍ବର ହଷ୍ଟେଲ ସାମ୍ନାରେ ଛାତ୍ରମାନଙ୍କ ସଙ୍ଗେ କଥାବାର୍ତ୍ତା କଲୁ । ସେ ଦିନ ରାତ୍ରିରେ ଛାତ୍ରମାନେ କୁଳପତିଙ୍କୁ ଯେପରି ବ୍ୟବହାର କଲେ, ମୁଁ ଲଜ୍ଜିତ ହୋଇ ଯାଇଥିଲି ଯେ କୁଳପତି ଯାହା କହିକରି ଆସିଥିଲେ ତାହା ସେ କଦାପି ରକ୍ଷା କରିପାରିବେ ନାହିଁ । ଛାତ୍ରମାନେ ତାଙ୍କ କଥାକୁ ମାନିବାକୁ ପ୍ରସ୍ତୁତ ନୁହଁନ୍ତି କି ତାଙ୍କର କିଛି ସେମାନଙ୍କ ଉପରେ କଂଟ୍ରୋଲ ନାହିଁ । ପ୍ରାୟ ୩ଟା (ସକାଳ) ବେଳେ ମୁଁ ଘରକୁ ଫେରିଲି ।

ଚାରି ତାରିଖ ଦିନ ସକାଳୁ ଉଠି, ପ୍ରଧାନମନ୍ତ୍ରୀ ଆସିବା ପାଇଁ ପ୍ରସ୍ତୁତ ହେଲି । ଠିକ୍ ସକାଳ ଆଠଟା ବେଳକୁ ପ୍ରବଳ ବର୍ଷା ଆରମ୍ଭ ହେଲା । ପ୍ରାୟ ଘଣ୍ଟାଏ କାଳ ପ୍ରବଳ ବର୍ଷାରେ, ଇନିଷ୍ଟିଚିଉଟ୍ ମଧ୍ୟରେ ପ୍ରଧାନମନ୍ତ୍ରୀଙ୍କ ପାଇଁ ଯେଉଁ ପେଣ୍ଡାଲ ପ୍ରସ୍ତୁତ ହୋଇଥିଲା, ସେ ସବୁ ଓଦା ହୋଇ ନଷ୍ଟ ହେଲା । ମିଟିଂ ସ୍ଥାନ ମଧ୍ୟ ପାଣିରେ ବୁଡ଼ିଗଲା । ଇନ୍ଦିରାଗାନ୍ଧି ଠିକ୍ ୧୦ଟା ବେଳକୁ ବିମାନ ବନ୍ଦରରେ ଅବତରଣ କଲାପରେ ମୁଁ ସେଠାକାର ଅବସ୍ଥା ବିଷୟରେ କହିଲି । ପ୍ରଧାନମନ୍ତ୍ରୀ ରାଜଭବନରେ ବିଶ୍ରାମ ନେଲାପରେ, ମୁଖ୍ୟମନ୍ତ୍ରୀ ଏବଂ ଅନ୍ୟମାନେ ସମସ୍ତେ ମିଂଟି ସ୍ଥାନ ଦେଖିବାକୁ ଗଲେ ଏବଂ ଦେଖିସାରିଲାପରେ ସ୍ଥିର କଲେ ଯେ, ଅବସ୍ଥା ଦୃଷ୍ଟିରୁ ପ୍ରଧାନମନ୍ତ୍ରୀ ଇନିଷ୍ଟିଚିଉଟ୍‌କୁ ନ ଯିବା ଉଚିତ । ତେଣୁ ସେଠାକାର ପୋଗ୍ରାମକୁ ବାଦ୍‌ଦେଲେ ଭଲ । ତାଛଡ଼ା ଖବର ମିଳିଲା ଯେ ଛାତ୍ରମାନେ ପ୍ରଧାନମନ୍ତ୍ରୀ ଫିଜିକ୍ସ ଇନ୍‌ଷ୍ଟିଚିଉଟ୍ ଆସିଲା ବେଳେ ଆଚାର୍ଯ୍ୟ ବିହାର ଛକ କିମ୍ବା ପାଖ ରାସ୍ତା ଅବରୋଧ କରିବେ । ଏଥି ମଧ୍ୟରେ ବିରୋଧି ଦଳର ନେତାମାନେ, ଛାତ୍ରମାନଙ୍କୁ କରଗତ କରି ନେଇଥାନ୍ତି ଏବଂ ସେମାନେ ଚାହୁଁଥାନ୍ତି ଯେପରି ଗୋଟେ ଛାତ୍ର ଅଶାନ୍ତି ଘଟୁ । ତେଣୁ ଛାତ୍ରନେତାମାନେ ଘଟଣାର ସମାଧାନ କରିପାରୁ ନାହାନ୍ତି । ଏ ଖବର ପାଇଲା ପରେ ପ୍ରଶାସନ ତରଫରୁ ପ୍ରଧାନମନ୍ତ୍ରୀ ନ ଆସିଲେ ଭଲ ବୋଲି କହିଲେ ମାତ୍ର ପୁଲିସ ବନ୍ଦୋବସ୍ତ ଇତ୍ୟାଦି କାମ ଚାଲୁରହିଲା । ପ୍ରଧାନମନ୍ତ୍ରୀ ବିଶ୍ରାମ ନେଇ, ରାଜଭବନରେ ଦୁଇଟା ବେଳକୁ ପ୍ରେସ୍ କନଫରେନ୍ସ ଆରମ୍ଭ କଲେ । ଏଣେ ଠିକ୍ ଦୁଇଟାପରେ, ନିମନ୍ତ୍ରିତ ବ୍ୟକ୍ତିମାନେ ଫିଜିକ୍ସ ଇନ୍‌ଷ୍ଟିଚିଉଟ୍ ଭିତରକୁ ଯିବାକୁ ଆରମ୍ଭ କଲେ । ମୁଁ ସଂପୂର୍ଣ୍ଣଭାବେ ପୁଲିସ୍ ବନ୍ଦୋବସ୍ତ କରିଥାଏ । ରାସ୍ତାରେ ଛାତ୍ରମାନେ ଅବରୋଧ କରିପାରନ୍ତି ବୋଲି ଆଚାର୍ଯ୍ୟ ବିହାର ଛକ ଠାରୁ ଆରମ୍ଭ କରି, ଇନ୍‌ଷ୍ଟିଟିଉଟ୍ ପର୍ଯ୍ୟନ୍ତ ରାସ୍ତାର ଦୁଇକଡ଼ରେ ପୁଲିସ୍ ମୁତୟନ କରିଥାଏ । ଆଚାର୍ଯ୍ୟ ବିହାର ଛକରେ କଟକ ଅତିରିକ୍ତ ଏସ.ପି. ସୁରେନ୍ଦ୍ର ସ୍ୱାଇଁ ଦାୟିତ୍ୱରେ ଥା'ନ୍ତି । ଠିକ୍ ଅପରାହ୍ନ ୩ଟା ବେଳକୁ, ପ୍ରାୟ ୫୦୦ ଛାତ୍ର,ଛାତ୍ରୀ ବିଶ୍ୱବିଦ୍ୟାଳୟ ପରିସରରୁ ବାହାରି ରାସ୍ତା ଅବରୋଧ ଆରମ୍ଭ କଲେ । ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଗାଡ଼ିକୁ ଇନ୍‌ଷ୍ଟିଟିଉଟ୍ ମଧ୍ୟକୁ ଛାଡ଼ିଦେଲେନି । ସେମାନେ ଛକପାଖ ରାସ୍ତା ଉପରେ ଗାଡ଼ି ରଖି ଚାଲି ଚାଲି ଗଲେ । ମୁଁ ଏବଂ ଜିଲ୍ଲାପାଳ, ରାସ୍ତା ଅବରୋଧ ଘଟଣା ଦେଖି କ'ଣ କରିବୁ ବୋଲି ଠିକ୍ କରିପାରିଲୁ ନାହିଁ । ଯଦି ପ୍ରଧାନମନ୍ତ୍ରୀ ନ ଆସନ୍ତି, ତାହେଲେ ଛାତ୍ରଙ୍କ ଉପରେ ପୁଲିସ କାର୍ଯ୍ୟାନୁଷ୍ଠାନ କରି ଅଶାନ୍ତି ସୃଷ୍ଟି କରିବା ଠିକ୍ ହେବନି । ମାତ୍ର ଯଦି ପ୍ରଧାନମନ୍ତ୍ରୀ ଆସନ୍ତି, ଆମ ହାତରେ ସମୟ ଖୁବ୍ କମ୍ । କ'ଣ କରିବୁ, ଠିକ୍ ନକରି ଆମେ ଦୁହେଁ, ମୋ ଗାଡ଼ିରେ ରାଜଭବନ ଗଲୁ । ସେତେବେଳକୁ ପ୍ରେସ୍ କନଫରେନ୍ସ ସରିବା ଉପରେ । ମୁଁ ଡି.ଜି ମିଃ ସ୍ୱାଇଁଙ୍କୁ ସବୁକଥା କହି କ'ଣ କରିବି ବୋଲି ପଚାରିଲି । ସେ ମୁଖ୍ୟମନ୍ତ୍ରୀଙ୍କୁ ଅପେକ୍ଷା କଲେ । ଠିକ୍ ୩.୩୦ମିନିଟ୍ ପ୍ରେସ୍ କନଫରେନ୍ସ ସାରି, ପ୍ରଧାନମନ୍ତ୍ରୀ ତାଙ୍କ ରାଜଭବନ ରୁମ୍‌କୁ ଫେରିଲା ବେଳେ, ମୁଖ୍ୟମନ୍ତ୍ରୀ ତାଙ୍କୁ ଅବସ୍ଥା ବିଷୟରେ ସବୁ କଥା କହିଲା ପରେ, ପ୍ରଧାନମନ୍ତ୍ରୀ ଗାନ୍ଧି କହିଲେ " ସେ ଛାତ୍ରଙ୍କ ଧମକରେ କାର୍ଯ୍ୟକର୍ମକୁ ବାତିଲିନକର ନିଶ୍ଚୟ ଯିବେ" । ତାଙ୍କ ପାଇଁ ଯେଉଁ ଗାଡ଼ି ବନ୍ଦୋବସ୍ତ

ହୋଇଛି ତାକୁ ବଦଳାଇ ଗୋଟେ ଆମ୍ବାସଡ଼ର ଗାଡ଼ି, ତାଙ୍କ ପାଇଁ ରଖନ୍ତୁ ଏବଂ ଗୋଟେ ପୁଲିସ୍ ହେଲମେଟ୍ ଆଣନ୍ତୁ । ଏତିକ ଶୁଣିଲା ପରେ ଡି.ଜି. ସେଠାରେ ରାଜଭବନ ଆର.ଆଇ. ଏବଂ ତାଙ୍କ ଏସକଟ୍‌କୁ ପ୍ରଧାନମନ୍ତ୍ରୀଙ୍କ କାରଟେ ଠିକ୍ କରିବାକୁ କହି, ଫିଜିକ୍ସ ଇନ୍‌ଷ୍ଟିଚିଉଟ୍ ଆଡ଼େ ବାହାରିଗଲେ । ମୁଁ, କଲେକ୍ଟର ଦୁହେଁ ମୋ ଗାଡ଼ିରେ ଅତ୍ୟନ୍ତ ଦୃତଗତିରେ ଆଚାର୍ଯ୍ୟ ବିହାର ଛକ ଆଡ଼େ ବାହାରିଲୁ । ମୋ ଗାଡ଼ିରେ ଫିଟ୍ ହୋଇଥିବା ବେତାର ସେଟ୍‌ରେ ଅତିରିକ୍ତ ଏସ.ପି.ଙ୍କୁ କହିଲି ଛାତ୍ରମାନଙ୍କୁ ଯେତେ ଶୀଘ୍ର ପାର ରାସ୍ତାରୁ ହଟାଇ ଦିଅ ମାତ୍ର କେହି କିଛି କାର୍ଯ୍ୟାନୁଷ୍ଠାନ କରିବାକୁ ଡରୁଥାନ୍ତି । କଲେକ୍ଟର ଏବଂ ମୁଁ ମୋ ଗାଡ଼ିରେ ଆଚାର୍ଯ୍ୟ ବିହାର ଛକ ପାରି ହୋଇଗଲା ପରେ, ଆମ ଗାଡ଼ିକୁ ଛାତ୍ରମାନେ ଅଟକାଇବାକୁ ଚେଷ୍ଟାକଲେ, ମାତ୍ର ଆମେ ସେମାନଙ୍କୁ ଠେଲି ଚାଲିଥିଲୁ । ଇନ୍‌ଷ୍ଟିଚିଉଟ୍ ମୁଖ୍ୟ ଫାଟକ ଅଳ୍ପଦୂର ଅଛି, ଜଣେ ଛାତ୍ର ଗାଡ଼ି ଆସ୍ତେ ଆସ୍ତେ ଗଲା ବେଳେ ଗାଡ଼ି ମଧ୍ୟରେ ହାତ ଗଳାଇ, କଲେକ୍ଟରଙ୍କ ଗଳାବନ୍ଧକୁ ଧରି ଟାଣିଲା । ଗାଡ଼ି ବନ୍ଦ ହେଲା ପରେ ମୁଁ ଆଦେଶ ଦେଲି ଛାତ୍ରମାନଙ୍କୁ ଘଉଡ଼ାଇ ଦେବା ପାଇଁ । ଆଦେଶପାଇ ମୃତୟନ ହୋଇଥିବା ସି.ଆର.ପି.ଏଫ. ଜବାନମାନେ ମାତ୍ର ୫ମିନିଟ୍ ମଧ୍ୟରେ, ସମସ୍ତଙ୍କୁ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟକୁ ହଟାଇଦେଲେ । ଛାତ୍ରଛାତ୍ରୀମାନେ କାଦୁଅ ପାଣିରେ ପଡ଼ିଉଠି, ଖଣ୍ଡିଆଖାବରା ହୋଇ ଛତ୍ରଭଙ୍ଗ ଦେଲେ ଏବଂ ପରିସର ମଧ୍ୟକୁ ପଳାଇଲେ । ଅଳ୍ପ ସମୟ ପରେ ଇନ୍ଦିରାଗାନ୍ଧି ମୁଣ୍ଡରେ ହେଲମେଟ୍ ଦେଇ ଆସି, ଦେଖିଲେ କୌଣସି ଠାରେ ଅବରୋଧ ନାହିଁ କି ପାଟିତୁଣ୍ଡ ନାହିଁ । ସେ ହେଲମେଟ୍ କାଢ଼ି, ଫିଜିକ୍ସି ଇନ୍‌ଷ୍ଟିଚିଉଟ୍ ମଧ୍ୟକୁ ଗଲେ ଏବଂ ଉଦ୍‌ଘାଟନ ଉତ୍ସବ ଆରମ୍ଭ ହେଲା । ମୁଁ ମୁଖ୍ୟ ଫାଟକ ପାଖରେ ଥାଇ ପ୍ରମାଦ ଗଣୁଥାଏ ଏବଂ ଭାବୁଥାଏ କିପରି ଇନ୍ଦିରାଗାନ୍ଧି ମିଟିଂ ସାରି ସେଠାରୁ ବିଦାୟ ନେବେ । ସେ ଆଚାର୍ଯ୍ୟ ବିହାର ଛକ ପାର ହୋଇଗଲେ ତାଙ୍କ ଗତିପଥକୁ ଅବରୋଧ କରିବାର ସୁବିଧା ରହିବନି । ଛାତ୍ରଛାତ୍ରୀମାନେ ଲାଠିମାଡ଼ଖାଇ ବାଣୀବିହାର ପରିସରକୁ ଫେରିଗଲା ପରେ ପରେ ପ୍ରଥମେ ଅଟକାଇରଖିଥିବା ଓ.ଆର.ଟି. ବସ୍‌ରେ ନିଆଁ ଲଗାଇବାକୁ ଆରମ୍ଭ କଲେ । ମୁଖ୍ୟ ଫାଟକ ପାଖେ ଥାଇ, ମୁଁ ଦେଖିଲି, ବିଶ୍ୱବିଦ୍ୟାଳୟ ପରିସରମଧ୍ୟରୁ ଧୂଆଁବାହାରିବା ଆରମ୍ଭ ହେଲା । ସନ୍ଧ୍ୟା ବି ମାଡ଼ି ଆସୁଥାଏ । ପ୍ରଧାନମନ୍ତ୍ରୀ ସେ ସ୍ଥାନଛାଡ଼ି ନଯିବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟାନୁଷ୍ଠାନ କରିବା ଉପଯୁକ୍ତ ହେବନି ବୋଲି, ମୁଁ ଭି.ଭି.ଆଇ.ପି. ଯିବା ପର୍ଯ୍ୟନ୍ତ ଅପେକ୍ଷା କରିଥାଏ । ଠିକ୍ ୪.୪୫ମିନିଟ୍‌ରେ, ମିଟିଂ ଶେଷ ହେବା ମାତ୍ରେ ପ୍ରଧାନମନ୍ତ୍ରୀ, ଗାଡ଼ିରେ ବସି ବିମାନ ବନ୍ଦର ଆଡ଼େ ବାହାରିଲେ । ଆଚାର୍ଯ୍ୟ ବିହାର ଛକ ପାରିହେଲା ପରେ, ମୁଁ, କଲେକ୍ଟର, ସପ୍ତମ ବାଟେଲିୟାନର ସହାୟକ ଦୁର୍ଗପତି ଅରବିନ୍ଦ ମିତ୍ର, ମିଟିଂ ପାଖେ ଏବଂ ରାସ୍ତାରେ ଥିବା ପ୍ରାୟ ୧୦ ପ୍ଲାଟୁନ୍ ଫୋର୍ସ ଧରି, କୁଳପତିଙ୍କ ଅନୁମତିକୁ ଅପେକ୍ଷା ନକରି ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ପ୍ରବେଶ କଲୁ ଏବଂ ଅଧାପୋଡ଼ା ବସ୍ ଗୁଡ଼ିକୁ ଦମ୍‌କଳ ସାହାଯ୍ୟରେ ରକ୍ଷାକଲୁ । ଛାତ୍ରମାନେ ଜାଣିଜାଣି ବେସରକାରୀ ବସ୍‌ରେ ନିଆଁ ଲଗାଇ ନଥାନ୍ତି, କାରଣ ସେମାନେ ଜାଣନ୍ତି, ବେସରକାରୀ ବସର ମାଲିକମାନେ ସେମାନେ ବାଣୀବିହାରରୁ

ବାହାରିଲା ପରେ, ଠିକ୍ କରିଦେବେ । ତେଣୁ ସରକାରୀ ବସ୍ ପୋଡ଼ିବା ସହଜ, ବେସରକାରୀ ବସ୍ ପୋଡ଼ିବା ବିପଦ ଜନକ ।

ବସ୍‌ଗୁଡ଼ିକୁ ପରିସରମଧ୍ୟରୁ ବାହାର କରି ଦେଲା ପରେ ଛାତ୍ରମାନଙ୍କୁ ହଷ୍ଟେଲମଧ୍ୟରେ ପ୍ରବେଶ କରି ଆରେଷ୍ଟ କରାଗଲା । ନେତାମାନେ ଏବଂ ଯେଉଁମାନେ ବସ୍‌ଗୁଡ଼ିକ ନିଆଁଲଗାଇଥିଲେ ଏବଂ ପୁଲିସ୍‌କୁ ଟେକା ପକାଉଥିଲେ, ସେମାନଙ୍କ ବିରୁଦ୍ଧରେ ସାତଗୋଟି କେସ ହୋଇ ସେମାନଙ୍କୁ ଆରେଷ୍ଟ କରାଗଲା । ସେଦିନ ରାତିରେ ବହୁଛାତ୍ର ଆରେଷ୍ଟ ହୋଇ ଥାନାକୁ ଗଲେ ଏବଂ ସେଦିନ କୋର୍ଟକୁ ଚାଲାଣ ହେଲେ । ପ୍ରାୟ ୧୫ ଦିନରୁ ଊର୍ଦ୍ଧ୍ୱ ଗୋଟାକ ପରେ ଗୋଟେ କେସ୍‌ରେ ସେମାନେ ଜେଲ୍‌ରେ ରହିଲେ । କେସସବୁ ଚାର୍ଟସିଟ୍ ପନ୍ଦର ଦିନ ମଧ୍ୟରେ ହୋଇଗଲା । ଛାତ୍ର ଆନ୍ଦୋଳନ ଏତିକିରେ ବନ୍ଦ ରହିଲା । ଘଟଣାକୁ ଅନୁଧ୍ୟାନ କରି, କେତେଜଣ କହିଲେ ଆଗରୁ କାହିଁକି ବିଶ୍ୱବିଦ୍ୟାଳୟ ପରିସରରୁ ବସଗୁଡ଼ିକୁ ଅଣାଗଲା ନାହିଁ । କିନ୍ତୁ ଦିନକ ଆଗରୁ ଯଦି ପୁଲିସ୍ ବାଣୀବିହାର ପରିସର ମଧ୍ୟକୁ ପ୍ରବେଶ କରିଥାନ୍ତା ତାହେଲେ ପ୍ରଧାନମନ୍ତ୍ରୀ ଆସିଲା ବେଳକୁ ଭୁବନେଶ୍ୱରର ସମସ୍ତ କଲେଜର ଛାତ୍ରମାନେ ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତ ରହିଥାନ୍ତେ । ଛାତ୍ରମାନଙ୍କୁ ଉସକାଉଥିବା କେତେକ ବିରୋଧିଦଳ ନେତାଙ୍କର ଏହା ଏକ ସୁପରିକଳ୍ପିତ ପରିକଳ୍ପନା ଥିଲା ମାତ୍ର ଆମେ ସେମାନଙ୍କ ଟ୍ରାପ୍‌ରେ ପଡ଼ିନଥିଲୁ ।

ଏଇ ଆନ୍ଦୋଳନରେ ଯେଉଁ ଛାତ୍ରମାନେ ଥିଲେ, ସେମାନେ ଭବିଷ୍ୟତରେ ଭାରତୀୟ ସେବାରେ ଚାକିରୀ ପାଇଲେ, ମାତ୍ର ସେମାନଙ୍କ ବିରୁଦ୍ଧରେ ପୁଲିସ୍ କେସ୍‌ଥିବା ଯୋଗୁ ଚାକିରୀରେ ଯୋଗ ଦେଇପାରୁ ନଥିଲେ । ମୋର ଭୁବନେଶ୍ୱରରୁ ବଦଳି ହେଲାପରେ ୧୯୮୭ ମସିହାରେ ପୁରୀ ଏସ.ପି. ହୋଇ ଜଏନ୍ କରିଥିଲି । ସେତେବେଳ ପର୍ଯ୍ୟନ୍ତ ବାଣୀବିହାର ମାମଲାରେ ସଂପୃକ୍ତ ଥିବା ତିନିଜଣ ଛାତ୍ରନେତା ସର୍ବଭାରତୀୟ ସେବାରେ ଚାକିରୀ ପାଇଥିଲେ ମଧ୍ୟ ପୁଲିସ୍ କ୍ଲିୟରାନ୍ସ ଦେଇ ନଥିବା ଯୋଗୁ ଚାକିରୀରେ ଜଏନ୍ କରି ପାରୁନଥିଲେ । ମୁଁ କଲେକ୍ଟରଙ୍କୁ କହି ଏସମସ୍ତ କେଶ୍‌କୁ ଅଦାଲତରୁ ପ୍ରତ୍ୟାହାର କରିବାପାଇଁ ସରକାରଙ୍କ ତରଫରୁ ଆଦେଶ କରି କେଶ୍ ଗୁଡ଼ିକ ପ୍ରତ୍ୟାହାର କରି ନେବା ପରେ ସେମାନେ ସର୍ବଭାରତୀୟ ସେବାରେ ନିଯୁକ୍ତ ହେଲେ ।

ଛାତ୍ର ଆନ୍ଦୋଳନ ପରେ, ଭୁବନେଶ୍ୱର ପୁଲିସ ଜିଲ୍ଲାରେ ଆଉ କୌଣସି ପ୍ରକାର ଅଶାନ୍ତି ଦେଖାଦେଇ ନଥିବା ଯୋଗୁ ମୋତେ ପୁଲିସ୍ କାମ କରିବାକୁ ସମୟ ମିଳିଥିଲା । ଏଇ ସମୟ ମଧ୍ୟରେ ଭୁବନେଶ୍ୱର ପୁଲିସ ଜିଲ୍ଲାରେ ଅଧିକ ପୁଲିସ୍‌ର ଆବଶ୍ୟକତା ତଥା ଜିଲ୍ଲାରେ ଜଣେ ଅତିରିକ୍ତ ଏସ.ପି.ଙ୍କ ଦରକାର ବିଷୟରେ ସମସ୍ତେ ଅନୁଭବ କରିଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ମଧ୍ୟ ଏ ବିଷୟରେ ବାରମ୍ବାର କୁହାଗଲା ପରେ, ଛଅମାସ ମଧ୍ୟରେ ଭୁବନେଶ୍ୱରର ଚାରିଗୋଟି ଫାଣ୍ଡିକୁ ପୁଲିସ୍ ଷ୍ଟେସନରେ ପରିଣତ କରାଗଲା ଏବଂ ପ୍ରତ୍ୟେକ ନୂତନ ପୁଲିସ ଷ୍ଟେସନ ଜଣେ ଇନିସ୍‌ପେକ୍ଟରଙ୍କ ଦାୟିତ୍ୱରେ ରହିଲା । ତାଛଡ଼ା ଗୋଟେ ଅତିରିକ୍ତ ଏସ.ପି. ପଦବୀ ସୃଷ୍ଟି ହୋଇ, ହରିହର ପଣ୍ଡାଙ୍କୁ ଏଠାରେ ଅତିରିକ୍ତ ଏସ.ପି.ଭାବେ ନିଯୁକ୍ତ କରାଗଲା ।

## ୧୯୮୨ ମସିହାର ପ୍ରଳୟକାରୀ ବନ୍ୟା

୧୯୮୨ ମସିହା ସେପ୍ଟେମ୍ବର ମାସର ପ୍ରଳୟଙ୍କାରୀ ବନ୍ୟାରେ ଓଡ଼ିଶାରେ ଆଠଟି ଜିଲ୍ଲାର ପ୍ରାୟ ୫୦ଲକ୍ଷ ଲୋକ ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଥିଲେ । ମହାନଦୀ, ଋଷିକୁଲ୍ୟା ଏବଂ ପ୍ରାୟ ୨୫ ଗୋଟି ଛୋଟବଡ଼ ନଦୀରେ ପ୍ରବଳ ବନ୍ୟା ଯୋଗୁ ୨୦୪ଗୋଟି ସ୍ଥାନରେ ନଦୀବନ୍ଧରେ ଘାଇ ହୋଇଥିଲା ବେଳେ ୧୦୭ଜଣ ଲୋକଙ୍କର ପ୍ରାଣହାନୀ ଘଟିଥିଲା । ୧୦୦ଟି ବ୍ଲକ୍‌ରେ ପ୍ରାୟ ୧୧.୨୫ ଲକ୍ଷ ହେକ୍ଟର ଚାଷ ଜମିର ଫସଲ ନଷ୍ଟ ହୋଇଥିଲା । ଏପରି ପ୍ରଳୟଙ୍କାରୀ ବନ୍ୟା ୧୦୦ ବର୍ଷ ମଧ୍ୟରେ ଦେଖାନଥିଲା ବୋଲି ବୁଢ଼ାବୁଢ଼ା ଲୋକ କହୁଥିଲେ । ଅଗଷ୍ଟ ମାସ ୨୯ ତାରିଖ ସକାଳ ୧୦ଟାରେ ଘରୋଇ ସଚିବ ଶ୍ରୀ ଦାସ, ମୋତେ ଟେଲିଫୋନ କରି ତାଙ୍କ ଅଫିସକୁ ଆସିବାକୁ କହିଲେ । ଅଫିସ୍‌ରେ ପହଞ୍ଚିଲାପରେ, ମୋତେ କହିଥିଲେ ଯେ ସେଦିନ ସନ୍ଧ୍ୟା ସୁଦ୍ଧା ମହାନଦୀ, କାଠଯୋଡ଼ୀ ଏବଂ ଏହାର ଶାଖା ନଦୀମାନଙ୍କରେ ପ୍ରବଳ ବନ୍ୟା ଆସିପାରେ । ତେଣୁ ନଦୀକୂଳ ଲୋକମାନଙ୍କୁ ସତର୍କ କରାଇଦେବା ପାଇଁ ଏବଂ ତଳି ଅଞ୍ଚଳର ପୁଲିସ୍ ଷ୍ଟେସନଙ୍କୁ ବେତାର ଦ୍ୱାରା ଖବର ଦେଇ ସେମାନଙ୍କୁ ସତର୍କ କରାଇ ଦେବା ସଙ୍ଗେ ସଙ୍ଗେ ବନ୍ୟା ଘେରରୁ ଲୋକମାନଙ୍କୁ ଉଦ୍ଧାର କରିବା ପାଇଁ ଡଙ୍ଗା ଇତ୍ୟାଦିର ବ୍ୟବସ୍ଥା କରିବା । ତାଙ୍କ ଅଫିସରୁ ଫେରି ମୁଁ ବାଲିପାଟଣା, ବାଲିଅନ୍ତା ଇତ୍ୟାଦି ଥାନାମାନଙ୍କୁ ବେତାର ଯୋଗେ କହିବା ପରେ ଆର୍.ଆଇ. ଙ୍କୁ ଡାକି ଫୋର୍ସ ଏବଂ ଉଦ୍ଧାର କାର୍ଯ୍ୟ ପାଇଁ ଯାହା ସବୁ ଦରକାର ସେ ସବୁକୁ ପ୍ରସ୍ତୁତ କରି ରଖିବା ପାଇଁ ଆଦେଶ ଦେଲି । ୩୦ ତାରିଖ ଦିନ ମୁଁ ବାଲକାଟି ଆଡ଼େ ଗଲାବେଳେ ଦେଖିଲି ଦୟା ଭାର୍ଗବୀ ନଦୀରେ ବନ୍ୟାଜଳ ପ୍ରବଳ ବେଗରେ ବଢ଼ିବାରେ ଲାଗିଛି । ଅଳ୍ପ ସମୟ ମଧ୍ୟରେ ବନ୍ୟାଜଳ ନଦୀ ବନ୍ଧ ଟପିବାକୁ ଆରମ୍ଭ କରିଦେଲା । ବାଲକାଟିରୁ ଫେରି ମୁଁ କଟକ ରାସ୍ତାରେ ଫୁଲନଖରା ଗଲା ବାଟରେ, ପଳାଶୁଣୀପାଖେ ଜାତୀୟ ରାଜପଥ ବୁଡ଼ି ପାଣି ଚାଲିବା ଆରମ୍ଭ କରିଦେଲା । ଫୁଲନଖରା ପାଖେ ପହଞ୍ଚି ଶୁଣିଲୁ କାଠଯୋଡ଼ୀର ଦକ୍ଷିଣ ପଟ ବନ୍ଧରେ ଘାଇ ହୋଇଯିବା ଯୋଗୁ ପାଣି ପ୍ରବଳ ବେଗରେ ଜାତୀୟ ରାଜପଥ ଆଡ଼େ ମାଡ଼ି ଆସୁଛି । ଫୁଲନଖରା ଠାରୁ କଟକ ଯିବା ବାଟରେ ଦେଖିଲି ପାଣି ପ୍ରତାପନଗରୀ ଆଗକୁ ୫ନମ୍ବର ଜାତୀୟ ରାଜପଥ ଡେଇଁ, ରାଜପଥ ଉପରେ ଚାଲିଲାଣି । ଚାହୁଁ ଚାହୁଁ କୁଆଖାଇର ବନ୍ଧରେ ଘାଇ ହେବା ଯୋଗୁ ପ୍ରତାପନଗରୀ ପାଖ ଆଖ ଗାଁ ଭାଣପୁର, ଇତ୍ୟାଦି ପାଣି ଘେରଭିତରେ ରହିଲା ଏବଂ ପ୍ରତାପନଗରୀ ଆଗକୁ ପୀରବଜାର ପାଖେ ଜାତୀୟ ରାଜପଥରେ ଘାଇ ହୋଇ କଟକ-ଭୁବନେଶ୍ୱର ରାସ୍ତା ବନ୍ଦ ହୋଇଗଲା । ମୁଁ ପ୍ରତାପନଗରୀ ପାଖରୁ ଫେରି ଭୁବନେଶ୍ୱର ଆସିଲାବେଳେ, ପଳାଶୁଣୀ ପାଖରେ ରାସ୍ତା ଉପରେ ପ୍ରାୟ ଦୁଇଫୁଟ ପାଣି ଚାଲିଲାଣି । କଷ୍ଟେମଷ୍ଟେ ଜିପ୍ ପାଣି ଭିତରେ ପୁରେଇ ମୋ ଅଫିସରେ ପହଞ୍ଚି ଶୁଣିଲି ଯେ ଭୁବନେଶ୍ୱର ପୁରୀ ରାସ୍ତାର ଉତରା ଛକ ପାଖରେ ଘାଇ ହୋଇ ପାଣି ଚାଲିଲାଣି । ଉତରାପାଖ ଦୟା ନଦୀର ବନ୍ଧ ଭାଙ୍ଗି ଯାଇ ପାଣି ଘେରରେ ପାଖ ଆଖ ଗାଁ ରହି ସାରିଲେଣି । ସନ୍ଧ୍ୟା ବେଳକୁ ପୁରୀ ଭୁବନେଶ୍ୱର ରାସ୍ତା ବନ୍ଦ ହୋଇଗଲା ।

ବେତାରଯୋଗେ ଖବର ମିଳିଲା ଆମ ଗାଁ ପାଖ ମହାପାତ୍ର ସାହି ପାଖେ କୁଶଭଦ୍ରା ନଦୀରେ ଘାଇ ହୋଇ, ଆମ ଗାଁଭିତରରେ ପାଣି ପଶିଲାଣି । ମହାପାତ୍ର ସାହି ଭାସି ଯାଇଛି, ଲୋକମାନେ ନଦୀ ବନ୍ଧ ଉପରେ ଆଶ୍ରୟ ନେଇଛନ୍ତି । ସେଇ ସନ୍ଧ୍ୟାରେ ଭୁବନେଶ୍ୱର ପୁଲିସ୍ ତରଫରୁ ରୋଟାରୀ, ଲାୟନ୍ସ କ୍ଲବର ସଦସ୍ୟମାନଙ୍କ ସାହାଯ୍ୟରେ ଧଉଳିଛକ ପାଖରେ ଆଶ୍ରୟ ନେଇଥିବା ଲୋକମାନଙ୍କୁ ପାଉଁରୁଟି, ବିସ୍କୁଟ ପ୍ରଭୃତି ସାହାଯ୍ୟ ଦେଲୁ ଏବଂ ପୁଲିସ ସାହାଯ୍ୟରେ ସେଇ ରାତିରେ ବୁଡ଼ିଯାଉଥିବା ଗାଁ ମଧ୍ୟରୁ ପ୍ରାୟ ୧୦୦୦ ଜଣ ଲୋକଙ୍କୁ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ କଲୁ । ଏଣେ ପାଞ୍ଚ ନମ୍ବର ଜାତୀୟ ରାଜପଥ କଟି ଯିବାରୁ ରାଜପଥରେ ଯେତେ ଗାଡ଼ି କଲିକତା ଆଡ଼କୁ ଯିବା କଥା, ସବୁ ଟ୍ରକ ଭୁବନେଶ୍ୱର ପାଖାପାଖି ରାସ୍ତା ଉପରେ ବନ୍ଦ ହୋଇ ରହିଗଲା । ୩୧ ତାରିଖ ସକାଳକୁ ହଜାର ହଜାର ଟ୍ରକ ରାସ୍ତା ଉପରେ ରହିଲା । କେତେକ ଟ୍ରକ ମଧ୍ୟ ପାଣି ଘେର ମଧ୍ୟରେ ରହିଥିଲା । କଟକ ଭୁବନେଶ୍ୱର ମଧ୍ୟରେ ରେଲ ଲାଇନ ଭାଙ୍ଗି ଯିବାରୁ ରେଳ ଚଳାଚଳ ବନ୍ଦ ହୋଇଗଲା । ଭୁବନେଶ୍ୱର ସହର କଟକ, ପୁରୀ ଠାରୁ ସମ୍ପୂର୍ଣ୍ଣଭାବେ ଅଲଗା ହୋଇଗଲା । କେବଳ ଆକାଶ ମାର୍ଗ ଛଡ଼ା ଯିବା ଆସିବା ବାଟ ବନ୍ଦହୋଇଗଲା । ଭୁବନେଶ୍ୱରରେ ସରକାରଙ୍କ ତରଫରୁ ରିଲିଫ୍ ଏବଂ ଉଦ୍ଧାର କାର୍ଯ୍ୟ ୩୧ ତାରିଖ ସୁଦ୍ଧା ଆରମ୍ଭ ହେଲା । ମୋ ପାଖରେ ମାତ୍ର ଅଳ୍ପ ଫୋର୍ସ, ତା'ମଧ୍ୟରୁ ବହୁ ଅଫିସର ଏବଂ କନେଷ୍ଟବଳମାନେ ବିଭିନ୍ନ ସ୍ଥାନରେ ଉଦ୍ଧାର କାର୍ଯ୍ୟରେ ଲାଗିଥାନ୍ତି । ସେପ୍ଟେମ୍ବର ତିନି ତାରିଖଦିନ ଗୋଟେ ଡଙ୍ଗାରେ ୩୫ଜଣ ଲୋକ ଉତ୍ତରାଛକ ପାଖେ ପାରି ହେଲାବେଳେ ଡଙ୍ଗା ବୁଡ଼ିଗଲା ଏବଂ ୩୫ ଜଣ ଲୋକ ବନ୍ୟାରେ ଭାସିଗଲେ । ମାତ୍ର ସେଠାରେ ଥିବା ହୋମଗାର୍ଡ଼ କନେଷ୍ଟବଳ, ଏବଂ ଅଫିସରମାନେ ଅକ୍ଲାନ୍ତ ପରିଶ୍ରମ କରି ଲାଇଫ୍ ଜାକେଟ୍ ସାହାଯ୍ୟରେ ସମସ୍ତଙ୍କୁ ଉଦ୍ଧାର କରିଥିଲେ । ସେହିପରି ଲିଙ୍ଗପୁର, ଇଟିପୁର, ସରଦେଇପୁର ଗାଁମାନଙ୍କରେ ପାଣି ଘେରରେ ଥିବା ଲୋକମାନଙ୍କୁ ଭୁବନେଶ୍ୱର ପୁଲିସ ଉଦ୍ଧାର କରିଥିଲା ।

ଭୁବନେଶ୍ୱରରେ ଥିବା ୮୫ଗୃହରକ୍ଷୀ, ୪୦ଜଣ ଗ୍ରାମରକ୍ଷୀ, ୩୦ ଅଫିସର, ଜଣେ ଡି.ଏସ.ପି. ଏବଂ ଆଡ଼ିସନାଲ ଏସ.ପି. ଏମାନେ ଦିନରାତି ଉଦ୍ଧାର, ରିଲିଫ୍ ଯୋଗାଇବା ଏବଂ ଜାତୀୟ ରାଜପଥରେ ରହିଯାଇଥିବା ଟ୍ରକ୍ ଏବଂ ଟ୍ରକ୍ ଦେହରେ ଥିବା ଜିନିଷପତ୍ରକୁ ଜଗିବାରେ ଦିନରାତି ଲାଗିଥିଲେ ।

ଏଣେ କଟକ ପୁଲିସ୍ ସଦର ମହକୁମାରୁ କେହି ଆସି ନପାରୁଥିବାରୁ ମୋତେ ଭୁବନେଶ୍ୱରରୁ ସରକାରଙ୍କ ସହ ସବୁ କାର୍ଯ୍ୟ ଏବଂ ବିମାନ ବନ୍ଦରରୁ ଆକାଶମାର୍ଗରେ ରିଲିଫ୍ ବଣ୍ଟନ, ଆଇନ ଶୃଙ୍ଖଳା ସବୁ ଦେଖିବାକୁ ପଡୁଥିଲା । ସେପ୍ଟେମ୍ବର ଏକ ତାରିଖ ସୁଦ୍ଧା ଖବର ମିଳିଲା ଯେ, କଟକ ସହର ବୁଡୁବୁଡୁ ରକ୍ଷା ପାଇଗଲା । ମହାନଦୀର ବନ୍ୟା ଜଳ ଗଡ଼ଗଡ଼ିଆ ମହାଦେବଙ୍କ ପାଖରେ ଅଗଷ୍ଟ ୩୧ ତାରିଖ ଦିନ ୧୨ଟା ବେଳେ ବନ୍ଧ ଡେଇଁବା ଆରମ୍ଭ କରିଥିଲା, ମାତ୍ର ତାର ଅଳ୍ପ ସମୟ ପରେ ୧୨.୩୦ ବେଳକୁ ମହାନଦୀର ତଳମୁଣ୍ଡରେ

ଦଳେଇଘାଇ ଭାଙ୍ଗି ଯିବାରୁ ଜଗତସିଂହପୁର ଜିଲ୍ଲାରେ ନାହିଁ ନଥିବା କ୍ଷତି ହେଲା । ଦଳେଇଘାଇ ଭାଙ୍ଗିବା ଯୋଗୁ କଟକ ସହର ରକ୍ଷା ପାଇଗଲା ନ ହେଲେ କଟକ ସହର ମଧ୍ୟରେ ପାଣି ପଶିବା ନିଶ୍ଚିତ ଥିଲା ଯଦିଓ କଟକ ବିଡ଼ାନାସୀ ଅଞ୍ଚଳରେ ପାଣି ପଶିସାରି ଥିଲା ।

ସରକାରଙ୍କ ତରଫରୁ ସୈନ୍ୟ ବିଭାଗର ହେଲିକ୍ୟାପ୍ଟର ଆସି ଆକାଶ ମାର୍ଗରୁ ଖାଦ୍ୟ ପୁଡ଼ିଆ ପକାଇବାକୁ ଆରମ୍ଭ କଲା, ମାତ୍ର ଏମାନେ ଠିକ୍ ସ୍ଥାନରେ ପୁଡ଼ିଆଁ ପକାଇ ନପାରିବାରୁ ବହୁ ସ୍ଥାନରୁ ଖବର ବେତାର ଯୋଗେ ଆସିଲା ଲୋକମାନେ ଚାରି ପାଞ୍ଚ ଦିନ ନଖାଇ ନପିଇ, କିଏ ଚାଳ ଉପରେ ତ କିଏ ଗଛ ଉପରେ ନଦୀ ବନ୍ଧମାନଙ୍କରେ ଆଶ୍ରୟ ନେଇଛି । ସୈନ୍ୟ ବିଭାଗର ହେଲିକ୍ୟାପ୍ଟର ଚୁଡ଼ା, ଚାଉଳ ନେଇ ଦରକାର ନଥିବା ସ୍ଥାନମାନଙ୍କରେ ପକାଇ ଫେରିଆସୁଥାନ୍ତି । କ୍ଷତିଗ୍ରସ୍ତ ଲୋକମାନେ ମରଣାତ୍ମକ ଅବସ୍ଥାରେ ପଡ଼ିଥାନ୍ତି । ଆଇନ୍‌ଶୃଙ୍ଖଳା ପରିସ୍ଥିତିକୁ ସମ୍ଭାଳିଲାପରେ, ମୁଁ ହେଲିକାପ୍ଟର ଯୋଗେ ବାଲିଅନ୍ତା, ନିଆଳୀ, ଜଗତସିଂହପୁର ଆଡ଼େ ଯାଇ କେତେକ ସ୍ଥାନରେ ପାଣି ଘେରରେ ଥିବା ଲୋକମାନଙ୍କ ବିଷୟ ଏବଂ ସଠିକ୍ ସ୍ଥାନ ଦେଖି, ତାର ଗୋଟେ ମ୍ୟାପ କରିଦେଲା ପରେ ସେମାନଙ୍କୁ ଉଦ୍ଧାର କରିବା କାର୍ଯ୍ୟ ଆରମ୍ଭ ହେଲା । ମୁଁ ହେଲିକାପ୍ଟରରେ ଗଲାବେଳେ ଦେଖିଲି ଓଲଟପୁର ଡାକ୍ତରଖାନାର ବହୁକର୍ମଚାରୀମାନେ ଛାତ ଉପରେ ଚାରିଦିନ ହେଲା ବସିଥାନ୍ତି । ଡାକ୍ତରଖାନା ଭିତରେ ୮ଫୁଟ ପାଣି । ଭୁବନେଶ୍ୱର ଫେରି ଖବରଦେଲା ପରେ କଟକରୁ ପୁଲିସ ଡଙ୍ଗା ନେଇ ସେମାନଙ୍କୁ ଉଦ୍ଧାର କରିଥିଲା । ତାଛଡ଼ା ବାଲିପାଟଣା, ବାଲିଅନ୍ତା, କାକଟପୁର ଥାନାମାନଙ୍କରେ ହଜାର ହଜାର ଲୋକ ଆଶ୍ରୟ ନେଇଥିବା ଯୋଗୁ, ସେମାନଙ୍କ ପାଇଁ ଆକାଶ ମାର୍ଗରୁ ଖାଦ୍ୟ ପୁଡ଼ିଆ ପକାଯାଇଥିଲା । ସୈନ୍ୟ ବିଭାଗର ପାଇଲଟମାନେ ଟପୋଗ୍ରାଫି ବିଷୟରେ ଜାଣିନଥିବା ଯୋଗୁ ବହୁ ସମୟରେ ଠିକ୍ ଯାଗାରେ ଖାଦ୍ୟ ପହଞ୍ଚିପାରୁ ନଥାଏ । ଯେତେଦୂର ସମ୍ଭବ ମୁଁ ଭୁବନେଶ୍ୱରରୁ ସେମାନଙ୍କୁ ସାହାଯ୍ୟ କରୁଥିଲି ।

କେବଳ କଟକ, ପୁରୀ ଜିଲ୍ଲା ନୁହେଁ ଫୁଲବାଣୀ ଜିଲ୍ଲାର ବୌଦ, ସମ୍ବଲପୁର, ଭଦ୍ରକ, କେଉଁଝର ଜିଲ୍ଲାର ଆନନ୍ଦପୁର ଅଞ୍ଚଳ ମଧ୍ୟ ବନ୍ୟାରେ କ୍ଷତିଗ୍ରସ୍ତ ହୋଇଥିଲା ଏବଂ ହଜାର ହଜାର ଲୋକ ଅଖିଆ ଅପିଆ, ନଦୀ ବନ୍ଧ, ଗଛ ଉପରେ ଏବଂ ଛାତ ଉପରେ ବସିଛନ୍ତି ବୋଲି ଖବର ଆସି ପହଞ୍ଚୁଥାଏ । ମହାନଦୀ ବନ୍ଧରେ ବାଙ୍କି ଉପର ମୁଣ୍ଡରେ ଘାଇ ହେବାରୁ ବାଙ୍କିସହର ଭାସି ଯାଉଛି ବୋଲି ଖବର ଆସି ପହଞ୍ଚିଲା । ସେପ୍ଟେମ୍ବର ୫ ତାରିଖ ଦିନ, ମୁଁ, ଭୁବନେଶ୍ୱର ଏସ.ଡି.ଓ ସୁଧାଂଶୁ ରାଉତରାଏ, ୪ଜଣ ଏ.ପି.ଆର ଫୋର୍ସ ଏବଂ ଇନସ୍‌ପେକ୍ଟର ଚିତ୍ତ କାନୁନ୍‌ଗୋକୁ ଧରି ଦୁଇଟି ଆର୍ମିବୋଟରେ କିଛି ଚୁଡ଼ା, ଚାଉଳ ଧରି, କୁଆଖାଇ ପୋଲ ପାଖରୁ କୁଶଭଦ୍ରା ନଦୀରେ ତଳଅଞ୍ଚଳ ଆଡ଼େ ଗଲୁ । ଗଲାବେଳେ ବାଟରେ ଦେଖିଲୁ ହଜାର ହଜାର ଲୋକ ନଦୀ ବନ୍ଧ ଉପରେ ଆଶ୍ରୟ ନେଇଥାନ୍ତି । ଯାହା ଖାଦ୍ୟ ଆକାଶ ମାର୍ଗରୁ ପଡୁଥାଏ, ତାହା ଅତ୍ୟନ୍ତ କମ୍ ଏବଂ ସେଥିରୁ ମଧ୍ୟ ଅଧା ଅଧି ପାଣିରେ ପଡ଼ି ନଷ୍ଟ ହେଉଥାଏ । ଆମେ ତଳକୁ ଖସି କୁଶଭଦ୍ରା ନଦୀରେ, ଭଅଁରାଗଡ଼ ପର୍ଯ୍ୟନ୍ତ ଗଲୁ । ଖବର ପାଇ ଆମ ଗାଁ

ମହାପାତ୍ର ସାହିରୁ ଲୋକ ଆସି ପହଞ୍ଚିଲେ । ସେମାନଙ୍କୁ ଚୁଡ଼ା, ଚାଉଳ ଅନ୍ୟାନ୍ୟ ଜିନିଷ ଦେଇ ମୃତାହତ ଖବର ବୁଝିଲି । ସେମାନଙ୍କ ଠାରୁ ଶୁଣିଲି, ଚଣ୍ଡିପଡ଼ା ଗାଁ ପାଣି ଘେରରେ । ଲୋକମାନେ ପହଁରି ପହଁରି ଜୀବନ ରକ୍ଷା କରିଛନ୍ତି । ମହାପାତ୍ର ସାହି ମୁଣ୍ଡ ଉପରେ, କୁଶଭଦ୍ରା ନଦୀର ଘାଇ ହୋଇଥିବା ଯୋଗୁ, ପୂରା ଗାଁଟିକୁ ତାଡ଼ି ନେଇଛି । ଆମ ଗାଁ ଗହିରର କେତେକାଂଶରେ ବାଲି ମାଡ଼ି ଯାଇଛି । ଏସବୁ କଥା ବୁଝି, ଆମେ ଡଙ୍ଗାରେ ଫେରିଲୁ । ମୋ ପାଖରେ ଗୋଟେ ହ୍ୟାଣ୍ଡ ସେଟ୍ ବେତାର ଯନ୍ତ୍ର ଥାଏ । ପ୍ରାୟ ୪ଟାରେ ଆମେ ସମସ୍ତେ ଭଅଁରାଗଡ଼ ଛାଡ଼ିଲୁ । ସଂନ୍ଧ୍ୟା ଛଟା ପୂର୍ବରୁ କୁଆଖାଇ ପୋଲ ପାଖେ ପହଞ୍ଚି ଯିବୁ ବୋଲି, ଆର୍ମି ବୋଟର ଚାଳକମାନେ କହୁଥାନ୍ତି । ମାତ୍ର ଆମେ ସ୍ରୋତର ବିପରୀତ ଦିଗରେ ଗଲାବେଳେ, ଆମ ବୋଟର ଗତି ମଧ ବହୁତ କମିଗଲା । ନଦୀର ସ୍ରୋତ ବହୁତ ପ୍ରଖର ଏବଂ ପାଣି ପୂରା ବନ୍ଧ ପର୍ଯ୍ୟନ୍ତ ଲାଗିଥାଏ । ଯୁଆଡ଼େ ଚାହିଁଲେ ଖାଲି ନଦୀଜଳ, ସ୍ରୋତ । ନଦୀରେ ମାତ୍ର ସାତ ଆଠ କିଲୋମିଟର ଆସିଛୁ, ପ୍ରବଳ ବର୍ଷା ଆରମ୍ଭ ହୋଇଗଲା । ଘଡ଼ଘଡ଼ି ସହ ପ୍ରବଳ ବର୍ଷା ହେଲା । ଆର୍ମିର ରବରବୋଟ ଦେହରେ କିଛିନଥିବା ଯୋଗୁ ଆମେ ସମସ୍ତେ ସଂପୂର୍ଣ୍ଣ ଓଦା ହୋଇଗଲୁ । ପ୍ରାୟ ୨ ଘଣ୍ଟା ଧରି ପ୍ରବଳ ବର୍ଷା ହେବା ଯୋଗୁ ଦେହ ଥଣ୍ଡା ହୋଇଗଲା । ରବର ବୋଟର ଗତି ଶୀଥିଳ ଥିବା ଯୋଗୁ ନଦୀ ମଧରେ ଆମେ ବିଶେଷ ଭାବେ ଆଗେଇ ପାରୁ ନଥାଉ । ବର୍ଷା ଟିକିଏ କମିଲା ବେଳକୁ ସନ୍ଧ୍ୟା ମାଡ଼ି ଆସିଲା । ବର୍ଷା, ବିଜୁଳି ଘଡ଼ଘଡ଼ି ସାଙ୍ଗକୁ କିଟିକିଟି ମେଘ ଅନ୍ଧାର । ବର୍ଷା ଛାଡ଼ି ନଥାଏ, ଆମେ ଯାଉଥିବା ବୋଟ୍ ଆଗରେ କାନୁନ୍‌ଗୋ, ବେତାରସେଟ୍ ଧରି ଚାଲିଥାଏ । ଆମ ବୋଟ ପ୍ରାୟ ୫୦୦ ମିଟର ପଛରେ ଥାଏ ମାତ୍ର ଅନ୍ଧାର ଯୋଗୁ କିଛି ଦେଖିପାରୁ ନଥାଉ । ହଠାତ୍ ବେତାରରେ କାନୁନ୍‌ଗୋ କହିଲା ତାଙ୍କ ବୋଟ୍ ଜଳାବର୍ତ୍ତ ମଧରେ ପଡ଼ିଯାଇଛି । ଏକଥା କହିଲା ଭିତରେ ଆମେ ଶୁଣିଲୁ ନଦୀ ଭିତରକୁ ଡେଇଁବା ଶବ୍ଦ ଏବଂ ଜବାନ୍ ମାନଙ୍କର ଘନ ଘନ ହ୍ୟୁସିଲର ଶବ୍ଦ । ସଙ୍ଗେ ସଙ୍ଗେ ଆମ ପାଖରେ ଥିବା ଜୀବନରକ୍ଷା ଜାକେଟ୍ ପିନ୍ଧିଲୁ ମାତ୍ର ଏସ.ଡି.ଓ ମିଃ ରାଉତରାଏ କିଛି ପିନ୍ଧି ପାରୁନଥାନ୍ତି । ସେ ଶୀତରେ କମ୍ପୁଥାନ୍ତି ଏବଂ ଭୟରେ ଥରୁଥାନ୍ତି । ତାଙ୍କ ପାଟିରୁ କଥା ବାହାରୁ ନଥାଏ । ଅଳ୍ପ ସମୟ ପରେ କାନୁନ୍‌ଗୋ ବେତାରସେଟ୍‌ରେ କହିଲା ତାଙ୍କ ବୋଟ ଅଳ୍ପକେ ରକ୍ଷା ପାଇଗଲା ଏବଂ ସେମାନେ ଅନ୍ଧାରରେ ଆଉ ଆଗକୁ ନଯାଇ ବୋଟକୁ ନଦୀ ବନ୍ଧ ପାଖକୁ ଲଗାଇଛନ୍ତି । ସେ ପୁଣି କହିଲା ଯେ ବୋଟରେ ତେଲ ନାହିଁ କୁଆଖାଇ ବ୍ରିଜ୍ ପର୍ଯ୍ୟନ୍ତ ଯିବା ପାଇଁ । ଅନ୍ଧାର, ବର୍ଷା ଭିତରେ ଆମେ ମର୍ମାହତ ହୋଇ ପଡ଼ିଲୁ । ରାତିରେ ତେଲ କେଉଁଠୁ ଆଣିବୁ ? ସେଇଠୁ ବେତାର ଯନ୍ତ୍ରରେ ଭୁବନେଶ୍ୱର ଏସ.ପି. ଅଫିସ୍ କଂଟ୍ରୋଲରୁମ୍‌କୁ ଖବର ଦେବାକୁ ଚେଷ୍ଟା କଲୁ ମାତ୍ର କେହି ମୋ କଥାକୁ ଶୁଣି ପାରୁନଥାନ୍ତି କିମ୍ୱା ମୁଁ କିଛି ଶୁଣିପାରୁନଥାଏ । ଆମ ବୋଟର ଚାଳକ କହିଲା, ମାତ୍ର ଦୁଇ ଲିଟର ତେଲ ଅଛି, ବୋଟ ଯାଇପାରିବନି । ସେଇ ଅନ୍ଧକାର ଭିତରେ ଦୁଇଟା ବୋଟ ଯାଇ ଗୋଟେ ଆୟତୋଟା

ପାଖ ନଦୀ ବନ୍ଧରେ ଲାଗିଲା । ସେଠୁ କେଉଁ ଗାଁ କେତେ ଦୂରରେ ଅଛି କିଛି ଜଣା ପଡୁନଥାଏ । ବନ୍ଧପାଖରେ ଲାଗିଲା ପରେ ମୁଁ ସେଇ କାଦୁଅ ଖସଡ଼ାରେ ବନ୍ଧ ଉପରକୁ ବହୁ କଷ୍ଟରେ ଉଠିଲି, ମାତ୍ର ଏସ.ଡି.ଓ ରାଉତରାଏ, ଉଠିଲା ବେଳେ ତାଙ୍କର ମୋଟା ଦେହ ଯୋଗୁ ଖସଡ଼ାରେ ବନ୍ଧ ଉପରୁ ଗଡ଼ି ଗଡ଼ି ବନ୍ଧତଳ ପାଣିରେ ପଡ଼ିଲେ । ସେ ଆଉ ଉଠି ପାରିଲେନି । ସେଇ ପାଣିରେ ପଡ଼ି କହିଲେ ତାଙ୍କର ହାର୍ଟ ଆଟାକ ହେଲାଣି । ମୋତେ ଭୀଷଣ ଡର ଲାଗିଲା । ଆର୍ମି ଜବାନମାନଙ୍କୁ କହି, ଆମର ଦୁଇଜଣ ଫୋର୍ସ ଗୋଟେ ଦଉଡ଼ି ତାଙ୍କ ପଛପଟେ ଦେଇ ତଳୁ ଠେଲି ଠେଲି ବନ୍ଧ ଉପରକୁ ତାଙ୍କୁ ଉଠାଇଲୁ । କିଛି ସମୟ ଦମ୍ ମାରିଲା ପରେ, ସେ ପାଖରେ କେଉଁଠି ଗାଁ ଅଛି କି ବୋଲି ଦେଖିବାକୁ ବାହାରିଲେ । ଅନ୍ଧକାରରେ କିଛି ବାଟ ଗଲା ପରେ ଦେଖିଲୁ ବନ୍ଧ ଉପରେ କେତେଟା କୁଡ଼ିଆ, କୁଡ଼ିଆ ଭିତରେ ଗୋଟେ ଲଣ୍ଠନ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ମିଃ ରାଉତରାଏ କିଛି ନଭାବି ସେଇ କୁଡ଼ିଆ ଭିତରକୁ ପ୍ରାଣ ବିକଳରେ ପଶିଗଲେ । ପଶିଗଲା ପରେ ଦେଖିଲେ କୁଡ଼ିଆ ଭିତରେ ଜଣେ ବୁଢ଼ୀ ମରି ପଡ଼ିଛି । ପାଖରେ ଦୁଇଟା ପିଲା । ଜଣେ ୪୦ ବର୍ଷର ଲୋକ ବସିଥାନ୍ତି । ସେମାନଙ୍କ ପାଟିରୁ କଥା ବାହାରୁ ନଥାଏ । ଆମକୁ ଦେଖି ପିଲା ଦୁଇଟି କାନ୍ଦିବାକୁ ଲାଗିଲେ । ତିନିଦିନି ହେଲା ସେମାନେ କିଛି ଖାଇନଥାନ୍ତି । ନଖାଇ ତାଙ୍କ ବୁଢ଼ୀମା ବର୍ଷାମାଡ଼ ଖାଇଲା ପରେ ସେଇ ଅଧଘଣ୍ଟାକ ତଳେ ଆଖି ବୁଜିଥିଲେ । ପିଲାଙ୍କ କାନ୍ଦ ଦେଖି ବୟସ୍କ ଲୋକ ଜଣକ କାନ୍ଦିବାକୁ ଆରମ୍ଭ କଲେ । ଭୀଷଣ ଭାବେ ଥରୁଥିବା ମିଃ ରାଉତରାଏ ହତବାକ୍ ହୋଇ ସେଇ କୁଡ଼ିଆରୁ ବାହାରି ଆସିଲେ । ମିଃ ରାଉତରାଏଙ୍କୁ ସେଇଠି ଠିଆ କରି ମୁଁ, ବୋଟପାଖକୁ ଫେରିଲି । ସେତେବେଳକୁ ଡିଭି କାନୁନ୍‌ଗୋ ପାଖରେ ଦୁଇ ପ୍ୟାକେଟ୍ ବିସ୍କୁଟ୍ ଥିଲା । ତାକୁ ଆଣି ପିଲା ଦୁଇଟିଙ୍କୁ ଦେଲି । ଆର୍ମିର ଜବାନ ଏବଂ ଆମ ଏ.ପି.ଆର ଫୋର୍ସ ସାହାଯ୍ୟରେ ମରିଯାଇଥିବା ବୁଢ଼ୀକୁ କୁଡ଼ିଆ ବାହାରକୁ ବାହାରକରି, ମୁଁ ଆଉ ରାଉତରାଏ ଆଗକୁ ଚାଲିଲୁ । କିଛି ବାଟ ଗଲାପରେ ବନ୍ଧତଳେ କେତେଟା ଘର ଦିଶିଲା । ସେଇଠି ବନ୍ଧ ତଳକୁ ଓହ୍ଲାଇଲୁ । ଘର ଭିତରୁ ଜଣେ କିଏ ଟର୍ଚ୍ଚ ପକାଇଲା । ଓହ୍ଲାଇଲା ପରେ ଆମେ ଦୁହେଁ ଆମର ପରିଚୟ ଦେଲୁ । ତାଙ୍କ ଭିତରୁ ଜଣେ ମୋତେ ଚିହ୍ନିଲା । ଦେହ ଥଣ୍ଡା ହୋଇଥିବା ଯୋଗୁ ତାଙ୍କ ଠାରୁ ଖଣ୍ଡେ ବିଡ଼ି ନେଇ ମୁଁ ପିଇଲି ଏବଂ ପଚାରିବାରେ ଜାଣିଲି ଯେ ଭିଙ୍ଗାରପୁର ଗାଁ ସେଠାରୁ ୫ କିଲୋମିଟର ହେବ । ସେଇଠିକୁ ଗଲେ ସେ ଗାଁରେ ଜଣଙ୍କର ଧାନକଳ ଅଛି, ତାଙ୍କ ପାଖେ ପେଟ୍ରୋଲ ମିଳିପାରେ । ଏସ.ଡ଼ି.ଓ ରାଉତରାଏଙ୍କୁ ମୁଁ ସେଇଠି ଛାଡ଼ି ଇନ୍‌ସପେକ୍ଟର କାନୁନ୍ ଗୋକୁ ଧରି ଭିଙ୍ଗାରପୁର ଆଡ଼େ ଚାଲିଲୁ । ଘନ ଅନ୍ଧାର ଭିତରେ କେବଳ ନଦୀ ବନ୍ଧ ଦେଇ ଚାଲି ଚାଲି ଭିଙ୍ଗାରପୁର ଠାରେ ପହଞ୍ଚିଲା ବେଳକୁ ପ୍ରାୟ ରାତ୍ରି ୧୧ଟା । ସେଠି ଚେଷ୍ଟାକଲୁ ମାତ୍ର ପେଟ୍ରୋଲ ମିଳିଲାନି । ଭିଙ୍ଗାରପୁର ପାଖରେ ଘାଇ ହୋଇଥିବା ଯୋଗୁ ଆମେ ଆଗକୁ ଯାଇ ପାରୁ ନଥାଉ । ଭିଙ୍ଗାର ପୁର ଠାରୁ କୁଆଖାଇ ପୋଲ ପ୍ରାୟ ଆଠ କିଲୋମିଟର ରାସ୍ତା । ମୁଁ ସେଇ ଗାଁର ଗୋଟେ ଭଙ୍ଗା ଛାତ ଉପରକୁ ଉଠି ମୋ

ମ୍ୟାନ୍‌ପ୍ୟାର୍ ସେଟ୍‌ରେ କଂଟ୍ରୋଲକୁ ଡାକିଲି । ଭାଗ୍ୟକୁ କଂଟ୍ରୋଲ ଧରି ପାରିଲା । ସେତେବେଳକୁ ଭୁବନେଶ୍ୱରରେ ଖବର ପ୍ରଚାର ହୋଇଗଲାଣି ଯେ କୁଶଭଦ୍ରା ନଦୀରେ ଆର୍ମିବୋଟ ବୁଡ଼ିଯାଇ ଆମେ ସବୁ ନିଖୋଜ ହୋଇଯାଇଛୁ । ଏକଥା ମଧ ମୁଖ୍ୟମନ୍ତ୍ରୀ ଜାଣି ବ୍ୟସ୍ତ ହେଉଥାନ୍ତି ବୋଲି, ଅତିରିକ୍ତ ଏସ.ପି. କହିଲେ । ମୁଁ ତାଙ୍କୁ ପେଟ୍ରୋଲ ଧରି ଗୋଟେ ଗାଡ଼ିରେ ଘାଇ ଆରପଟକୁ ଆସିବାକୁ କହିଲି । ଭୁବନେଶ୍ୱରରୁ ଗୋଟିଏ ଉଦ୍ଧାରକାରୀ ଦଳ ତେଲ ଏବଂ ଉଦ୍ଧାର କରିବା ସରଞ୍ଜାମ ଧରି ଅତିରିକ୍ତ ଏସ.ପି. ହରିହର ପଣ୍ଡାଙ୍କ ନେତୃତ୍ୱରେ ବାହାରିଲେ । ଆମେ ଘାଇ ପାର ହେବା ପାଇଁ ସେଠାକାର ସ୍ଥାନୀୟ ନାଉରୀଆକୁ କହିଲୁ । ସେ ରାତିରେ ଡ଼ଙ୍ଗା ବାହାର କରିବାକୁ ରାଜି ହେଉନଥାଏ । ଚାଉଳ ଗୋଟେ ବସ୍ତା ଏବଂ ୪୦ ଟଙ୍କା ଦେବାପାଇଁ କହିବାରୁ ସେ ଡଙ୍ଗା ବାହାର କଲା ଏବଂ ମାଇଲିଏ ବାଟ ନଦୀଭିତରେ ବୁଲାଇ ବୁଲାଇ ଘାଇ ସେପଟେ ଲଗାଇଲା ବେଳକୁ ରାତି ୧୨ଟା ଉପରେ । ସେତେବେଳକୁ ଫୋର୍ସ ତେଲ ଧରି ପହଞ୍ଚି ଯାଇଥାନ୍ତି । ସେଇ ଡଙ୍ଗାରେ ନଦୀରେ ଆମେ ତଳକୁ ଖସି ପ୍ରାୟ ୧.୩୦ ବେଳେ ଆମ ବୋଟ ପାଖରେ ପହଞ୍ଚିଲୁ । ଆମକୁ ଦେଖି ଏସ.ଡି.ଓ. ରାଉତରାଏଙ୍କ ଦେହରେ ଜୀବନ ସଞ୍ଚାର ହେଲା । କୌଣସି ମତେ ତେଲ ପକାଇ, କୁଆଖାଇ ନଦୀ ପୋଲ ପାଖେ ପହଞ୍ଚିଲା ବେଳକୁ ସକାଳ ଚାରିଟା । ନଦୀପୋଲ ଉପରେ ଦି ଖଣ୍ଡ ରୁଟି, ପାଣି ପିଇଲା ପରେ ଥକ୍କା ମାରି ଫେରିଲୁ । ଆମେ ଜୀବିତ ଅଛୁ ଏବଂ ଫେରିବା ଖବର ସମସ୍ତଙ୍କୁ ସକାଳୁ ସକାଳୁ ଜଣାଇ ଦିଆଗଲା ।

ପାଣି ଛାଡ଼ିଗଲା ପରେ, ଲୋକମାନେ ରିଲିଫ୍ ପାଇଁ ଗାଁ ଗାଁରେ ଅପେକ୍ଷା କରିଥାନ୍ତି । ପୁଲିସ୍ ତରଫରୁ ''କରୁଣା କ୍ୟାମ୍ପ'' ଖୋଲା ଯାଇ, ଲୋକମାନଙ୍କୁ ରୋଷେଇ କରି ଖାଦ୍ୟ ଦିଆଯିବାର ବନ୍ଦୋବସ୍ତ କରାଗଲା । ପୁଲିସ ''କରୁଣା'' ସଂସ୍ଥା ୧୯୭୫ ମସିହାରୁ କଳାହାଣ୍ଡି ଜିଲ୍ଲାରୁ କାମ କରିବା ଆରମ୍ଭ କରିଥାଏ । ପ୍ରାକୃତିକ ବିପଦ ବେଳେ ପୁଲିସ ''କରୁଣା'' ତରଫରୁ କ୍ଷତିଗ୍ରସ୍ତ ଲୋକମାନଙ୍କୁ ଖାଇବାପାଇଁ, ଲୁଗାପଟା ଇତ୍ୟାଦି ସାହାଯ୍ୟ ଦିଆଯାଇଥାଏ । ମୋ କହିବା ଯୋଗୁ ମୋ ଜିଲ୍ଲାରେ ବାଲିପାଟଣା ଥାନାର ଅମଣାକୁଦ ଠାରେ କରୁଣା କ୍ୟାମ୍ପ ଖୋଲା ହେଲା ଏବଂ ଏହି କ୍ୟାମ୍ପକୁ ତତ୍‌କାଳୀନ୍ ରାଜ୍ୟପାଳ ଉଦ୍‌ଘାଟନ କରି ପ୍ରଥମ ଦିନ ପ୍ରାୟ ୩୦୦୦ ଲୋକଙ୍କୁ ରନ୍ଧାଖାଦ୍ୟ, ଲୁଗା, ପିଲାମାନଙ୍କୁ କ୍ଷୀର, ବିସ୍କୁଟ୍ ଦେଇଥିଲେ । ଆମଣାକୁଦ, ପାଣ୍ଡବକୁଦ, କଟକ-ପୁରୀ ଜିଲ୍ଲାର ସୀମାରେ ହେଉଥିବା ଯୋଗୁ ପ୍ରତ୍ୟେକ ଦିନ ଦୁଇରୁ ତିନି ହଜାର କ୍ଷତିଗ୍ରସ୍ତ ଲୋକଙ୍କୁ ରନ୍ଧା ଖାଦ୍ୟ ଯୋଗାଇ ଦିଆଗଲା । କରୁଣା ଏଠାରେ ଆଠଦିନ କାମ କଲା । କେବଳ ପାଣ୍ଡବକୁଦ ମଠ ପାଖରେ ନୁହେଁ, କରୁଣା ମଧ ପୁରୀ ଜିଲ୍ଲାର କଣାସ, କଟକର ଜଗତସିଂହପୁର, ଏବଂ ବିଭିନ୍ନ ସ୍ଥାନରେ କ୍ୟାମ୍ପ କରି ହଜାର ହଜାର ଲୋକଙ୍କୁ ବିପଦ ବେଳେ ସାହାଯ୍ୟ କରିଥିଲା ।

ପାଣି ଛାଡ଼ିଗଲା ପରେ, ପୁଲିସ ପାଇଁ ଆଉ ଗୋଟେ ସମସ୍ୟା ସୃଷ୍ଟି ହେଲା । ପାଞ୍ଚ ନମ୍ବର ରାଜପଥ କଟିଯାଇଥିବାରୁ ହଜାର ହଜାର ଟ୍ରକ ବାଲେଶ୍ୱର ଠାରୁ କଟକ ମଧରେ

ଏଣେ ବାଲୁଗାଁ ଠାରୁ ଭୁବନେଶ୍ୱର ମଧରେ ରହିଯାଇଥାଏ । ଡ୍ରାଇଭରମାନେ ବ୍ୟସ୍ତ । ପନ୍ଦରଦିନରୁ ଊର୍ଦ୍ଧ୍ୱ ସେମାନେ ରହିଥିବା ଯୋଗୁ ସେମାନଙ୍କ ପାଖରେ ପଇସା ନଥାଏ । ଏଣେ, ଲୋକମାନେ ସେମାନଙ୍କ ଟ୍ରକରୁ ମାଲ ଲୁଟି କରିବା ପାଇଁ ଚେଷ୍ଟା କରୁଥାନ୍ତି । ତେଣୁ ପାଞ୍ଚ ନମ୍ବର ଜାତୀୟ ରାଜପଥ ଠିକ୍ କରିବା ପାଇଁ ଆପ୍ରାଣ ଉଦ୍ୟମ ହେଲା ଏବଂ ପ୍ରତାପନଗରୀ ପାଖେ ଅସ୍ଥାୟୀ ରାସ୍ତା ତିଆରି ହୋଇ ଗାଡ଼ି ମଟର ଚାଲିବା ଆରମ୍ଭ ହେଲା । ଏତେ ସଂଖ୍ୟକ ଗାଡ଼ିକୁ ପାରି କରିବା ପାଇଁ ପୁଲିସକୁ ତିନିଦିନ ଧରି ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ଯାହା ହେଉ, ଏଇ ପ୍ରଳୟଙ୍କରୀ ବନ୍ୟାର ପ୍ରକୋପ କଟକ ପୁରୀ ପ୍ରଭୃତି କେତେକ ଜିଲ୍ଲାକୁ ବହୁବର୍ଷ ଧରି ପଙ୍ଗୁ କରି ଦେଇଥିଲା । ଗୋଟିଏ କଥା ମୁଁ ଲକ୍ଷ୍ୟ କରିଥିଲି ଯେ, ଏଇ ପ୍ରାକୃତିକ ବିପତ୍ତି ସମୟରେ ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଧୈର୍ଯ୍ୟ, ଏବଂ ସମସ୍ତ ସରକାରୀ କଳକୁ ଠିକଣା ଭାବେ ଚଳେଇବାର କୁଶଳତା । ସେ ପ୍ରତ୍ୟେକ ଦିନ ରାତ୍ରି ଦୁଇଟା ପୂର୍ବରୁ ଶୋଇବାକୁ ଯାଉନଥିଲେ ଏବଂ ପ୍ରତ୍ୟକ ଦିନ ରାତି ୧୦ଟା ପରେ ମିଟିଂ କରି, ରିଲିଫ୍ ଏବଂ ଉଦ୍ଧାର କାର୍ଯ୍ୟର ସମୀକ୍ଷା କରି, ପରଦିନ ପାଇଁ କାର୍ଯ୍ୟଧାରା ପ୍ରସ୍ତୁତ କରୁଥିଲେ । ତେଣୁ ଆଠଟି ଜିଲ୍ଲାର ଲକ୍ଷ ଲକ୍ଷ ଲୋକ ବନ୍ୟାଦ୍ୱାରା କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ, ସରକାର ଠିକ୍ ସମୟରେ ଲୋକମାନଙ୍କ ପାଖରେ ପହଞ୍ଚି ପାରିଥିଲେ । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱ ଏଥିପାଇଁ ପ୍ରଶଂସନୀୟ । କାରଣ ୧୯୮୩ ମସିହା ଫେବୃୟାରୀ ମାସ ବିଧାନସଭାର ବଜେଟ୍ ଅଧିବେଶନ ସମୟରେ ବିରୋଧିଦଳ ପକ୍ଷରୁ ବନ୍ୟା ପ୍ଳାବିତ ଅଞ୍ଚଳ ବିଷୟରେ କିମ୍ବା ପ୍ରଳୟଙ୍କରୀ ବନ୍ୟାକୁ ନେଇ ସେପରି କିଛି ଆକର୍ଷଣୀୟ ପ୍ରଶ୍ନ ଉତ୍‌ଥାପନ ହୋଇ ନଥିଲା ।

## ଆଦିଲକ୍ଷ୍ମୀ ହତ୍ୟାକାଣ୍ଡ :

ବିଧାନ ସଭା ବଜେଟ୍ ଅଧିବେଶନ ଚାଲିଥିବା ସମୟରେ କିମ୍ବା ତାର ଅଳ୍ପ ଦିନ ପୂର୍ବରୁ, ମାର୍ଚ୍ଚ ମାସ ୩ ତାରିଖ ଦିନ ସକାଳ ଆଠଟା ବେଳେ, ରଞ୍ଜନ କୁମାର ସେଠୀ ନାମକ ଜଣେ ଦୁଇ ନମ୍ବର ଇଉନିଟ୍‌ର ନର୍ସରୀରେ କାମ କରୁଥିବା ଏନ.ଏମ୍.ଆର, ତତ୍‌କାଳୀନ ପ୍ରଭାବଶାଳୀ ମନ୍ତ୍ରୀ ବସନ୍ତ ବିଶ୍ୱାଳଙ୍କ ଘରର ବଗିଚା କାମ କରିବା ପାଇଁ ଆସିଥିଲେ । ବସନ୍ତ ବାବୁଙ୍କ ସରକାରୀ କ୍ୱାଟରରେ ଯେଉଁ ମାଳୀ କାମକରୁଥିଲା, ସେ ଛୁଟିରେ ଯାଇଥିବା ଯୋଗୁ ବିଭାଗୀୟ ଅଧିକାରୀ ତାଙ୍କୁ ମାଳି କାମ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ସେ ସକାଳେ କୋଠିକି ଆସିଲା ପରେ ବଗିଚା କାମ କରିବା ପାଇଁ କୋଡ଼ି, କୋଦାଳ ଖୋଜିଲା ବେଳେ, ଗ୍ୟାରେଜ ପାଖରେ ଥିବା ଗୋଟିଏ ଛୋଟ ଘରେ, ଆଠବର୍ଷ ଝିଅ ଆଦିଲକ୍ଷ୍ମୀର ମୃତ ଦେହ ପଡ଼ିଥିବାର ଦେଖିଥିଲା । ସେତେବେଳକୁ ମୃତ ଦେହ ଦୁଇ ଦିନ ଆଗରୁ ସେ ଘରେ ପଡ଼ିଥିବା ଯୋଗୁ ଦୁର୍ଗନ୍ଧ ବାହାରୁ ଥାଏ । ମନ୍ତ୍ରୀଙ୍କ ସରକାରୀ କ୍ୱାର୍ଟର ପରିସର ମଧ୍ୟରୁ, ଗୋଟିଏ ଛୋଟ ଝିଅର ମୃତ ଦେହ ବାହାରିଥିବା ଯୋଗୁ ଏ

ଖବର ବିଜୁଳୀ ପରିମାଣେ ସହରରେ ଖେଳିଗଲା । ମୁଁ ଏ ଖବର ପାଇ ମନ୍ତ୍ରୀଙ୍କ ବଙ୍ଗଳା ପରିସର ମଧ୍ୟକୁ ଯାଇଥିଲି ।

ରଞ୍ଜନ କୁମାର ସେଠୀ, ଗୋଟିଏ ଲିଖିତ ରିପୋର୍ଟ ଦେଲେ, ଯାହାକି କ୍ୟାପିଟାଲ ଥାନାର ୧୭୫ ନମ୍ବର ମାମଲା ହିସାବରେ ପଞ୍ଜିକୃତ ହୋଇ ହତ୍ୟାକାଣ୍ଡ ଭାବେ ତଦନ୍ତ ଆରମ୍ଭ ହୋଇଥିଲା । ଏଇ ଘଟଣାକୁ କେନ୍ଦ୍ରକରି, ବିଧାନ ସଭାରେ ମୁଲତବି ପ୍ରସ୍ତାବ ଠାରୁ ଆରମ୍ଭ କରି ହଟଗୋଳ ଆରମ୍ଭ ହୋଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଘର ନିକଟ ତଥା ପ୍ରଭାବଶାଳୀ ମନ୍ତ୍ରୀଙ୍କ ପରିସରରେ ଏପରି ଏକ କାଣ୍ଡ ଘଟିଲା ଅଥଚ ଏହା କିପରି ଜଣାଗଲା ନାହିଁ । ବିରୋଧି ଦଳମାନେ, ବିଧାନସଭାରେ ନାନା ପ୍ରକାର ପ୍ରଶ୍ନ ଉଠାଇଥିଲେ । ଖବର କାଗଜମାନଙ୍କରେ ନାନା ପ୍ରକାର କଥା ପ୍ରଚାର ହେଲା । ମୃତା ଆଦିଲକ୍ଷ୍ମୀର ମୁହଁ ଉପରେ କ୍ଷତଦାଗ ଥିବା ଇନ୍‌କ୍ୟୁଆରୀ ସମୟରେ ଜଣାଗଲା । କେବଳ ସେଇ କ୍ଷତସ୍ଥାନ ଛଡ଼ା ଦେହର ଅନ୍ୟ କୌଣସି ଯାଗାରେ କ୍ଷତଚିହ୍ନ ନଥିଲା । ଏସବୁ ସତ୍ତ୍ୱେ ଖବରମାନ ପ୍ରକାଶ ପାଇଲା ଯେ ଆଦିଲକ୍ଷ୍ମୀକୁ ବଳି ଦେବା ପାଇଁ ହତ୍ୟା କରାଯାଇଛି । କେତେକ କହିଲେ ପାଶବିକ ଅତ୍ୟାଚାର କରାଯାଇ ମାରି ଦିଆଯାଇଛି । ପୁଲିସ୍ ପାଇଁ ଏହା ଏକ ଅତ୍ୟନ୍ତ ସମ୍ବେଦନଶୀଳ ଘଟଣା ହୋଇଥିଲା ।

ମୃତା ଆଦିଲକ୍ଷ୍ମୀ, ମନ୍ତ୍ରୀଙ୍କ ଘର ପଛ ପଟେ ତାର ବାପା, ମା'ଙ୍କ ସଙ୍ଗେ ରହୁଥିଲା । ତାର ବାପା, ମା ମାଳି ଭାବେ କାମ କରନ୍ତି । ପ୍ରାୟ ପ୍ରତ୍ୟେକ ଦିନ ଆଦିଲକ୍ଷ୍ମୀ ମନ୍ତ୍ରୀଙ୍କ ସରକାରୀ ଘରର ପଛପଟକୁ ଖେଳିବାକୁ ଆସେ । ମୃତ ଦେହ, ବାହାରିବାର ଦୁଇଦିନ ଆଗରୁ ତାର ବାପା, ମା ତାକୁ ଦିନବେଳେ ଘରପଛ ପଟେ ଖେଳିବାର ଦେଖିଥିଲେ । ସେମାନେ କାମରୁ ଆସି, ସନ୍ଧ୍ୟା ବେଳକୁ ଆଦିଲକ୍ଷ୍ମୀକୁ ଘରେ ନପାଇ, ପାଖ ଆଖରେ ରହୁଥିବା ତାଙ୍କର ଜଣାଶୁଣା ଲୋକମାନଙ୍କ ଘରକୁ ଯାଇ ଖୋଜି ତା ବିଷୟରେ କିଛି ଖବର ପାଇନଥିଲେ । ଆଦିଲକ୍ଷ୍ମୀକୁ ନପାଇବାରୁ ସେ କାଳେ କାହା ସାଙ୍ଗରେ ଗାଁ ଆଡ଼େ ଯାଇଥିବ ଭାବି ଗାଁକୁ ଲୋକ ପଠାଇଥିଲେ । ମାତ୍ର ମାର୍ଚ୍ଚ ତିନି ତାରିଖଦିନ ସକାଳୁ ଆଦିଲକ୍ଷ୍ମୀର ମୃତ ଦେହ ବାହାରିଲା ପରେ ଏ ଘଟଣା ସହରରେ ହଇଚଇ ସୃଷ୍ଟି କଲା ।

କ୍ୟାପିଟାଲ ଥାନାରେ ମାମଲାରୁଜୁ ହେଲାପରେ, ଆଦିଲକ୍ଷ୍ମୀର ମୃତ ଦେହକୁ, କ୍ୟାପିଟାଲ ହସ୍‌ପିଟାଲ୍‌କୁ ପଠାଯାଇ, ପୋଷ୍ଟମର୍ଟମ କରାଯାଇଥିଲା । ''ପୋଷ୍ଟମର୍ଟମ୍'' ରିପୋର୍ଟରେ ତା ମୁହଁରେ ଶକ୍ତ ଆଘାତ ଲାଗିବା ଦର୍ଶାଯାଇଥିଲା । ଅନ୍ୟ କୌଣସି ସ୍ଥାନରେ କ୍ଷତ ନଥିବା ହେତୁ, ପାଶବିକ ଅତ୍ୟାଚାର ଇତ୍ୟାଦି ଗୁଜବର ଅବସାନ ଘଟିଥିଲେ ମଧ ଏହା ଏକ ହତ୍ୟାକାଣ୍ଡ ହିସାବରେ ତଦନ୍ତ ଆରମ୍ଭ ହେଲା । ପୁଲିସ୍ ସରକାରୀ ବାସଭବନରେ ରହୁଥିବା ମନ୍ତ୍ରୀଙ୍କ ଲୋକମାନଙ୍କୁ ପଚରାଉଚରା କରିବାରୁ ସେମାନେ କେହିକିଛି କହିନଥିଲେ । ଏପରିକି, ମୃତ ଆଦିଲକ୍ଷ୍ମୀକୁ ସେମାନେ ଦେଖିନାହାଁନ୍ତି ବୋଲି କହିଥିଲେ । ତେବେ ଆଦିଲକ୍ଷ୍ମୀର ମୃତ ଦେହ ମନ୍ତ୍ରୀଙ୍କ ଘର ପରିସର ମଧ୍ୟକୁ କିପରି ଆସିଲା, ତାହହିଁ ଥିଲା ତଦନ୍ତର ସବୁଠାରୁ ବଡ଼

କାର୍ଯ୍ୟ । ଯଦି କେହି ତାକୁ ବାହାରେ ହତ୍ୟା କଲା, ବାହାରେ ଏତେ ସ୍ଥାନ ଥିବାବେଳେ, ମନ୍ତ୍ରୀଙ୍କ ଗ୍ୟାରେଜ ପାଖ ଘରକୁ କ'ଣ ପାଇଁ ଆଣି ସେଠାରେ ପକାଇ ଦେଇଗଲା । ବିଭିନ୍ନ କୋଣରୁ ତଦନ୍ତ ଆରମ୍ଭ ହେଲା । ମୋର ଗୋଟିଏ ସନ୍ଦେହ ହେଲା ଯେ, ଆଦିଲକ୍ଷ୍ମୀ କୌଣସି ଗାଡ଼ିର ଆଘାତରେ ମୃତ୍ୟୁବରଣ କରିପାରିଥାଏ । ତଦନ୍ତ ବେଳେ ସମସ୍ତଙ୍କ ସାକ୍ଷ୍ୟରୁ ଜଣା ଗଲା ଯେ ସେ ଯେତେବେଳେ ବଙ୍ଗଳା ପରିସରକୁ ଆସେ, ସେ ପ୍ରାୟ ଗ୍ୟାରେଜ ପାଖରେ ହିଁ ଠିଆ ହୁଏ ବଙ୍ଗଳା ସାମ୍ନାକୁ ଆସେ ନାହିଁ । ପୋଷ୍ଟମର୍ଟମ୍ କରିଥିବା ଡାକ୍ତରଙ୍କୁ, ଘଟଣା ବିଷୟରେ ପୁଣି ପଚରାଗଲା ଏବଂ ସେ ମଧ କହିଲେ, କୌଣସି ଗାଡ଼ିର ଧକ୍କାରେ ଏପରି ଘଟଣା ଘଟିଥାଇ ପାରେ । ତଦନ୍ତ ସମୟରେ, ମନ୍ତ୍ରୀଙ୍କ ଗାଡ଼ି ଚାଳକମାନଙ୍କୁ ପଚରାଗଲା ମାତ୍ର ସେମାନେ ଏ ବିଷୟରେ କିଛି କହିପାରିନଥିଲେ । ତଦନ୍ତକାରୀ ଅଫିସର, ତଦନ୍ତଶେଷ କରି ଏଇ ମାମଲା ଏକ ସତ୍ୟ ଘଟଣା ମାତ୍ର କୌଣସି ପ୍ରକାର ପ୍ରମାଣ ମିଳିଲା ନାହିଁ ବୋଲି ୨୭୯/୩୦୪(କ), ୨୦୧ ଆଇ.ପି.ସ୍. ଦଫାରେ ଫାଇନାଲ ରିପୋର୍ଟ ବର୍ଷକ ପରେ ଦେଇଥିଲେ ।

ସେ ଯାହାହେଉ, ଏ ଘଟଣା ଗୋଟିଏ ସତ୍ୟ ଘଟଣା । କୌଣସି ଗାଡ଼ି ଚାଳକ ମନ୍ତ୍ରୀଙ୍କ ସରକାରୀ ଘରର ପରିସର ମଧ୍ୟରେ ଗାଡ଼ି ପଛେଇଲା ବେଳେ କିମ୍ବା ବାହାର କଲାବେଳେ, ଆଦି ଲକ୍ଷ୍ମୀ ସଙ୍ଗେ ଧକ୍କା ଦେଇ ସେ ବେହୋସ ହୋଇ ପଡ଼ିଗଲା ପରେ, ତାକୁ ଗ୍ୟାରେଜ ପାଖ ଘରେ ପକାଇ ଦେଇଥିଲା । ମାତ୍ର ସାକ୍ଷ୍ୟ ପ୍ରମାଣ ଅଭାବରୁ ଏଇ ଘଟଣା ସତ୍ୟ ହୋଇଥିଲେ ମଧ ଅପରାଧିକୁ ଠାବ କରାଯାଇ ପାରିନଥିଲା । ତାର କାରଣ ଯାହା ହେଉନା କାହିଁକି ତଦନ୍ତକାରୀ ଅଫିସର ସାକ୍ଷୀମାନଙ୍କୁ ଯେଉଁପରିଭାବେ ପଚରା ଉଚରା କରି, ପ୍ରମାଣ ବାହାର କରିବା କଥା, ତା କରି ପାରିବାରେ ସକ୍ଷମ ହୋଇ ପାରିନଥିଲା ।

**ବଦଳି :** ଭୁବନେଶ୍ୱର ଏସ.ପି.ଭାବେ ୩ବର୍ଷ ୫ମାସ କାମ କଲାପରେ,ମୁଁ ଆଉ ସେଇ ଜିଲ୍ଲାରେ ରହିବା ପାଇଁ ଚାହୁଁନଥିଲି । ବିଧାନସଭା ପରେ ପରେ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲି, ମୋତେ ଭୁବନେଶ୍ୱର ଟ୍ରାଫିକ୍ ଟ୍ରେନିଂ ସ୍କୁଲକୁ ଅଧକ୍ଷ ଭାବରେ ବଦଳି କରିବାକୁ । ମୁଖ୍ୟମନ୍ତ୍ରୀ କିଛି ନକହି ଖାଲି କହିଲେ ଯେ ଯେଉଁଠିକି କେହି ଯିବାକୁ ଚାହୁଁନାହାନ୍ତି, ମୁଁ ସେଠାକୁ କ'ଣ ପାଇଁ ଯିବାକୁ ଚାହୁଁଛି । ମୁଁ ମୋର ପିଲାମାନେ ପଢୁଥିବା କଥା କହିଲି । ମେ ମାସରେ ଯେତେବେଳେ ବଦଳି ପାଇଁ ପ୍ରସ୍ତାବ ଦିଆଗଲା, ଡି .ଜି.ମିଃ ସ୍ୱାଇଁ ମୋତେ ବାଲେଶ୍ୱର ଏସ.ପି. ହୋଇ ଯିବା ପାଇଁ ଏବଂ କୁଳମଣି ଦେଓଙ୍କୁ ଭୁବନେଶ୍ୱର ଏସ.ପି.ପାଇଁ ପ୍ରସ୍ତାବ ଦେଲେ । ମାତ୍ର ଘରୋଇ ସଚିବ ମୋତେ ପୁରୀ ଏସ.ପି. ଭାବେ ବଦଳି କରିବାକୁ ମୁଖ୍ୟମନ୍ତ୍ରୀଙ୍କ ଆଦେଶ ପାଇଁ ପଠାଇଦେଲେ । ଏଇ ପ୍ରସ୍ତାବରେ ପ୍ରଫୁଲ୍ଲ କୁମାର ମିଶ୍ରଙ୍କୁ ରାଉରକେଲା ଏସ.ପି. ଭାବେ ବଦଳି କରାଯାଇ ଥାଏ । ମୁଖ୍ୟମନ୍ତ୍ରୀ, ଦସ୍ତଖତ କଲା ପରେ, ସେଇଦିନ ଦିଲ୍ଲୀ ଯାଉଥାନ୍ତି । ଦସ୍ତଖତ କରି ଫାଇଲ୍ ତାଙ୍କ ଅଫିସ୍‌ରୁ ବାହାରିଲା ବେଳକୁ ବଦଳି କଥା ଜଣା ପଡ଼ିଲା । ତତ୍‌କାଳୀନ ରାଉରକେଲା ଇସ୍ପାତ କାରଖାନାର ପରିଚାଳନା ନିର୍ଦ୍ଦେଶକ ମିଃ ସୁବ୍ରମନିୟମ, ପ୍ରଫୁଲ୍ଲଙ୍କୁ ରାଉରକେଲା ଏସ.ପି. ଭାବେ ଯିବା ପାଇଁ ଚାହୁଁ

ନଥିଲେ । ଏହାର କାରଣ ଥିଲା ସେ ସୁନ୍ଦରଗଡ଼ ଜିଲ୍ଲା ଏସ.ପି. ଥିଲା ବେଳେ ତାଙ୍କ ସହିତ କୌଣସି ଘଟଣାକୁ କେନ୍ଦ୍ର କରି ବାକ୍‌ବିତଣ୍ଡା ହୋଇଥିଲା । ସେ ଏକଥା ଶୁଣିଲା ପରେ, ସଙ୍ଗେ ସଙ୍ଗେ ଭୁବନେଶ୍ୱରସ୍ଥିତ ତାଙ୍କ ଲିଆସନ ଅଫିସରଙ୍କୁ କହି ପ୍ରଫୁଲ୍ଲ ବଦଳି ସେଠାକୁ କ୍ୟାନସେଲ କରିବାକୁ କହିଲେ । ସେତେବେଳର ଡି.ଜି.ଏମ୍. ପ୍ରସନ୍ନ ହୋତା ମଧ୍ୟ ଏକଥା କହିଲା ବେଳେ ରାଉରକେଲାକୁ ମୋତେ ବଦଳି କରିବାକୁ ପ୍ରସ୍ତାବ ଦେଇଥିଲେ । ବଦଳି ଆଦେଶ ଦସ୍ତଖତକରି ସେଦିନ ସନ୍ଧ୍ୟା ବେଳେ ମୁଖ୍ୟମନ୍ତ୍ରୀ ଦିଲ୍ଲୀ ଗଲା ବାଟରେ, ବିମାନ ବନ୍ଦର ପାଖେ ରାଉରକେଲା ଇସ୍ପାତ କାରଖାନାର ଲିଆସନ ଅଫିସରଙ୍କ ସଙ୍ଗେ କଥାବାର୍ତ୍ତା ହୋଇ, ଘରୋଇ ସଚିବଙ୍କୁ ବିମାନବନ୍ଦରରୁ ଟେଲିଫୋନ କରି ବଦଳି ଆଦେଶ ସ୍ଥଗିତ ରଖିବାକୁ ନିର୍ଦ୍ଦେଶ ଦେଇ ଦିଲ୍ଲୀ ଗଲେ । ତିନିଦିନ ପରେ ଦିଲ୍ଲୀରୁ ଫେରି ବଦଳି ଆଦେଶରେ ବଦଳ କରି ମୋତେ ରାଉରକେଲା ପଠାଇଲା ବେଳେ, ପ୍ରଫୁଲ୍ଲଙ୍କୁ ପୁରୀ ପଠାଇଲେ । ମାତ୍ର ଘରୋଇ ସଚିବଙ୍କ ହସ୍ତକ୍ଷେପ ଯୋଗୁ ପ୍ରଫୁଲ୍ଲଙ୍କ ସ୍ଥାନରେ ପ୍ରେମରଞ୍ଜନ ମହାନ୍ତି, ପୁରୀରେ ପୋଷ୍ଟିଂ ହେଲେ । ମୋତେ ଭୁବନେଶ୍ୱର ଛାଡ଼ି, ରାଉରକେଲା ଯିବାକୁ ହେଲା । ରାଉରକେଲା ଯିବା ପୂର୍ବରୁ ମୁଁ ଭୁବନେଶ୍ୱର ଜିଲ୍ଲାର ପୁଲିସ୍ କଲ୍ୟାଣ ପଣ୍ଡ ପାଇଁ ଗୋଟିଏ ନାଟକ ପ୍ରସ୍ତୁତ କରିଥିଲି ଏବଂ ମୁଖ୍ୟମନ୍ତ୍ରୀ ଏହାକୁ ଉଦ୍‌ଘାଟନ କଲେ । ମୁଁ ଜୁନ୍‌ମାସ ୨୮ ତାରିଖରେ, ଅତିରିକ୍ତ ଏସ.ପି. ହରିହର ପଣ୍ଡାଙ୍କୁ ଦାୟିତ୍ୱ ଦେଇଥିଲି ଏବଂ ଟ୍ରାନ୍‌ଜିଟ୍‌ରେ ଥିଲା ବେଳେ ଏଇ ନାଟକ ପରିବେଷଣ କରିଥିଲି । ଖର୍ଚ୍ଚ ଗଲାପରେ, ପ୍ରାୟ ୪୫,୦୦୦ଟଙ୍କା କଲ୍ୟାଣ ପଣ୍ଡ ପାଇଥିଲା ।

ମୁଁ ବଦଳି ହୋଇ ରାଉରକେଲା ଏସ.ପି. ଭାବେ ଜଏନ୍ କଲି ମାତ୍ର ମୋର ପିଲାମାନେ ପାଠ ପଢୁଥିବା ଦୃଷ୍ଟିରୁ ଭୁବନେଶ୍ୱରରେ ରହିଲେ । ସେମାନେ ମୋ ନିଜ ଘରେ ଶହିଦ ନଗରରେ ରହିଲା ବେଳେ ମୋତେ ଏକୁଟିଆ ରାଉର୍‌କେଲାରେ ରହିବାକୁ ପଡ଼ିଲା । ଆଗରୁ ମୋତେ ମୁଖ୍ୟମନ୍ତ୍ରୀ କହିଥିଲେ, ମୋ ସ୍ତ୍ରୀ ନାମରେ ଗୋଟିଏ କ୍ୱାଟର ଦେବେ କାରଣ ସେ ସେତେବେଳେ ''ଦିନଲିପି''ରେ କାମ କରୁଥିଲା । ଦିନଲିପି ଦୈନିକ ପତ୍ରିକା ଭୁବନେଶ୍ୱରରୁ ପ୍ରକାଶ ପାଉଥିଲା ଏବଂ ମୋ ସ୍ତ୍ରୀ ସେଠାରେ କାମ କରୁଥିଲା । ମୁଖ୍ୟମନ୍ତ୍ରୀ କହିଥିଲେ ମଧ୍ୟ ପରେ ଘର ଦେଇନଥିଲେ, ମୁଁ ମଧ୍ୟ ଥରେ କହିଲା ପରେ ଆଉ କହିନଥିଲି ।

ମୁଁ ରାଉରକେଲାରେ ଏସ.ପି. ହୋଇ ଜଏନ୍ କଲା ବେଳେ ସେଠାରେ ଅରବିନ୍ଦ ବେହେରା ଏ.ଡି.ଏମ୍. ଥା'ନ୍ତି । ପ୍ରସନ୍ନ ହୋତା, ପ୍ଲାଣ୍ଟର ଡି.ଜି.ଏମ୍. ଏବଂ ମିଃ ସୁବ୍ରମନିୟମ ପରିଚାଳନା ନିର୍ଦ୍ଦେଶକ । ପୁଲିସ୍ ଡି.ଆଇ.ଜି. ଭାବେ ଶ୍ରୀ ଏସ.ଏନ୍.ତିଓ୍ୱାରୀ ଅଳ୍ପଦିନ ଆଗରୁ ଦାୟିତ୍ୱ ନେଇଥାନ୍ତି । ରାଉରକେଲା, ମୋ ପାଇଁ ଅଜଣା ନଥିବା ଯୋଗୁ କାମ କରିବାରେ ବିଶେଷ ଅସୁବିଧା ହେଉନଥିଲା । ମାତ୍ର ଏହି ପୋଷ୍ଟିଂରେ ମୋତେ ସବୁଠାରୁ ଅସୁବିଧାରେ ତତ୍‌କାଳୀନ ରାଉରକେଲା ବିଧାୟକ ଗୁରୁପଦନନ୍ଦ ପକାଇଥିଲେ । ସେ ପ୍ରାୟ ସବୁ ସମୟରେ, ପୁଲିସ୍ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ଚାହିଁଲେ ମାତ୍ର ମୁଁ ତାହା କରିବାକୁ ଦେଇନଥିଲି ।

ତାଙ୍କର ମଧ ମୋ ପାଖରେ ସବୁ କାମକୁ କରେଇ ନେଲା ପରି ସାହସ ନଥିଲା, କାରଣ ଆଗରୁ ମୁଁ ତାଙ୍କୁ କଟକରୁ ଭଲଭାବରେ ଜାଣିଥିଲି । କେବଳ ପୁଲିସ ଅଫିସରଙ୍କ ବଦଳି ନୁହେଁ, ଏପରିକି ମିନି ସିଣ୍ଡିକେଟ୍ ଏବଂ ସିଣ୍ଡିକେଟ୍ ମଧ୍ୟରେ ଚାଲିଥିବା ଗଣ୍ଡଗୋଳରେ ଗୋଟିଏ ତରଫା ହୋଇ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ଜଣେ ବ୍ୟକ୍ତି ହତ୍ୟାକାଣ୍ଡରେ ସଂପୃକ୍ତ ଥିଲେ ତାଙ୍କୁ କିପରି ସାହାଯ୍ୟ କରିହେବ, ସେ ବିଷୟରେ କହିଥିଲେ । ମୁଁ ତାଙ୍କୁ ବାରଣ କରିଥିଲେ ମଧ, ସେ ଡି.ଆଇ.ଜି.ଙ୍କୁ କହୁଥିଲେ ଏବଂ ଡି.ଆଇ.ଜି. ମୋତେ କହିଥିଲେ ମଧ ଯାହା ଉଚିତ୍ ନୁହେଁ ମୁଁ ତାହା କରିନଥିଲି । ତେଣୁ ସେ ମୋତେ ସେଠାରୁ ମାତ୍ର ଛଅ ମାସ ପରେ ବଦଳି କରିବାକୁ ଚାହିଁଲେ ମଧ କରିପାରୁନଥିଲେ । ସେତେବେଳେ ସୁନ୍ଦରଗଡ଼ ଜିଲ୍ଲାର କଲେକ୍ଟର ଥା'ନ୍ତି ତରୁଣକାନ୍ତି ମିଶ୍ର ଏବଂ ଜିଲ୍ଲାର ମନ୍ତ୍ରୀ ଥା'ନ୍ତି ଶ୍ରୀ କିଶୋର ପଟେଲେ । କିଶୋର ପଟେଲଙ୍କ ସଙ୍ଗେ ମୋର ସମ୍ପର୍କ ଅତ୍ୟନ୍ତ ଭଲ ଥିବା ଯୋଗୁ ବିଧାନସଭା ସଦସ୍ୟ ତାଙ୍କୁ ଧରି ମୋର ବଦଳି କରିପାରୁ ନଥିଲେ । ମୁଁ ଜାଣିବାରେ, ବିଭିନ୍ନ ଅସତ୍ୟ କଥା ମୁଖ୍ୟମନ୍ତ୍ରୀଙ୍କୁ ମୋତେ ଏଠାରୁ ବିଦାୟ ପାଇଁ ଚେଷ୍ଟା କଲେ । ମୁଖ୍ୟମନ୍ତ୍ରୀ, ତାଙ୍କ ରାଜନୈତିକ ଦୃଷ୍ଟିକୋଣରୁ ତାଙ୍କ ଉପରେ ଅଧିକା ଖୁସି ଥା'ନ୍ତି । କାରଣ ସେତେବେଳେ ସେ ଦଳର ଚିଫ୍ ହ୍ୱିପ୍ ଏବଂ ତାଙ୍କର ସପୋର୍ଟର । ସେତେବେଳକୁ କଂଗ୍ରେସ ଦଳରେ ମଧ ଫାଙ୍କ ଦେଖା ଦେଇଥାଏ । ବସନ୍ତ ବିଶ୍ୱାଳ, ଯାହାଙ୍କୁ ଜେ.ବି. ପଟ୍ଟନାୟକ ରାଜନୈତିକ କ୍ଷେତ୍ରକୁ ଆଣିଥିଲେ ଏବଂ ସୁପର ଚିଫ୍‌ମିନିଷ୍ଟରର ସ୍ଥାନ ଦେଇ, ସକାଳେ ବସନ୍ତବାବୁ ନଆସିଲେ, ଜଳଖିଆ ଖାଉନଥିଲେ ସେଇ ବସନ୍ତବାବୁ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କରିବାକୁ ଆରମ୍ଭ କରିଥାନ୍ତି । ତେଣୁ ମୁଖ୍ୟମନ୍ତ୍ରୀ ଅନ୍ୟ ସଦସ୍ୟମାନଙ୍କ ସାହାଯ୍ୟପାଇଁ ତତ୍ପରଥିଲେ । ସେତିକି ବେଳେ ସୁନ୍ଦରଗଡ଼ ଜିଲ୍ଲାପାଳ କିଶୋର ପଟେଲଙ୍କ କେତେକ ଅନୁରୋଧକୁ ରକ୍ଷା କରିପାରିନଥିବା ଯୋଗୁ, ସେ ତାଙ୍କୁ ଜିଲ୍ଲାରୁ ବଦଳି କରିବାକୁ ଚାହୁଁଥିଲେ । ରାଉରକେଲା ସଦସ୍ୟ ଏବଂ ସୁନ୍ଦରଗଡ଼ ସଦସ୍ୟ ଦୁହେଁ ମିଶିଗଲାପରେ, ମୋର ବଦଳି ଭୁବନେଶ୍ୱର ଟ୍ରାଫିକ୍ ଟ୍ରେନିଂ ସ୍କୁଲକୁ ଏବଂ ଜିଲ୍ଲାପାଳଙ୍କର ଅନ୍ୟଯାଗାକୁ ବଦଳି ହେଲା । ଠିକ୍ ଏଗାର ମାସ ପରେ, ମୁଁ ପୁଣି ଭୁବନେଶ୍ୱରକୁ ଫେରିଆସିଲି ଏବଂ ଟ୍ରାଫିକ୍ ଟ୍ରେନିଂ ସ୍କୁଲରେ ଜଏନ୍ କଲି । ମୋ ବଦଳି ବନ୍ଦ କରିବା ପାଇଁ ଇସ୍ପାତ କାରାଖାନାର ପରିଚାଳନା ନିର୍ଦ୍ଦେଶକ ମଧ ଚେଷ୍ଟା କରୁଥିଲେ । ମାତ୍ର ତାହା ହୋଇ ପାରିଲା ନାହିଁ । ସ୍ଥାନୀୟ ବିଧାନସଭା ସଦସ୍ୟଙ୍କ ସଙ୍ଗେ ନପଡ଼ିବାର ପ୍ରଥମ କାରଣ ହେଲା, ସେ ଥାନା ଫାଣ୍ଡିରେ ଥିବା ଇନିସ୍‌ପେକ୍ଟର, ସବ୍‌ଇନିସ୍‌ପେକ୍ଟର ମାନଙ୍କ ବଦଳି ହସ୍ତକ୍ଷେପ କରିବା । ଏଥିଲାଗି ତାଙ୍କୁ ସ୍ଥାନୀୟ କେତେଜଣ ରାଜନୈତିକ ଟାଉଟ୍ର ମତାଇଥାନ୍ତି କାରଣ ସେମାନଙ୍କୁ ହିଁ ଏଇ ପୁଲିସବାଲା ଧରିଥାନ୍ତି । ସେମାନେ ଯେ କେବଳ ଧରିଥାନ୍ତି ସେ କଥା ନୁହେଁ । ବଦଳି ପାଇଁ କିମ୍ବା ବଦଳି ବନ୍ଦ ପାଇଁ ଟାଉଟରମାନଙ୍କ ହାତରେ ମନ୍ତ୍ରୀ, ଏମ.ଏଲ.ଏ.ଙ୍କୁ ମଧ ପଇସା ଦେଇଥାନ୍ତି । ରାଉରକେଲା ଜିଲ୍ଲାର କେତେକ ଥାନା, ଫାଣ୍ଡିର ଇନ୍‌ଚାର୍ଜ ଅଫିସରମାନେ ଭଲ ପଇସା ଆଦାୟ

କରନ୍ତି । ତେଣୁ ସେ ସବୁ ଥାନାଛାଡ଼ି ନଯିବା ପାଇଁ ସେମାନେ ଏଇମାନଙ୍କୁ ହାତରେ ରଖିଥାନ୍ତି । ସ୍ଥାନୀୟ ସଦସ୍ୟମାନେ ଜାଣନ୍ତି ଯେ ପୁଲିସ୍‌ରୁ କାମ ହାସଲ କରିବାକୁ ହେଲେ ରାଉରକେଲାରେ ଏସ.ପି., ଡି.ଆଇ.ଜିଙ୍କୁ ଅଲଗା ଅଲଗା ରଖିଦେଲେ, ତାଙ୍କ କାମ ସୁରୁଖୁରୁରେ ହାସଲ ହେବ । ତେଣୁ ଏମ.ଏଲ.ଏ., ଡି.ଆଇ.ଜି.ଙ୍କୁ ହାତମୁଠାରେ ରଖିବାକୁ ବେଶ୍ ସକ୍ଷମ ହୋଇଥିଲେ ।

ମୁଁ ଜଏନ୍ କରିବା ପୂର୍ବରୁ ଆଉ ଦୁଇଜଣ ଏସ.ପି.ମଧ ଏଇ ସଦସ୍ୟଙ୍କ ଦ୍ୱାରା ରାଉରକେଲା ଜିଲ୍ଲାରୁ ଅକାଳେ ବଦଳି ହୋଇ ଯାଇଥିଲେ । ଯେ ତାଙ୍କ କଥାରେ ନଗଲା କିମ୍ବା ତାଙ୍କର ମତଲବି କାର୍ଯ୍ୟରେ ଆଖିବୁଜି ଦେବାକୁ ନ ବସିଲା, ସେମାନେ ତାଙ୍କ ବିରୁଦ୍ଧରେ ଗଲେ । ମୋର ବଦଳି ହେଲାରୁ ସାଧାରଣ ଲୋକମାନେ ରାଜନୈତିକ ନେତାମାନଙ୍କର କେତେଦୂର ନୈତିକତା ଅଛି ତା ମଧ ଭଲ ଭାବରେ ବୁଝିଗଲେ । ପରେ ଯେତେବେଳେ ନିର୍ବାଚନ ଆସିଲା, ସେତେବେଳେ ତତ୍‌କାଳୀନ ସଦସ୍ୟ ପରାସ୍ତ ହେଲେ । ଏପରିକି ପରବର୍ତ୍ତୀ ସମୟରେ ସେ ସାମାନ୍ୟ ଓ୍ୟାର୍ଡ଼ କାଉନ୍‌ସିଲ ପାଇଁ ନିର୍ବାଚନରେ ଲଢ଼ି ପରାସ୍ତ ହେଲେ । ସାରା ଭାରତରେ ରାଜନୀତିରେ ଅପରାଧିକରଣ, ପୁଲିସ୍‌ରେ ଅପରାଧିକରଣ ଆରମ୍ଭ ହେଲା । ୧୯୮୦ ମସିହା ପରେ ଏବଂ ଏହା ଆସ୍ତେ ଆସ୍ତେ ବଢ଼ି ଚାଲିଲା । ଏହା କେବଳ ବିହାର, ଉତ୍ତର ପ୍ରଦେଶ, ପଶ୍ଚିମବଙ୍ଗରେ ସୀମାବଦ୍ଧ ନରହି, ସାରା ଦେଶରେ ପ୍ରସାର ଲାଭ କରିବାଦ୍ୱାରା ବର୍ତ୍ତମାନ ହତ୍ୟା, ବଳାତ୍‌କାର, ପାଶବିକ ଅତ୍ୟାଚାର ପରି ଅପରାଧରେ ଅପରାଧି ଥାଇ ମଧ ନେତାମାନେ ନିର୍ବାଚନ ଲଢ଼ି ଧନ ବଳ, ବାହୁବଳ ଯୋଗୁ ନିର୍ବାଚନରେ ଜିତି କରି ଆସୁଛନ୍ତି । ହତ୍ୟାକାରୀ, ଅତ୍ୟାଚାରୀ ଯେତେବେଳେ ନିର୍ବାଚନରେ ଜିତେ ସେ କେଉଁପରି ଭାବେ ଜିତେ ଏବଂ ସାଧାରଣ ଭୋଟ ଦାତା କେଉଁ ପରିସ୍ଥିତିରେ ଭୋଟ ଦିଏ ତାହା ସମସ୍ତଙ୍କୁ ଜଣା । ଯେଉଁମାନେ ଏପରି ଅପରାଧରେ ଅପରାଧି, ସେମାନେ ବିଧାନସଭା ସଦସ୍ୟ ହୁଅନ୍ତୁ କିମ୍ବା ସାଂସଦ ହୁଅନ୍ତୁ, ସେମାନଙ୍କ ପାଖରୁ ଦେଶ କ'ଣ ଆଶା କରିପାରେ ?

## ଯାତାୟତ ପ୍ରଶିକ୍ଷଣ ପ୍ରତିଷ୍ଠାନ :

ରାଉରକେଲାରୁ ବଦଳିହୋଇ ମୁଁ ଯାତାୟତ ପ୍ରଶିକ୍ଷଣ ପ୍ରତିଷ୍ଠାନରେ ଯୋଗଦେଲି । ଜୁଲାଇ ମାସ ତିନି ତାରିଖରେ ଭୁବନେଶ୍ୱର ଲକ୍ଷ୍ମୀସାଗରଠାରେ ଏହି ଅନୁଷ୍ଠାନ ଚାଲୁଥାଏ । ପ୍ରଥମେ ଏଇଠି ସପ୍ତମ ବାଟେଲିୟାନ୍‌ର ଦୁଇଟି ପ୍ଲାଟୁନ୍ ରହୁଥିଲେ ପରେ ସେମାନେ ବାଟେଲିୟାନକୁ ଗଲାପରେ, ସେଇ ସ୍ଥାନରେ ଯାତାୟତ ପ୍ରଶିକ୍ଷଣ ସମ୍ବନ୍ଧରେ ଶିକ୍ଷା ଦିଆଗଲା ଏବଂ ଶିକ୍ଷା ପାଇଁ ଯାହା ସବୁ ଟ୍ରେନିଂ ସରଞ୍ଜାମ ଦରକାର, ସେ ସବୁ କିଣି ଟ୍ରେନିଂ ଆରମ୍ଭ କରାଗଲା । ଗୋଟିଏ ଦଳ କନେଷ୍ଟବଲମାନଙ୍କ ଟ୍ରେନିଂ ଚାଲିଥିବା ବେଳେ ମୁଁ ଜଏନ କଲି । ଆମ ଓଡ଼ିଶାରେ ବିଭିନ୍ନ ସହରମାନଙ୍କରେ ଯେଉଁ ଟ୍ରାଫିକ୍ କନେଷ୍ଟବଲମାନେ ଟ୍ରାଫିକ୍ ପରିଚାଳନା

ଦାୟିତ୍ୱରେ ଥିଲେ, ସେତେବେଳେ ସେମାନଙ୍କ ମଧରୁ ମାତ୍ର ଶତକଡ଼ା ଏକଭାଗ କନେଷ୍ଟବଲ, ହାବିଲ୍‌ଦାର, ଟ୍ରାଫିକ୍ ଟ୍ରେନିଂ କଲିକତା, ବମ୍ବେରେ ଶିକ୍ଷା କରି ଆସିଥାନ୍ତି ।

ଅନ୍ୟମାନେ ସେପରି କିଛି ନଜାଣି କେବଳ ଧଳା ପୋଷାକ ପିନ୍ଧି ଟ୍ରାଫିକ ଡ୍ୟୁଉଟି କରୁଥିଲେ । ଭୁବନେଶ୍ୱର ଯାତାୟାତ ପ୍ରଶିକ୍ଷଣ ଅନୁଷ୍ଠାନ ଗଠନରେ ସ୍ୱତନ୍ତତା ଥିଲା । ଏହାକୁ ଗୋଟିଏ ଆଞ୍ଚଳିକ ଯାତାୟାତ ପ୍ରଶିକ୍ଷଣ ଅନୁଷ୍ଠାନ କରିବାର ଉଦ୍ଦେଶ୍ୟ ଥିଲା ଏବଂ ସେଇ ହିସାବରେ ଏହାର କର୍ମଚାରୀମାନଙ୍କ ମଧରେ ଜଣେ ବରିଷ୍ଠ ଭାରତୀୟ ସେବା ଅଧିକାରୀଙ୍କୁ ପ୍ରତିଷ୍ଠାନର ଅଧକ୍ଷ, ଜଣେ ବରିଷ୍ଠ ଓଡ଼ିଶା ପୁଲିସ ସେବା ଅଧିକାରୀଙ୍କୁ ଉପାଧକ୍ଷ, ଦୁଇଜଣ ସହାୟକ ଦୁର୍ଗପତିଙ୍କୁ ଗବେଷଣା ସହାୟକ, ଏବଂ ଛଅଜଣ ପୁଲିସ ଇନିସ୍‌ପେକ୍ଟରଙ୍କୁ ଶିକ୍ଷାଦାତା ଭାବେ ମୃତୟନ କରାଯାଇଥିଲା । ତା'ଛଡ଼ା ଯାତାୟାତ ପ୍ରଶିକ୍ଷଣ ପାଇଁ, କେତେକ ଆଧୁନିକ ପ୍ରଶିକ୍ଷଣ ସରଞ୍ଜାମ ମଧ ଯୋଗାଇ ଦିଆଯାଇଥିଲା ।

ଆମ ରାଜ୍ୟରେ ପ୍ରଶିକ୍ଷଣ ଅନୁଷ୍ଠାନ ଗୁଡ଼ିକ ସାଧାରଣରେ ଅବହେଳିତ । ଯେଉଁ ଅଫିସରମାନେ ଜିଲ୍ଲା କାମରେ ବଦ୍‌ନାମ ହୁଅନ୍ତି କିମ୍ବା ରାଜନୈତିକ କାରଣରୁ ବଦଳି ହୋଇ ଆସନ୍ତି, ସେଇପରି ଅଫିସରମାନଙ୍କୁ ପ୍ରଶିକ୍ଷଣ ଅନୁଷ୍ଠାନମାନଙ୍କୁ ପୋଷ୍ଟିଂ କରାହୁଏ । ନିମ୍ନସ୍ତରରେ ମଧ ସେଇ ପ୍ରକାର ବ୍ୟବସ୍ଥା । ବିଦେଶ ରାଜ୍ୟମାନଙ୍କରେ ପ୍ରଶିକ୍ଷଣ ଅନୁଷ୍ଠାନମାନଙ୍କରେ କାର୍ଯ୍ୟ କରୁଥିବା ଅଫିସରମାନଙ୍କର ସ୍ୱତନ୍ତତା ଅଲଗା । କେବଳ ଆମ ରାଜ୍ୟରେ ନୁହେଁ, ଏପରିକି ରାଷ୍ଟ୍ରୀୟ ଆରକ୍ଷୀପ୍ରଶିକ୍ଷଣ କେନ୍ଦ୍ରର ଅବସ୍ଥା ମଧ ସେହି ପ୍ରକାର । ଭାରତୀୟ ଆରକ୍ଷୀ ସେବାର ପଦାଧିକାରୀମାନେ, ଏହି ଅନୁଷ୍ଠାନକୁ ଯିବା ପାଇଁ ଆଗ୍ରହ ପ୍ରକାଶ କରିନଥାନ୍ତି । ପଦାଧିକାରୀମାନେ ଜିଲ୍ଲା ପୁଲିସ୍ ଅଧକ୍ଷ, ଆଞ୍ଚଳିକ ଉପଆରକ୍ଷୀ ମହାନିରୀକ୍ଷକ ଭାବେ ଯେଉଁ ପ୍ରକାର ସୁବିଧା-ସୁଯୋଗ ପାଇଥାନ୍ତି ପ୍ରଶିକ୍ଷଣ ପ୍ରତିଷ୍ଠାନମାନଙ୍କରେ ସେ ସୁବିଧା ମିଳିନଥାଏ । ଏଥିଯୋଗୁ ପରବର୍ତ୍ତୀ କାଳରେ କେନ୍ଦ୍ରସରକାର ପ୍ରଶିକ୍ଷଣ ଅନୁଷ୍ଠାନମାନଙ୍କରେ ଯେଉଁମାନେ ଯୋଗ ଦେବେ, ସେମାନଙ୍କପାଇଁ କେତେକ ସ୍ୱତନ୍ତ୍ର ସୁବିଧାର ବନ୍ଦୋବସ୍ତ କଲେ । ଓଡ଼ିଶାରେ ସେପରି ସ୍ୱତନ୍ତ୍ର ସୁବିଧା ମିଳୁନଥିଲା । ତେଣୁ କୌଣସି ଅଫିସର ସ୍ୱଇଚ୍ଛାରେ ଏଇ ଅନୁଷ୍ଠାନମାନଙ୍କୁ ଯିବା ପାଇଁ ଇଚ୍ଛା ପ୍ରକାଶ କରୁନଥିଲେ ।

ମୁଁ ଅନୁଷ୍ଠାନରେ ଜଏନ୍ କଲାପରେ ସେଠାରେ ଜଣେ ପୁରୁଣା ଡି.ଏସ.ପି. ମିଃ ରାଉତରାଏ ଉପାଧକ୍ଷ ଭାବେ କାମ କରୁଥିଲେ । ସେ ଜଣେ ଦକ୍ଷ ଅଫିସର ହୋଇଥିଲେ ମଧ ସୁପରସିଡ଼େଡ଼େ ହୋଇ ସେଠାରେ ପୋଷ୍ଟିଂ ହୋଇଥାନ୍ତି । ତାଙ୍କ ଛଡ଼ା, ଦୁଇଜଣ ସହାୟକ ଦୁର୍ଗପତି, ଦୁଇଜଣ ଆଇ.ଆର., ପାଞ୍ଚଜଣ ଇନ୍‌ସପେକ୍ଟରେ ଥା'ନ୍ତି । କନେଷ୍ଟବଳମାନଙ୍କ ଶାରୀରିକ ଟ୍ରେନିଂ ପାଇଁ ଜଣେ ସୁବେଦାର ଏବଂ ହାବିଲ୍‌ଦାରମାନେ ଥା'ନ୍ତି । ଏତିକି ସଂଖ୍ୟକ ଅଫିସର, ସାରା ଦେଶରେ କୌଣସି ଟ୍ରାଫିକ୍ ଟ୍ରେନିଂ ଅନୁଷ୍ଠାନରେ ସେ ସମୟରେ ନଥିଲେ, ଏବେ ବି ନଥାଇ ପାରନ୍ତି । ଏହି ଅଫିସରମାନଙ୍କୁ ନେବାର ଉଦ୍ଦେଶ୍ୟ ଥିଲା, ରାସ୍ତା ଦୁର୍ଘଟଣା ସଂପର୍କରେ ଅନୁସଂଧାନ କରି, ପ୍ରତିକାର ପାଇଁ ସଜେସନ୍ ଦେବା, ଟ୍ରାଫିକ୍‌ଟ୍ରେନିଂ କେବଳ

ପୁଲିସ୍ ଭିତରେ ଆବଦ୍ଧ ନରଖି ବିଦ୍ୟାଳୟ, ମହାବିଦ୍ୟାଳୟମାନଙ୍କରେ ଦୁର୍ଘଟଣା ବିରୁଦ୍ଧରେ ସଚେତନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ରାସ୍ତାଘାଟମାନଙ୍କରେ ଦୁର୍ଘଟଣା ପ୍ରତିରୋଧ କରିବା ପାଇଁ ଜିଲ୍ଲା ପ୍ରଶାସନକୁ ସଜେସନ ଦେବା ।

ମିଃ ଏଲ୍.ସି. ଅମରନାଥନ୍, ଟ୍ରାଫିକ୍ ଟ୍ରେନିଂ ପାଇଁ ଆବଶ୍ୟକୀୟ ଟ୍ରେନିଂ ସରଞ୍ଜାମ କିଣିଥିଲେ ଏବଂ ବିଭିନ୍ନ ଟ୍ରାଫିକ ଟ୍ରେନିଂ ଅନୁଷ୍ଠାନରୁ କାରିକୁଲମ୍ ମଗାଇ ଟ୍ରେନିଂ ପ୍ରୋଗ୍ରାମ କରିଥିଲେ । ମୁଁ ଜଏନ୍ କଲା ପରେ ସେହି ହିସାବରେ ଟ୍ରେନିଂ ଆରମ୍ଭ କଲି ଏବଂ ଭୁବନେଶ୍ୱର, କଟକ ସହରର ବିଦ୍ୟାଳୟ, ମହାବିଦ୍ୟାଳୟମାନଙ୍କରେ ଯାତାୟାତ ବିଷୟରେ ଏବଂ ରାସ୍ତାଦୁର୍ଘଟଣା ଜନିତ ମୃତାହତ ବିଷୟରେ ସଚେତନତା ସୃଷ୍ଟି କରିବା ପାଇଁ ବିଭିନ୍ନ ପଦକ୍ଷେପ ନେଲି । ଭୁବନେଶ୍ୱରରେ ''ଟ୍ରାଫିକ୍ ୱାର୍ଡେନ୍'' ବ୍ୟବସ୍ଥା ପ୍ରଚଳନ ପାଇଁ କେତେକ ପଦସ୍ଥ ଅବସରପ୍ରାପ୍ତ ଅଧିକାରୀମାନଙ୍କ ସହିତ ସାମାଜିକ ସଂସ୍ଥାମାନଙ୍କରେ କାର୍ଯ୍ୟ କରୁଥିବା ଅଧିକାରୀମାନଙ୍କୁ ନେଇ ଗୋଟିଏ ଟ୍ରେନିଂ ବ୍ୟବସ୍ଥା ଭୁବନେଶ୍ୱର କ୍ଲବ ପରିସରରେ ୧୫ଦିନ ପାଇଁ କରାଗଲା । ଏଥିରେ ଡି.ଜି.ଙ୍କ ସମେତ, ତତ୍କାଳୀନ ଆଇ. ଜି., ବି. କେ. ପାଣିଗ୍ରାହୀ, ପି.ସି. ରଥ ସମସ୍ତେ ଯୋଗ ଦେଲେ । ପରେ ପରେ ଭୁବନେଶ୍ୱରରେ ପ୍ରଥମ ଥର ପାଇଁ ''ପ୍ରିଭେନେସନ୍ ଅଫ୍ ଆକ୍ସିଡେଣ୍ଟ ସୋସାଇଟି ଅଫ ଓଡ଼ିଶା'' ପ୍ରତିଷ୍ଠା କରାଗଲା ଏବଂ ମହମଦ୍ ମକବୁଲ୍ ଏହାର ସଂପାଦକ ରହିଲେ । ଆଜି ପର୍ଯ୍ୟନ୍ତ ଏହି ସଂସ୍ଥା କଟକ, ଭୁବନେଶ୍ୱର ରାସ୍ତା ଦୁର୍ଘଟଣା ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି । କଟକରେ ଏହାର ଆଉ ଗୋଟିଏ ଶାଖା ଖୋଲାଯାଇ ଅବସରପ୍ରାପ୍ତ ପୁଲିସ୍ ଡି.ଜି. ଆର.ଏମ୍. ପଟ୍ଟନାୟକ ତାର ମୁଖ୍ୟ ଅଛନ୍ତି । ଟ୍ରାଫିକ୍ ଟ୍ରେନିଂ ସ୍କୁଲରେ, ମୋ ସମୟରେ ଗୋଟିଏ ଭଲ ଲାଇବ୍ରେରୀ କରିବା ପାଇଁ ଚେଷ୍ଟା କରାଯାଇଥିଲା । ପ୍ରସିଦ୍ଧ ଚଳଚ୍ଚିତ୍ର ପ୍ରଯୋଜକ ଏବଂ ବିତରକ ଶ୍ରୀ ଆର.କେ. ଜଲାନ୍ଙ୍କର ଗୋଟିଏ ଚଳଚ୍ଚିତ୍ରକୁ ଓଡ଼ିଶାରେ ଟାକ୍ସ ଫ୍ରି କରି ଦେବାରେ,ସେଇ ଚଳଚ୍ଚିତ୍ର ପ୍ରଯୋଜକ ଟାକ୍ସ ବାବଦକୁ ଯେତିକି ଟଙ୍କା ଦେଇଥାନ୍ତେ,ସେଇ ଟଙ୍କା ଟ୍ରେନିଂ କେନ୍ଦ୍ର ପାଇଁ ପୁସ୍ତକ କିଣିବାକୁ ଦେଲେ । ସେ ଟଙ୍କା ପ୍ରାୟ ୩୦,୦୦୦ ପାଖାପାଖି ଥିଲା । ତାଛଡ଼ା ପୁଲିସ୍ ହେଡ଼କ୍ୱାଟର କିଛି ଟଙ୍କା ଲାଇବ୍ରେରୀ ପାଇଁ ଦେଲେ । ସେଇ ଟଙ୍କାରେ ଟ୍ରାଫିକ୍ ଟ୍ରେନିଂ ଅନୁଷ୍ଠାନ ପାଇଁ ଗୋଟିଏ ଭଲ ଲାଇବ୍ରେରୀ ଗଠନ କରାଯାଇଥିଲା । ମୋ ଆସିବାପରେ ଶୁଣିଲି, କେତେ ଗୁଡ଼ିଏ ବହି ଏହି ଅନୁଷ୍ଠାନରୁ କେତେକ ଅଫିସର ନେଇ ଆଉ ଫେରାଇଲେ ନାହିଁ । ନିଜର ଦରକାର ଥିବା ବହିଗୁଡ଼ିକ ଟ୍ରେନିଂ ସ୍କୁଲ ପାଇଁ କିଣି ନିଜେ ରଖିଦେଲେ । ପରେ ଯେତେବେଳେ ଲାଇବ୍ରେରିଆନ୍ ବହି ଫେରାଇବାକୁ କହିଲେ, ସେ ନିଜେ ହଇରାଣ ହେଲେ । ମାତ୍ର ମୁଁ ଜାଣିବାରେ ଏଇ ଲାଇବ୍ରେରୀକୁ ବଢ଼ାଇବା ପାଇଁ ପରେ ବିଶେଷ କିଛି ଉଦ୍ୟମ ହୋଇନଥିଲା ।

ଟ୍ରାଫିକ୍ ଟ୍ରେନିଂ ପାଇଁ କେବଳ ଯେ ଓଡ଼ିଶା ପୁଲିସ କନେଷ୍ଟବଳ, ସବ୍ ଇନ୍ସପେକ୍ଟର, ହାବିଲଦାର ଆସୁଥିଲେ, ଏକଥା ନୁହେଁ, ସି.ଆଇ.ଏସ୍.ଏଫର ଦୁଇଟି ବ୍ୟାଚ୍ ସବ୍ଇନିସ୍ପେକ୍ଟର ଏଠାରେ ଟ୍ରେନିଂ ନେଇଥିଲେ । କମ୍ପୁଟର ଅନୁଷ୍ଠାନର ପ୍ରଥମ ବ୍ୟାଚ୍ ଇନିସ୍ପେକ୍ଟର ଏଠାରେ

ଚାରିମାସ ଟ୍ରେନିଂ ନେଇଥିଲେ । ତାଛଡ଼ା, ଅନୁଷ୍ଠାନ ତରଫରୁ କଟକ-ଭୁବନେଶ୍ୱର ରାସ୍ତାରେ ଦୁର୍ଘଟଣାସ୍ଥଳମାନ ବୁଲି ଗୋଟିଏ ରିପୋର୍ଟ ପ୍ରସ୍ତୁତ କରି ସରକାରଙ୍କୁ ଦିଆଯାଇଥିଲା ।

ଏଇ ଅନୁଷ୍ଠାନରେ ଥିବା ସମୟରେ, ମୁଁ ମଧ କେତେଗୁଡ଼ିଏ ଟ୍ରେନିଂ ପାଇଁ ବାହାରକୁ ଯିବାର ସୁଯୋଗ ପାଇଥିଲି । ମୁଁ ଟ୍ରାଫିକ୍ ଟ୍ରେନିଂ ଅନୁଷ୍ଠାନରେ ଯୋଗ ଦେବା ପରେ ପରେ ମୋତେ ସିନିୟର ଅଫିସର କୋର୍ସକରିବା ପାଇଁ ନାସ୍‌ନାଲ ପୁଲିସ୍ ଏକାଡ଼େମୀ, ହାଇଦ୍ରାବାଦ୍ ଯିବାକୁ ପଡ଼ିଲା । ମୁଁ ସେଠାରେ ଯୋଗ ଦେଲାବେଳେ ଲାଲୁ (ବି.ବି. ମିଶ୍ର) ଟ୍ରେନିଂ ନେଉଥାଏ । ସେତେବେଳେ ସିନିୟର ଅଫିସରମାନେ ତିନିମାସ ପାଇଁ ଯାଉଥିଲେ ଏବଂ ପ୍ରାୟ ସମସ୍ତେ ସେମାନଙ୍କ ପରିବାରକୁ ଧରିଯାଉଥିଲେ । ମୁଁ ଗଲାର କିଛି ଦିନ ପରେ ମୋ ସ୍ତ୍ରୀ ମୋ ସଙ୍ଗେ ଯୋଗ ଦେଇଥିଲେ । ଟ୍ରେନିଂ ସମୟରେ ଏକାଡ଼େମୀର ଡି.ଜି. ଥିଲେ ମିଃ ସିଂଘଭି ଏବଂ ଆଇ.ଜି.ଥିଲେ ମିଃ ସୁବ୍ରମନିୟମ୍ । ଟ୍ରେନିଂରୁ ଫେରିଲା ପରେ, ସେମାନେ ମୋତେ ଏକାଡ଼େମୀକୁ ନେବାପାଇଁ ହୋମ୍‌ମିନିଷ୍ଟ୍ରିକୁ ଲେଖିଥିଲେ ଏବଂ ମୋର ପୋଷ୍ଟିଂ ମଧ ଆସିଥିଲା । ମାତ୍ର ଓଡ଼ିଶା ସରକାର ମୋତେ ଛାଡ଼ିବା ପାଇଁ ରାଜି ହୋଇନଥିଲେ । ପରେ ପରେ ତତ୍‌କାଳୀନ କେନ୍ଦ୍ର ଘରୋଇମନ୍ତ୍ରୀ ଶ୍ରୀଯୁକ୍ତ ଚହ୍ୱାନ, ଗୋଟିଏ ଡି ଓ ଚିଠି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ମୋତେ ଛାଡ଼ି ଦେବାପାଇଁ ଅନୁରୋଧ କରି ଲେଖିଥିଲେ ମାତ୍ର ଓଡ଼ିଶା ସରକାର ଛାଡ଼ିବାକୁ ଇଚ୍ଛା ପ୍ରକାଶ ନକରିବାରୁ ମୁଁ ଯାଇ ପାରିଲି ନାହିଁ । ଯଦିଓ ଯିବା ପାଇଁ ମୋର ଇଚ୍ଛା ଥିଲା ।

ସିନିୟର ଅଫିସର କୋର୍ସ ପରେ ପରେ ମୋତେ ଟ୍ରେନରସ୍ ଟ୍ରେନିଂ କୋର୍ସ ଏଇଠାରେ କରିବାକୁ ପଡ଼ିଥିଲା । ସେ ସମୟରେ ବିଭିନ୍ନ ପ୍ରଦେଶରେ କିପରି ଭାବେ ପୁଲିସ୍ ଟ୍ରେନିଂ ଚାଲିଛି, ତା' ଦେଖିବାକୁ ସୁବିଧା ମିଳିଥିଲା ଏବଂ ଆମେ ଗୋଟିଏ ଦଳ, ମହାରାଷ୍ଟ୍ର, ଆନ୍ଧ୍ର, କର୍ଣ୍ଣାଟକ ଯାଇଥିଲୁ । ଏଇ ଅନୁଷ୍ଠାନରେ ଥିବା ବେଳେ ଓଡ଼ିଶା ସରକାର ମୋତେ ହରଦ୍ୱାରଠାରେ ଅନୁଷ୍ଠିତ ହେଉଥିବା କୁମ୍ଭମେଳା ପରିଦର୍ଶନକରି ମେଳାରେ ଯାତାୟାତ, ଯୋଗାଯୋଗ ଏବଂ ଆଇନ୍ ଶୃଙ୍ଖଳା ରକ୍ଷା କରିବା ପାଇଁ ହୋଇଥିବା ପୁଲିସ୍ ବନ୍ଦୋବସ୍ତକୁ ଦେଖିବା ପାଇଁ ପଠାଇଥିଲେ । ସେଇ ବର୍ଷ ପଞ୍ଜାବର ଆତଙ୍କବାଦୀମାନେ କୁମ୍ଭମେଳା ସମୟରେ ଆତ୍ମଘାତୀ କାର୍ଯ୍ୟ କରିପାରନ୍ତି ବୋଲି ବିଭିନ୍ନ ସମ୍ବାଦ ପ୍ରକାଶ ପାଇଥିଲା । ତେଣୁ ସେପରି କାର୍ଯ୍ୟକୁ ଆଖି ଆଗରେ ରଖି ସ୍ୱତନ୍ତ୍ର ପୁଲିସ୍ ବନ୍ଦୋବସ୍ତ କରାଯାଇ ଥିବା କଥା ମଧ ସମ୍ବାଦ ପତ୍ରରେ ପ୍ରକାଶ ପାଇଥାଏ । ମୁଁ ଭୁବନେଶ୍ୱର ଠାରୁ ଦିଲ୍ଲୀ-ବିମାନରେ ଏପ୍ରିଲ୍ ଏଗାର ତାରିଖରେ ବାହାରି ଦିଲ୍ଲୀରେ ପହଞ୍ଚିଲା ପରେ, ସେଇଦିନ ରାତ୍ରିରେ ଦିଲ୍ଲୀ ଇଣ୍ଟରଷ୍ଟେଟ୍ ବସ୍ ଷ୍ଟାଣ୍ଡରୁ ବସ୍ ଧରି, ହରଦ୍ୱାରରେ ପହଞ୍ଚିଥିଲି । ହରଦ୍ୱାରରେ କୁମ୍ଭମେଳା ପାଇଁ ଉତ୍ତର ପ୍ରଦେଶ ଫେୟାର ଆଣ୍ଡ ଫେଷ୍ଟିଭାଲ ଆକ୍ଟ ଅନୁସାରେ ଜଣେ ସ୍ୱତନ୍ତ୍ର କଲେକ୍ଟର ଏବଂ ଏସ.ପି. ୬ମାସ ପାଇଁ ପୋଷ୍ଟିଂ ହୋଇଥାନ୍ତି । ସେମାନେ କେବଳ ହରଦ୍ୱାର କୁମ୍ଭମେଳା ପାଇଁ ସମସ୍ତ କାର୍ଯ୍ୟ କରିବେ । ସେଥିପାଇଁ ଏସ.ପି., କଲେକ୍ଟରଙ୍କ ଅଧିକାର, ସେମାନଙ୍କୁ ସ୍ୱତନ୍ତ୍ରଭାବେ ଉକ୍ତ ଆଇନ୍ ଅନୁସାରେ ଦିଆଯାଇଥିଲା ।

ମୁଁ ହରଦ୍ୱାର ୧୨.୪.୮୫ ଭୋରରୁ ପହଞ୍ଚି, ଏସ.ପି.ଙ୍କୁ ଦେଖାକଲି । ଆଗରୁ ସେ ମୋର ବେତାର ଖବର ପାଇ, ମୋ ରହିବା ପାଇଁ ମେଳା ଅଞ୍ଚଳ ମଧ୍ୟରେ ଯେଉଁଠି ଉଚ୍ଚପଦାଧିକାରୀମାନଙ୍କ ପାଇଁ ତମ୍ବୁରେ ରହିବାର ବନ୍ଦୋବସ୍ତ ହୋଇଥିଲା, ସେଇଠିକୁ ଗୋଟେ ଗାଡ଼ିରେ ପଠାଇଥିଲେ ଏବଂ ସ୍ୱତନ୍ତ୍ର ଭାବେ ସେ ଗାଡ଼ି ମୋ ପାଇଁ ଦେଇଥିଲେ ।

କୁମ୍ଭମେଳା ଦାୟିତ୍ୱରେ କଲେକ୍ଟର ଭାବେ ଓଡ଼ିଆ ଆଇ.ଏ.ଏସ. ଅଫିସର ଜଣେ ଥା'ନ୍ତି । ଟ୍ରାଫିକ୍ ଠାରୁ ଆରମ୍ଭ କରି, ସାନିଟେସନ, ସବୁ ପ୍ରକାର ବନ୍ଦୋବସ୍ତ ଅତି ସୁନ୍ଦର ଭାବେ କରାଯାଇଥିଲା । ଲକ୍ଷ ଲକ୍ଷ ଯାତ୍ରୀ ଏପ୍ରିଲ୍ ମାସ ୪ତାରିଖରୁ ହରଦ୍ୱାରକୁ ଆସି ଫେରୁଥାନ୍ତି । ଏପ୍ରିଲ୍ ୧୪ ତାରିଖ ରାତ୍ରି ୨.୫ ମିନିଟ୍‌ରେ ଯାତ୍ରାର ଶୁଭମୁହୂର୍ତ୍ତ ଥାଏ ଏବଂ ସେଇ ସମୟରେ "ହରକେପୁରୀ" ଠାରେ ବୁଡ଼ ପକାଇବା ପାଇଁ ବହୁ ଭି.ଆଇ.ପି.ମଧ୍ୟ ଆସିଥିଲେ । ପ୍ରଶାସନ ସେମାନଙ୍କୁ ସୁବିଧା ଦେବା ପାଇଁ ବ୍ୟବସ୍ଥା କରିବା ଦ୍ୱାରା, ଯାତ୍ରୀମାନେ ଅଯଥା ବିଭିନ୍ନ ସ୍ଥାନମାନଙ୍କରେ ଜମା ହୋଇ ରହିଲେ । ଏଇ ଭି.ଆଇ.ପି କେତେଜଣ ୨.୦୭ ମିନିଟ୍‌ରେ ବୁଡ଼ ପକାଇବା ପାଇଁ ଆସୁଥିବା ଯୋଗୁ କଣ୍ଟ୍ରୋଲ୍ ରୁମ୍‌ରୁ ଆଦେଶ ଦିଆଗଲାଯେ ପଶ୍ଚିମପଟୁ ବ୍ରିଜ୍ ଉପର ଦେଇ ହରେକ୍‌ପୁରୀ ଆଡ଼କୁ ଆସୁଥିବା ଯାତ୍ରୀମାନଙ୍କୁ ବ୍ରିଜ୍ ତଳେ ଅପେକ୍ଷା କରିବାକୁ ପଡ଼ିବ । ଏଇ ଆଦେଶ ଅନୁସାରେ, ବ୍ରିଜ୍ ଉପରେ ଜନତାକୁ ନିୟନ୍ତ୍ରଣ କରିବାକୁ ମୂତୟନ ହୋଇଥିବା ଡି.ଏସ.ପି.ଏବଂ ଫୋର୍ସ, କୌଣସି ଯାତ୍ରୀଙ୍କୁ ଛାଡ଼ିନଥିଲେ । ଯାତ୍ରୀମାନେ ପଶ୍ଚିପପଟ ବ୍ରିଜ୍‌ତଳୁ ହୋଇଥିବା ବ୍ୟାରିକେଟ୍ ମଧ୍ୟରେ ଖୁନ୍ଦାଖୁନ୍ଦି ହୋଇ ଠିଆ ହୋଇ ଅପେକ୍ଷା କରିଥାନ୍ତି । ବ୍ୟାରିକେଟ୍ ପାଖକୁ ଲାଗି ଗଙ୍ଗା କୂଳରେ ଯାତ୍ରୀମାନେ ମଧ୍ୟ ବସିଥିଲେ । ସକାଳ ପର୍ଯ୍ୟନ୍ତ କିଛି ଆଦେଶ ନପାଇବା ଯୋଗୁ ପୋଲର ଉଭୟପଟୁ ଭୀଷଣ ପେଲା ଠେଲା ହେଲା ଏବଂ ସେଇ ପେଲା ଠେଲାରେ ଜଣେ ବୁଢୀ ବ୍ରିଜ୍ ଉପରେ ବେହୋସ ହୋଇଗଲେ । ତାଙ୍କୁ ସେଇ ଭିଡ଼ ମଧ୍ୟରୁ ଉଦ୍ଧାର କରିବାକୁ ଯିବା ବେଳେ ପୁଲିସ୍‌ଙ୍କ ପେଲା ଠେଲା ଯୋଗୁ ସେଠାରେ ଦଳାଚକଟା ହୋଇଗଲା ଏବଂ ତା ସଙ୍ଗେ ସଙ୍ଗେ ଲମ୍ବା ବ୍ୟାରିକେଟ୍ ମଧ୍ୟ ଭାଙ୍ଗିଗଲା । ବ୍ୟାରିକେଟ୍ ଭାଙ୍ଗି ଗଙ୍ଗାକୂଳରେ ବସିଥିବା ଲୋକଙ୍କ ଉପରେ କୁଢ଼େଇ ହୋଇ ପଡ଼ିବା ଯୋଗୁ ତାହା ତଳେପଡ଼ି ଲୋକମାନେ ଚିପି ହୋଇଗଲେ ଏବଂ ଦଳାଚକଟାରେ ପ୍ରାୟ ୪୬ ଜଣ ଲୋକ ଘଟଣାସ୍ଥଳରେ ପ୍ରାଣ ହରାଇଲେ । ଏ ଘଟଣା ସକାଳ ଛଅଟାରେ ଘଟିଲା । ମୁଁ ସେତେବେଳେ କଣ୍ଟ୍ରୋଲ ଟାୱାର ଉପରେ ଥିଲି । ଘଟଣାପରେ ସେ ସ୍ଥାନକୁ ଯାଇଥିଲି । ହରଦ୍ୱାରରୁ ଫେରିଲା ପରେ, ମୁଁ ସରକାରଙ୍କୁ ଦୁଇଟି ପ୍ରସ୍ତାବ ଦେଇଥିଲି । ଗୋଟିଏ ଚନ୍ଦ୍ରଭାଗା ମେଳା ବୁଡ଼ ପକାଇବା ସମୟରେ ଯେପରି କୌଣସି ଦଳାଚକଟା ନହୁଏ ଏବଂ ପୁରୀ ରଥଯାତ୍ରା ସମୟରେ ମୁଖ୍ୟତଃ ନବକଳେବର ସମୟରେ କଟକ-ପୁରୀ ରାସ୍ତାରେ ଯାତାୟାତରେ ଯେପରି ଅସୁବିଧା ନହୁଏ । ଏହି ପ୍ରସ୍ତାବ ଦୁଇଟି ଘରୋଇ ବିଭାଗ ଶାସନ ସଚିବଙ୍କ ପାଖକୁ ପଠାଯାଇଥିଲା ଏବଂ ପରବର୍ତ୍ତୀ କାଳରେ କେତେକାଂଶରେ ଏହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇଥିଲା ।

ମୁଁ ହରଦ୍ୱାରରୁ ଫେରିଲାପରେ, ସେଇ ବର୍ଷ ଏଲ.ଟି.ସି.ରେ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜକୁ ପରିବାର ସହିତ ଯାଇଥିଲୁ । ମିଃ ରବିନାରାୟଣ ମହାପାତ୍ର ମଧ ତାଙ୍କ ପରିବାର ସହ ଯାଇଥିଲେ । ପ୍ରାୟ ୧୫ ଦିନ ରହି ଆଣ୍ଡାମାନ-ଦୀପପୁଞ୍ଜର ବିଭିନ୍ନ ସ୍ଥାନକୁ ଆମେ ଯାଇପାରିଥିଲୁ ଏବଂ ସେଠୁ ଫେରିଲା ପରେ ''ମୁଁ ମୁକ୍ତିତୀର୍ଥ ଆଣ୍ଡାମାନ''ନାମରେ ଖଣ୍ଡେ ବହି ଲେଖିଥିଲି । ଟ୍ରାଫିକ୍ ଟ୍ରେନିଂ ଅନୁଷ୍ଠାନରେ ଥିଲାବେଳେ ମୁଁ ଲେଖାଲେଖିରେ ବିଶେଷଭାବେ ମନଦେଇଥିଲି । ଏଇ ସମୟରେ ପ୍ରତ୍ୟେକ ଦିନ ମୋର ଛଦ୍ମନାମ ''ଶ୍ରୀଶଙ୍କର'' ନାମରେ ଜନଭାଷା ଦୈନିକ ପତ୍ରିକାରେ ''ଇନ୍ଦ୍ରଙ୍କ ମର୍ତ୍ତ୍ୟଗ୍ରସ୍ତ'' ଶିରୋନାମାରେ ଏକ ସାମାଜିକ ବ୍ୟଙ୍ଗ ଲେଖା ପ୍ରକାଶ ପାଉଥିଲା । ସେଇପରି ଦୈନିକ ସମ୍ବାଦରେ ପିଲାମାନଙ୍କ ପାଇଁ 'ଅଜାଙ୍କ ମଜାଗପ' ଓ ଦୈନିକ ଗଣତନ୍ତ୍ରରେ ''ଯାଇଥିଲି ପାଣ୍ଡିକି....'' ବ୍ୟଙ୍ଗ ଲେଖା ପ୍ରକାଶ ପାଉଥିଲା । ତାଛଡ଼ା ଏଇ ସମୟରେ ମୁଁ ମଧ ପ୍ରାୟ ୧୦ ଗୋଟି ସିନେମାରେ ଅଭିନୟ କରିବାକୁ ସୁଯୋଗ ପାଇଥିଲି । ଏ ସମସ୍ତ ଚଳଚ୍ଚିତ୍ର ହେଲା ''ସବୁମାୟାରେ ବାୟା'', ''ମଝିପାହାଚ'', ''ବଧୂ ନିରୂପମା'', ''ସ୍ୱପ୍ନସାଗର'', ''ସ୍କୁଲମାଷ୍ଟର'' । ସିନେମାରେ ଅଭିନୟ କରିବା ବେଳେ, ପୁଲିସ୍ ପାଇଁ ''ପ୍ରଗତି ପଥେ ଓଡ଼ିଶା ପୁଲିସ'' ନାମରେ ଗୋଟେ ଓଡ଼ିଆ ଚଳଚ୍ଚିତ୍ରର ସ୍କ୍ରିପ୍ଟଲେଖି ଏହାକୁ ନିର୍ମାଣ କରିବାରେ ସାହାଯ୍ୟ କରିଥିଲି । ବିପ୍ଳବ ରାଏ ଚଉଧୁରୀ ଏହାର ନିର୍ଦ୍ଦେଶନା ଦେଇଥିଲେ । ମହମଦ୍ ଅଜିଜ୍ ଏହି ପ୍ରାମାଣିକ ଚଳଚ୍ଚିତ୍ର ପ୍ରଯୋଜକ ଥିଲେ ।

ପରବର୍ତ୍ତୀ କାଳରେ ଏଇ ସବୁ ଲେଖାକୁ ନେଇ ପିଲାମାନଙ୍କ ପାଇଁ ୧୨ଟି ବହି ଏବଂ ଅନ୍ୟ ୫ଖଣ୍ଡ ବହି ପ୍ରକାଶ ପାଇଥିଲା । ମୋର ଏଇ ପୋଷ୍ଟିଂ ମୋତେ ସାହିତ୍ୟ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନେବାକୁ ବହୁତ ସୁଯୋଗ ଯୋଗାଇ ଦେଇଥିଲା । ପୁଲିସ୍ ବିଭାଗରେ ସମସ୍ତେ ଏଇ ପୋଷ୍ଟିଂକୁ ନଯିବାପାଇଁ ଚେଷ୍ଟା କରିଥାନ୍ତି, ଛୁଟି ନେଇ ରହିଯାନ୍ତି । ପୋଷ୍ଟିଂ ପରେ କାମ କରନ୍ତିନି । କିଏ କିଏ କୁହନ୍ତି ଏଇ ପୋଷ୍ଟିଂ ଓ.ପି.ଏସ. ଅଫିସରଙ୍କ ପାଇଁ ଉଦ୍ଦିଷ୍ଟ,ମାତ୍ର କାମ କରିବାକୁ ଇଚ୍ଛାଥିଲେ, ପ୍ରତ୍ୟେକ ପୋଷ୍ଟିଂର ମୂଲ୍ୟ ଅଛି ଏବଂ ସୁଯୋଗ ଅଛି ନିଜର ସୃଷ୍ଟିକାରୀ ଚିନ୍ତାଧାରାକୁ ପ୍ରୟୋଗ କରି ନୂତନତ୍ୱ ସୃଷ୍ଟି କରିବା ପାଇଁ । ମୋର ୩୩ ବର୍ଷ ପୁଲିସ୍ ଜୀବନ ମଧରେ, ଯାତାୟାତ ପ୍ରଶିକ୍ଷଣ ଅନୁଷ୍ଠାନରେ ଅବସ୍ଥାନ ସମୟ ସବୁଠାରୁ ସ୍ମରଣୀୟ ଏବଂ ଘଟଣାବହୁଳ ।

ଏଇ ସମୟ ମଧରେ ଓଡ଼ିଶା ପୁଲିସ ଉପର ସ୍ତରରେ ନରସିଂହ ସ୍ୱାଇଁ ଅବସର ନେଲାପରେ ବଦଳି ହେଲା । ମିଃ ସ୍ୱାଇଁ ବିଦାୟ ନେଲା ପରେ ତାଙ୍କ ସ୍ଥାନରେ ଶ୍ରୀ ପାଢ଼ୀ ପୁଣି ଡି.ଜି. ହେଲେ । ସେ ଡି.ଜି. ହେଲେ, କିନ୍ତୁ ତାଙ୍କୁ ଦୁଇଜଣ କାର୍ଯ୍ୟଦକ୍ଷ ଅଫିସର ପି.ସି.ରଥ ଏବଂ ବି.କେ. ପାଣିଗ୍ରାହୀ ସାହାଯ୍ୟ କରୁଥିଲେ । ଶ୍ରୀ ପାଢ଼ୀ ଅବସର ଗ୍ରହଣ କଲାପରେ ଶ୍ରୀ ବି:କେ. ପାଣିଗ୍ରାହୀ ଡି.ଜି. ହେଲେ । ତାଙ୍କର ମାତ୍ର ଅବସର ନେବା ପାଇଁ ଅଳ୍ପ ଦିନ ଥାଏ । ସେ ଡି.ଜି. ହେଲା ପରେ ଗୋବିନ୍ଦ ଚନ୍ଦ୍ର ସେନାପତି ଡି.ଜି. ପଦପାଇଁ ଲାଗି ପଡ଼ିଲେ ଏବଂ ତାଙ୍କୁ ଡି.ଜି ପାହ୍ୟାରେ ଅନ୍ୟସ୍ଥାନରେ ପୋଷ୍ଟିଂହେଲା ।

**ଏସ୍.ପି. ପୁରୀ :**

ଟ୍ରାଫିକ୍‌ଟ୍ରେନିଂ ଅନୁଷ୍ଠାନରୁ ମୋର ପୁରୀ ଜିଲ୍ଲାକୁ ଏସ.ପି. ଭାବେ ୧୯୮୭ ମସିହା ମାର୍ଚ୍ଚମାସ ପ୍ରଥମ ସପ୍ତାହରେ ବଦଳିହେଲା । ଜିଲ୍ଲାକୁ ବଦଳି ହେଲାପରେ, ମୋତେ କୁହାଗଲା ଯେ ଦୁଇ ଦିନ ମଧ୍ୟରେ ସେଠାରେ ଯୋଗ ଦେବା ପାଇଁ । ମୋ ପୂର୍ବରୁ ସେଠାରେ ଅନାଦି ସାହୁ ଏସ.ପି.ଥିଲେ ଏବଂ ସେ ସେଇଠୁ ପ୍ରମୋସନ ପାଇଁ ଭୁବନେଶ୍ୱର ଠାରେ କ୍ରୀଡ଼ା ନିର୍ଦ୍ଦେଶକ ଭାବେ ଜଏନ୍ କରିଥାନ୍ତି । ମାର୍ଚ୍ଚମାସ ୧୧ ତାରିଖରେ ପୁରୀ ସମୁଦ୍ରରେ "ଅଲଭ୍ୟ ସ୍ନାନଯୋଗ" ପଡୁଥାଏ । ଏଥିଲାଗି ସାରାଦେଶରୁ ପ୍ରାୟ ୫ଲକ୍ଷରୁ ୮ଲକ୍ଷ ଯାତ୍ରୀ ସମାଗମ ହେବ ଏବଂ ସମସ୍ତ ଯାତ୍ରୀ ସମୁଦ୍ରରେ ସ୍ନାନ କରିବେ ବୋଲି ପ୍ରାରମ୍ଭିକ ଖବରରୁ ସୂଚନା ମିଳିଥାଏ । ତେଣୁ ପୁରୀ ମନ୍ଦିର ତଥା ସମୁଦ୍ରକୂଳରେ ପୁଲିସ୍ ବନ୍ଦୋବସ୍ତ କରିବାର ଥାଏ । ମୋତେ ଜଏନିଂ ସମୟ ନେବାକୁ ମନା କରାଗଲା । ମୁଁ ମାର୍ଚ୍ଚ ୭ତାରିଖରେ ଟ୍ରାଫିକ ଇନ୍‌ଷ୍ଟିଚ୍ୟୁଟ୍‌ରୁ ରିଲିଭ୍ ହୋଇ ମାର୍ଚ୍ଚ ୮ତାରିଖରେ ପୁରୀରେ ଜଏନ୍ କଲି । ଜଏନ୍ କଲା ସଙ୍ଗେ ସଙ୍ଗେ ଅଲଭ୍ୟ ସ୍ନାନ ଯୋଗ ପାଇଁ ପୁଲିସ ବନ୍ଦୋବସ୍ତ କରିବା ସଙ୍ଗେ ସଙ୍ଗେ ତାର ରିହର୍‌ସାଲ୍ ପରଦିନ କରିଥିଲି । ଯାତ୍ରୀମାନଙ୍କ ସମାଗମ ମାର୍ଚ୍ଚ ୯ ତାରିଖରୁ ଆରମ୍ଭ ହୋଇଥିଲା । ମାତ୍ର ଯେତେ ଆଶା କରାଯାଉଥିଲା, ସେତେ ଯାତ୍ରୀ "ଅଲଭ୍ୟ ସ୍ନାନ" ପାଇଁ ଆସିନଥିଲେ । ପ୍ରାୟ ୨ଲକ୍ଷରୁ ୩ ଲକ୍ଷ ଯାତ୍ରୀ ମାନଙ୍କ ସମାଗମ ହୋଇଥିଲା ଏବଂ ସ୍ନାନଯୋଗ ସମୟରେ କୌଣସି ପ୍ରକାର ଆଇନ ଶୃଙ୍ଖଳା ପରିସ୍ଥିତି ଘଟିନଥିଲା ।

ସ୍ନାନ ଯୋଗ ପରେ ପୁରୀ ଜିଲ୍ଲାର ବ୍ରହ୍ମଗିରି, କୃଷ୍ଣ ପ୍ରସାଦ ଥାନା ଅଞ୍ଚଳର ଚିଲିକା ହ୍ରଦ ମଧ୍ୟରେ ଚିଙ୍ଗୁଡ଼ିଘେରିକୁ କେନ୍ଦ୍ର କରି ଆଇନ୍ ଶୃଙ୍ଖଳା ପରିସ୍ଥିତି ଉପୁଜିଥିଲା । ଅବଶ୍ୟ ମୋ ଆଗରୁ ପୁରୀ ଜିଲ୍ଲାପାଳ ମହେଶ ପୁରୋହିତ, ଅନାଦି ସାହୁ ସେ ଅଞ୍ଚଳର ମତ୍ସ୍ୟଜୀବୀମାନଙ୍କ ସଙ୍ଗେ ବହୁବାର କଥାବାର୍ତ୍ତା କରି, ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ସମାଧାନ କରିବାରେ ଚେଷ୍ଟା କରିଥିଲେ । ଆଇନ୍ ଶୃଙ୍ଖଳା ପରିସ୍ଥିତିର ମୁଖ୍ୟ କାରଣ ହେଲା ଚିଲିକାରେ ଚିଙ୍ଗୁଡ଼ି ଚାଷ । ସେତେବେଳକୁ ଚିଙ୍ଗୁଡ଼ି ଚାଷ ଚିଲିକା ମଧ୍ୟରେ ଆରମ୍ଭ ହୋଇ ଯାଇଥାଏ ଏବଂ ଚିଲିକା ହ୍ରଦର ବହୁସ୍ଥାନରେ ମାଇଲ୍ ମାଇଲ୍ ଧରି ଲମ୍ବା ଘେରି କରି ଚୁଙ୍ଗୁଡ଼ି ଧରା ଆରମ୍ଭ ହୋଇଥାଏ । ଘେରିକରିବା ପାଇଁ ସ୍ଥାନୀୟ ମତ୍ସ୍ୟଜୀବୀ, ଅଣମତ୍ସ୍ୟଜୀବୀମାନଙ୍କୁ ଚୁଙ୍ଗୁଡ଼ି ବ୍ୟବସାୟୀମାନେ ଲକ୍ଷ ଲକ୍ଷ ଟଙ୍କା ଆଗତୁରା ଦେଉଥାନ୍ତି ଏବଂ ଚିଙ୍ଗୁଡ଼ି ସେମାନଙ୍କଠାରୁ ନେଇ ବିଦେଶ ଚାଲାଣ କରୁଥାନ୍ତି । କଟକ, ଭୁବନେଶ୍ୱରରେ ଚାରିପାଞ୍ଚଟି ଚିଙ୍ଗୁଡ଼ି ରପ୍ତାନି କମ୍ପାନୀ କାମ କରୁଥାଏ । ସେମାନେ ଦଲାଲ୍‌ଙ୍କ ଜରିଆରେ ଚିଙ୍ଗୁଡ଼ି କିଣୁଥାନ୍ତି । ଏଥିଯୋଗୁ ଚିଙ୍ଗୁଡ଼ିର ଦର ହଠାତ୍ ଅସମ୍ଭବ ଭାବେ ବଢ଼ିଯାଇଥାଏ । ସେତେବେଳେ ଗୋଟେ କେ.ଜି. ବାଗଦା ଚିଙ୍ଗୁଡ଼ିର ଦାମ ଟ୧୦୦ରୁ ୧୫୦ ଟଙ୍କା ପର୍ଯ୍ୟନ୍ତ ବିକ୍ରି ହେଉଥିଲା । ତେଣୁ ଚିଲିକା ହ୍ରଦରେ ଯେଉଁପରିଭାବେ ପାରମ୍ପରିକ ଚିଙ୍ଗୁଡ଼ି ଧରା ହେଉଥିଲା ଏବଂ ଯେଉଁମାନେ ଚିଙ୍ଗୁଡ଼ି ପାଇଁ ବର୍ଷ

ବର୍ଷ ଧରି ସରକାରଙ୍କ ଠାରୁ ପୁରୁଷାନୁକ୍ରମେ ଚିଙ୍ଗୁଡ଼ି ଘେରୀ ଲିଜ୍ ଆଣୁଥିଲେ, ସେମାନଙ୍କ ବ୍ୟବସାୟରେ ବାଧା ସୃଷ୍ଟି ହେଲା । ତାଛଡ଼ା ଚିଲିକାରେ ଚିଙ୍ଗୁଡ଼ି ଧରିବା ପାଇଁ କେତେକ ସ୍ଥାନ ପାରିକୁଦ ଜମିଦାରଙ୍କ ସମୟରୁ ଚିହ୍ନଟ ହୋଇ ଆସିଥିଲା । ମାତ୍ର ଚିଙ୍ଗୁଡ଼ି ଦର ଆନ୍ତର୍ଜାତିକ ବଜାରରେ ବହୁ ପରିମାଣରେ ବଢ଼ିଯିବା ଏବଂ ଏକ୍ସପୋର୍ଟ ବଢ଼ିଯିବା ଯୋଗୁ ମତ୍ସ୍ୟଜୀବୀ, ଅଣମତ୍ସ୍ୟଜୀବୀ ସମସ୍ତେ ଚିଙ୍ଗୁଡ଼ି ଧରିବା ପଛରେ ଲାଗିଗଲେ ଏବଂ ପରମ୍ପରା ପ୍ରଥାକୁ ମାନିଲେନି । ସରକାରଙ୍କ ଠାରୁ ପ୍ରାଇମେରୀ କୋଅପ୍‌ରେଟିଭ ସୋସାଇଟ୍ ମାଧ୍ୟମରେ ଲିଜ୍ ଆଣିଥିବା ମତ୍ସ୍ୟଜୀବୀମାନେ କ୍ଷତିଗ୍ରସ୍ତ ହେବାକୁ ଆରମ୍ଭ କଲେ ।

ଏଇ ସମୟରେ ସାତପଡ଼ା ଠାରୁ ଦୁଇ କିଲୋମିଟର ତଳକୁ ଆଲୁପଟଣା ଗ୍ରାମର ଅଣ ମତ୍ସ୍ୟଜୀବୀମାନେସାତପଡ଼ାରୁ ସମୁଦ୍ର ମୁହାଣକୁ ଯାଇଥିବା ଗଭୀର ସ୍ରୋତ ପଥ ଉପରେ ମାଇଲ ମାଇଲ ଧରି  ଘେରିକରି ଚିଙ୍ଗୁଡ଼ି ଧରିବାରେ ଲାଗିଗଲେ । ଏହାଦ୍ୱାରା ଆଲୁପାଟଣା ତଳକୁ ଥିବା ଆଠଖଣ୍ଡ ଗାଁର ମତ୍ସ୍ୟଜୀବୀମାନେ ମାଛ ଧରିବାରେ ଅସୁବିଧାର ସମ୍ମୁଖୀନ ହେଲେ । ସାଧାରଣରେ ନଦୀମୁହାଣ ଦେଇ ସମୁଦ୍ରରୁ ଚିଙ୍ଗୁଡ଼ି ଏବଂ ଅନ୍ୟାନ୍ୟ ଜଳଚର ପ୍ରାଣୀ ଗଭୀର ଏବଂ ଉପର ଚିଲିକାକୁ ଆସି ଅଣ୍ଡା ଦେଇଥାନ୍ତି । ଗଭୀର ଏବଂ ଉପର ଚିଲିକାରେ ଏମାନେ ବଡ଼ ହେଲା ପରେ ସମୁଦ୍ରକୁ ଫେରିଲା ବାଟରେ ମତ୍ସ୍ୟଜୀବୀମାନେ ମାଛ ଧରିଥାନ୍ତି । ଆଲୁପଟଣା ଗାଁ ବାଲା ସମୁଦ୍ର ମୁହାଣକୁ ଯୋଗ କରୁଥିବା ସ୍ରୋତ ଉପରେ ଘେରି କରିଦେବା ଏବଂ ଯୋଗାଯୋଗ ପଥକୁ ପ୍ରାୟ ବନ୍ଦ କରି ଦେବା ଯୋଗୁ ଉପର ଏବଂ ଗଭୀର ଚିଲିକାରୁ ସମୁଦ୍ର ଆଡ଼କୁ ଫେରୁଥିବା ମାଛ ଚିଙ୍ଗୁଡ଼ି ସେଇଠି ଧରା ପଡ଼ିଲେ । ତଳ ଅଞ୍ଚଳର ହଜାର ହଜାର ମତ୍ସ୍ୟଜୀବୀଙ୍କର ଜୀବିକାରେ ବାଧାସୃଷ୍ଟି ହେଲା । ଆଲୁପାଟଣାର ଅଣମତ୍ସ୍ୟ-ଜୀବୀମାନେ ଚିଙ୍ଗୁଡ଼ିରୁ ଏତେ ଉପାର୍ଜନ କରୁଥିଲେ ଯେ ସେମାନେ ପୁରୀରେ ଘରନେଇ ଓକିଲ, ମହକିଲ, ରାଜନୈତିକ ନେତା ତଳିଆ ସରକାରୀ କର୍ମଚାରୀ ସମସ୍ତଙ୍କୁ ହାତରେ ରଖିଥିଲେ । ତଳ ଆଠ ଖଣ୍ଡ ଗାଁର ମତ୍ସ୍ୟଜୀବୀମାନେ ଯେତେ ଅନୁରୋଧ କଲେ ମଧ ସେମାନେ ମାଛ ଯିବା ଆସିବା ପଥକୁ ଘେରି ମୁକ୍ତ କରିବାକୁ ରାଜି ହେଲେନି । ଏଥି ଯୋଗୁ ତଳ ଆଠ ଖଣ୍ଡ ଗାଁର ଲୋକମାନଙ୍କ ସଙ୍ଗେ ଆଲୁପାଟଣା ଲୋକଙ୍କର ମତାନ୍ତର ଘଟି ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଥାଏ । ମୁଁ ଜଏନ୍ କଲାପରେ ଥରେ ଜିଲ୍ଲାପାଳ, ଉପଜିଲ୍ଲାପାଳଙ୍କୁ ନେଇ ଉଭୟ ଦଳଙ୍କୁ ବୁଝାଇ ଘେରି କାଟିବାର ପ୍ରସ୍ତାବ କଲୁ ମାତ୍ରା ତାହା କାର୍ଯ୍ୟକାରୀ ହେଲା ନାହିଁ । ଯେତେଦୂରକୁ କାଟିବାର ନିଷ୍ପତ୍ତି ନିଆଗଲା, ଆଲୁପାଟଣାବାଲା ସେତକ କାଟିଲେ ନାହିଁ । କେବଳ ଆଲୁପାଟଣା ନୁହେଁ, ପାଖ ପାଖି ଅଞ୍ଚଳ ଜହ୍ନିକୁଦା, ମହିଷା, କୃଷ୍ଣପ୍ରସାଦ ଥାନାର କେତେକ ଅଞ୍ଚଳରେ ଏହିପରି ପରିସ୍ଥିତି ସୃଷ୍ଟିହୋଇଥାଏ । ଏକଥା ମଧ ତତ୍‌କାଳୀନ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଅଣା ଯାଇଥିଲା ଏବଂ ଚିଲିକାରେ ଗଢ଼ିଉଠୁଥିବା ଘେରୀକୁ ଯଦି ଭଙ୍ଗାନଯାଏ ଏବଂ ମତ୍ସ୍ୟଜୀବୀ, ଅଣମତ୍ସ୍ୟଜୀବୀ ମାନଙ୍କ ମଧରେ ଚିଙ୍ଗୁଡ଼ି ଚାଷକୁ ନେଇ ଉପୁଜିଥିବା ବିବାଦକୁ ସମାଧାନ କରାନଯାଏ, ତାହେଲେ

ଚିଲିକାର ଅବର୍ଣ୍ଣନୀୟ କ୍ଷତି ସହିତ ଏଠାରେ ସବୁବେଳେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବ ବୋଲି କୁହାଯାଇଥିଲା । ଉପର ସରକାରୀ ସ୍ତରରେ ଏହାର କିଛି ପ୍ରତିକାର କରାଯାଇ ନଥିଲା କାରଣ ଏଥିରେ ମଧ୍ୟ କେତେକ ରାଜନୈତିକ ନେତାଙ୍କର ହାତ ଥିଲା ଯେଉଁମାନେ କି ଚାହୁଁନଥିଲେ ଚିଲିକା ସମସ୍ୟା ସମାଧାନ ହେଉ । ତେଣୁ ଚିଲିକାରେ ବେନିୟମ ଘେରି ବଢ଼ିବାରେ ଲାଗିଥାଏ । ରେଭିନ୍ୟୁ ଡିପାର୍ଟମେଣ୍ଟ ଏଥିପାଇଁ କିଛି ନିୟମ କରିଥିବାରୁ, ତଳସ୍ତରରେ ବହୁ ବେନିୟମ କାର୍ଯ୍ୟ କରି ଲକ୍ଷ ଲକ୍ଷ ଟଙ୍କା ଆଦାୟ କରାଯାଉଥାଏ । ଏଇ ଆଦାୟ ଟଙ୍କାରେ ବହୁ ଲୋକଙ୍କର ଭାଗ ଥାଏ ବୋଲି ଶୁଣାଯାଉଥିଲା । ତଳିଆ ପୁଲିସ୍ କର୍ମଚାରୀ ମଧ୍ୟ ବେଶ୍ ଦୁଇପଇସା ଗୋଳିଆ ପାଣିରୁ ପାଉଥିଲେ ।

ଆଳୁପାଟଣା ଏବଂ ଆଠଖଣ୍ଡ ଗାଁ ମଧ୍ୟରେ ଥିବା ବିବାଦର ସମାଧାନ ହୋଇନଥିବା ଯୋଗୁ ସେଠାରେ ଗୋଟିଏ ପ୍ଲାଟୁନ୍ ଓ.ଏସ.ପି. ଜଣେ ମାଜିଷ୍ଟ୍ରେଟ୍‌ଙ୍କ ତତ୍ତ୍ୱାବଧାନରେ ଥା'ନ୍ତି । ଖବର ମିଳିଥିଲା ତଳ ଅଞ୍ଚଳର ଲୋକମାନେ ଏକତ୍ରିତ ହୋଇ ଆଳୁପାଟଣା ଗାଁକୁ ଆକ୍ରମଣ କରିପାରନ୍ତି । ତାହା ହିଁ ହେଲା । ମେ ମାସ ୨୦ ତାରିଖ ସକାଳ ନଟା ବେଳେ ପୁଲିସ୍ ଖବର ପାଇଲା ଯେ, ପ୍ରାୟ ୩୦୦ ଡଙ୍ଗା ରେ ୫୦୦ ମତ୍ସ୍ୟଜୀବୀ ତଳ ଆଠ ଖଣ୍ଡ ଗାଁରୁ ଏକତ୍ରିତ ହୋଇ ଆଳୁପାଟଣା ଆଡ଼କୁ ଚିଲିକାରେ ଅଗ୍ରସର ହେଉଛନ୍ତି । ଏ ଖବର ପାଇଁ ବ୍ରହ୍ମଗିରି ଥାନାବାବୁ, ଏ.ଏସ.ଆଇ. ମାଜିଷ୍ଟ୍ରେଟ୍‌ଙ୍କ ସହ ଆଳୁପାଟଣା ଗାଁ ତଳ ଚିଲିକା କୂଳକୁ ଗଲେ । ସେମାନେ ପହଞ୍ଚିଲା ବେଳକୁ ଦେଖିଲେ ତଳ ଅଞ୍ଚଳରୁ ଶହ ଶହ ଡଙ୍ଗାରେ, ହାତ ବୋମା, ଖଣ୍ଡା, ବର୍ଚ୍ଛା, ବନ୍ଧୁକ ଧରି ଲୋକମାନେ ମାଡ଼ି ଆସି, ପ୍ରଥମେ ଆଳୁପାଟଣା ଗାଁ ବାଲା କରିଥିବା ଘେରି ବନ୍ଧକୁ ଭାଙ୍ଗି ଦେଲେ । କିଛି ଭାଙ୍ଗିବା ପରେ, ସେମାନେ ଆଳୁପାଟଣା ଗାଁ ଲୋକମାନେ ଚିଲିକା ମଝି ଟାପୁରେ କରିଥିବା ଚିଙ୍ଗୁଡ଼ି ଖଟି ଘରକୁ ପୋଡ଼ି ଦେଲେ ଏବଂ ସେଠାରେ ଥିବା ଆଳୁପାଟଣାର କେତେ ଲୋକଙ୍କୁ ଆକ୍ରମଣ କରି ମାଡ଼ ଦେଲେ । ସେମାନଙ୍କୁ ରକ୍ଷା କରିବାଲାଗି ଚିଲିକା କୂଳରେ ଥିବା ମାଜିଷ୍ଟ୍ରେଟ୍ ଗୋଟେ ସେକସନ ପୁଲିସ ଫୋର୍ସ ଏବଂ ଜଣେ ଏସ.ଆ.ଇ.ଙ୍କୁ ସାଙ୍ଗରେ ନେଇ ଡଙ୍ଗାରେ ଚିଲିକା ଭିତର ଟାପୁକୁ ଚାଲିଗଲେ । କୂଳଠାରୁ ସେ ଟାପୁର ଦୂରତ୍ୱ ପାଣିଭିତରେ ପ୍ରାୟ ୩୦୦ ମିଟର ହେବ । ଏମାନେ ଗଲାପରେ, ଟାପୁରେ ପହଞ୍ଚିଥିବା ମତ୍ସ୍ୟଜୀବୀମାନେ ପୁଲିସ, ମାଜିଷ୍ଟ୍ରେଟ୍‌ଙ୍କୁ ତେଣ୍ଟା, ବର୍ଚ୍ଛା ବୋମାରେ ଆକ୍ରମଣ କଲେ । ହାତବୋମା ପକାଇବା ସଙ୍ଗେ ସଙ୍ଗେ ସେମାନେ ଜଣେ ହାବିଲଦାରକୁ ମାରଣାତ୍ମକ ଆକ୍ରମଣ କରି ଖଣ୍ଡିଆ ଖାବରା କରିଦେଲେ । ମାଜିଷ୍ଟ୍ରେଟ୍ ପ୍ରାଣ ବିକଳରେ ଦଉଡ଼ିବାରେ ଲାଗିଲେ ମାତ୍ର ଯେଉଁ ଡଙ୍ଗା ସେମାନଙ୍କୁ ନେଇଥିଲା ସେ ପ୍ରାଣ ଭୟରେ ସେମାନଙ୍କୁ ଟାପୁରେ ଓହ୍ଲାଇ ଦେଇ ପଳାଇ ଯାଇଥିବା ଯୋଗୁ ଚିଲିକାରେ ବୁଡ଼ି ମରିବା ଛଡ଼ା ଅନ୍ୟ ଉପାୟ ନଦେଖି ସେ ଫାୟାରିଙ୍ଗ୍ ଆଦେଶ ଦେଲେ । ପୁଲିସ୍ ଗୁଳିରେ ଚାରିଜଣ ଲୋକ ମଲେ । କେତେ ଖଣ୍ଡିଆ ଖାବରା ହେଲେ । ସେମାନେ ମଧ୍ୟ ଚିଲିକା ଭିତରୁ ଡଙ୍ଗା ଉପରେ ଥାଇ, ଲୁହାନଳୀ ସାହାଯ୍ୟରେ ପୁଲିସ ଉପରକୁ ବୋମା ପକାଇଲେ । ଏକଥା ଦେଖି ଚିଲିକା କୂଳରେ ଥିବା ଥାନାବାବୁ ତାଙ୍କ ପାଖରେ ଥିବା

ପୁଲିସମାନଙ୍କୁ ଗୁଳି ଚଳେଇବାକୁ ଆଦେଶ ଦେବାରେ କୂଳରୁ ସେମାନଙ୍କ ଉପରକୁ ଗୁଳି ହେବା ଯୋଗୁ ମତ୍ସ୍ୟଜୀବୀ ଆକ୍ରମଣକାରୀମାନେ ସ୍ଥାନଛାଡ଼ି ପଳାଇ ଗଲେ ।

ମୁଁ କଲେକ୍ଟର ଗୋଟିଏ ମିଟିଂରେ ଥିବା ବେଳେ ଏ ଖବର ପାଇ ଦିନ ଗୋଟାଏ ବେଳେ ସାତପଡ଼ା ବାହାରିଲୁ । ବାଟରେ ଆସୁଥିବା ବସ୍ ଚେକ୍‌କରି ଦେଖିଲୁ ମଲାଗଲା ଅବସ୍ଥାରେ ଆଉ କେତେଜଣ ପୁରୀ ଡାକ୍ତର ଖାନାକୁ ଚିକିତ୍ସା ପାଇଁ ଆସୁଥାନ୍ତି । ବାଟରୁ ଓ୍ୟାର୍‌ଲେସ୍ ଯୋଗେ ସେମାନଙ୍କ ଚିକିତ୍ସା ବ୍ୟବସ୍ଥା କରିବାକୁ କହି ଆମେ ସାତପଡ଼ା ଗଲୁ ଏବଂ ଅବସ୍ଥାକୁ ସମ୍ଭାଳିବା ପାଇଁ ବ୍ୟବସ୍ଥା କଲୁ । ପରବର୍ତ୍ତୀ ସମୟରେ ପୁଲିସ ଗୁଳିଚାଳନା ପାଇଁ ଆଡ୍‌ମିନିଷ୍ଟ୍ରେଟିଭ ଇନ୍‌କ୍ୱାରୀର ଆଦେଶ ହେଲା ଏବଂ ପୁଲିସ୍ ଗୁଳି ଚାଳନା ଆତ୍ମରକ୍ଷାଲାଗି ହୋଇଥିଲା ବୋଲି କମିଶନ କହିଥିଲେ ।

ଯଦିଓ ଗୁଳିଚାଳନା ଦରକାରଥିଲା ବୋଲି କୁହାଗଲା । ମାତ୍ର ଏହି ଗୁଳିଚାଳନା, ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା, ଯଦି ସରକାର ଚିଲିକାରେ ବଢୁଥିବା ସମସ୍ୟାକୁ ଉପଯୁକ୍ତ ଭାବେ ତଦାରଖ କରି, ତାହାକୁ ବିଚାରକୁ ନେଇ ପ୍ରତିକାର କରିଥାନ୍ତେ । ଏ ଗୁଳିଚାଳନା ପରେ ଯଦିଓ ସରକାର କିଛି କାର୍ଯ୍ୟକ୍ରମ ଆରମ୍ଭ କଲେ ମାତ୍ର ତାହା ଚିଲିକାର ଚିଙ୍ଗୁଡ଼ି ଚାଷ, ଘେରି ସମସ୍ୟାକୁ ଆଜିପର୍ଯ୍ୟନ୍ତ ସମାଧାନ କରି ପାରିଲା ନାହିଁ । ଏହା ପରେ ମଧ୍ୟ କେତେକ ସ୍ଥାନରେ ପୁଲିସ୍ ତରଫରୁ ଗୁଳିଚାଳନା ଘଟିଛି ଏବଂ ମତ୍ସ୍ୟଜୀବୀ ଅଣମତ୍ସ୍ୟଜୀବୀ ମାନଙ୍କ ମଧ୍ୟରେ ସଂଘର୍ଷରେ ବହୁଲୋକ ମୃତ୍ୟୁ ବରଣ କରିଛନ୍ତି ।

ଯେତେଦିନ ପର୍ଯ୍ୟନ୍ତ ଚିଲିକାକୁ ରାଜନୈତିକ ନେତାମାନଙ୍କ ସ୍ୱାର୍ଥରୁ ମୁକଳିତ କରା ନଯାଉଛି ରାଧାନାଥଙ୍କ ନିଳାମ୍ବୁ ଚିଲିକା ଖଣ୍ଡ ବିଖଣ୍ଡିତ ହୋଇ ତାର ସୌନ୍ଦର୍ଯ୍ୟ ଅଚିରେ ହରାଇବ, ଏଥିରେ କିଛି ସନ୍ଦେହ ନାହିଁ ।

ଏଇ ଘଟଣା ପରେ ପରେ, ପୁରୀରେ ରଥଯାତ୍ରା ଆରମ୍ଭ ହେଲା । ସେ ବର୍ଷ ରଥ ଏବଂ ବାହୁଡ଼ା ଯାତ୍ରାରେ କୌଣସି ପ୍ରକାର ଅସୁବିଧା ନଘଟି ସୁରୁଖୁରୁରେ ସମାପନ ହୋଇଥିଲା । ଯଦିଓ ରଥଦିନ କେବଳ ବଡ଼ ଠାକୁରଙ୍କ ରଥ ଗୁଣ୍ଡିଚା ପାଖରେ ପହଞ୍ଚ୍ ପାରିଥିଲା । ସବୁବେଳେ ପଣ୍ଡା, ପଢ଼ିହାରୀ, ସୁଆର ସେବକମାନଙ୍କ ମଧ୍ୟରେ ବାଦ୍‌ବିବାଦ୍ ଥାଏ, ଟଣା ଓଟରା ହୁଏ, ବିବାଦ ତୁଟେ, ହେଲେ ଗୁଣ୍ଡିଚା ଦିନ ରଥଟଣାରେ ଡେରିହୁଏ । ଯାତ୍ରୀମାନେ ରଥ ଦିନ ରଥଟଣା ଦେଖି ନପାରି ଅସନ୍ତୋଷ ମନରେ ଫେରନ୍ତି । ବାହୁଡ଼ାଯାତ୍ରା ପରେ,ସୁନା ବେଶରେ ରଥଉପରେ ଠାକୁରମାନେ ବସିଥାନ୍ତି । ସେ ବର୍ଷ ନାହିଁ ନଥିବା ଜନଗହଳି ହୋଇଥାଏ । ମୁଁ, ଡି.ଆଇ.ଜି. ମିଃ ତିଓ୍ୱାରୀ, ଜିଲାପାଳ ସିଂହଦ୍ୱାର ପାଖରେ ପଡ଼ିଥିବା ପୁଲିସ୍ ତମ୍ବୁତଳେ ବସିଥାଉ । ହଠାତ୍ ଜଣେ ଏ.ଏସ.ଆଇ. ଆସି କାନ୍ଦି କାନ୍ଦି କହିଲା ଯେ ତା ସ୍ତ୍ରୀକୁ ସେ ଯେଉଁଘରେ ଭଡ଼ା ରହୁଥିଲେ ସେଇ ଘରମାଲିକଙ୍କ ଡାକ୍ତର ପୁଅ ରେପ୍ କରିଛନ୍ତି । ସେତେବେଳେ ସେଠାରେ ପ୍ରାୟ ୧୦୦୦ ପୁଲିସ୍ ସୁନାବେଶ ପାଇଁ ମୁତୟନ ଥା'ନ୍ତି । ଏକଥା ଯଦି ପୁଲିସ୍‌ମାନଙ୍କ ମଧ୍ୟରେ ପ୍ରଚାର ହୋଇଯିବ ତାହେଲେ ସେମାନେ ଉତ୍ତ୍ୟକ୍ତ ହୋଇ କିଛି କାଣ୍ଡ ଘଟାଇ ପାରନ୍ତି । ତେଣୁ ମୁଁ

ଅତିରିକ୍ତ ଏସ.ପି. ବିଷ୍ଣୁପ୍ରସାଦ ମହାପାତ୍ରଙ୍କୁ କହିଲି ଏ.ଏସ.ଆଇଙ୍କୁ ନେଇ ଘଟଣା ସ୍ଥଳକୁ ଯାଇ ଘଟଣାର ତଦନ୍ତ କରନ୍ତୁ । ଅତିରିକ୍ତ ଏସ.ପି. ବିଷ୍ଣୁପ୍ରସାଦ ମହାପାତ୍ର ଯାଇ ବୁଝିବାରେ ଜାଣିଲେ ଯେ ଘଟଣା ସତ୍ୟ । ଏ.ଏସ.ଆଇଙ୍କ ସ୍ତ୍ରୀଙ୍କ ଉପରେ ଡାକ୍ତର ପାଶବିକ ଅତ୍ୟାଚାର କରିଛନ୍ତି । ଘଟଣା ସ୍ଥଳରେ ତାଙ୍କ ଭଙ୍ଗା କାଚ, ଛିଣ୍ଡା ବ୍ଲାଉଜ୍ ଏବଂ ଛୋଟ ପିଲାକୁ ଠେଲି ଦେବାଦ୍ୱାରା ତା ଦେହରେ ଆଘାତ ଚିହ୍ନ ଥିଲା । ପ୍ରାଥମିକ ରିପୋର୍ଟ ନେଲା ପରେ, ମୁଦଲା ଡାକ୍ତରଙ୍କୁ ଖୋଜି ସେଇ ରାତ୍ରିରେ ତାଙ୍କୁ ଟାଉନ ଥାନାକୁ ଅଣାଗଲା ଏବଂ ମହାପାତ୍ର ନିଜେ ଏ ମାମଲାର ତଦନ୍ତ, ତଦାରଖ କରୁଥାନ୍ତି । ସୁନାବେଶ ସରିଲା ପ୍ରାୟ ରାତ୍ରି ଦି'ଟାପରେ । ପରଦିନ ସକାଳୁ ମୁଁ ଶୁଣିବାକୁ ପାଇଲି, ମୁଦଲା ଡାକ୍ତରଙ୍କୁ ମିଃ ମହାପାତ୍ର ଏବଂ ପୁଲିସ୍ କେତେଜଣ ଥାନାରେ ମାଡ଼ ଦେଇଛନ୍ତି । ଏଥିଲାଗି ତାଙ୍କର ଡାକ୍ତର ଆସୋସିଏସନ୍‌ର କେତେଜଣ ସଭ୍ୟ ଆସି ଏ ଅଭିଯୋଗ କଲେ । ସେମାନେ ଚାହୁଁଥିଲେ, ଡାକ୍ତରଙ୍କୁ ଛାଡ଼ି ଦେବା ପାଇଁ ମାତ୍ର ପୁଲିସ୍ ଆସୋସିଏସନ ଲାଗିଯାଇଥାନ୍ତି ଡାକ୍ତର ଯେପରି ଜେଲ୍ ଯାଏ । ତଦନ୍ତ କାର୍ଯ୍ୟ ଆରମ୍ଭ ପରେ, ମୁଦଲା ଏବଂ ନିର୍ଯ୍ୟାତିତାଙ୍କୁ ଡାକ୍ତର ମାଇନା ପାଇଁ ପଠାଗଲା । ମାତ୍ର ପୁରୀର ଡାକ୍ତରମାନେ ମୁଦଲା ଡାକ୍ତରଙ୍କୁ ସପୋର୍ଟକରି ରିପୋର୍ଟ ଦେବାଯୋଗୁ ନିର୍ଯ୍ୟାତିତାଙ୍କୁ ପୁଣି କଟକ ବଡ଼ ଡାକ୍ତର ଖାନାକୁ ପଠାଗଲା ଏବଂ ଡାକ୍ତରଙ୍କୁ କୋର୍ଟକୁ ଚାଲାଣ କଲାପରେ, ମେଡ଼ିକାଲ୍ ଆସୋସିଏସନ ଷ୍ଟ୍ରାଇକ୍ କରିବ ବୋଲି ନୋଟିସ୍ ଦେଲେ । ସେମାନଙ୍କ ଅଭିଯୋଗ ପୁଲିସ୍ ହାଜତରେ ଡାକ୍ତରଙ୍କୁ ମାଡ଼ ହୋଇଛି ଏବଂ ଡାକ୍ତର ପାଶବିକ ଅତ୍ୟାଚାର କରିନାହାଁନ୍ତି କାରଣ ଭିକ୍‌ଟିମ୍ ଲେଡ଼ିଙ୍କ ସହିତ ତାଙ୍କର ଆଗରୁ ଜଣାଶୁଣା । ସେ ତାଙ୍କୁ ସମ୍ଭୋଗ କରିଛନ୍ତି ତାଙ୍କର ଇଚ୍ଛାନୁସାରେ ମାତ୍ର ଅସମୟରେ ଲେଡ଼ିଙ୍କ ସ୍ୱାମୀ ପହଞ୍ଚିଯିବା ଯୋଗୁ, ସେ ବାଧ ହୋଇ ରିପୋର୍ଟ କଲେ । ଏଣେ ଅତ୍ୟାଚାରିତାଙ୍କ ସ୍ୱାମୀ ଏ.ଏସ୍.ଆଇ, ଆତ୍ମହତ୍ୟା କରିବେ ବୋଲି ଧମକ୍ ଦେଉଥାନ୍ତି ।

ଡାକ୍ତର, ପୁଲିସ୍‌ଙ୍କ କନ୍ଦଳର ସମାଧାନ ଲାଗି ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକଙ୍କ ଦପ୍ତରରେ ଗୋଟେ ମିଟିଂ ହେଲା । ତତ୍‌କାଳୀନ ଘରୋଇ ବିଭାଗ ସଚିବ ଉପସ୍ଥିତ ଥିଲେ । ମିଟିଂରେ ମୁଁ କହିଲି ତଦନ୍ତରୁ ଜଣା ପଡୁଛି, ଘଟଣାଟି ନିଶ୍ଚିତ ଭାବେ ପାଶବିକ ଅତ୍ୟାଚାର । ତେଣୁ ଏହାର ସମାଧାନ କେବଳ କୋର୍ଟରେ ହିଁ ହେବ । ପରେ ମୋତେ ଘରୋଇ ସଚିବ କହିଲେ, ''ତୁମେ ଜାଣିନ, ସେ ମହିଳା ଜଣକ ନିଜ ଇଚ୍ଛାରେ ଡାକ୍ତରଙ୍କ ସଙ୍ଗେ ସେ କାର୍ଯ୍ୟ କରିଛନ୍ତି । ତେଣୁ ଏଇଟା ରେପ ନୁହଁ'' । ମୁଁ ତାଙ୍କୁ କହିଥିଲି ଯେ ଯେତେବେଳେ ନିର୍ଯ୍ୟାତିତା ନିଜେ ଅଭିଯୋଗ କରୁଛନ୍ତି ଏବଂ ପ୍ରମାଣ ମଧ ଅଛି, ତେଣୁ ଏଥିରେ ଆମେ କିଛି କରିପାରିବୁ ନାହିଁ । ଶେଷରେ କ୍ରାଇମ୍ ବ୍ରାଞ୍ଚ କେସ୍‌ର ତଦନ୍ତ ନେଲା ଏବଂ କେସ୍ ଚାର୍ଜସିଟ୍ ପରେ, କୋର୍ଟରେ କନ୍‌ଭିକ୍‌ସନ ହେଲା । ଏଣେ ଡାକ୍ତର ଆଡ଼ିସିନାଲ ଏସ୍.ପି. ମିଃ ମହାପାତ୍ର ଏବଂ ଅନ୍ୟାନ୍ୟ ପୁଲିସ୍ କର୍ମଚାରୀଙ୍କ ନାମରେ କୋର୍ଟ କେସ କରିଥିଲେ । ପରେ ସେ କେସ୍ ମଧ କିଛି ହେଲା ନାହିଁ । ବେଳେବେଳେ ସବୁକାମ ସୁରୁଖୁରୁରେ ସରୁଥିଲା ବେଳେ ଏମିତି ଅପ୍ରିତିକର ଘଟଣା ଘଟେ ।

ରଥଯାତ୍ରା, ବାହୁଡ଼ାଯାତ୍ରା ଏବଂ ପରେ, ଏ.ଏସ୍.ଆଇ. ସ୍ତ୍ରୀଙ୍କ ରେପ୍ କେସକୁ ନେଇ ଯେଉଁ ପ୍ରକାର ପରିସ୍ଥିତି ସୃଷ୍ଟି ହେଲା, ଏହାର ଅବସାନ ଘଟିବା ପରେ ପରେ ମୁଁ ନୟାଗଡ଼

ଗସ୍ତରେ ଯାଇଥାଏ । ନୟାଗଡ଼ ଅଞ୍ଚଳରେ ସେତେବେଳେ ଗୋଟିଏ, ଦୁଇଟି ଡକାୟତି ହୋଇଯାଇଥାଏ ଏବଂ ସେ ପର୍ଯ୍ୟନ୍ତ କେହି ଧରା ପଡ଼ିନଥାନ୍ତି । ମୁଁ ନୟାଗଡ଼ ଗଲା ବାଟରେ ଖବର ପାଇଲି ଯେ ସେଇଦିନ (ଜୁନ୍ ୧୬ ତାରିଖ) ରାଉରକେଲା ରହୁଥିବା ମୋ ସାନଭାଇର ସ୍ତ୍ରୀ ସିରିଅସ୍ ଅବସ୍ଥାରେ ଡାକ୍ତରଖାନାରେ ଚିକିତ୍ସିତ ହେଉଛନ୍ତି, ବଞ୍ଚିବାର ଆଶା କ୍ଷୀଣ । ଏ ଖବର ପାଇଲା ପରେ ମୁଁ ଅଧବାଟରୁ ଫେରି ଭୁବନେଶ୍ୱରରୁ ନୁନା (ମୋ ସ୍ତ୍ରୀ)କୁ ଧରି ରାଉରକେଲା ଯାଇଥିଲି । ରାତି ରାତି ଯାଇ ପରଦିନ ସକାଳୁ (୧୭/୬) ରାଉରକେଲା ଏସ୍.ପିଙ୍କ ଘରେ ପହଞ୍ଚିଲୁ । ହରିପଣ୍ଡା, ସେତେବେଳେ ଏସ୍.ପି. ଥା'ନ୍ତି । ସେତେବେଳକୁ ଦେଵ ସ୍ତ୍ରୀର ମୃତ୍ୟଦେହ, ହସପିଟାଲରୁ ଆସି ପୋଷ୍ଟମର୍ଟମ ସରିଥାଏ । ତେଣୁ ଶବକୁ ଗାଁକୁ ନଆଣି, ରାଉରକେଲା ପାଖ ବେଦବ୍ୟାସଠାରେ ସଂସ୍କାର କରିଦେଲୁ । ସେଠାରୁ ସଂସ୍କାର କରି ଫେରିଲାବେଳକୁ, କଟକରୁ ଡି.ଜି.ଙ୍କ ପାଖରୁ ଖବର ଆସିଲାଯେ, ପୁରୀ ଜିଲ୍ଲାର କଣାସଠାରେ ଗୁରୁତର ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇ, ପୁଲିସ୍ ଗୁଳିଚାଳନା କରିଛି । ଅବସ୍ଥା ଗୁରୁତର ଦୃଷ୍ଟିରୁ ମୋତେ ଫେରିବାକୁ କୁହାଯାଇଛି । ସେତେବେଳକୁ ଦୁଇଦଳଙ୍କ ଦଙ୍ଗାରେ ଦୁଇଜଣ ମୃତ୍ୟୁବରଣ କରିଥାନ୍ତି । ମୁଁ ଏସ୍.ପି.ଙ୍କ ବାସଭବନରୁ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ ମିଃ ତିୱାରୀଙ୍କ ସଙ୍ଗେ କଥା ହେଲି । ସେ ଅତ୍ୟନ୍ତ ବିଚଳିତ ହେଲାପରି ଜଣା ପଡୁଥିଲେ । ମୋର ଅବସ୍ଥା ଜାଣିମଧ, ସେ ମୋତେ ଶୀଘ୍ର ଫେରିଆସିବାକୁ କହିଲେ । ମୁଁ ପୂର୍ବଦିନ ରାତ୍ରି ତମାମ ଗାଡ଼ିରେ କଟକରୁ ଆସି ସକାଳୁ ରାଉରକେଲାରେ ପହଞ୍ଚି ଶବ ଦାହ କାର୍ଯ୍ୟରେ ବ୍ୟସ୍ତଥିବା ଯୋଗୁ ଟିକିଏ ବି ବିଶ୍ରାମ କରିବାକୁ ସମୟ ପାଇନଥିଲି, ତଥାପି, ବାଧହୋଇ ସନ୍ଧ୍ୟା ପୂର୍ବରୁ ଦେବର ଦୁଇ ଛୋଟଛୋଟ ପିଲାଙ୍କୁ ଧରି, ରାଉକେଲାରୁ ବାହାରିଲି । ଗାଡ଼ି ଚାଳକ, ଦୁଇରାତି ହେଲା ଶୋଇ ନଥାଏ । ଆସ୍ତେ ଆସ୍ତେ ଗାଡ଼ିରେ ଆସି ଆମେ ସକାଳୁ ସକାଳୁ ପୁରୀରେ ପହଞ୍ଚିଲୁ । ପୁରୀରେ ପିଲାଙ୍କୁ ଛାଡ଼ି, ମୁଁ ସଙ୍ଗେ ସଙ୍ଗେ କଣାସ ଗଲି । ପୁଲିସ୍‌ରେ ଚାକିରୀ କଲେ, ମଣିଷ ନିଜର ସାମାଜିକ କାର୍ଯ୍ୟକୁ ମଧ ପଛକୁ ପକେଇବାକୁ ବାଧ ହୁଏ । କେହି ଜଣେ ସାଧାରଣରେ ସିମ୍ପାଥେଟିକି ହୁଅନ୍ତି ନାହିଁ, ବରଂ ନିଜ ଉପରେ ଦାୟିତ୍ୱ ନ ନେଇ, ଅନ୍ୟ ଉପରକୁ ଖସେଇ ଦେଇ, ଦୂରେଇ ଯିବାକୁ ଚେଷ୍ଟା କରନ୍ତି । ଏହାର ଅଳ୍ପଦିନ ଆଗରୁ ଚିଲିକାରେ ପୁଲିସଗୁଳି ଚାଳନାରେ ୪ ଜଣ ମରିଥିଲେ, ପୁଣି କଣାସରେ ୨ ଜଣ ଦଙ୍ଗାରେ ମଲେଣି, ପୁଲିସ ଫାଙ୍କା ଗୁଳିଚାଳନା କରିଛି । ଉତ୍ତେଜନା ଯେତେବେଳେ ରହିଛି କେହି ତାହାର ଦାୟିତ୍ୱ ନେବାକୁ ପ୍ରସ୍ତୁତ ନଥିଲେ । ମୋର ପାରିବାରିକ ଅବସ୍ଥା ଯାହାଥିଲେ ମଧ, ଜାଣିକରି କେହି ସହାନୁଭୂତିଶୀଳ ହେବାକୁ ପ୍ରସ୍ତୁତ ହେଲେନି ବରଂ କ୍ରୋଧ ପ୍ରକାଶ କରିବାକୁ ପଛେଇଲେନି ।

କଣାସ ଅଞ୍ଚଳରେ ସେତେବେଳେ ଗୁରୁତର ସମସ୍ୟା କଣାସ ତଳ ଅଞ୍ଚଳ ଏବଂ ଉପର ଅଞ୍ଚଳକୁ ନେଇ ଲାଗିରହିଥାଏ । କଣାସ ବ୍ଲକ୍‌ର ଦୁଇପଟେ ଲୁଣା ଆଉ ଭାର୍ଗବୀ ନଦୀ ପ୍ରବାହିତ । ଦୁଇଟିଯାକ ନଦୀ ଚିଲିକାରେ ପଡ଼ିଛି । ବହୁକାଳରୁ, ବର୍ଷାଦିନେ ଏଇ ନଦୀମାନଙ୍କର ବନ୍ୟାଜଳ

ତଳି ଅଞ୍ଚଳକୁ ପ୍ଲାବିତ କରିରଖେ । ଗାଁ ଗୁଡ଼ିକ ଟାପୁ ପରି ରହିଯାଏ ମାତ୍ର ପାଣି ଖଲାସ ହୋଇଗଲା ପରେ ପୁଣି ପୂର୍ବ ଅବସ୍ଥାକୁ ଫେରିଆସେ । ନଦୀର ବନ୍ୟାଜଳର ସ୍ରୋତ ତୀବ୍ରଥିବା ଯୋଗୁ ନଈ ଯେଉଁଠି ଚିଲିକାରେ ମିଶିଛି, ସେଇଠୁ ଚିଲିକା ଭିତର ପର୍ଯ୍ୟନ୍ତ ବନ୍ୟାପାଣି ପ୍ରବେଶ କରେ ଏବଂ ନଦୀ ମୁହାଣ ଗଭୀର ଥାଏ । ହୀରାକୁଦ ବନ୍ଧ ହେବା ପରଠାରୁ ଏଇ ଦୁଇ ନଦୀରେ ବନ୍ୟାଜଳସ୍ରୋତର ପ୍ରଖରତା କମିଗଲା । ପରକାଳରେ କରମଳା ଠାରୁ ଗଡ଼ିଶଗଦା ପର୍ଯ୍ୟନ୍ତ ଗୋଟିଏ ରିଙ୍ଗବନ୍ଧ, ଯାତାୟାତ ସୁବିଧା ଲାଗି କରିବା ଦ୍ୱାରା ନଦୀ ମୁହାଣ କାଳକ୍ରମେ ପୋତି ହୋଇଗଲା । ବର୍ଷାଦିନେ ବର୍ଷାପାଣି ନିଷ୍କାସନ ପାଇଁ ଯେଉଁ ନଳା ନିର୍ମାଣ କରାଯାଇଥିଲା, ସେଥିରେ ଜଳ ନିଷ୍କାସନ ପୂରାମାତ୍ରାରେ ନହେବା ଯୋଗୁ, କଣାସ ତଳ ଅଞ୍ଚଳରୁ ପ୍ରାୟ ୩୨ ଖଣ୍ଡ ଗାଁର ଲୋକମାନେ ବର୍ଷାଦିନେ ମାସ ମାସ ଧରି ପାଣି ଘେର ମଧ୍ୟରେ ରହିବାକୁ ବାଧ ହେଲେ ଏବଂ ବର୍ଷାଦିନରେ ଧାନ ଫସଲ କିଛି ହେଲାନାହିଁ । ବର୍ଷାଦିନ ପରେ ଖରାଦିନେ ମଧ ଚିଲିକା ପାଣି ମାଡ଼ି ଆସିବା ଯୋଗୁ ଲୁଣି ପାଣିରେ ମଧ ଖରାଦିନିଆ ଫସଲ ହେଲାନି । ଏଥିଲାଗି ତଳିଅଞ୍ଚଳର ଗାଁ ଲୋକମାନେ କେତେବର୍ଷ ହଇରାଣ ହେଲାପରେ, ନିଷ୍ପତ୍ତି ନେଇ ତଳ କଣାସ ଉପର ମୁଣ୍ଡରେ, ଅର୍ଥାତ୍ କଣାସ ବ୍ଲକ୍‌ର ଠିକ୍ ମଝିରେ ଦୟାନଦୀ ବନ୍ଧରୁ ଆଉ ଗୋଟିଏ ଘେରି ବନ୍ଧ ନେଇ ଲୁଣାନଦୀ ବନ୍ଧ ଦେହରେ ଯୋଗ କରିଦେଲେ । ଅବଶ୍ୟ ଏଥିରେ ସରକାର କିଛି ସାହାଯ୍ୟ କରିଥିଲେ । ସବୁଠାରେ ରାଜନୈତିକ କାରଣ ଥାଏ । ଏଠରେ ମଧ ସେଇ କାରଣ ଥିଲା । ଏଇ ଘେରିବନ୍ଧ ଯୋଗୁ ଉପର କଣାସ—ତଳ କଣାସ ମଧ୍ୟରେ ଝଗଡ଼ାର ସୂତ୍ରପାତ୍ର ହେଲା । ଆଠ ଦଶଫୁଟ ଉଚ୍ଚ ଏବଂ ୫ ଫୁଟ୍ ଦୈର୍ଘ, ୮ କିଲୋମିଟର ଲମ୍ବ ଏଇ ବନ୍ଧଯୋଗୁ, ବର୍ଷା ଦିନେ ଉପର କଣାସର ପାଣି ତଳକୁ ଯାଇ ନପାରି, ଉପରର ୨୬ ଖଣ୍ଡ ଗାଁ ଲୋକଙ୍କର ଫସଲ ବୁଡ଼ାଇ ଦେଲା । ଏପରିକି ଗାଁ ମଧ୍ୟରେ ପାଣି ପଶିଗଲା । ଉପର ବାଲା ଦାବି କଲେ, ଏଇ ବନ୍ଧ କଟାଯାଉ ଏବଂ ପାଣି ଯେପରି ଆବହମାନ କାଳରୁ ଯାଉଥିଲା, ସେପରି ଯାଉ—ମାତ୍ର ତଳ ୩୨ ଖଣ୍ଡ ଗାଁ ମନାକଲେ । ସେମାନେ କହିଲେ ସରକାର ଏହାର ସୁବନ୍ଦୋବସ୍ତ ନକରି ଆମକୁ ବର୍ଷାଜଳ ଘେରି ଭିତରୁ ଉଧାର ନକରିବା ପର୍ଯ୍ୟନ୍ତ, ଆମେ ଘେରି ବନ୍ଧ କଟାଇଦେବୁନି । ଦୁଇ ଦଳଙ୍କ ମଧ୍ୟରେ ଗଣ୍ଡଗୋଳ ଆଶଙ୍କା କରି ପୁଲିସ୍ ଉଭୟ ଦଳଙ୍କୁ ୧୦୭ ଦଫାରେ ଶାନ୍ତିରକ୍ଷା କରିବା ପାଇଁ ରିପୋର୍ଟ ଦେଇଥିଲା । ଏହାସତ୍ତ୍ୱେ ଉପରକଣାସରର ୨୬ ଖଣ୍ଡ ଗାଁ ଏବଂ ତଳ ୩୨ ଖଣ୍ଡ ଗାଁବାଲାଙ୍କ ମଧ୍ୟରେ ଘେରିବନ୍ଧକୁ କାଟିବାକୁ କେନ୍ଦ୍ର କରି, ବର୍ଷାଦିନେ ଦଙ୍ଗା ଆରମ୍ଭ ହେଲା ଏବଂ ପୁଲିସ୍ ଏଇ ଦୁର୍ଗମ ଅଞ୍ଚଳକୁ କଣାସରୁ ଦଶ କିଲୋମିଟର ଚାଲି ଚାଲି ପହଞ୍ଚିଲା ବେଳକୁ ଦଙ୍ଗାରେ ଦୁଇଜଣ ପ୍ରାଣ ହରାଇ ସାରିଥିଲେ ଏବଂ ଉଭୟପଟରୁ ବହୁଲୋକ ଖଣ୍ଡିଆ ଖାବରା ହୋଇଥିଲେ । ଏହାପରେ ଗୋଟିଏ ପ୍ଲାଟୁନ୍ ପୁଲିସ୍ ରହିବାର ବନ୍ଦୋବସ୍ତ ମଝି—ଘେରୀ ବନ୍ଧ ପାଖକୁ ଲାଗି ଗୋଟିଏ ଉ.ପ୍ରା. ବିଦ୍ୟାଳୟରେ ହେଲା । ସେଠାକୁ ଯିବାକୁ ହେଲେ, (ଜିପ୍)ରେ କଣାସ ଠାରୁ ୬ କିଲୋମିଟର ଗଲାପରେ, ଚାଲି ଚାଲି ଆଉ ଦୁଇ କିଲୋମିଟର ଯିବାକୁ ପଡୁଥିଲା । ବିଦ୍ୟାଳୟର ଚାରିପଟେ ଧାନ ବିଲ, ସାପ, ପିଇବାକୁ

ପାଣି ନଥାଏ । ସେଇଠି ପୁଲିସ୍ ତମ୍ବୁ ପକାଇ ରହିଲା । କିଛି ଦିନ ରହିଲା ପରେ ପୁଲିସ ମଧ୍ୟ ସେପରି ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ରହିବାକୁ ଇଚ୍ଛା କଲାନି ମାତ୍ର କର୍ତ୍ତବ୍ୟଦୃଷ୍ଟିରୁ ରହିବାକୁ ବାଧ୍ୟ ହୋଇଥାଏ । ଏଠାରେ ମୋତେ କେତେ ରାତ୍ରି କଟାଇବାକୁ ପଡ଼ିଛି । ଅତିରିକ୍ତ ଏସ୍.ପି, ଡି.ଏସ୍.ପି ଏମାନେ ମଧ୍ୟ ଏଠାରେ ଦିନ ଦିନ ଧରି ରହିଛନ୍ତି । ପରବର୍ତ୍ତୀ କାଳରେ ଆଇନ୍ ଶୃଙ୍ଖଳାକୁ ଲକ୍ଷ୍ୟ କରି ଗଡ଼ିଶାଗଦା, ଅନ୍ୟସ୍ଥାନରେ ମଧ୍ୟ ପୁଲିସକୁ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଯାଗାରେ ମାସ ମାସ ଧରି ତମ୍ବୁମଧ୍ୟରେ ରହିବାକୁ ପଡ଼ୁଥିଲା । ଏକଥା ମଧ୍ୟ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜେ.ବି.ପଟ୍ଟନାୟକଙ୍କ ପାଖେ ଉପସ୍ଥାପିତ ହେଲା ଏବଂ ଏଥିଲାଗି ଗୋଟିଏ କମିଟି କେନ୍ଦ୍ରାଞ୍ଚଳ ଆର.ଡି.ସିଙ୍କ ଚେୟାରମ୍ୟାନସିପ୍‌ରେ ଗଢ଼ା ହୋଇ ଏହାର ପ୍ରତିକାର କରିବାକୁ କୁହାଯାଇଥିଲା । ଏହାର ସଂପୂର୍ଣ୍ଣ ସମାଧାନ ଏବେ ସୁଧା ହୋଇନାହିଁ । ଦଳୀୟ ରାଜନୀତିର ସଂଘର୍ଷରେ ଶହ ଶହ ପରିବାର ବର୍ଷ ବର୍ଷ ଧରି ଦୟନୀୟ ଅବସ୍ଥାରେ ସମୟ କଟାଉଛନ୍ତି ।

## ସାଧୁବେଶରେ ଡକାୟତ ଧରା :

ବଣାସ ଦଙ୍ଗା ହଙ୍ଗାମ କମିଲା ପରେ, ଜିଲ୍ଲାରେ ଅପରାଧ ମୁଖ୍ୟତଃ ଡକାୟତି ବଢୁଥିବା ବିରୁଦ୍ଧରେ କାର୍ଯ୍ୟକରିବାକୁ ଠିକ୍ କଲି । ସେତେବେଳେ ଚାରୋଟି ଡକାୟତଦଳ ପୁରୀ, କଟକ, ଭୁବନେଶ୍ୱର, ଗଞ୍ଜାମ, ଫୁଲବାଣୀ ଛଡ଼ା କଲିକତା, ଜାମ୍‌ସେଦପୁର ଅଞ୍ଚଳରେ ଡକାୟତିରେ ଲିପ୍ତ ରହୁଥିଲେ । ଏଇ ଚାରୋଟି ଡକାୟତ ଦଳ ମଧ୍ୟରୁ, କଟକ ଜିଲ୍ଲାର "ସାହୁଦଳ" ପୁରୁଣା ଜଣାଶୁଣା ଡକାୟତମାନଙ୍କୁ ଧରି ସଶସ୍ତ୍ର ଡକାୟତି ଅବିଭକ୍ତ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ କରୁଥାନ୍ତି । ଏଇ ଦଳ ପୁରୀର ପିପିଲି, ସତ୍ୟବାଦୀ ଅଞ୍ଚଳରେ ଦୁଇଟି ବଡ଼ ଧରଣର ଡକାୟତି କରିଥାନ୍ତି । ଏଇ ଦଳକୁ ଧରିବା ପାଇଁ ମୁଁ ଚେଷ୍ଟା କରିମଧ୍ୟ କିଛି ସନ୍ଧାନ ପାଉନଥାଏ । ଦିନେ ଟାଙ୍ଗି ଥାନାରେ ଜଣେ ପୁରୁଣାନାମ୍‌ଜାଦା ଡକାୟତ ଦିବାକର ଶ୍ରୀଚନ୍ଦନ ସଙ୍ଗେ ତାରାଦେବୀଙ୍କ ପିଠ ପାଖେ ଦେଖା ହେଲା । ସେ କେତେକ ଡକାୟତ କେସରୁ ମୁକୁଳି, ଜେଲ୍ ଭୋଗି ଘରେଥାଏ । ତା ସଙ୍ଗେ କଥାବାର୍ତ୍ତା ହେଲା ପରେ, ତାକୁ ପୁରୀ ଆସିବାକୁ କହିଲି ଏବଂ ପରେ ତାକୁ ହୋମଗାର୍ଡ଼ରେ କିଛିଦିନ ପାଇଁ ମୁତୟନକରି କାମ କରିବାକୁ କହି ତାର କାର୍ଯ୍ୟକଳାପ ଉପରେ ନଜର ରଖିଥାଏ । ଟାଙ୍ଗି ଥାନା ତାକୁ ଯେତିକି ବ୍ୟବହାର କରୁନଥିଲେ, ମୁଁ ତାକୁ ପୁରୀ ସହରରେ ଅଧିକ ବ୍ୟବହାର କରୁଥିଲି । ସେ ଆସ୍ତେ ଆସ୍ତେ ପକେଟମାରୁଙ୍କ ଠାରୁ ଆରମ୍ଭ କରି ପୁରୀ ସହରକୁ ଆସୁଥିବା ଚୋରମାନଙ୍କ ବିଷୟରେ ଖବର ଦେଲା । ହଠାତ୍ ତାକୁ ମୁଁ ଡକାୟତ ଦଳ କଥା କହିନଥାଏ । କିଛି ଦିନ ପରେ, ମୁଁ ତାକୁ ସତ୍ୟବାଦୀ, ପିପିଲି ଥାନାରେ ଡକାୟତି କଥା କହିବାରେ, ସେ ଭୁବନେଶ୍ୱର କଟକ ବୁଲି ଖବର ଆଣିବ ବୋଲି କହି ମୋ ଠାରୁ ଟ ୩୦୦ ନେଲା । ଆଠଦିନ ପରେ, ଖବର ଦେଲା ଯେ, "ସାହୁଦଳ ସତ୍ୟବାଦୀ ଡକାୟତିରେ ଅଛନ୍ତି । ସେମାନେ ଭୁବନେଶ୍ୱରର କେଦାର ଗୌରୀ, ମାଉସୀ ମା ମନ୍ଦିର ପାଖା ପାଖି ସ୍ଥାନମାନଙ୍କରେ ମିଶୁଥିବା ବେଳେ, ଦଳର ନେତା କଟକ ଥିଡ଼େ ରହୁଛି । ସେ ଆଉ

ଗୋଟିଏ ଖବର ଦେଲା ଯେ, ସେମାନେ ପୁରୀ ଜିଲ୍ଲାର କୋଣାର୍କ ଥାନା ଅଞ୍ଚଳରେ ଟିକନା ପାଖାପାଖି ଗୋଟେ ଗାଁରେ ଜଣଙ୍କ ଘରେ ଅଳ୍ପଦିନ ମଧ୍ୟରେ ଡକାୟତି କରିବେ ବୋଲି ଠିକ୍ କରି, ସେ ଘର ଦେଖି ଆସିଥାନ୍ତି ।'' ଏକଥା ଶୁଣିଲା ପରେ, ମୁଁ ତାକୁ ଆଉକିଛି ପଇସା ଖର୍ଚ୍ଚ ପାଇଁ ଦେଇ, ପୁଣି ସଠିକ୍ ଖବର ଆଣିବା ପାଇଁ ପଠାଇଲି । ତିନି ଦିନ ପରେ ଫେରି ସେ ଖବର ଦେଲା ସେ ନିଜେ ଡକାୟତ ଦଳର ମୁଖ୍ୟକୁ ଦେଖାକରି, ତାଙ୍କ ସଙ୍ଗେ ଡକାୟତି କରିବାରେ ଯିବ ବୋଲି କହିଛି । ସେମାନଙ୍କ ମଧ୍ୟରୁ ଜଣେ ଡକାୟତ, ଭୁବନେଶ୍ୱର ମାଉସୀମା ମନ୍ଦିର ପାଖେ ଗୋଟିଏ ସୁନ୍ଦରୀ ଯୁବତୀଙ୍କୁ ଧରି ରହୁଛି । ସେ ଯୁବତୀଙ୍କ ଘର ମେଦନାପୁର ଆଡ଼େ ବୋଲି ଖବର ଦେଲା । ପ୍ରାୟ ସପ୍ତାହରେ ଦିନେ ଦୁଇଦିନ ଦଳ ସେଠାରେ ମିଶନ୍ତି । ତାଙ୍କ ଭିତରୁ କେତେ ଜଣ ତାର ପୁରୁଣା ଦଳରେ ତା' ସହିତ ଆଗରୁ ଡକାୟତି କରିଥିଲେ । ଶ୍ରୀଚନ୍ଦନ ଆହୁରି ମଧ୍ୟ କହିଥିଲାଯେ ଦୁଇଦିନ ପରେ ସେଇ ଦଳ ପୁରୀ ଜିଲ୍ଲାର ଟିକିନା ଗାଁରେ ଡକାୟତି କରିବେ । ପ୍ରଥମେ ସ୍ଥାନୀୟ ଡକାୟତ ଯେ ଖବର ଦେଇ ଘର ଠିକ୍ କରିଛି, ସେ ଆଗ ଭୁବନେଶ୍ୱରରୁ ବସ୍‌ରେ ଆସି, ବାଟମଙ୍ଗଳା ପାଖେ ଅପେକ୍ଷା କରିବ । ସେ ମଧ୍ୟ ସେଇଠି ତା ସଙ୍ଗେ ମିଶି ଅପେକ୍ଷା କରିବ । ଠିକ୍ ଚାରିଟା ବେଳକୁ କଟକରୁ ଆଉ ତିନିଜଣ ବସ୍‌ରେ ଆସି, ବାଟମଙ୍ଗଳା ପାଖେ ଓହ୍ଲେଇବେ ଏବଂ ସାଢ଼େ ଚାରିଟା ସୁଦ୍ଧା, ସର୍ଦ୍ଦାର କାରରେ ଅନ୍ୟମାନଙ୍କ ସାଙ୍ଗେ ଆସି ବାଟମଙ୍ଗଳାରେ ପହଞ୍ଚିବେ । ସମସ୍ତେ ପହଞ୍ଚିଲା ପରେ ବାଟମଙ୍ଗଳାରେ ପୂଜା କରି, ପୁରୀରୁ କୋଣାର୍କ ରାସ୍ତାରେ ସେଇ ଆମ୍ବାସଡ଼ର ଗାଡ଼ିରେ ଯିବେ ଏବଂ ରାତି ୧୨ଟା ମଧ୍ୟରେ ଡକାୟତି କରିବେ । ସେ ମଧ୍ୟ ଆହୁରି ଖବର ଦେଲାଯେ, ତାଙ୍କ ସାଙ୍ଗରେ ଦୁଇଟି ଦୋନଳିଆ ବନ୍ଧୁକ, ଦେଶୀ ପିସ୍ତଲ, ପ୍ରାୟ ୨୦ ରୁ ୩୦ ହାତ ବୋମା ଆଣିବେ । ଆଗରୁ ଏମାନେ ଡକାୟତି କରିବା ବେଳେ କେତେ ସ୍ଥାନରେ ଘରର ଲୋକମାନଙ୍କୁ ହତ୍ୟା ମଧ୍ୟ କରିଥିବାର ମୁଁ ଜାଣିଥିଲି ।

ତା ଠାରୁ ସବୁ ଖବର ଶୁଣି, ସନ୍ଧ୍ୟା ପରେ ତାକୁ ସାଙ୍ଗରେ ନେଇ ବାଟମଙ୍ଗଳା ମନ୍ଦିର ପାଖକୁ ଗଲି ଏବଂ ସେଠାରୁ ଫେରି, ଡକାୟତ ଦଳକୁ କିପରି ଧରାଯିବ, ତାର ପ୍ଲାନ୍ କଲି । ସେଦିନ ଏକଥା ମୋ ଛଡ଼ା ଆଉ କାହାକୁ କହିନଥିଲି । ଯେଉଁଦିନ ଡକାୟତମାନେ ବାଟମଙ୍ଗଳା ପାଖେ ଏକତ୍ରିତ ହେବେ, ସେଇଦିନ ୨ଟା ବେଳକୁ ସର୍ଜେଣ୍ଟ, ଲୋକାଲ୍ ଇନିସ୍‌ପେକ୍ଟର, ଦୁଇଜଣ ଏସ୍.ଆଇ. ଏବଂ ଜୁଡ଼ୋ ଟ୍ରେନିଂ ପାଇଥିବା ଛ'ଜଣ କନେଷ୍ଟବଲଙ୍କୁ, ଏସ୍.ପି ବଙ୍ଗଳାକୁ ଡକାଇ ସେମାନଙ୍କୁ ମୋ ପ୍ଲାନିଂ ବିଷୟରେ କହିଲି । ମୋର ପ୍ଲାନିଂଥିଲା ''ମୁଁ ବାଟମଙ୍ଗଳା ମନ୍ଦିରରେ ପୂଜା କରିବା ପାଇଁ, ଜଣେ ସାଧୁ ବେଶରେ ପୂଜା ସାମଗ୍ରୀ ଧରି ପୂଜା କରିବି । ମନ୍ଦିର ମଧ୍ୟରୁ ବାହାରକୁ ଦେଖାଯାଉଥିବା ସ୍ଥାନରେ ଦିବାକର ରହିବ । ଦିବାକର ପାଖାପାଖି ଅଳ୍ପ ଦୂରରେ ସର୍ଜେଣ୍ଟ ଫୁଲ ବିକିବେ ଏବଂ ଜଣେ ଜୁଡ଼ୋ କନେଷ୍ଟବଲ କଦଳୀ ବିକ୍ରି କରିବେ । ବାକି ସମସ୍ତେ ଅଳ୍ପଦୂରରେ ସାଧା ପୋଷାକରେ ଥିବେ । ସର୍ଜେଣ୍ଟ, ଏସ୍.ଆଇ ପିସ୍ତଲ ରଖିବେ ଏବଂ ଜୁଡ଼ୋବାଲା ମଧ୍ୟ ପିସ୍ତଲ ରଖିବେ । ଲୋକାଲ ଥାନା ଅଫିସର ଜିପ୍‌ରେ ବାଟମଙ୍ଗଳା ଠାରୁ

ଅଳ୍ପଦୂର ପେଟ୍ରୋଲ ପମ୍ପ ଠାରେ ଗାଡ଼ିରେ ଓ୍ୱାରଲେସ୍ ଲଗାଇ ଅପେକ୍ଷା କରିବେ । ମନ୍ଦିର ମଧ୍ୟରେ ମୋ ପୂଜା ମୁଣି ମଧ୍ୟରେ, ମୁଁ ବେତାରଯନ୍ତ୍ର ମ୍ୟାନ୍‌ପାକ୍ ସେଟ ନେଇଥିବି । ଯେତେବେଳେ ସବୁ ଡକାୟତ ଏକତ୍ର ହୋଇ ମନ୍ଦିର ମଧ୍ୟକୁ ପଶିବେ, ମୋ ଠାରୁ ଇଙ୍ଗିତ ପାଇ ସେମାନଙ୍କୁ ଘେରାଉ କରାଯିବ ।

ଉପରୋକ୍ତ ପ୍ଲାନିଂ ମୁତାବକ, ସେଦିନ ସବୁ ଠିକ୍ ହେଲା ଏବଂ ଦିନ ୩ ୧/୨ ପୂର୍ବରୁ ଆମେ ସମସ୍ତେ ନିଜ ନିଜ ସ୍ଥାନରେ ରହିଗଲୁ । ସେତେବେଳେ ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ପ୍ରଶାନ୍ତ ନନ୍ଦ, ଭୁବନେଶ୍ୱର ହୋଟେଲ୍ ଇଣ୍ଟରନ୍ୟାସନାଲରେ ରହି ଚଳଚ୍ଚିତ୍ର ପ୍ରଯୋଜନା କରୁଥାନ୍ତି । ତାଙ୍କର ମେକପ୍ ଲୋକଙ୍କୁ ଡକାଇ ମୁଁ ସାଧୁ ବେଶ ଧାରଣ କଲି । ଗେରୁଆ ବସ୍ତ୍ର ସଙ୍ଗେ, ମୁହଁରେ ଦାଢ଼ି ଇତ୍ୟାଦି । ମୁଁ ବାଟମଙ୍ଗଳା ମନ୍ଦିର ମଧ୍ୟର ପ୍ରବେଶ କଲା ପରେ ପ୍ରଥମେ ପୂଜାହାରୀର ସନ୍ଦେହ ଆମ ଉପରେ ହେଲା, ମାତ୍ର ପୂଜା, ପଇସା ନେଲା ପରେ ସେ ପୂଜା କାମରେ ବ୍ୟସ୍ତ ରହିଲେ । ବାହାରେ ଅଦିନିଆ କଦଳୀ,ଫୁଲ ବିକ୍ରି ବାଲାକୁ ଦେଖି ସ୍ଥାନୀୟ ଲୋକ ସନ୍ଦେହ କଲେମଧ, ଯେ ଯାହାବାଟରେ ଯାଉଥାନ୍ତି । ଦିନ ସାଢ଼େତିନିଟା ଚାରିଟା ବେଳକୁ ଲୋକ ଯିବା ଆସିବା ବହୁତ କମ୍ ଥାଏ । ଦିବାକର ପ୍ରଥମରୁ ଆସି ପହଞ୍ଚିଗଲା । ତାପରେ ୪ଟା ପୂର୍ବରୁ ଲୋକାଲ ଡକାୟତ ହାତରେ ଗୋଟେ ବ୍ୟାଗ୍ ଧରି ବସରୁ ଓହ୍ଲାଇ ଦିବାକର ପାଖରେ ଠିଆ ହୋଇ କଥାବାର୍ତ୍ତା କଲା । ସେ ଆସିଲାପରେ, ବାହାରୁ ଇଂଗିତରେ ଦିବାକର ମୋତେ ତାର ଆସିବା କଥା କହିଦେଇଥାଏ । ଠିକ୍ ଚାରିଟା ପନ୍ଦର ବେଳକୁ ୩ଜଣ ଡକାୟତ ଭୁବନେଶ୍ୱର ବସରୁ ଓହ୍ଲାଇ ଠିଆହେଲେ । ଦିବାକର ଆଗରୁ କହିଥାଏ ଯେ, ଡକାୟତ ଧରିଲା ବେଳେ, ସେ ବି ଦଉଡ଼ିବ । ତାକୁ ମଧ ଧରି, ହାଜତକୁ ନବାକୁ ହେବ – ନହେଲେ ସେ ସବୁ ଖବର ଦେବାକଥା ଜାଣିଲେ, ତାକୁ ମାରିଦେବେ । ସେମାନେ ପହଞ୍ଚିବାର ଅଧଘଣ୍ଟାକ ପରେ, ଆମ୍ୱାସଡ଼ର କାରରେ ସର୍ଦ୍ଦାର ସଙ୍ଗେ ଆଉ ୫ ଜଣ ପହଞ୍ଚିଲେ । ଗାଡ଼ିକୁ ମନ୍ଦିର ସାମ୍ନାରେ ପାର୍କିଂକରି ଫୁଲ, ଧୂପ, ନଡ଼ିଆ କିଣିଲେ । ଦିବାକର ଏଇ ସୁଯୋଗରେ ମୋତେ ଇଂଗିତ ଦେଲାଯେ, ସମସ୍ତେ ଆସିଗଲେ । ମୁଁ ଫୁଲବିକାଳୀ ସର୍ଜେଣ୍ଟକୁ ମନ୍ଦିର ମଧ୍ୟରୁ ଇଂଗିତ ଦେଲି, ପସ୍ତୁତ ହୋଇ ଯିବାପାଇଁ । ସବୁକାମ କେବଳ ଆଖିର ପଲକ ଆଉ ଇଂଗିତ ମାଧମରେ ହୋଇଥାଏ ।

ଡକାୟତ ଦଳ ମନ୍ଦିରରେ ପ୍ରବେଶ କଲାପରେ, ସର୍ଜେଣ୍ଟ ଏବଂ ସାଧାପୋଷାକ ପୁଲିସ ଘେରାଉ କରିଦେଲେ । ମୁଁ ମନ୍ଦିର ମଧ୍ୟରୁ ବାହାରି ପିସ୍ତଲ ଦେଖାଇ ଚାରିଜଣକୁ କାବୁ କଲାବେଳେ, ଦଳର ସର୍ଦ୍ଦାର ଦଉଡ଼ିବାକୁ ଆରମ୍ଭ କଲା ଏବଂ ପିସ୍ତଲରୁ ସାଧାପୋଷାକଧାରୀ ପୁଲିସ ଉପରକୁ ଗୁଳି ଚଳାଇଲା । ପୁଲିସ୍ ପାଲଟା ଗୁଳି ଚଳାଇ ତାକୁ କିଛି ବାଟ ଗୋଡ଼େଇ ସର୍ଜେଣ୍ଟ ଏବଂ ମୋ ଡ୍ରାଇଭର ଧରିଲେ । ଦିବାକର ଏବଂ ତା ସାଙ୍ଗରେ ଥିବା ୩ ଜଣ ଡକାୟତ ଦଉଡ଼ିବା ବେଳେ, ତାଙ୍କୁ ଜୁଡ଼ୋ କନେଷ୍ଟବଲମାନେ କାବୁ କରିଦେଲେ । ଦିବାକର ବିଚରା ମାଡ଼ ଖାଇଲା । ୯ଜଣ ଡକାୟତ ଧରା ପଡ଼ିଲେ । ସେମାନଙ୍କ ପାଖରୁ ଦୁଇଟି ବନ୍ଧୁକ, ହାତବୋମା, ଦେଶୀ ପିସ୍ତଲ ସବୁ ଜବତ ହେଲା ଏବଂ କଟକ, ବାଲେଶ୍ୱରର ଅଫିସରମାନେ,

ସତ୍ୟବାଦୀଥାନାରେ ପହଞ୍ଚି ସୋମାନଙ୍କୁ ପଚରା ଉଚରା କଲା ପରେ ବହୁ ଡକାୟତି କେସ୍‌ରେ ସେମାନେ ଜଡ଼ିତଥିବା ଜଣା ପଡ଼ିଲା ଏବଂ ଚୋରିଯାଇଥିବା ସମ୍ପତ୍ତି ଓଡ଼ିଶାର ବହୁସ୍ଥାନରୁ ଜବତ ହେଲା । ସେମାନେ ପରବର୍ତ୍ତୀ କାଳରେ କୋର୍ଟରେ ଦଣ୍ଡିତ ହେଲେ ।

ପୂଜାହାରୀ ବେଶରେ ଡକାୟତ ଦଳଙ୍କୁ ଧରିବା କଥା, ଓଡ଼ିଶାର ସବୁ ଖବର କାଗଜରେ ପ୍ରକାଶ ପାଇଲା । ଓଡ଼ିଶାରୁ ପ୍ରକାଶ ପାଉଥିବା ଇଂରାଜି ଦୈନିକ ପତ୍ରିକା ''ଓଡ଼ିଶା ଟାଇମ୍‌ସ'' ଏହାଉପରେ ଏଡ଼ିଟୋରିଆଲ୍ ଲେଖିଥିବା ବେଳେ ବମ୍ବେର ଇଲଷ୍ଟ୍ରେଟେଡ୍ ଇକ୍‌ଲିରେ ମଧ୍ୟ ଏ ସମ୍ବାଦ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ମଧ୍ୟ ଆଉ ଗୋଟେ ଦଳକୁ ସେଇପରି ଭାବେ ଧରିଥିଲୁ । ପୁରୀ, ନୟାଗଡ଼ରେ ହେଉଥିବା ଡକାୟତି ବହୁ ପରିମାଣ କମିଗଲା ଏବଂ ଦୁର୍ଦ୍ଦାନ୍ତ ଦଳ, ଯେଉଁମାନେ ବିଭିନ୍ନ ପଡ଼ୋଶୀ ଜିଲ୍ଲାମାନଙ୍କରେ ଡକାୟତି କରୁଥିଲେ, ସେମାନଙ୍କ ମଧ୍ୟରୁ ବହୁ ଅପରାଧି ଜେଲ୍ ମଧ୍ୟକୁ ଗଲେ । ଜିଲ୍ଲାରେ ଅପରାଧ କମିବା ସାଙ୍ଗେ ସାଙ୍ଗେ, ଡିଟେକ୍‌ସନ ମଧ୍ୟ ବଢ଼ିଲା । ପୁରୀ ଜିଲ୍ଲାର (ଅବିଭକ୍ତ ଜିଲ୍ଲାର) ଆଇନ୍ ଶୃଙ୍ଖଳା, ଅପରାଧକୁ କଣ୍ଟ୍ରୋଲ କରିବା ଲାଗି ମୋତେ ପୁରାମାତ୍ରାରେ ଦୁଇବର୍ଷ ଲାଗିଗଲା । ଯେଉଁ ଜିଲ୍ଲାରେ ଗୋଟିଏ ଏସ୍.ପି ଯଦି ଦୁଇବର୍ଷରୁ ଉର୍ଦ୍ଧ୍ୱ ନରହେ,ସେ କେବେହେଲେ ଜିଲ୍ଲାର ଆଇନ ଶୃଙ୍ଖଳା, ଅପରାଧକୁ ଆୟତ୍ତାଧିନ କରିପାରିବ ନାହିଁ । ମାତ୍ର ଆମ ଓଡ଼ିଶାରେ ଗୋଟିଏ ଜିଲ୍ଲାରୁ ଜଣେ ଏସ୍.ପି ହାରାହାରି ବର୍ଷକ ପୂର୍ବରୁ ବଦଳି ହୋଇଥାଏ ।

୧୯୮୯ ମସିହା ଆରମ୍ଭ ବେଳକୁ ଅବିଭକ୍ତ ପୁରୀଜିଲ୍ଲାରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ଆୟାତ୍ତାଧିନ ଥାଏ ମାତ୍ର ଶେଷ ଆଡ଼କୁ ରାଜ୍ୟସଭା ନିର୍ବାଚନ ଆସିଯିବା ଯୋଗୁ, ସବୁ ଅଡ଼େ ଦଳଗତ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଯାଇଥାଏ ।ସେତେବେଳକୁ ଓଡ଼ିଶାରେ ଜାନକୀ ପଟ୍ଟନାୟକ ୯ ବର୍ଷ କାଳ ଶାସନ କରି ସାରିଥାନ୍ତି । ରାଜୀବ ଗାନ୍ଧି, ଭାରତର ପ୍ରଧାନମନ୍ତ୍ରୀତ୍ୱରୁ ବିଦାୟ ନେଲାପରେ ଜନତା ଦଳ ''United Front'' ଗଠନ କରିଥାନ୍ତି । ଦେଶର ରାଜନୀତିରେ ସରଗରମ ହାଓ୍ୱା ବହୁଥାଏ । ଓଡ଼ିଶାରେ ମଧ୍ୟ ସେଇ ଅବସ୍ଥା । କଂଗ୍ରେସ ସରକାର ବିଭିନ୍ନ କାରଣରୁ ଲୋକପ୍ରିୟତା ହରାଇବସିଥାଏ । ଜାନକୀ ପଟ୍ଟନାୟକଙ୍କ ନାମରେ ନାନା ପ୍ରକାର ଅଭିଯୋଗ । ପୂର୍ବରୁ ବମ୍ବେରୁ ପ୍ରକାଶ ପାଉଥିବା ଇଲଷ୍ଟ୍ରେଟେଡ଼ୈ ଉଇକିଲ ମାଗାଜିନ୍‌ରେ ଯାହାସବୁ ସାମ୍ବାଦିକ ଆବିଦ୍ ବାହାର କରିଥିଲେ, ସାରା ଭାରତବର୍ଷରେ ତାଙ୍କ ନାମକୁ କଳଙ୍କିତ କରିଥିଲା । ଅବଶ୍ୟ ପରବର୍ତ୍ତୀ କାଳରେ ସେ ଉଇକିଲର, ଏଡ଼ିଟର ପ୍ରିତୀଶ୍ ନନ୍ଦୀ, ସାମ୍ବାଦିକ ଆବିଦ୍‌ଙ୍କ ନାମରେ ମାନହାନୀ ମକଦ୍ଦମା କରି ସଫଳ ହୋଇଥିଲେ ଏବଂ ପତ୍ରିକା କପୋଳକଳ୍ପିତ ଘଟଣା ପ୍ରକାଶ କରିଥିବା ଯୋଗୁ କ୍ଷମା ମାଗିଥିଲେ । ମାତ୍ର, ତାହାପୂର୍ବରୁ ତାଙ୍କର ଯାହା ବଦ୍‌ନାମ ଘଟିଥିଲା, ତାହା ଏଇ କ୍ଷମା ପ୍ରାର୍ଥନା ମାଧ୍ୟମରେ ଫେରିଆସି ପାରିନଥିଲା । ଏଇ ଅବସ୍ଥାରେ ୧୯୮୯ ମସିହା ସେପ୍ଟେମ୍ବର ମାସ ୨୭ ତାରିଖକୁ, ଲୋକସଭା ନିର୍ବାଚନ ହେବାପାଇଁ ନିର୍ବାଚନ ଇସ୍ତାହାର ଜାରି ହେଲା । କେନ୍ଦ୍ରରେ କଂଗ୍ରେସ ଦଳର ମୁଖ୍ୟ ବିରୋଧି ଦଳ ''ଇଉନାଇଟେଡ଼ ଫ୍ରଣ୍ଟ''

ହେଲାବେଳେ ଓଡ଼ିଶାରେ ଏହି ଦଳର ମୁଖ୍ୟ ହିସାବରେ ବିଜୁପଟ୍ଟନାୟକ ନେତୃତ୍ୱ ନେଲେ । ବିଜୁବାବୁ ମଧ କେନ୍ଦ୍ରରେ ଜଣେ ତୁଙ୍ଗ ନେତା ଭାବେ ଜଣାଶୁଣା ଥା'ନ୍ତି ଏବଂ ଭି.ପି. ସିଂହଙ୍କ ପ୍ରଣ୍ଡ, ଜିତିଲେ ପ୍ରଧାନମନ୍ତ୍ରୀ ହେବାର ସୂଚନା ପ୍ରସାର କରାଗଲା । ସେତେବେଳକୁ ଭି.ପି.ସିଂହ ମିଃ କ୍ଲିନ୍ ନାମ ଧରି ସାରିଲେଣି । ରାଜୀବଗାନ୍ଧିଙ୍କ ବିରୁଦ୍ଧରେ ବୋଫରସ୍ ମାମଲା ଲାଗିଯାଇଥାଏ ।

ପୁରୀ ଜିଲ୍ଲାରୁ ପୁରୀ ଲୋକସଭାପାଇଁ ନୀଳମଣି ରାଉତରାଏ ନିର୍ବାଚନ ଲଢ଼ିଲେ । ତାଙ୍କ ବିରୋଧରେ ପୂର୍ବତନ ଲୋକସଭା ସଦସ୍ୟ ବ୍ରଜ ମହାନ୍ତି ଠିଆହେଲେ । ମାତ୍ର ଲୋକସଭା ନିର୍ବାଚନରେ ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶାର ୨୧ଟି ଲୋକସଭା ସିଟ୍‌ରୁ ୧୮ଟି ଜନତା ଦଳ ପାଇଲାବେଳେ କଂଗ୍ରେସ ମାତ୍ର ତିନୋଟି ପାଇଲା । ଏଥିଯୋଗୁ କଂଗ୍ରେସ ଦଳ ମଧରେ ତୀବ୍ର ଗୋଷ୍ଠୀକନ୍ଦଳ ଆରମ୍ଭ ହୋଇଗଲା । ସମସ୍ତେ ଜେ.ବି. ପଟ୍ଟନାୟକଙ୍କ ଆଡ଼େ ଆଙ୍ଗୁଳି ଦେଖାଇଲେ । ଏପରିକି ତାଙ୍କ ସ୍ତ୍ରୀ ଜୟନ୍ତୀ ପଟ୍ଟନାୟକ, କଟକ ସଦର ସିଟ୍‌ରୁ ଶ୍ରୀକାନ୍ତ ଜେନାଙ୍କ ଠାରୁ ବହୁ ଭୋଟରେ ହାରିଯାଇଥିଲେ । ଓଡ଼ିଶା ରାଜନୀତିରେ ହଟଗୋଳ ଦେଖାଗଲା । ଜନତାଦଳ ସାରା ଓଡ଼ିଶାରେ ସକ୍ରୀୟ ହୋଇ ଉଠିଲାବେଳେ କଂଗ୍ରେସ ତଳକୁ ତଳକୁ ଦବିବାରେ ଲାଗିଲା । ଜେ.ବି. ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ପଦରୁ ଓହରିଯିବାକୁ ବାଧହେଲେ । ବିଗତ ୧୫ ବର୍ଷ ଧରି ନନ୍ଦିନୀ ଦେବୀ କଂଗ୍ରେସରୁ ଏକ ପ୍ରକାର ବିଦାୟ ନେଇଥିବା ବେଳେ, ସେ କଂଗ୍ରେସ ରାଜନୀତିରେ ପୁଣି ସକ୍ରିୟ ହୋଇ ଉଠିଲେ ଏବଂ ମୁଖ୍ୟମନ୍ତ୍ରୀ ପାଇଁ ପାଗ ଭିଡ଼ିଥିଲେ ମାତ୍ର ତାହା ସମ୍ଭବ ନହେବାରୁ ତାଙ୍କର ନୋମିନି ହେମାନନ୍ଦ ବିଶ୍ୱାଳଙ୍କ ମୁଣ୍ଡରେ ମୁଖ୍ୟମନ୍ତ୍ରୀ ପଦର କଳସ ଢଳି ପଡ଼ିଲା ଏବଂ ସେ ମୁଖ୍ୟମନ୍ତ୍ରୀ ହେଲେ କିନ୍ତୁ ସେ ସମୟରେ ରାଜନୈତିକ ପରିସ୍ଥିତିକୁ କଂଗ୍ରେସ ସପକ୍ଷରେ ଫେରାଇ ଆଣିବାର ଶକ୍ତି କିମ୍ବା ଧିଶକ୍ତି ତାଙ୍କ ପାଖରେ ନଥିଲା । ଏଣେ ତାଙ୍କୁ ଗାଦିରେ ବସାଇ, ନନ୍ଦିନୀ ଦେବୀ ତାଙ୍କ ଘରୁ ରାଜନୀତିର ସୂତ୍ରଧର ହୋଇ ବସିଲେ । କେବଳ ନିର୍ବାଚନକୁ ଅପେକ୍ଷାକରି ବସିବା ସାର ହେଲା ।

ରାଜନୈତିକ ଅବସ୍ଥା ଯୋଗୁ, ବିରୋଧି ଦଳ ପୁରୀ ଜିଲ୍ଲାରେ ଏକ ପ୍ରକାର ସକ୍ରୀୟ ହୋଇ ଉଠିଥାନ୍ତି । କାକଟପୁରଠାରୁ ନୟାଗଡ଼ ପର୍ଯ୍ୟନ୍ତ, ପିପିଲି ଠାରୁ ଚିଲିକା ପର୍ଯ୍ୟନ୍ତ ସବୁଆଡ଼େ ଦଳଗତ ଦଙ୍ଗା ହଙ୍ଗାମ୍ ଆରମ୍ଭ ହୋଇଗଲା । ନିର୍ବାଚନ ପୂର୍ବ, ଆଇନ୍ ଶୃଙ୍ଖଳା ପରିସ୍ଥିତି ଜିଲ୍ଲାର ସବୁଆଡ଼େ ସୃଷ୍ଟି ହେଲା । ମାତ୍ର କୌଣସି ସ୍ଥାନରେ ପରିସ୍ଥିତି କଣ୍ଟ୍ରୋଲ ବାହାରକୁ ଯାଇନଥାଏ ଯଦିଓ ମୋର ଆଶଙ୍କା ପିପିଲି ନିର୍ବାଚନ ମଣ୍ଡଳୀ ଉପରେ ଥାଏ, ସେଠାର କଂଗ୍ରେସ ଓ ଜନତା ମଧରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଉଥାଏ । ଏଣେ କାକଟପୁର, ଅସ୍ତରଙ୍ଗରେ ମଧ ଅବସ୍ଥା ସେଇପରି । ବିରୋଧିଦଳ ପକ୍ଷରୁ ଆଶାୟୀ ପ୍ରାର୍ଥୀ ନିଜେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିବାକୁ ପଛାଉନଥାନ୍ତି । ଏହି ସମୟରେ ଜାନକୀ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ ପଦରୁ ଗଲାପରେ, ପୁଲିସ ଡି.ଜି. ପଦରୁ ପ୍ରଫୁଲ୍ଲ ରଥ ଯାଇ ସଦାନନ୍ଦ ସିହ୍ନା ଆସିଲେ । ଡି.ଜି.ଙ୍କ ବଦଳରେ ନନ୍ଦିନୀ ଦେବୀଙ୍କ ହାତ ଥିଲା ବୋଲି କୁହାଗଲା ଏବଂ ସିହ୍ନା ସାହେବ ଦେଓଗଡ଼

ରାଜ୍ୟର ରିଲେସନ ଥିବା ଯୋଗୁ ହେମାନନ୍ଦ ତାଙ୍କୁ ଆଣିବାକୁ ରାଜି ହେଲେ । ପୁଲିସର ମୁଖ୍ୟ ବଦଳି ପରେ ଜିଲ୍ଲାରେ ମଧ୍ୟ ଏସ.ପି.ମାନଙ୍କର ବଦଳି ହେଲା । ମୁଁ ବି ଆଶା କରୁଥିଲି ମୋର ବଦଳି ହେବ ମାତ୍ର ହୋଇନଥିଲା ।

୧୯୯୦ ଫେବୃୟାରୀ ଶେଷ ଆଡ଼କୁ ଓଡ଼ିଶା ବିଧାନସଭା ପାଇଁ ନିର୍ବାଚନ ହେଲା । ସେତେବେଳକୁ କେନ୍ଦ୍ରରେ ଭି.ପି.ସିଂହ ପ୍ରଧାନମନ୍ତ୍ରୀ ଭାବେ, ମନ୍ତ୍ରୀମଣ୍ଡଳ ଗଢ଼ି ସାରିଲେଣି । ଓଡ଼ିଶାରୁ ନୀଳମଣି ରାଉତରାଏ କାବିନେଟ୍ ମନ୍ତ୍ରୀ ହେଲାବେଳେ ବିଜୁବାବୁ ଯୋଗୁ ଶ୍ରୀକାନ୍ତ ଜେନା ମିନିଷ୍ଟର ଅଫ୍ ଷ୍ଟେଟ୍ ହେଲେ । ଭି.ପି. ସିଂହ ମନ୍ତ୍ରୀମଣ୍ଡଳ ଗଠନ କଲାପରେ, ଦଳ ମଧ୍ୟରେ ପ୍ରାୟ ସବୁ ସମୟରେ କିଛି ନା କିଛି ଅସୁବିଧା ପରିସ୍ଥିତି ସୃଷ୍ଟି ହୋଇଥିଲା ଏବଂ ପ୍ରତ୍ୟେକ ପରିସ୍ଥିତିରେ ବିଜୁବାବୁ କ୍ରାଇସସ୍ ମ୍ୟାନେଜର ଭାବେ, ତାର ସମାଧାନ କରୁଥାନ୍ତି । ବିଜୁବାବୁ, ସାରା ଦେଶରେ ଜନତାଦଳର ତୁଙ୍ଗନେତା ଭାବରେ ଜଣାଶୁଣା ଏବଂ ଓଡ଼ିଶାରେ ଅପ୍ରତିଦ୍ୱନ୍ଦ୍ୱୀ ନେତା ଭାବରେ ଦେଖା ଦେଇଥାନ୍ତି । ବିଧାନ ସଭା ନିର୍ବାଚନର ପ୍ରଥମ ମିଟିଂ କଂଗ୍ରେସ ଦଳ, ପୁରୀ ସିଂହଦ୍ୱାରରୁ ଆରମ୍ଭ କଲେ । ମିଟିଂ ଆରମ୍ଭ ବେଳକୁ ତାଙ୍କର ପେଣ୍ଡାଲ ଭାଙ୍ଗି ପଡ଼ିଲା ଏବଂ ଜାନକୀବାବୁ ଗଳି ପଡ଼ିଲେ । ପୁରୀର ଲୋକମାନେ କହିଲେ କଂଗ୍ରେସ ଦଳ ମୁଣ୍ଡରେ ଶାଗୁଣା ଉଡ଼ିଲା । ବିଜୁବାବୁ ମଧ୍ୟ ତାଙ୍କ ନିର୍ବାଚନ ପ୍ରଚାର ସିଂହ ଦ୍ୱାରରୁ ଆରମ୍ଭ କରି ତାଙ୍କର ନିର୍ବାଚନର ଚିହ୍ନ ଚକ୍ର ରଖିଲେ । ପୁରୀ ଜିଲ୍ଲାର ୧୬ଟି ନିର୍ବାଚନ ମଣ୍ଡଳିରୁ ମୁଁ ଭାବିଥିଲି କଂଗ୍ରେସ ଚାରିଟି ସ୍ଥାନରେ ପାଇବ, ମାତ୍ର ୧୬ଟି ଯାକ ସ୍ଥାନରେ ବିଜୁବାବୁଙ୍କ ନେତୃତ୍ୱରେ ପରିଚାଳିତ ଜନତାଦଳ ଆସିଗଲା । ପୁରୀ ଜିଲ୍ଲାରୁ କଂଗ୍ରେସ ଗୋଟିଏ ସ୍ଥାନରେ ଜିତି ପାରିଲା ନାହିଁ । ତାଛଡ଼ା ସାରା ଓଡ଼ିଶାରେ ଏଇଦଳ ୧୨୩ଟି ସ୍ଥାନରେ ନିର୍ବାଚିତ ହୋଇ ଜୟଲାଭ କଲା । ଜାନକୀବାବୁଙ୍କ ମୁଖ୍ୟ ବିରୋଧି, ବସନ୍ତ ବିଶ୍ୱାଳ ତିର୍ତ୍ତୋଲରୁ ନିର୍ବାଚିତ ହୋଇ ବିରୋଧିଦଳର ନେତା ହେଲେ । ବିଧାନ ସଭାରେ କଂଗ୍ରେସ ସଦସ୍ୟ ମାତ୍ର ୧୧ଜଣ ଥିଲେ ।

**ବିଜୁବାବୁଙ୍କ ମାଡ଼ ତତ୍ତ୍ୱ :** ନିର୍ବାଚନ ଜିତିଲାପରେ ମୁଖ୍ୟମନ୍ତ୍ରୀ ବିଜୁବାବୁ ଶପଥ ଗ୍ରହଣ କରିବା ପୂର୍ବରୁ ଜଗନ୍ନାଥ ଦର୍ଶନପାଇଁ ସବୁ ଜନତାଦଳ ନିର୍ବାଚିତ ସଦସ୍ୟମାନଙ୍କୁ ପୁରୀ ଆସିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମାର୍ଚ୍ଚ ପାଞ୍ଚତାରିଖ ଦିନ ସକାଳ ୬ଟା ସୁଦ୍ଧା ଭୁବନେଶ୍ୱରରୁ ସମସ୍ତେ ସିଂହଦ୍ୱାରଠାରେ ପହଞ୍ଚିବେ ଏବଂ ସେମାନଙ୍କ ପାଇଁ ପାଞ୍ଚଗୋଟି ଡିଲକ୍ସ ବସ୍‌ର ମଧ୍ୟ ବନ୍ଦୋବସ୍ତ ହୋଇଥିଲା । ବିଜୁ ପଟ୍ଟନାୟକ, ସମସ୍ତ ଜନତା ନିର୍ବାଚିତ ସଦସ୍ୟମାନଙ୍କୁ ଧରି ମନ୍ଦିରକୁ ଆସୁଥିବା ଖବର ପାଇଲା ପରେ ମୁଁ ମନ୍ଦିରରେ ସାମାନ୍ୟ ପୁଲିସ ବନ୍ଦୋବସ୍ତ କରିଥାଏ ଏବଂ ସାଧା ପୋଷାକରେ କିଛି ପୁଲିସ ରଖିଥାଏ । ମୁଁ ନିଜେ ପୋଷାକରେ ସିଂହ ଦ୍ୱାର ପାଖେ ସକାଳ ପାଞ୍ଚଟାରେ ଅପେକ୍ଷା କରିଥାଏ । ମୋ ସାଙ୍ଗରେ କଲେକ୍ଟର ସୁଦାମ ପଟ୍ଟନାୟକ ଥାନ୍ତି । ଠିକ୍ ଛଅଟା ବେଳକୁ ବିଜୁବାବୁ ତାଙ୍କ କଳିଙ୍ଗରଥ (ଷ୍ଟେସନ ୱ୍ୱାଗନ) ରେ ସିଂହ ଦ୍ୱାର ପାଖେ ପହଞ୍ଚିଲେ । ସାଙ୍ଗରେ ବସିଥିଲେ ସଦସ୍ୟ ପ୍ରସନ୍ନ ପାଟଶାଣୀ, ଏବଂ ଚିକିଟି ରାଣୀ -

ଉଷା ଦେବୀ ତାଙ୍କ ପଛରେ ଦୁଇଟି ବସରେ  କେତେକ ସଦସ୍ୟ ସିଂହଦ୍ୱାର ପାଖରେ ପହଞ୍ଚିଲେ । ସକାଳୁ ସକାଳୁ ସିଂହଦ୍ୱାର ପାଖରେ ଜଣେ ହେଲେ ଲୋକ ନଥାନ୍ତି । ମନ୍ଦିରକୁ ଗଲାପରେ ଦର୍ଶନ କରି, ମନ୍ଦିରରୁ ପଥର ଖସିବା ଚୂନ ଛଡ଼େଇବା କଥା ବୁଝି ବାହାରକୁ ବାହାରିଲା ବେଳକୁ ୪୫ ମିନିଟ୍ ହୋଇଯାଇଥାଏ । ସେତେବେଳକୁ ସିଂହଦ୍ୱାର  ପାଖରେ ପ୍ରାୟ ତିନି, ଚାରିଶହ ଲୋକ  ପହଞ୍ଚି ଯାଇଥାନ୍ତି । ବିଜୁବାବୁ ସିଂହଦ୍ୱାର ପାଖରୁ ବାହାରିଲା ବେଳକୁ ତାଙ୍କ ଚାରିପଟେ ଲୋକାରାଣ୍ୟ । ମୁଁ ବହୁତ କଷ୍ଟରେ ତାଙ୍କୁ ଗାଡ଼ି ପାଖକୁ ଆଣିଲା ପରେ, ସେ ଏତେ ଲୋକଙ୍କୁ ଦେଖି, ତାଙ୍କ ଷ୍ଟେସନ ୱାଗନ ବନେଟ୍ ଉପରେ ବସିବାକୁ ଫୁଟ୍ ବୋର୍ଡ଼ରେ ଗୋଡ଼ଥୋଇ ଉଠିବାକୁ ଚେଷ୍ଟା କଲାବେଳେ ପାଖରେ ଜନତାଦଳ ସମର୍ଥକ ଯୁବନେତା ବାନାର୍ଜୀ ତାଙ୍କ ଅଣ୍ଟାକୁ ଧରି  ବନେଟ୍ ଉପରକୁ ଟେକି ଦେବାପାଇଁ ଚେଷ୍ଟା କଲାବେଳେ, ବିଜୁବାବୁ ବୁଲିପଡ଼ି ଠାଏକରି ଗୋଟେ ଚଟକଣା କସିଦେଲେ । ସେଇ ଗୋଟିଏ ଚଟକଣାରେ ସେ ନେତା ଯାଗା ଛାଡ଼ି ପଳେଇଗଲା । ଠିଆ ହୋଇଥିବା ଦର୍ଶକମାନଙ୍କୁ କିଛି ସମୟ କହିବା ପରେ, ବିଜୁ ବାବୁ ଫେରିଲେ । ସିଂହଦ୍ୱାର ଠାରୁ ତାଙ୍କ ମିଟିଂ ଆରମ୍ଭ ହୋଇଥିଲା । ସେଇଠୁ ତାଙ୍କ ମାଡ଼ ତତ୍ତ୍ୱ ମଧ ଆରମ୍ଭ ହେଲା ।

ମାର୍ଚ୍ଚ ୫ ତାରିଖ ତାଙ୍କ ଜନ୍ମଦିନ । ସେଇଦିନ ରାଜଭବନରେ ଶପଥ ନେବା ଉତ୍ସବ ବେଳେ ରାଜଭବନ ମୁଖ୍ୟ ଫାଟକ ପାଖେ ଜନତା ଦଳର ଯୁବ କର୍ମୀମାନେ ଶପଥ ଗ୍ରହଣଉତ୍ସବ ଦେଖିବାପାଇଁ  ଭିଡ଼ କରିଥାନ୍ତି କିନ୍ତୁ ପୁଲିସ ସେମାନଙ୍କୁ ରାଜଭବନ ମଧକୁ ପ୍ରବେଶିକା ପତ୍ର ନଥିବା ଯୋଗୁ ଛାଡୁ ନଥାନ୍ତି । ଆଗରୁ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ରାଜଭବନ ମଧକୁ ଉତ୍ସବ ସମୟରେ ପ୍ରବେଶ କରିବା ପାଇଁ ଯାହା ନିର୍ଦ୍ଦେଶ ଦିଆଯାଇଥିଲା ପୁଲିସ ତାହାହିଁ କାର୍ଯ୍ୟକାରୀ କରୁଥିଲା । ବିଜୁବାବୁ ରାଜଭବନକୁ ମୁଖ୍ୟରାସ୍ତା ଦେଇଗଲାବେଳେ ଏତେ କର୍ମୀମାନଙ୍କୁ ମୁଖ୍ୟ ଫାଟକ ପାଖେ ଦେଖି ଗାଡ଼ିରୁ ଓହ୍ଲାଇଲେ । କର୍ମୀମାନେ ପୁଲିସ୍ ତାଙ୍କୁ ଛାଡୁନି ବୋଲି କହିଥିଲେ । ବିଜୁବାବୁଙ୍କୁ ଯୁବକର୍ମୀମାନେ ଘେରି ଯିବା ଦେଖି ତତ୍କାଳୀନ କେନ୍ଦ୍ରାଞ୍ଚଳ ଡି.ଆ.ଜି ମିଃ ଯାଦ୍‌ଚ୍ ତାଙ୍କ ପାଖକୁ ଆସିଲା ବେଳେ ବିଜୁବାବୁଙ୍କ ହାତ ତାଙ୍କ ଦେହରେ ବାଜିଥିଲା । ସେ ଦନ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶ ପାଇଲାଯେ, ଡି.ଆଇ.ଜିଙ୍କୁ ବିଜୁବାବୁ ମୁଖ୍ୟଫାଟକ ପାଖେ ମାଡ଼ ଦେଲେ । ଏକଥା ପ୍ରସାର ହେଲାପରେ, ଅଫିସରମାନେ ତାଙ୍କ ପାଖକୁ ଲାଗି ଠିଆ ହେବାକୁ ଡରିଲେ ।

ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲା ପରେ ସେ ତାଙ୍କର ମନ୍ତ୍ରୀମଣ୍ଡଳ ଗଢ଼ିଲେ । ତାଙ୍କ ମନ୍ତ୍ରୀମଣ୍ଡଳରେ ବିଜୟ ମହାପାତ୍ର, ନଳିନୀ ମହାନ୍ତି ସମେତ ସୁର ନାଏକ ମଧ ମନ୍ତ୍ରୀ ହେଲେ । ସୁର ନାଏକଙ୍କ ସହିତ ମୋର ଆଗରୁ ଭଲ ସଂପର୍କ ନଥିଲା । କାରଣ ମୁଁ ପୁରୀ ଏସ୍.ପି.ଭାବେ ସେ ସବୁ ସମୟରେ ଯେଉଁ କଥା କହୁଥିଲେ ତାହା କାର୍ଯ୍ୟକାରୀ କରିବାକୁ ସମ୍ଭବ ହୁଏନି । ଅଳ୍ପଦିନ ପୂର୍ବରୁ  ତାଙ୍କ ପୁଅଙ୍କ ବିରୁଦ୍ଧରେ କେସ୍ ହୋଇଥିଲା ବେଳେ ତାଙ୍କ ନାମରେ ମଧ

ଜାମିନ ବିହୀନ ପରଓ୍ୱାନା ପେଣ୍ଡିଂ ଥାଏ । ସେ ପୁରୀ ଜିଲ୍ଲାର କ୍ୟାବିନେଟ୍ ମନ୍ତ୍ରୀ ହେଲାପରେ ଚାହିଁଲେ ପ୍ରଥମେ ମୋର ଜିଲ୍ଲାରୁ ବଦଳି ହେଉ । ପ୍ରାୟ ୩ବର୍ଷ ୬ମାସ ଗୋଟିଏ ଜିଲ୍ଲାରେ ରହିଲାପରେ ମୁଁ ମଧ ସେଇ କଥା ଆଶା କରୁଥିଲି ଏବଂ ବଦଳି ପାଇଁ ପ୍ରସ୍ତୁତ ଥିଲି ଯଦି ଓ ପୁରୀ ଏମ୍.ଏଲ୍. ଏ ମହେଶ୍ୱର ମହାନ୍ତି ଚାହୁଁଥିଲେ ମୋର ବଦଳି ହେଲେ ପୁରୀ ରଥଯାତ୍ରା ପରେ ହେଉ । ମାତ୍ର ସୁର ନାଏକ ସେକଥା ଚାହୁଁ ନଥିଲେ । ବିଜୁପଟ୍ଟନାୟକ ଆସିଲା ପରେ, ପୁଲିସ ଡି.ଜି. ସ୍ତରରେ ବଦଳି ହେବାର ମଧ ସମ୍ଭାବନା ଦେଖାଦେଲା । ଏପର୍ଯ୍ୟନ୍ତ ଡି.ଏନ୍ ସିଂହ ପଡ଼ି କରି ରହିଥିଲେ । ଜନତା ମନ୍ତ୍ରୀମଣ୍ଡଳ ଗଠନପରେ ସେ ଡି.ଜି. ପଦପାଇଁ ଲାଗିପଡ଼ିଲେ ଏବଂ ତାଙ୍କ ଗୋଷ୍ଠୀର ଅଫିସରମାନଙ୍କୁ ଧରି ରାଜନୈତିକ ଲବି କରିବାରେ ବସିଲେ ।

ସେତିକି ବେଳକୁ ମୁଁ ମଧ ମୋର ପ୍ରମୋଶନ ଆଶାକରୁଥିଲି । ଡି.ଆଇ.ଜି ପ୍ରମୋଶନ ପାଇଁ ପୋଷ୍ଟ ଖାଲିଥାଏ । ତାଛଡ଼ା ଆଗରୁ ମଧ ମୁଁ ଡି. ଆଇ.ଜି ପୋଷ୍ଟରେ ଡେପୁଟେସନରେ ଯିବା ପାଇଁ ମୋର ଇଚ୍ଛା ପ୍ରକାଶ କରି ମୋର Willingness ଦେଇ ସାରିଥାଏ । ମାତ୍ର କେନ୍ଦ୍ର ଘରୋଇ ମିନିଷ୍ଟ୍ରିରୁ କିଛିଖବର ଆସିନଥାଏ । ଏପ୍ରିଲ ପହିଲା ୧୯୯୦ ଦିନ ମୁଁ ସୁର ନାଏକଙ୍କୁ ପୁରୀ ଆରକ୍ଷୀ ବାହିନୀର ପୁଲିସ୍ ପରମେସନ ଦିବସ ଲାଗି ଡାକିଥାଏ । ସେ ଆସିଥିଲେ ମାତ୍ର ମୁଁ ଥିବାଯୋଗୁଁ ବିଶେଷ ଖୁସିନଥିଲେ । ସେ ଚାହୁଁଥିଲେ, ମୁଁ କିପରି ଶୀଘ୍ର ପୁରୀଜିଲ୍ଲାରୁ ଯାଏ । କାରଣ ତାଙ୍କର ଧାରଣା ମୁଁ ଜାନକୀ ପଟ୍ଟନାଏକଙ୍କ ଲୋକ । ସେତେବେଳକୁ ମୁଁ ପୁରୀ ଜିଲ୍ଲାରେ ୩ ବର୍ଷରୁ ଉର୍ଦ୍ଧ୍ୱ କାମ କରିସାରିଥାଏ । ତେଣୁ ମୋର ଜିଲ୍ଲାରେ ରହିବାକୁ ଆଗ୍ରହ ନଥାଏ । ମାତ୍ର ରଥ ପରେ ଯିବାକୁ ମୋର ଇଚ୍ଛା କାରଣ ପ୍ରତ୍ୟେକ ଅଧିକାରୀ ଜଗନ୍ନାଥଙ୍କ ରଥକୁ ପ୍ରାଣଦେଇ ଭଲ ପାଇଥାନ୍ତି । ତା ଛଡ଼ା ସରକାରଙ୍କର ମଧ ନିୟମ ଥିଲା ଯେ ରଥର ଏକମାସ ପୂର୍ବରୁ କାହାକୁ ପୁରୀରୁ ବଦଳି କରାଯିବ ନାହିଁ ।

ବିଜୁବାବୁ ମଖ୍ୟମନ୍ତ୍ରୀ ହେଲାପରେ ସେ କେତେଗୁଡ଼ିଏ କଥା କହିଥିଲେ । (୧) ଯେଉଁ ଅଫିସରମାନେ କରପସନ୍‌ରେ ଲିପ୍ତ ସେମାନଙ୍କୁ ଲୋକମାନେ ମାଡ଼ ଦେବାଉଚିତ୍ । ସେଇପରି ଯେଉଁ ଅଫିସରମାନେ ଲୋକମାନଙ୍କ କାମ କରୁନାହାଁନ୍ତି ତାଙ୍କୁ ମାଡ଼ମାରି କାମ ଆଦାୟ କରାଯାଉ ।

(୨) ଦ୍ୱିତୀୟରେ ହେଲା ସରକାରଙ୍କ ବିନା ଆଦେଶରେ ପୁଲିସ ଗୁଳିଚାଳନା କରିପାରିବ ନାହିଁ ।

(୩) ସରକାରୀ ଗାଡ଼ି ମଧ ବ୍ୟବହାର ହେବନି, ଅଫିସରମାନେ ସାଇକେଲ କିମ୍ୱା ଚାଲି କରି ଅଫିସ ଆସନ୍ତୁ । ଏହା ଦ୍ୱାରା ପେଟ୍ରୋଲ ଖର୍ଚ୍ଚ କମିବ । ଟୁରରେ ଗଲେ ବସରେ ଯାଆନ୍ତୁ । ସରକାରୀ ଗାଡ଼ିରେ ନୁହେଁ ।

ଏକଥା ପ୍ରକାଶ କଲାପରେ ସେ ନିଜେ ତାଙ୍କ ଘରୁ ଥରେ ସାଇକେଲରେ ଆସିଲା ବେଳେ, ଏ.ଜି. ଛକ ପାଖେ ପଡ଼ିଗଲେ ଏବଂ ପରେ ରିକ୍ସାରେ ଆସିବା ଆରମ୍ଭ କଲେ, ମାତ୍ର

କିଛି ଦିନ ପରେ ଅସୁବିଧା ହେବାରୁ ଗାଡ଼ିରେ ଆସିଲେ । ଅଫିସରମାନେ ମଧ ସାଇକେଲ ରିକ୍ସାରେ ଯିବା ଆରମ୍ଭ କଲେ । ବିଜୁବାବୁଙ୍କ ଏପରି ନିର୍ଦ୍ଦେଶକୁ ମନ୍ତ୍ରୀ ଅଫିସରମାନେ ନାକ ଟେକିଲେ କାରଣ ବର୍ଷ ବର୍ଷଧରି ଅଫିସର, ମନ୍ତ୍ରୀମାନେ ସରକାରୀ ଗାଡ଼ି ଅପବ୍ୟବହାର କରିବାରେ ଅଭ୍ୟସ୍ତ ହୋଇଥିଲେ । ଜଣେ ଜଣେ ମନ୍ତ୍ରୀ ତାଙ୍କ ବାସଭବରେ ତିନି ତିନୋଟି ସରକାରୀ ଗାଡ଼ି ରଖୁଥିଲେ । ଅଫିସରମାନେ ମଧ କମ୍ ନୁହଁନ୍ତି । ସଚିବ ଭାବେ ଗୋଟିଏ ଗାଡ଼ି ରଖିଲାବେଳେ କରପୋରେସନର ଅଧକ୍ଷ ଭାବେ ଆଉ ଦୁଇଟି ଗାଡ଼ି ରଖିଥାନ୍ତି । ବିଜୁବାବୁ ଜାଣି ଜାଣି ଅପବ୍ୟବହାର ବନ୍ଦ କରିବା ପାଇଁ ଏଇ ନିର୍ଦ୍ଦେଶ ଦେଇଥିଲେ । ସାଧାରଣ ଜନତା ତାଙ୍କର ଏଇ ଆଦେଶକୁ ସ୍ୱାଗତ କଲାବେଳେ ଅଧିକାରୀ, ମନ୍ତ୍ରୀମାନେ ଏହାକୁ ନାପସନ୍ଦ କଲେ । ସେଇପରି ରିସ୍‌ପତ୍‌ଖୋର ଅଧିକାରୀମାନେ ରିସ୍‌ପତ ମାଗିଲେ ମାଡ଼ ଖାଇବା ଖବର ଶୁଣି ଛାନିଆହେଲେ ଏବଂ କେତେକ ସ୍ଥାନରେ ଏଇ ଆଦେଶ ପରେ ଅଧିକାରୀ ଏବଂ କର୍ମଚାରୀ ମାନେ ରିସ୍‌ପତ୍ ମାଗିଲା ବେଳେ ବିଜୁବାବୁଙ୍କ ମାଡ଼ ତତ୍ତ୍ୱର ଶିକାର ହେଲେ ।

ସେହିପରି ସରକାରଙ୍କ ବିନା ଆଦେଶରେ ପୁଲିସ ଗୁଳି କରିପାରିବନି ବୋଲି ଯେଉଁ ଆଦେଶ ଦେଲେ, ଜନତା ବହୁତ ଖୁସି ହେଲେ । ଏ ଆଦେଶ ଶୁଣିଲାପରେ କେତେକ କହିଲେ ଏବେ ପୁଲିସ୍ ବାଲାଙ୍କ ହାତରେ ବନ୍ଧୁକ-ବିଜୁବାବୁଙ୍କ ପକେଟରେ ଗୁଳି ।

ମୁଁ ଏଇ ପ୍ରକାର ଅନିଶ୍ଚିତତା ଅବସ୍ଥାରେ ଥିଲାବେଳେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅମାନ୍ୟ କରି ପ୍ରଥମ ଗୁଳିଚାଳନା ହେଲା ନୟାଗଡ଼ ଜିଲ୍ଲାର ଶରଣକୁଳ ଥାନା ପାଖରେ । ଶରଣକୁଳ ବଜାର ଉପରେ ସବର୍ଣ୍ଣ-ହରିଜନମାନଙ୍କର ବହୁ ଆଗରୁ ଜମିବାଡ଼ିକୁ କେନ୍ଦ୍ରକରି ଗଣ୍ଡଗୋଳଥିଲା । ପୁଲିସ ମଧ ୧୦୭ ଦଫାରେ ପ୍ରୋସିକ୍ୟୁସନ ଦେଇଥିଲା । ଏସବୁ ସତ୍ତ୍ୱେ ହଠାତ୍ ଦିନେ ସକାଳୁ ସବର୍ଣ୍ଣମାନେ, ଲାଠି ଭାଲି ଧରି ହରିଜନ ବସ୍ତି ଆକ୍ରମଣ କରି କେତେକଙ୍କ ଘରେ ନିଆଁ ଲଗାଇ ତାଙ୍କ ଜିନିଷପତ୍ର ନଷ୍ଟ କଲେ । ପୁଲିସ୍ ଏ. ଏସ୍. ଆଇ, ଏସ୍.ଆଇ ତାଙ୍କୁ ଅଟକାଇଲେ ମଧ ମାନିଲେନି ବରଂ ଢେଲା ମାରି ସେମାନଙ୍କୁ ଖଣ୍ଡିଆ ଖାବରା କଲେ ଏବଂ କହିଲେ ବିଜୁବାବୁ କହିଛନ୍ତି ପୁଲିସ୍ ଗୁଳି କରିପାରିବନି ପାଖରେ ଥିବା ଏ.ପି ଆର୍. ଫୋର୍ସଙ୍କୁ ହରିଜନ ବସ୍ତିରେ ଅଗ୍ନି କାଣ୍ଡ, ପୁଲିସ୍‌କୁ ମାଡ଼, ହରିଜନଙ୍କ ଉପରେ ଆକ୍ରମଣ ଦେଖି ଅବସ୍ଥା ଅସମ୍ଭାଳ ହେବାରୁ ଥାନାବାବୁ ଗୁଳିଚାଳନା ପାଇଁ ଆଦେଶ ଦେଲେ ଏବଂ ତିନି ରାଉଣ୍ଡ ଗୁଳି ଚାଳନାରେ ଦୁଇଜଣ ଆକ୍ରମଣକାରୀ ଗୁଳିମାଡ଼ରେ ଇନ୍‌ଜୋଡ଼ ହେଲେ । ଗୁଳିଚାଳନା ପରେ, ଶହ ଶହ ଲୋକ ଶରଣକୁଳ ଥାନାକୁ ଘେରାଉ କରି ବସିଲେ ଏବଂ ଥାନା ଉପରକୁ ଟେକା ପଥର ପକାଇଲେ । ଖବର ପାଇ ନୟାଗଡ଼ ଏସ୍.ଡ଼ି.ପିଓ ଘଟଣାସ୍ଥଳକୁ ଯାଇଥିଲେ । ମାତ୍ର ଅବସ୍ଥାରେ କିଛି ଉନ୍ନତ ଘଟିଲାନି । ପୁଲିସ ପରିବାର ଭୟରେ ଘରଛାଡ଼ି ଥାନା ପଛପଟେ ଆଶ୍ରୟ ନେଲେ । ପ୍ରାୟ ଦିନ ୧୧ଟା ବେଳକୁ ଓୟାରଲେସ ମାଧମରେ ମୁଁ ଖବର ପାଇଲି, ମୁଖ୍ୟମନ୍ତ୍ରୀ, ସରକାରଙ୍କ ବିନା ଆଦେଶରେ ଗୁଳିଚାଳନା କରିବାକୁ ମନା କରିଥିଲେ ମଧ ଗୁଳିଚାଳନା ହୋଇଗଲାଣି । ଖବର ପାଇ ମୁଁ କଲେକ୍ଟରଙ୍କୁ ମୋ ସଙ୍ଗେ ଆସିବାକୁ ଅନୁରୋଧକଲି ମାତ୍ର ସେ ମିଂଟିରେ

ଅଛନ୍ତି କହି ଏଡ଼େଇ ଦେଲେ । ପୁରୀ ଏ.ଡି. ଏମ୍ ଶ୍ରୀ ସାହୁ ମୋ ସଙ୍ଗେ ଆସିବାକୁ ବାହାରିଲେ । ମୁଁ ତାଙ୍କୁ ଅପେକ୍ଷା ନକରି ସିଧା ନୟାଗଡ଼ ଆଡ଼େ ବାହାରିଲି । ପ୍ରାୟ ଗୋଟାଏ ବେଳକୁ ମୁଁ ସାନପଣ୍ଡୁସର ଗାଁ ପାଖେ ପହଞ୍ଚି ଦେଖିଲି, ଗାଁ ଲୋକମାନେ ରାସ୍ତାରୋକ କରିଥାନ୍ତି । ଗୋଟେ ଛୋଟ ଝିଅ ଉପରେ ଟ୍ରକ ମାଡ଼ିଯାଇ ସେ ରାସ୍ତାଉପରେ ମୃତ ଅବସ୍ଥାରେ ପଡ଼ିଥାଏ । ଦୁଇ ପଟେ ପ୍ରାୟ ୬୦ ଖଣ୍ଡେ ଗାଡ଼ି ଠିଆ ହୋଇଥାନ୍ତି । ମୁଁ ଯାଗା ଉପରେ ପହଞ୍ଚି ଲୋକମାନଙ୍କୁ ବୁଝାଇ ନିଜେ ତଦନ୍ତର ତଦାରଖ କରିବାକୁ ପ୍ରତିଶୃତି ଦେଲା ପରେ, ସେମାନେ ରାସ୍ତା ଛାଡ଼ିବାକୁ ରାଜିହେଲେ । ନହେଲେ ସେଠାରେ ବି ପୁଲିସ୍ ଆକ୍ସନ ପାଇଁ ଘଟଣା ପ୍ରସ୍ତୁତ ହେଇ ଯାଇଥିଲା । ମୁଁ ରାସ୍ତା ପରିଷ୍କାର କଲାବେଳକୁ ଏ.ଡି.ଏମ୍ ସାହୁ ସେଇ ସ୍ଥାନରେ ପହଞ୍ଚିଲେ । ସାଙ୍ଗ ହୋଇ ଆମେ ପ୍ରଥମେ ନୟାଗଡ଼ ହସପିଟାଲକୁ ଗୁଳିମାଡ଼ରେ ଆଘାତ ପ୍ରାପ୍ତ ହୋଇଥିବା ଦୁଇଜଣ ଲୋକଙ୍କୁ ଦେଖିବାକୁ ଗଲୁ । ଜଣଙ୍କର ଜଙ୍ଘରେ ଗୁଳିବାଜି ଥାଏ । ତା ସଙ୍ଗେ କଥାବାର୍ତ୍ତା ହେଲୁ ଏବଂ ତାଙ୍କ ଅବସ୍ଥା ଭଲ ବୋଲି ଜାଣିଲୁ । ଅନ୍ୟ ଜଣଙ୍କ ଗୋଡ଼ରେ ମଧ ଗୁଳି ବାଜିଥାଏ, ଅବସ୍ଥା ଭଲ । ସେମାନଙ୍କୁ ଦେଖି, ଆମେ ଶରଣକୂଳ ଥାନାରେ ପହଞ୍ଚିଲା ବେଳକୁ ପ୍ରାୟ ୧୦୦୦ ଲୋକ, ପିଲା, ମହିଳା ଥାନାକୁ ଘେରାଉ କରି ବସିଥାନ୍ତି । କମ୍ୟୁନିଷ୍ଟ ଦଳର ନେତା ତାଙ୍କର ନେତୃତ୍ୱ ନେଉଥିବାର ମୁଁ ଲକ୍ଷ୍ୟ କଲି । ନେତୃତ୍ୱ ନେଉଥିବାମାନଙ୍କ ମଧରେ ଶରଣକୂଳର ଜଣେ ଗୃହରକ୍ଷୀ ଥିବାର ଦେଖିଲି । ପ୍ରଥମେ ମୋତେ ସେମାନେ ଥାନା ଭିତରକୁ ଯିବାକୁ ଛାଡ଼ିଲେନି । ମହିଳାମାନେ ଗେଟ୍ ମୁହଁରେ ଘେରିଗଲେ, ମାତ୍ର କିଛି ସମୟ ବୁଝାଇଲା ପରେ ଏବଂ ଗୃହରକ୍ଷୀକୁ ଇଂଗିତ ଦେଇ କାମ କଲା ପରେ ଗେଟ୍ ଦୁଆର ମୁହଁରୁ ସେମାନେ ଉଠିଲେ । ମୁଁ ପ୍ରଥମେ ଥାନା ପାଚେରୀ କାନ୍ଥ ଉପରେ ଠିଆ ହୋଇ ଲୋକମାନଙ୍କୁ ବୁଝାଇଲି ଏବଂ ଯାହା କାର୍ଯ୍ୟାନୁଷ୍ଠାନ କରିବି ବୋଲି କହି ସେମାନଙ୍କ ମଧରୁ ପାଞ୍ଚଜଣଙ୍କୁ ଆମସଙ୍ଗେ କଥାବାର୍ତ୍ତା କରିବାକୁ ଡାକିଲି । ପ୍ରାୟ ରାତ୍ରୀ ୧୦ଟା ବେଳକୁ ସେମାନେ ରାଜି ହୋଇ ଜାଗା ଛାଡ଼ି ଗଲେ । ସେମାନଙ୍କ ସଙ୍ଗେ କଥାବାର୍ତ୍ତା ବେଳକୁ ଡି.ଆଇ.ଜି କେନ୍ଦ୍ରାଞ୍ଚଳ, ପୁରୀ କଲେକ୍ଟର, ରାତ୍ରୀ ୧୨ଟାରେ ପହଞ୍ଚିଲେ । ଅବସ୍ଥା ଶାନ୍ତ ହେଲା ପରେ, ରାତ୍ରି ୩ଟାରେ ଆମେ ନୟାଗଡ଼ ପାଖରେ ଗୋଟେ ଆଇ.ବି.ରେ ଶୋଇଲୁ । ସକାଳୁ ଉଠି ଆଠଟା ବେଳକୁ ଥାନାରେ ପହଞ୍ଚି ଘଟଣାର ତଦନ୍ତ କରି ସାରିଲା ବେଳକୁ ଶୁଣିଲୁ ଗୁଳିବାଜି ଥିବା ପ୍ରଥମ ଲୋକଟିର ନୟାଗଡ଼ ଡାକ୍ତରଖାନାରେ ମୃତ୍ୟୁ ଘଟିଛି । ଏକଥା ସଙ୍ଗେ ସଙ୍ଗେ ପ୍ରଚାର ହୋଇଗଲା । ମାତ୍ର କେତେ ମିନିଟ୍ ମଧରେ ପ୍ରାୟ ୬୦୦ ଲୋକ ଥାନା ସାମ୍ନାରେ ରୁଣ୍ଡ ହୋଇ ଗଣ୍ଡଗୋଳ ଆରମ୍ଭ କରିବାକୁ ପ୍ରସ୍ତୁତ ହେଲେ । ସେମାନଙ୍କ ମଧରୁ ମଧ କେତେଲୋକ ଗାଡ଼ି ଧରି ମୃତ୍ୟୁ ବ୍ୟକ୍ତିଙ୍କ ଶବକୁ ପ୍ରସେସନ କରିବାକୁ ବ୍ୟବସ୍ଥା କଲେ । ଅବସ୍ଥା ଏପରି ହେଲା ଯେ ଆଉ ଗୋଟେ ପୁଲିସ୍ ଗୁଳିଚାଳନା ହେବାର ପରିସ୍ଥିତି ସୃଷ୍ଟି ହେଲା । ତେବେ ସେଇ ଗୃହରକ୍ଷୀ ଏବଂ ଆଉ କେତେଜଣ ଚିହ୍ନା ଲୋକଙ୍କୁ ହାତକରି, ଲୋକମାନଙ୍କୁ ବୁଝାସୁଝା କଲାପରେ ଅବସ୍ଥା ଟିକେ ସମ୍ଭାଳ ପଡ଼ିଲା । ମାତ୍ର ସେମାନଙ୍କ ଦାବୀ ଅନୁସାରେ ମୃତ ବ୍ୟକ୍ତି ଶବର ପ୍ରସେସନ ଶରଣକୂଳ ବଜାରରେ ହେବ । ଡି.ଆଇଜି, ଏଡି.ଏମ୍

ମନା କରୁଥିଲେ ମଧ ମୁଁ ଅଧିକା ଫୋର୍ସ ଆଣି ଦିନ ୧୧ଟା ସୁଦ୍ଧା ପ୍ରସେସନ ଶେଷ କରିଦେଲି । କିଛି ପଇସା ମଧ ଶବସତ୍କାର ପାଇଁ ବନ୍ଦୋବସ୍ତ କରାଗଲା । ଅବସ୍ଥା ଟିକିଏ ସମ୍ଭାଳି ପଡ଼ିଛି କି ନାହିଁ, ଭୁବନେଶ୍ୱରରୁ ଖବର ଆସିଲା ଯେ, ଶୀଘ୍ର ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରିବାକୁ ହେବ । ମୁଖ୍ୟମନ୍ତ୍ରୀ ଦିଲ୍ଲୀରେ ଥିଲେ, ସେଇଦିନ ଗୋଟାଏ ବେଳେ ପହଞ୍ଚିଥାନ୍ତି । ଖବର ପାଇ ଡି. ଆଇ.ଜି., ମୁଁ, କଲେକ୍ଟର ଅଖିଆ ଅପିଆ ଦିନ ୩ଟା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ସଚିବଙ୍କ ଅଫିସରେ ପହଞ୍ଚିଲୁ । ସେତେବେଳକୁ ଡି.ଜି. ମିଃ ସିହ୍ନା, ଘରୋଇ ସଚିବ ମିଃ ସାହୁ, ମୁଖ୍ୟ ଶାସନ ସଚିବ ଶ୍ରୀଯୁକ୍ତ ମିଶ୍ର, ଆର. ଡି.ସି ସମସ୍ତେ ପହଞ୍ଚି ଅପେକ୍ଷା କରିଥାନ୍ତି । ମୁଖ୍ୟ ମନ୍ତ୍ରୀଙ୍କ ସଚିବ ମିଃ ପ୍ୟାରୀମୋହନ ମହାପାତ୍ର ଘଟଣା ବିଷୟରେ, କଥା କିଏ ଆରମ୍ଭ କରିବ ବୋଲି ପଚାରିଲେ ? ସରକାରଙ୍କ ବିନା ନିର୍ଦ୍ଦେଶରେ ଗୁଳିଚାଳନା-ଖୋଦ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ଅବମାନନା କରାଯାଇଛି । ସମସ୍ତେ ଚୁପ୍ ରହିଲା ପରେ, ମୁଖ୍ୟମନ୍ତ୍ରୀଙ୍କ ସଚିବ ମିଃ ମହାପାତ୍ର କହିଲେ, ''ଯେହେତୁ ଏସ୍.ପି. ବର୍ତ୍ତମାନ ଘଟଣା ସ୍ଥଳରୁ ଫେରିଛନ୍ତି, ସେଇ ମୁଖ୍ୟମନ୍ତ୍ରୀଙ୍କୁ ଘଟଣା ବିଷୟରେ କହିବେ ।'' ଆମେ ସମସ୍ତେ ମୁଖ୍ୟମନ୍ତ୍ରୀଙ୍କ ରୁମ୍‌କୁ ପ୍ରବେଶ କଲୁ । ସମସ୍ତେ ବସିଲା ପରେ ମୁଖ୍ୟମନ୍ତ୍ରୀ ପଚାରିଲେ ''କ'ଣ ହେଲା ଶରଣକୂଳ ଗୁଳି କାଣ୍ଡ କଥା ? ମୁଁ ତାଙ୍କୁ ଆମୂଳଚୂଳ ଘଟଣା ବର୍ଣ୍ଣନା କରି କହିଲି । ମୋଠାରୁ ଶୁଣିଲା ପରେ ମୁଖ୍ୟମନ୍ତ୍ରୀ କହିଲେ ଗୁଳିଚାଳନା ଠିକ୍ ହୋଇଛି- କଲେକ୍ଟର କୁଆଡ଼େ ଗଲେ-ସେମାନଙ୍କ ଉପରେ ପିଟୁଣି ଟିକସ ବସାଅ । କଲେକ୍ଟର ଆଜ୍ଞା ହଁକରି ବସିଲା ପରେ, ଆମେ ସମସ୍ତେ ଖୁସିହୋଇ ବାହାରିଲା ବେଳକୁ ମନ୍ତ୍ରୀ ବିଜୟ ମହାପାତ୍ର ଆସି ପହଞ୍ଚିଲେ । ମୁଖ୍ୟମନ୍ତ୍ରୀ ତାଙ୍କୁ ଗୁଳିଚାଳନା ବିଷୟରେ କହି ''ଠିକ୍ ହୋଇଛି କହିଲା ବେଳେ ମିଃ ବିଜୟ ମହାପାତ୍ର କହିଲେ 'ଠିକ୍ ଅଛି ଯେ- ସରକାର ଗୋଟେ ନିର୍ଦ୍ଦେଶ ଦେଇଥିଲେ ବିନା ସରକାରଙ୍କ ଆଦେଶରେ ଗୁଳିଚାଳନା କରିବାକୁ । ଦଳ ଶାସନକୁ ଆସିଲା ପରେ, ଏ ନିଷ୍ପତ୍ତି ନେଲା । ମାତ୍ର ଏଠି ଗୁଳିଚାଳନା ହେଲା ବିନା ନିର୍ଦ୍ଦେଶରେ -ଲୋକେ କ'ଣ କହିବେ ।''

ତାଙ୍କ ମୁହଁରୁ ଏକଥା ଶୁଣି ମୁଖ୍ୟମନ୍ତ୍ରୀ ସଙ୍ଗେ ସଙ୍ଗେ ବଦଳି ଯାଇ କହିଲେ ''କାହିଁକି ସେ ଥାନାବାବୁ, ଏସ୍.ଡି.ପି.ଓ, ସରକାରଙ୍କୁ ନଜଣାଇ ଗୁଳିକଲେ, କ'ଣ ପାଇଁ ଥାନା, ଏସ୍.ଡି.ପି.ଓ ଙ୍କୁ ୱ୍ୟାର୍‌ଲେସ୍ ସେଟ୍ ଦିଆଯାଇଛି ?'' ସମସ୍ତେ ଯେଉଁ ଖୁସି ହୋଇଥିଲେ, ପୁଣି ମୁହଁ ମାରିଚୁପ୍ ହୋଇ ବସିଲେ । ସମସ୍ତଙ୍କୁ ଚୁପ୍ ହୋଇ ବସିବା ଦେଖି ମୁଁ ତାଙ୍କୁ ଚିଲିକା ହ୍ରଦର ଉଦାହରଣ ଦେଇ କହିଲି ଯେ ''ସାର୍ ଚିଲିକା ହ୍ରଦରେ ମଧ ଚିଙ୍ଗୁଡ଼ି ମାଫିଆମାନଙ୍କ ମଧରେ ଗୁଳିଚାଳନା, ବୋମାମାଡ଼ ପରି ଗଣ୍ଡଗୋଳ ଚାଲିଛି । ସରକାର ସଶସ୍ତ୍ର ପୁଲିସ ପେଟ୍ରୋଲିଙ୍ଗ ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ପାଣି ମଧରେ ଡଙ୍ଗା ଦେହରେ ଦୁଇଦଳଙ୍କ ମଧରେ ଯଦି ଗୁଳି ମରାମରି ଚାଲେ କିମ୍ବା ବମ୍ ପକା ପକି ହୁଅନ୍ତି, ପୁଲିସ ସେଠି କ'ଣ କରିବ ? ଲାଠି ଚାର୍ଜ କିମ୍ବା ଲୁହାବୁହା ଗ୍ୟାସ ତ କାମ କରିବନି, ତା ହେଲେ ପୁଲିସ କ'ଣ ସେଠି କେବଳ ଦର୍ଶକ ହେବ ଏବଂ ତାଙ୍କ ସାମ୍ନାରେ ଲୋକ ମୃତ୍ୟୁବରଣ କରିବେ ?'' ମୁଖ୍ୟମନ୍ତ୍ରୀ

ବିରକ୍ତ ହୋଇ କହିଲେ– ''ଠିକ୍ ଅଛି, ଯେଉଁଠି ତୁମେ ଭାବୁଛ କିମ୍ୱା ଖବର ପାଇଛ ଯେ, ଆଇନ ଶୃଙ୍ଖଳା ପରିସ୍ଥିତିକୁ ସମ୍ଭାଳିବା ପାଇଁ ପୁଲିସ୍ ଗୁଳିଚାଳନାର ସମ୍ଭାବନା ଅଛି – ସେଠି ଆଗରୁ ଗୋଟେ ଓ୍ୟାର୍‌ଲେସ୍, ମୁଖ୍ୟ ଶାସନ ସଚିବ, ଘରୋଇ ଶାସନ ସଚିବ, ଡି.ଜି. ଏବଂ ମୁଖ୍ୟମନ୍ତ୍ରୀଙ୍କ ସଚିବଙ୍କ ପାଖକୁ ପଠାଇ ଆଗରୁ ନିର୍ଦ୍ଦେଶ ନେବ ।'' ସେଇ ଅନୁସାରେ ସଙ୍ଗେ ସଙ୍ଗେ ଘରୋଇ ସଚିବ ଓ୍ୟାର୍‌ଲେସ୍‌ରେ ନିର୍ଦ୍ଦେଶନାମା ପଠାଇବେ ।'' ସେଦିନ ମୋତେ ମୁଖ୍ୟମନ୍ତ୍ରୀଙ୍କ ସଚିବ କହିଲେ ''ତୁମେ ଏତେ ନାଟକୀୟ ପରିସ୍ଥିତି ସୃଷ୍ଟି କରି କଥାଟା ଠିକ୍ ବାଟକୁ ଆଣିଲା ବେଳକୁ ମନ୍ତ୍ରୀ ବିଜୟବାବୁ ବିଗାଡ଼ି ଦେଲେ ।'' ଶରଣକୂଳ ଗୁଳିଚାଳନାରେ ଆର.ଡି.ସି. ତଦନ୍ତ ହୋଇ ପୁଲିସ୍ ଗୁଳିଚାଳନା ଯଥାର୍ଥ ବୋଲି କୁହାଗଲାବେଳେ, ନୟାଗଡ଼ ଏସ.ଡି.ପି.ଓ, ଇନ୍‌ସପେକ୍ଟରଙ୍କ ବିରୁଦ୍ଧରେ ଆଗରୁ ପ୍ରତିଶେଧକ ବ୍ୟବସ୍ଥା ଠିକ୍ ସମୟରେ ନନେଇଥିବା ହେତୁ ପ୍ରୋସିଡ଼ିଙ୍ଗ କରାଗଲା ।

ଏଇ ଘଟଣାର ଅଳ୍ପଦିନ ପରେ ଡି.ଜି. ସିହ୍ନା ବଦଳି ହେଲେ ଏବଂ ତାଙ୍କ ସ୍ଥାନରେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ଅନୁରୋଧ ରକ୍ଷାକରି ଡି.ଏନ୍. ସିଂହଙ୍କୁ ଡି.ଜି. କଲେ । ଏଥିରେ ମଧ ବାରିଷ୍ଟର ବିରେନ୍ ପଟ୍ଟନାୟକ ତାଙ୍କୁ ସାହାଯ୍ୟ କରିଥିଲେ । ଡି.ଜି. ଶ୍ରୀଯୁକ୍ତ ସିଂହ ୨୨/୫ରେ ଜଏନ୍ କଲାପରେ, ତାଙ୍କ ଗୋଷ୍ଠୀ ପୁଲିସରେ ଅତ୍ୟନ୍ତ ସକ୍ରିୟ ହୋଇ ଉଠିଲେ । ବହୁ ଅଫିସର ପ୍ରମାଦ ଗଣିଲେ, କାରଣ ସେ ପଦେ ପଦେ କଥାରେ କହୁଥାନ୍ତି ''ଅବ୍ ଦେଖେଁଗେ'' । ଶରଣକୂଳ ଅବସ୍ଥା ଶାନ୍ତ ପଡ଼ିଲା ପରେ, ମୁଁ ପୁରୀକୁ ବଦଳି ହେବା ନିଶ୍ଚିତ ହୋଇଯାଇଥିଲା - ତେବେ ମୁଁ ଅପେକ୍ଷା କରିଥିଲି ମୋର ଡେପୁଟେସନ ଆସିଯିବ ବୋଲି । ଦିଲ୍ଲୀରୁ ମୁଁ, ପ୍ରସନ୍ନହୋତା, ଜଏଣ୍ଟ ସେକ୍ରେଟାରୀ ହେଭି ଇଣ୍ଡଷ୍ଟ୍ରିଙ୍କଠାରୁ ଖବର ପାଇଲି ଯେ ମୋର ନାଁ ''ଇଂଜିନିୟରିଂ ପ୍ରୋଜେକ୍ଟ ଇଣ୍ଡିଆ ଲିମିଟେଡ଼େ କେନ୍ଦ୍ରସରକାରଙ୍କ ଏକ ଉଦ୍ୟୋଗକୁ ଏକ୍‌ଜିକ୍ୟୁଟିଭ ଡାଇରେକ୍ଟର, ଭିଜିଲାନ୍‌ସ ଭାବେ ଯିବା ପାଇଁ ସୁପାରିଶ୍ ହୋଇଛି, ମାତ୍ର ଏପର୍ଯ୍ୟନ୍ତ ବିଭାଗୀୟ ମନ୍ତ୍ରୀ ପଠାଯାଇଥିବା ପାଞ୍ଚଗୋଟି ନାମରୁ କାହାକୁ ସିଲେକ୍ଟ କରିନାହାନ୍ତି । ଡେପୁଟେସନ୍‌ର ଅବସ୍ଥା ଏହି ପ୍ରକାର ଥିଲାବେଳେ, ଦିନେ ମୁଁ ଜାଣିବାକୁ ପାଇଲି କେନ୍ଦ୍ରର Heavy Industry ବିଭାଗର ମନ୍ତ୍ରୀ ଅଜିତ୍ ସିଂହ କୋଣାର୍କ ଆସୁଛନ୍ତି । କୋଣାର୍କରୁ ପୁରୀ ଆସି, ପୁରୀରେ ଆଶୋକ-ନିଳାଚଳରେ ଲଞ୍ଚ କରି ଫେରିବେ । ପୁରୀ ଆସିବା ତାଙ୍କର ସରକାରୀ ଗସ୍ତ ନଥିଲା । ତତ୍‌କାଳୀନ ଓଡ଼ିଶାର ଉଦ୍ୟୋଗମନ୍ତ୍ରୀ ଦୀଲିପ୍ ରାଏ ତାଙ୍କୁ ପୁରୀ ଆଣୁଛନ୍ତି, ଏକଥା କେହି ଜାଣନ୍ତିନି । ମୁଁ ଶୁଣିଲାପରେ ଦୀଲିପ୍ ରାୟଙ୍କ ସଙ୍ଗେ କଥାବାର୍ତ୍ତା କଲି ଏବଂ ସେ ମୋତେ ତାଙ୍କ ସହିତ ଅଶୋକାନିଳାଚଳ ହୋଟେଲରେ ମଧ୍ୟାହ୍ନ ଭୋଜନପାଇଁ ଯୋଗ ଦେବାକୁ କହିଲେ । ଠିକ୍ ଅପରାହ୍ନ ଗୋଟାକ ବେଳେ, ମୁଁ ହୋଟେଲରେ ପହଞ୍ଚିଲି ଏବଂ ସେ ମୋତେ ତାଙ୍କ ପରିବାରର ଜଣେ ବନ୍ଧୁ ଭାବେ ପରିଚୟ କରିଦେଲାପରେ ମୋର ଫାଇଲ ତାଙ୍କ ପାଖରେ ପଡ଼ିଛି ବୋଲି କହିଲେ । ଅଜିତ୍ ସିଂହଙ୍କ ମନେଥିଲା ଏବଂ ସେ କହିଲେ ୫ଜଣଙ୍କ ନାଁ ପଠାଯାଇଛି, ସେ ଏ ପର୍ଯ୍ୟନ୍ତ କାହାକୁ ସିଲେକ୍ଟ କରିନାହାଁନ୍ତି । ସେ ମୋତେ

ପଚାରିଲେ । ମୁଁ ନିଶ୍ଚିତ ଭାବେ ଯିବାକୁ ଚାହୁଁଛି ବୋଲି କହିବାରୁ ସେ କହିଲେ, ''ଠିକ୍ ଅଛି । ଆସନ୍ତାକାଲି ମୋ ପ୍ରାଇଭେଟ୍ ସେକ୍ରେଟାରୀ ଆପଣଙ୍କୁ ଟେଲିଫୋନ୍ କରି କହିବେ ।'' ପରଦିନ ଠିକ୍ ସନ୍ଧ୍ୟା ୬ଟାରେ ଦିଲ୍ଲୀରୁ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଫୋନ କରିକହିଲେ ଯେ, ମନ୍ତ୍ରୀ ଫାଇଲରେ ମୋ ନାଁକୁ ଅନୁମୋଦନ କରି, ପରସନାଲ ଡିପାର୍ଟମେଣ୍ଟକୁ ପଠାଇ ଦେଇଛନ୍ତି । କେନ୍ଦ୍ର ଘରୋଇ ବିଭାଗ ମନ୍ତ୍ରଣାଳୟରୁ ଅଧିସୂଚନା ବାହାରିଲେ ମୋତେ ଯିବାକୁ ହେବ । ଏଇ ସମୟ ବେଳକୁ ମୋର ପ୍ରମୋଶନ ହେବା କଥା ଡେରି ଡେରି ହେଉଥାଏ । ବି.ପି. ଶାହା ଡି.ଆଇ.ଜି.ରୁ ଆଇ.ଜି. ପ୍ରମୋଶନ ପାଇବା କଥା, ଡି.ପି.ଏସ୍. ଚୌହାନ୍ ମଧ୍ୟ । ମାତ୍ର କିଛି ଅସୁବିଧା ଥିବା ଯୋଗୁ ତାଙ୍କର ପ୍ରମୋଶନ ନୋଟିଫିକେସନରେ ଡେରି ହେଉଥାଏ । କାରଣ ଡି.ଜି. ଡି.ଏନ. ସିଂହ ଚାହୁଁ ନଥାନ୍ତି, ବି.ପି. ଶାହା ପ୍ରମୋଶନ ଶୀଘ୍ର ପାଆନ୍ତୁ ବୋଲି ।

ମୁଁ ମେ ମାସ ରେ ୧୫ଦିନ ଇ.ଏଲ. ନେଇ, ପିଲାମାନଙ୍କୁ ଧରି ଏଲ.ଟି.ସି.ରେ ସିକିମ୍ ଚାଲିଗଲି । ସିକିମ୍‌ରେ ଥିଲାବେଳେ ମୁଁ ଟେଲିଫୋନ୍ ଯୋଗେ ଜାଣିଲି ଯେ ମୋର ପୁରୀରୁ ବଦଳି ହୋଇ କଟକ ଜିଲ୍ଲାକୁ ଏସ୍.ପି. ଭାବେ ପୋଷ୍ଟିଂ ହୋଇଛି । ଶୁଣିଲି ଯେ ମନ୍ତ୍ରୀ ସୁର ନାଏକ ମୋର ବଦଳି ଯେତେ ଶୀଘ୍ର ପୁରୀରୁ ହୁଏ, ଚାହୁଁଥିଲେ ଏବଂ ତାଙ୍କ ସ୍ଥାନରେ ସୁରେନ୍ଦ୍ର ସ୍ୱାଇଁକୁ ପୁରୀ ଆଣିବା ପାଇଁ ଜିଦ୍ ଧରି ବସିଥିଲେ । ମୁଁ ପୁରୀକୁ ମେ ମାସ ୩୦ ତାରିଖରେ ଫେରିଲି । ଷ୍ଟେସନରେ ଅତିରିକ୍ତ ଏସ.ପି. ରାଓ, ସେଣ୍ଟ୍ରାଲ୍ ଇଣ୍ଟେଲିଜେନ୍ସ ଅଫିସର ରଥ ମୋତେ କହିଲେ ଯଦିଓ ମୋର କଟକ ବଦଳି ହୋଇଛି, ଡି.ଜି. ଓ୍ୟାରଲେସ୍ ଦେଇଛନ୍ତି ଯେ, ରଥଯାତ୍ରା ପରେ ମୁଁ ଦାୟିତ୍ୱ ହସ୍ତାନ୍ତର କରିବି । ମୁଁ ଜଏନ୍ କଲାପରେ ଡି.ଜି. ମିଃ ସିଂହଙ୍କୁ ଟେଲିଫୋନ କଲି । ସେ ମୋତେ ଫୋନରେ କହିଲେ ଶୀଘ୍ର ସ୍ୱାଇଁଙ୍କୁ ଦାୟିତ୍ୱ ହସ୍ତାନର କରି କଟକ ଜିଲ୍ଲାରେ ଜଏନ୍ କରିବାକୁ । ତାଙ୍କର ପୂର୍ବ ଓ୍ୟାରଲେସ୍ ଦେଲାପରେ ସେ ଦିନ ଆଉଗୋଟେ ଖବର ପଠାଉଛନ୍ତି ବୋଲି କହିଲେ । ପରେ ଶୁଣିଲି ଯଦିଓ ଡି.ଜି. ଚାହୁଁଥିଲେ ମାତ୍ର ସୁର ନାଏକ, ମୁଁ ରଥଯାତ୍ରା ପର୍ଯ୍ୟନ୍ତ ରହୁଥିବା ଶୁଣି ଅତ୍ୟନ୍ତ ବିରକ୍ତ ହେଲେ । ତେଣୁ ଡି.ଜି. ତାଙ୍କର ମତ ପରିବର୍ତ୍ତନ କରି ମୋତେ ଶୀଘ୍ର ଦାୟିତ୍ୱ ହସ୍ତାନ୍ତର କରି କଟକ ଯିବାକୁ କହିଲେ । ମୁଁ ସୁରେନ୍ଦ୍ର ସଙ୍ଗେ କଥାବାର୍ତ୍ତା କଲାପରେ ସେ ଜୁନ୍ ୬ ତାରିଖରେ ପୁରୀରେ ପହଞ୍ଚି ଦାୟିତ୍ୱ ନେଲା । ରଥଯାତ୍ରା ସେ ବର୍ଷ ଜୁନ୍ ମାସ ୨୪ ତାରିଖରେ ପଡୁଥାଏ । ରଥଯାତ୍ରା ପାଇଁ ମୁଁ ପୁଲିସ ବନ୍ଦୋବସ୍ତ ଏବଂ ଅନ୍ୟାନ ପ୍ରାରମ୍ଭିକ କାର୍ଯ୍ୟ ସାରିଦେଇଥାଏ ଏବଂ ରଥଯାତ୍ରା କରିଯିବି ବୋଲି ଆଶା କରିଥିଲି । ସୁରେନ୍ଦ୍ର ଆସି ଦାୟିତ୍ୱ ନେଲାପରେ, ମନରେ ବହୁତ କଷ୍ଟ ହେଲା । ଜଗନ୍ନାଥଙ୍କୁ ମନେ ମନେ ଶୋଧିଲି । ଯଦି ରଥଯାତ୍ରା କରିବାର ନଥିଲା, ତାହେଲେ ଏତେ ହଟ୍‌ଚମଟ୍ କାହିଁକି କରୁଥିଲେ । ଅଭିମାନରେ ମୋ ମନ ଥରି ଉଠିଲା । ଦାୟିତ୍ୱ ହସ୍ତାନ୍ତର କରି ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଗଲି । ମୋତେ ଜଣାପଡ଼ିଲା ତାଙ୍କ ମୁହଁରେ ସେଇ ଦୁଷ୍ଟାମୀ ହସ । ଦର୍ଶନପରେ, ପୁରୀ ଜିଲ୍ଲାର ପୁଲିସ୍ ମୋତେ ସିଂହଦ୍ୱାର ଠାରୁ ପ୍ରସେସନରେ ନେଇ ମୋ ବସାରେ

ଛାଡ଼ିଲେ । ମୁଁ ପୁରୀ ଛାଡ଼ି କଟକ ଦାୟିତ୍ୱ ନେବା ପାଇଁ ଗଲି । କଟକରେ ସେଇ ଜୁନ୍ ମାସ ୬ ତାରିଖରେ ମୁଁ ଏସ.ପି. ଭାବେ ଦାୟିତ୍ୱ ନେଲି । ପ୍ରତ୍ୟେକ ଦିନ ମୁଁ ମୋର ପ୍ରମୋସନ ଏବଂ ଡେପୁଟେସନ ଆଦେଶକୁ ଅପେକ୍ଷା କରିଥାଏ । ଏକଥା ମଧ୍ୟ ମୁଁ ଘରୋଇ ସଚିବ ଶ୍ରୀ ସାହୁଙ୍କୁ ଏବଂ ମୁଖ୍ୟମନ୍ତ୍ରୀଙ୍କ ସଚିବ ଶ୍ରୀ ମହାପାତ୍ରଙ୍କୁ କହିଥାଏ । ମିଃ ମହାପାତ୍ର କହିଥିଲେ ପ୍ରମୋଶନ ପାଇଗଲେ, ମୋତେ ସୁବିଧା ହେବ । ତେଣୁ ମୁଁ ପ୍ରମୋଶନ ପାଇଁ ଅପେକ୍ଷା କରିଥାଏ । ତାଛଡ଼ା ଡେପୁଟେସନ ଆଦେଶ ବି ଆସିନଥାଏ ।

**ଜଗନ୍ନାଥଙ୍କ ଡୋରୀ :** ମୁଁ ସବୁ ବନ୍ଦୋବସ୍ତ କରିଥିଲେ ମଧ୍ୟ ସ୍ନାନ ପୂର୍ଣ୍ଣିମାର ମାତ୍ର ତିନିଦିନ ପୂର୍ବରୁ ପୁରୀ ଛାଡ଼ି କଟକ ଆସି ଜଏନ୍ କଲି । ମନରେ ଜଗନ୍ନାଥଙ୍କ ଉପରେ ଅଭିମାନ, ରାଗ । ମନେ ମନେ ଧରିନେଲି, ଜଗନ୍ନାଥ ମୋତେ ଚାହୁଁ ନଥିବା ଯୋଗୁ, ମୋତେ କଟକ ବଦଳି ହୋଇ ଆସିବାକୁ ପଡ଼ିଲା । ଦିନେ ଦୁଇଦିନ ପରେ, କଟକ ଜିଲ୍ଲାର କାମରେ ଲାଗିପଡ଼ିଲି । ଘର ନଥିବା ଯୋଗୁ ମୋତେ ସରକିଟ୍ ହାଉସ୍‌ରେ ରହିବାକୁ ପଡୁଥାଏ । ଜୁନ୍ ମାସ ୨୪ ତାରିଖରେ ରଥ ପଡ଼ିଲା । ସେ ଦିନ ମଧ୍ୟ କଟକରେ ଦୋଳମୁଣ୍ଡାଇ ଛକ ପାଖରେ ଜଗନ୍ନାଥଙ୍କ ମନ୍ଦିରରୁ ରଥ ବାହାରି ଟଣା ହୁଏ । ନେତ୍ର ଉତ୍ସବ ଦିନ ଜଗନ୍ନାଥଙ୍କୁ କଟକ ଦୋଳମୁଣ୍ଡାଇ ଛକ ଜଗନ୍ନାଥ ମନ୍ଦିରରେ ଦର୍ଶନ କଲାବେଳେ ପୂର୍ବ ବର୍ଷ ପୁରୀ ରଥଯାତ୍ରା ଜଗନ୍ନାଥଙ୍କ ନେତ୍ରଉତ୍ସବ, ନବଯୌବନ ଦର୍ଶନ ସବୁ ଘଟଣା ଆଖି ଆଗରେ ଭାସି ଉଠିଲା । ମୋ ଆଖିରେ ଲୁହ ଢଳ ଢଳ ହେବାକୁ ଲାଗିଲା । ମନେ ମନେ ଜଗନ୍ନାଥଙ୍କୁ ବହେ ଶୋଧି ଫେରିଲି । ରଥଟଣା ବେଳକୁ ମୁଁ ଦୋଳମୁଣ୍ଡାଇ ଛକକୁ ଯାଇ କିଛି ସମୟ ଟଣା ଦେଖି ଫେରିଲି । ମନ ଆଦୌ ଭଲ ଲାଗୁନଥାଏ । ସବୁବେଳେ ମନଟା ଯାଇ ପୁରୀ ବଡ଼ଦାଣ୍ଡରେ ବୁଲୁଥାଏ । ବଡ଼ ଠାକୁରଙ୍କ ରଥଟଣା ହେବଣି । ଏମିତି କେତେକଥା ମନକୁ ଆସେ ।'' ସେଦିନ ସନ୍ଧ୍ୟାବେଳକୁ ମୁଁ ଫୁଲୁ ଘରକୁ(ବିମଳ କିଶୋର ମହାପାତ୍ର) ଆସିଲି । ଡକ୍ଟର କସ୍ତୁରୀ ଦାସ (ଫୁଲୁ ସ୍ତ୍ରୀ) ଘରେ ଥା'ନ୍ତି । କିଛି ସମୟ କଥାବାର୍ତ୍ତା ହେଲାପରେ, ମୁଁ ତାରି ଘରେ ସନ୍ଧ୍ୟା ଖବର ଜାଣିବା ପାଇଁ ଟି.ଭି ଖୋଲିଲି । ପୁରୀର ରଥ ଟଣା କେଉଁଯାଏ ଗଲା କିମିତି ହେଲା ଦେଖିବାକୁ ମନ ଉଚ୍ଛନ୍ନ ହେଉଥାଏ । କେବଳ ମୋ ମନ ନୁହେଁ, ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଜଗନ୍ନାଥଙ୍କ ରଥଟଣା, ପହଣ୍ଡି ଦେଖିଲେ ଏକ ଶିହରଣ ସୃଷ୍ଟିହୁଏ । ଟିଭିରେ ପହଣ୍ଡି ଦେଖିଲୁ, ମାତ୍ର ହଠାତ୍ ଘୋଷକ କହିଲେ ଯେ, ରଥଟଣା ବନ୍ଦ ହୋଇଗଲା, କାରଣ ବଡ଼ ଠାକୁରଙ୍କ ରଥ ମାତ୍ର ୧୦୦ ଗଜ ଆସିଲା ପରେ ବାମ ମୋଡ଼ ନେଇ ଲୁଗା ଦୋକାନ ପାଖ ବିଜୁଳି ଖୁଣ୍ଟିରେ ଲାଗିଯାଇ ଥିଲା । ବଡ଼ ଠାକୁରଙ୍କ ରଥକୁ, ବଡ଼ଦାଣ୍ଡ ମଝିକୁ ଆଣିବାକୁ ମୋଡ଼ ଦଉଡ଼ି ଠିକ୍ ଭାବେ ନପକାଇ, ଟାଣି ନେବା ଯୋଗୁ ଆଠୋଟି ରଥଚକ ଭାଙ୍ଗିଗଲା । ସମୟ ଅତିବାହିତ ହୋଇଯାଇଥିବା ଯୋଗୁ ସେ ଦିନ ଆଉ ରଥଚକାକୁ ମରାମତି କରି ରଥଟଣା ହୋଇ ପାରିଲାନି ଏବଂ ବନ୍ଦ ରହିଲା । କେବଳ ନିତି ରକ୍ଷା କରିବାକୁ ଯାଇ, ସୁଭଦ୍ରାଙ୍କ ଏବଂ ଜଗନ୍ନାଥଙ୍କ ରଥକୁ

ହାତେ ହାତେ ଟାଣି, ରଥଟଣା ବନ୍ଦ କରାଯାଇଛି । ଟି.ଭି ଖବରରୁ ଏକଥା ଶୁଣି ମୋ ମନ ଅତ୍ୟନ୍ତ କଷ୍ଟହେଲା । ରଥଦିନ ତିନିଠାକୁରଙ୍କ ରଥ ଚାଲିପାରିଲାନି । ମନରେ କଷ୍ଟହେଲା - ଆଖିରେ ଲୁହ ଜମି ଆସିଲା । ଫୁଲୁ କହିଲା, ଛାଡ଼ ଦୁଇ ପେଗ୍ ସ୍କଚ୍ ପିଇ ଦେ । ମୁଁ ମନାକଲେ ମଧ୍ୟ ସେ ବାଧ୍ୟ କରିବାରେ, ଆମେ ବସି ସ୍କଚ୍ ହୁସ୍କି ପିଇବା ଆରମ୍ଭ କଲୁ । ତାରି ମଧ୍ୟରେ, ରଥକଥା, ଜଗନ୍ନାଥଙ୍କ କଥା ପଡ଼ିଥାଏ, ମୋ ମନକଥା ମଧ୍ୟ ପଡ଼ିଥିଲା । ୧୯୭୭ ମସିହା ନବ କଳେବରକୁ ମଧ୍ୟ ଠିକ୍ ଏଇପରି ଭାବେ ରଥଚକା ଭାଙ୍ଗି ରଥଟଣା ବନ୍ଦ ହୋଇଥିଲା । ମୁଁ ସେଠାରେ ଉପସ୍ଥିତ ଥିଲି । ରାତିରେ ଫୁଲୁ ଯାଇ ମଧ୍ୟ ପହଞ୍ଚିଥିଲା । ସବୁବେଳେ ଚକାଡ଼ୋଳା ପାଖେ ଆଖି ଲାଗି ଯାଉଥାଏ । ମାନସ ପଟରେ ଜଗନ୍ନାଥଙ୍କ ରଥ ସିଂହଦ୍ୱାରରେ ଠିଆ ହେବା ଦୃଶ୍ୟ ଭାସି ଆସୁଥାଏ । ପ୍ରାୟ ରାତ୍ରି ୧୧.୩୦ ବେଳକୁ ମୁଁ ଫୁଲୁ ଘରଛାଡ଼ି, ସରକିଟ୍ ହାଉସକୁ ଫେରିଲି । ଫେରିଲାପରେ ମୋ ଅର୍ଦ୍ଦଲି କହିଲା ମୁଖ୍ୟମନ୍ତ୍ରୀ ଟେଲିଫୋନ କରିଥିଲେ ଏବଂ ହୋମ ସେକ୍ରେଟାରୀ ଫୋନ କରି ଖୋଜୁଥିଲେ, କହିଛନ୍ତି ଯେତେ ରାତି ହେଲେ ବି ହୋମ ସେକ୍ରେଟାରୀଙ୍କୁ ଫୋନ କରିବାକୁ । ମୁଁ ସଙ୍ଗେ ସଙ୍ଗେ ହୋମ ସେକ୍ରେଟାରୀ ସହଦେବ ସାହୁଙ୍କ ଘରକୁ ଟେଲିଫୋନ୍ କଲି । ସେ ମୋତେ କହିଲେ, ପୁରୀରେ ବଡ଼ ଠାକୁରଙ୍କ ରଥଚକା ଭାଙ୍ଗି ରଥଟଣା ବନ୍ଦ ହୋଇଛି । ତୁମେ କାଲି ସକାଳ ଆଠଟା ସୁଦ୍ଧା ପୁରୀରେ ପହଞ୍ଚି, ରଥଟଣାରେ ସାହାଯ୍ୟ କରିବ । ମୁଖ୍ୟମନ୍ତ୍ରୀଙ୍କ ଆଦେଶ ।

ହଠାତ୍ ମୋ ମୁଣ୍ଡରୁ ନିଶା ଖସିଗଲା । ଅଳ୍ପ ଟିକକ ଆଗରୁ ଜଗନ୍ନାଥକୁ ଶୋଧୁଥିଲି, ମନ ଖରାପ କରୁଥିଲି, ରଥଚକା ଭାଙ୍ଗିଗଲା ବୋଲି । ଏବେ ପୁଣି ଆଦେଶ ଆସିଲେଣି ସକାଳ ଆଠଟା ବେଳକୁ ଯାଇ ରଥଟଣା କାର୍ଯ୍ୟରେ ଯୋଗଦେବା ପାଇଁ । ଅଳ୍ପ ସମୟ ପାଇଁ ମୁଁ ପ୍ରଭୁଙ୍କ ମାୟାକୁ ବୁଝି ପାରିଲି ନାହିଁ । ଫୋନରେ ଫୁଲୁକୁ ସେଇକଥା କହିଲି "ଦେଖ, ମୋତେ ଜଗନ୍ନାଥଙ୍କ ଡାକରା ଆସିଲାଣି ରଥଟଣା କାମ ପାଇଁ । ସତେ ଯେପରି ଭକ୍ତର ଭଗବାନ - ଭକ୍ତ ପାଇଁ ଅପେକ୍ଷା କରିଛନ୍ତି । ପୁରାଣରେ ପଢ଼ିଥିଲି ଭକ୍ତ "ବଳରାମ ଦାସ ମଦ୍ୟପ ଏବଂ ବେଶ୍ୟାସକ୍ତ ଥିବା ଯୋଗୁ ଠାକୁର ରାଜା ତାଙ୍କୁ ଜଗନ୍ନାଥଙ୍କ ରଥ ଛୁଇଁବାକୁ ମନା କରିଦେଲେ । ରଥ ଦିନ ଭକ୍ତ ବଳରାମ, ପୁରୀ ସମୁଦ୍ରକୂଳରେ ବାଲିରେ ରଥଟିଏ କରି ଜଗନ୍ନାଥ ପାଖେ ଏକାମନ ଏକାପ୍ରାଣ ହେଇ, ସେହି ବାଲି ରଥକୁ ଚାହିଁ ରହିଲେ । ଏଣେ ସିଂହଦ୍ୱାରରୁ ତିନି ଠାକୁରଙ୍କ ରଥ ଗଡ଼ିଲାନି । ରାଜା ଯେତେ ଚେଷ୍ଟା କଲେ, ରଥ ସେଇଠି ରହିଲା, ଉଠିଲାନି । ପରେ ବଡ଼ପଣ୍ଡାଙ୍କ କଥା ଅନୁସାରେ ଭକ୍ତ ବଳରାମକୁ ସମୁଦ୍ରକୂଳରୁ ଆଣିଲା ପରେ ରଥ ଚାଲିଲା । ପ୍ରଭୁ ଭକ୍ତ ପ୍ରିୟ, ଏହା ଯୁଗେ ଯୁଗେ ଜଣା ।

ସେଦିନ ରାତ୍ରିରେ ମୋତେ ନିଦ ହେଲାନି । ସେଇ ଅର୍ଦ୍ଧରାତ୍ରିରେ ପୁଲିସ୍ ଲାଇନ୍‌କୁ ଟେଲିଫୋନ କରି ଗାଡ଼ି ଡ୍ରାଇଭର ସକାଳୁ ୬ଟାରେ ପହଞ୍ଚିବାକୁ ନିର୍ଦ୍ଦେଶ ଦେଲି । ଠିକ୍ ସକାଳ ୬ଟାରେ ପୁରୀ ଅଭିମୁଖେ ବାହାରିଲି । ମନଟା ସେଇ ଚକାଡ଼ୋଳା ପାଖେ ଥାଏ । କଟକରୁ ସିଧା ସିଂହଦ୍ୱାର ପାଖେ ପହଞ୍ଚି ଦେଖିଲି, ଏସ.ପି. ସୁରେନ୍ଦ୍ର ସ୍ୱାଇଁ ଥା'ନ୍ତି ଏବଂ ଅନ୍ୟାନ୍ୟ ପୁଲିସ

ଅଫିସରମାନେ ପହଞ୍ଚି ଯାଇଥାନ୍ତି । ସେବକମାନେ ମଧ ପହଞ୍ଚି ଯାଇଥିଲେ । ଗତ ରାତ୍ରିରେ କ୍ରେନ୍ ଆସି ରଥକୁ ଟେକି ଚକା ସବୁ ରିପେୟାର ହୋଇ ଯାଇଥାଏ ଏବଂ ରେଓ୍ୱେଲେର ଜ୍ୟାକ୍ ସାହାଯ୍ୟରେ ରଥକୁ ସିଧା କରି ଦିଆଯାଇଥାଏ । ମୁଁ ପହଞ୍ଚୁ ପହଞ୍ଚୁ ରଥ ଉପରୁ କେତେଜଣ ସେବକ ସେଠାରେ ଉପସ୍ଥିତ ଥିବା ମନ୍ତ୍ରୀଙ୍କ ଉଦ୍ଦେଶ୍ୟରେ ମୋ ବଦଳିକୁ କେନ୍ଦ୍ରକରି ଅଶ୍ରାବ୍ୟ ଭାଷା ପ୍ରୟୋଗ କରିବାକୁ ଛାଡ଼ିଲେନି । କେତେଜଣ ପାଟିକରି କହିଲେ ଏଇମନ୍ତ୍ରୀ ଲାଗି ରଥ ଚକା ଭାଙ୍ଗିଲା । ଏପରି କେତେକଥା ରଥ ଉପରୁ କୁହାଗଲା । ମୋତେ ଦେଖି ସେବକମାନେ ଖୁସିହେଲେ । ମୁଁ ଆଗ ପ୍ରଭୁଙ୍କ ପାଖରେ ଗୁହାରି ଜଣାଇ ରଥଟଣା କାର୍ଯ୍ୟ ଆରମ୍ଭ କଲି । ପୁରୀ ଏସ.ପି.ଙ୍କୁ ମୁଁ ସାହାଯ୍ୟ କରିବାକୁ ଯାଇଥାଏ । ତେଣୁ ମୁଁ ପ୍ରଥମେ ବଡ଼ ଠାକୁରଙ୍କ ରଥ ମୋଡ଼ ଦେଇ, ବଡ଼ ଦାଣ୍ଡର ମଝିକୁ ଆଣି, ଟଣା ଆରମ୍ଭ କଲି । ବଡ଼ଦାଣ୍ଡରେ ବଡ଼ ଠାକୁରଙ୍କ ରଥ ଚାଲିଲା । ଲକ୍ଷ ଲକ୍ଷ ଦର୍ଶକ ଅପେକ୍ଷା କରିଥିଲେ ରଥ ଟାଣିବା ପାଇଁ, ତାଙ୍କ ଆଶା ପୂରଣ ହେଲା । ସେଦିନ ଦିନ ଦୁଇଟା ପୂର୍ବରୁ ବଡ଼ ଠାକୁରଙ୍କ ରଥ ଏବଂ ସନ୍ଧ୍ୟା ପୂର୍ବରୁ ଜଗନ୍ନାଥଙ୍କ ରଥ ଗୁଣ୍ଡିଚା ମନ୍ଦିର ପାଖେ ପହଞ୍ଚିଥିଲା । ରଥ ପହଞ୍ଚିଲା ପରେ, ମୋ ମନରେ ଯେଉଁ ଆନନ୍ଦ ତାହା ବର୍ଣ୍ଣନାନୀତ । କେବଳ ମନେ ମନେ ପ୍ରଭୁଙ୍କୁ କହିଲି, ମୋତେ ବଦଳି କରି ଯେଉଁପରି ଭାବେ ପୁଣି ଟାଣି ଆଣିଲୁ, ଯାହା ସମସ୍ତଙ୍କ ଆଗରେ ଦେଖାଇଦେଲୁ, ମୁଁ ବଦଳି ନହୋଇଥିଲେ, ତାର କାଣିଚ଼ିଏ ପାଇନଥାନ୍ତି । ଜଗନ୍ନାଥଙ୍କ ଡୋରୀ କେତେବେଳେ, କିମିତି ଭାବେ ଲାଗେ, କେବଳ ତାକୁହିଁ ଜଣା ।

**କଟକ ଛାଡ଼ ଆଦେଶ :** କଟକ ଏସ.ପି. ଥିଲାବେଳେ ଜୁଲାଇ ମାସରେ ଡି.ଆଇ.ଜି. ପଦୋନ୍ନତି ବୋର୍ଡ଼ ହେବାର ଥିଲା । ଡି.ଜି., ଡି.ଏନ୍. ସିଂହ, ବି.ପି. ଶାହାକୁ ପ୍ରମୋଶନ ଦେବାକୁ ଚାହୁଁ ନଥିବା ହେତୁ ଅଯଥାରେ ବୋର୍ଡ଼ ବସିବାରେ ଡେରି ହେଉଥାଏ । ଜୁଲାଇ ୨୧ରେ ବୋର୍ଡ଼ ବସିଥିଲା ଏବଂ ବୋର୍ଡ଼ ମୋତେ କ୍ଲିୟର କରିଥିବା ଖବର ପାଇଥିଲି । କେବଳ ବି.ପି.ଶାହା ପ୍ରମୋଶନ ପାଇଗଲେ ମୋର ଡି.ଆଇ.ଜି ପ୍ରମୋଶନ ଆସିଯିବ । କାରଣ ଜୁଲାଇ ୬ ତାରିଖରୁ ମୋର ଡେପୁଟେସନ୍ ଅର୍ଡ଼ର ହୋମଡିପାର୍ଟମେଣ୍ଟକୁ ଆସିଯାଇଥାଏ ଏବଂ ପ୍ରମୋଶନ ହେଲେ ଯିବାର କଥା । ଜୁଲାଇ ମାସ ୨୩ ତାରିଖ ଦିନ ମୁଁ ଅଫିସରେ ଥିବାବେଳେ ମିଃ ଲାଲ ହଠାତ୍ ଟେଲିଫୋନ କରି କହିଲେ ଯେ, ମୋତେ ଡି.ପି.ସି ରେ କ୍ଲିୟର କରିନାହିଁ କିମ୍ବା ବି.ପି. ଶାହାଙ୍କର ମଧ ହୋଇନି । ମୁଁ ବିଶ୍ୱାସ କରିପାରିଲିନାହିଁ କାରଣ ମୁଁ ଭଲଭାବେ ଜାଣିଥିଲି ଯେ ମୋତେ ଡି.ପି.ସି. କ୍ଲିୟର କରିଛି ବୋଲି । ସଙ୍ଗେ ସଙ୍ଗେ ଭୁବନେଶ୍ୱର ଗଲି ଏବଂ ଜି.ଏ. ଡିପାର୍ଟମେଣ୍ଟରୁ ତାଙ୍କକଥା ଭୁଲ ବୋଲି ଜାଣି ଫେରିଲି । ମିଃ ଲାଲ କାହାଠାରୁ ଶୁଣି ଏକଥା ମୋତେ କହିଲେ, ସେ କଥା ମୁଁ ବୁଝି ପାରିଲି ନାହିଁ । କଟକରେ ମୁଁ କେବଳ ପ୍ରମୋଶନକୁ ଅପେକ୍ଷା କରି ସମୟ କଟାଇବା ସାର ହେଉଥାଏ । ଏହି ସମୟରେ ଜୁଲାଇ ମାସ ୨୭ ତାରିଖ ଦିନ, କଟକ ଜେଲରେ କଏଦୀମାନେ ସତ୍ୟାଗ୍ରହ ଆରମ୍ଭ କରି ଜେଲ ମଧରେ ଗଣଧାରଣା ଦେଇ ବସିଲେ । ସେମାନଙ୍କ କଥା ବୁଝିବା ପାଇଁ କଟକର ମନ୍ତ୍ରୀ ମୁସ୍ତାଫିଜ ଅହମ୍ମଦ, କଟକ କଲେକ୍ଟର ମିଃ ମିଶ୍ର, ମୁଁ,ଏଡି.ଏମ୍. ଆମେ ସମସ୍ତେ କଟକ ଜେଲ (ସେତେବେଳେ ଦରଘା ବଜାର ଜେଲଥିଲା)କୁ

ଯାଉଥାଉ । ମନ୍ତ୍ରୀ ଏବଂ କଲେକ୍ଟର ଜେଲ ଭିତରକୁ ଅନଶନକାରୀ କଏଦୀମାନଙ୍କୁ ଦେଖା କରିବାକୁ ଗଲେ । ମୁଁ ଯିବାକୁ ବାହାରିଲି ମାତ୍ର ଏ.ଡି.ଏମ୍. ଭଗବାନ ବାବୁ ମୋତେ କହିଲେ, "ମନ୍ତ୍ରୀ କଲେକ୍ଟର ଭିତରକୁ ଯାଉଛନ୍ତି, ଆମେ କାହିଁକି ଯିବା - ଆମେ ଜେଲ ସୁପରିଟେଣ୍ଡେଣ୍ଟଙ୍କ ରୁମ୍‌ରେ ଅପେକ୍ଷା କରିବା । ସମସ୍ତେ ଯିବାଟା ଠିକ୍ ହେବନି ।" ସେ ଯାହା କହିଲେ ଠିକ୍ । କାରଣ ଆମେ ସମସ୍ତେ ଚାଲିଗଲେ, ବାହାରେ କୌଣସି ସିନିୟର ଅଫିସର ରହିବେନି । ତେଣୁ ଆମେ ଦୁହେଁ ଜେଲ ଅଫିସରେ ଅପେକ୍ଷା କଲୁ ।

ମୁଁ ସେଇଠି ବସିଥିଲା ବେଳେ, ହଠାତ୍ ମୋ ପାଖକୁ ଟେଲିଫୋନ୍ ଆସିଲା । କ୍ରାଇମ୍ ବ୍ରାଞ୍ଚ, ଆଇ.ଜି., ଏ.ବି. ତ୍ରିପାଠୀ ମୋତେ ଫୋନ୍‌ରେ କହିଲେ, "କିଓ ତୁମେ କ'ଣ ସେଠି ବସିଛ, ଏଠି କ'ଣ ଉପାଧ୍ୟାୟ, (କ୍ରାଇମ୍ ବ୍ରାଞ୍ଚ ଏସ.ପି.) କଟକ ଏସ.ପି. ଭାବେ ଜଏନ୍ କରିବାକୁ ଡ୍ରେସ ପିନ୍ଧି ବାହାରିଲଣି ।" ତାଙ୍କ କଥା ମୁଁ କିଛି ବୁଝି ପାରିଲି ନାହିଁ । ସେ ଫୋନ ଥୋଇଲା ପରେ, ଡି.ଜି., ଡି.ଏନ.ସିଂହ ମୋତେ ଫୋନ କଲେ, ସେଇ ଜେଲ ଫୋନ୍‌କୁ । ଫୋନ୍‌ରେ କହିଲେ "ହୋମ ଡିପାର୍ଟମେଣ୍ଟ ତୁମକୁ ରିଲିଭ୍ କରିବାକୁ କହିଛି, କାରଣ ତୁମର ଡେପୁଟେସନ୍ ଆଦେଶ ଆସିଯାଇଛି । ତୁମେ ଆଜି ୧୧ଟା ସୁଦ୍ଧା ଉପାଧ୍ୟାୟଙ୍କୁ ଦାୟିତ୍ୱ ଦେଇ, କଟକ ଛାଡ଼ ।" ମୁଁ ତାଙ୍କୁ କହିଲି, "ମୋର ପ୍ରମୋଶନ ଆଉ ଦିନେ ଦୁଇଦିନ ମଧ୍ୟରେ ହେବ । ଫାଇଲ ମୁଖ୍ୟମନ୍ତ୍ରୀଙ୍କ ପାଖରେ । ଆପଣ ତ କହିଥିଲେ, ମୁଁ ପ୍ରମୋଶନ ପାଇ ଯିବି ।" ମୋ କଥା ସରିବାକୁ ନଦେଇ, ସେ କହିଲେ "ନୋ ନୋ - You should handover charge by 11 A.M. without fail." ମୁଁ କହିଲି, "ମୁଁ ଏଠି ଆଇନ ଶୃଙ୍ଖଳା ପରିସ୍ଥିତି ଭିତରେ ଅଛି । ସେ କଥାଶୁଣି ସେ କହିଲେ, "ଆଚ୍ଛା - ସେ କାମ ସାରି, ଚାର୍ଜ ଦେଇ ଯାଅ ।" ମୁଁ ମନେ ମନେ ବିରକ୍ତି ଅନୁଭବ କଲି । ଠିକ୍ କଲି ଯେ ଚାର୍ଜ ଦେଇ ଯିବି । ପ୍ରମୋଶନ ଯେତେବେଳେ ହବ । ମନ ଖରାପ କରି ବସିବା ଦେଖି ମୋ ପାଖରେ ବସିଥିବା ଏ.ଡି.ଏମ. କହିଲେ "ଆପଣ ଟିକିଏ ମୁଖ୍ୟମନ୍ତ୍ରୀଙ୍କ ସଚିବଙ୍କୁ ପଚାରୁ ନାହାଁନ୍ତି - ଏମିତି କ'ଣ ପୃଥ୍ୱୀ ପ୍ରଳୟ ହୋଇ ଯାଉଛି ଦିନେ ଦୁଇଦିନ ପାଇଁ ।" ମୁଁ ସେଇ ଜେଲ ଫୋନ୍‌ରୁ ପ୍ୟାରୀମୋହନ ମହାପାତ୍ରଙ୍କ ପାଖକୁ ଫୋନ୍ କଲି । ମୋ ଭାଗ୍ୟକୁ ସେ ୯ଟା ବେଳେ ଅଫିସରେ ଉପସ୍ଥିତ ଥିଲେ ଏବଂ ମୁଁ ଫୋନ୍‌ରେ ଏକଥା ତାଙ୍କ ସଙ୍ଗେ କଥାହେଲି । ସେ କହିଲେ, "ତୋର ତ ପ୍ରମୋସନ ପରେ ଯିବାର କଥା ? କିଏ ତୋତେ କହୁଛି ଚାର୍ଜ ଦେଇଦେବା ପାଇଁ ।" ମୁଁ ଡି.ଜି. ଙ୍କ କଥା କହିଲି । ସେ କହିଲେ, "ଠିକ୍ ଅଛି ମୁଁ ଡି.ଜି. ଙ୍କ ସଙ୍ଗେ କଥାବାର୍ତ୍ତା ହେଉଛି ।" ଏତକ କହି ସେ ଫୋନ୍ ଛାଡ଼ିଦେଲେ । ମୋତେ ଭଲଭାବେ ଶୁଣା ନଯିବାରୁ ମୁଁ ଆଉ ଥରେ ଫୋନ୍ କଲି ।" ସେ କହିଲେ - ତତେ ପରା କହିଲି - ମୁଁ ବୁଝୁଛି - ତୁ ଚାର୍ଜ ଦବା ଦରକାର ନାହିଁ ।" ମୋଠାରୁ ଶୁଣିଲାପରେ ମିଃ ମହାପାତ୍ର, ଡି.ଜି., ଡି.ଏନ. ସିଂହଙ୍କ ପାଖକୁ ଗୋଟିଏ ବେତାର ଖବର ପଠାଇ, ମୁଁ ଚାର୍ଜ ନଦେବା ପାଇଁ କହିଥିଲେ ।

ସେତେବେଳ ପର୍ଯ୍ୟନ୍ତ ଜେଲ ଭିତରେ ମନ୍ତ୍ରୀ-କଲେକ୍ଟର ଥା'ନ୍ତି । ମୁଁ, ଏ.ଡି.ଏମ୍. ସେଇଠି ବସିଥାଉ । ପ୍ରାୟ ୧୧.୩୦ ବେଳକୁ ପୁଣି ଡି.ଜି. ଫୋନ୍ କଲେ ''ଶୁଣ, ତୁମେ ସେଠା କାମ ସାରି ମୋ ଅଫିସକୁ ଆସ'' – ମୁଁ କହିଲି, ''ଠିକ୍ ଅଛି ।'' ସେତେବେଳକୁ ମୁଁ ବୁଝି ସାରିଲିଣି ଯେ ପ୍ୟାରୀବାବୁ ଟେଲିଫୋନ୍ କରି କହିସାରିଲେଣି କିମ୍ବା ହୋମ୍ ସେକ୍ରେଟାରୀ କହିସାରିଲେଣି । ମୁଁ ଜେଲ କାମ ସାରି ୧୨.୩୦ ବେଳକୁ ଡି.ଜି.ଙ୍କୁ ଦେଖାକଲି । ସେତେବେଳକୁ ସେ ରାଗରେ ଥରୁଥାନ୍ତି । ମୋତେ ଦେଖି କହିଲେ, ''ଠିକ୍ ଅଛି – ଏସବୁ ସେ ପ୍ୟାରୀକା କାମ୍ - ଅଭି ମେ ସି.ଏମ୍‌କୁ ପୁଚ୍ଛେଙ୍ଗା ।'' ଏକଥା କହି ମୋ ଆଗରେ ତାଙ୍କ ପି.ଏ.ଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଟେଲିଫୋନ୍ ଲଗାଇବାକୁ କହି - ପୁଣି କହିଲେ ନାଇଁ ନାଇଁ ଥାଉ ମୁଁ ବ୍ରହ୍ମପୁରରୁ ଆସିଲେ କଥାବାର୍ତ୍ତା ।'' ତାପରେ ମତେ କହିଲେ ''ଠିକ୍ ଅଛି - ତୁମେ ଦାୟିତ୍ୱ ହସ୍ତାନ୍ତର କରନି, ମୁଁ ଏବେ ବରହମପୁର ଇନ୍‌ସ୍‌ପେକ୍‌ସନ୍‌ରେ ଯାଉଛି, ସେଠୁ ପଅର ଦିନ ଫେରିବି – ଫେରିଲାପରେ କଥାବାର୍ତ୍ତା ।'' ମୁଁ ତାଙ୍କ ପାଖରୁ ଫେରି ଏ.ବି. ତ୍ରିପାଠୀଙ୍କୁ ଦେଖାକରି ସବୁକଥା କହିଲି । ତାର ଦୁଇଦିନ ପରେ ସେ ବରହମପୁରରୁ ଫେରିଲେ । ମାତ୍ର ମୁଁ ତାଙ୍କୁ ଆଉ ଦେଖା କରିନି କି ସେ ମୋତେ ଡାକି ନାହାନ୍ତି । ସେ ଦିନ ମୋତେ ମିଃ ମହାପାତ୍ର, ମହାବିପଦରୁ ବଞ୍ଚାଇ ଦେଲେ ନହେଲେ ୧୧ଟା ସୁଦ୍ଧା ମୋତେ କଟକ ଛାଡ଼ିବାକୁ ପଡ଼ିଥାନ୍ତା ।

ପରେ ମୁଁ ବୁଝିବା ପାଇଁ ଚେଷ୍ଟା କଲି କାହିଁକି ଡି.ଏନ୍. ସିଂହ ମୋ ଉପରେ ଏତେ ଖପା । ତାଙ୍କ ସହିତ ମୋର କେବେ ଖରାପ ସଂପର୍କ ନଥିଲା, ବରଂ ସେ ମୋତେ କଟକରେ ବାଳିକା ହାଇସ୍କୁଲ ପାଇଁ ସବୁ କରିବାକୁ କହିଥିଲେ ଏବଂ ମୋର ସହଯୋଗ ଏବଂ ତତ୍‌ପରତା ଯୋଗୁ ବକ୍ସିବଜାରରେ କଟକ ପୁଲିସ ବାଳିକା ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା । ଅବଶ୍ୟ ଏଇ କାମରେ ସେ ଯେଉଁମାନଙ୍କୁ ଏବଂ ଯେଉଁପରି ଭାବେ ଶିକ୍ଷୟତ୍ରୀମାନଙ୍କୁ ମୃତୟନ ଦେବାକୁ ଚାହୁଁଥିଲେ ମୁଁ ସେପରି ମୃତୟନ ଦେବାରେ ଭାଗି ହେବାକୁ ଚାହୁଁ ନଥିଲି । ତେଣୁ ସେ ମୋତେ ସେ କାମରୁ ଅବ୍ୟାହତ ଦେଇ ତତ୍‌କାଳୀନ ଏ.ଆଇ.ଜି. କୀର୍ତ୍ତନ ଲେଙ୍କାକୁ ସେ କାମ ଧରାଇ ଦେଲେ । ବୋଧେ ତାଙ୍କ ମନରେ ସେଥିପାଇଁ ରାଗ । କିମ୍ବା ତାଙ୍କ ରାଜ୍ୟର ମିଃ ଉପାଧ୍ୟାୟଙ୍କୁ କଟକ ଏସ.ପି. କରିବାର ଏକାନ୍ତ ଇଚ୍ଛାରେ ମୋ ପ୍ରତି ଅନ୍ୟାୟ କରିବାକୁ ଆଗେଇ ଆସିଥିଲେ । ସେ ବରହମପୁର ଗଲାପରେ ମୁଁ ପୁଣି ଏ.ବି. ତ୍ରିପାଠୀଙ୍କ ପାଖକୁ ଯାଇ ମୋ ପ୍ରମୋଶନ କଥା କହିଲି । ସେ ମଧ ଚେଷ୍ଟା କରୁଥିଲେ ଏବଂ ଯେତେଦୂର ସାହାଯ୍ୟ କରିବା କଥା କରୁଥାନ୍ତି, ମାତ୍ର ସମୟ ଠିକ୍ ନଥିବାରୁ ମୋର ପ୍ରମୋଶନ ହେଉନଥାଏ । ସେତିକିବେଳକୁ ପୁଣି ମିଃ ସୁରେଶ୍ ଦେ କେନ୍ଦ୍ରରୁ ଫେରିବା ଯୋଗୁ ଗୋଟେ ପ୍ରମୋଶନ ପୋଷ୍ଟ ବନ୍ଦ ହୋଇଗଲା ।

ଜୁଲାଇ ଯାଇ ଅଗଷ୍ଟ ହେଲା । ମୋତେ ବଡ଼ କଷ୍ଟ ଲାଗୁଥାଏ । ପ୍ରାୟ ଦିନ କଟକ - ଭୁବନେଶ୍ୱର ହେବାକୁ ପଡୁଥାଏ । ଅଗଷ୍ଟ ୧୪ ତାରିଖ ଦିନ ସନ୍ଧ୍ୟାରେ ମୁଁ ଖବର ପାଇଲି, ମୋତେ ରାଷ୍ଟ୍ରପତିଙ୍କ ପଦକ – ପ୍ରଶଂସନୀୟ ସେବା ଲାଗି ମିଳିଛି । ଏ ଖବର ପାଇ ମଧ, ମୁଁ

ତାକୁ ଉପଭୋଗ କରିପାରିଲି ନାହିଁ କେବଳ ଏଇ ଗଣ୍ଡଗୋଳ ଯୋଗୁ । ଏଣେ ପ୍ରମୋଶନ ହଟାହଟା ବେଳକୁ, କଟକ ମେଡ଼ିକାଲ କଲେଜ ପରିସର ମଧ୍ୟରେ ୪ର୍ଥ ଶ୍ରେଣୀ କର୍ମଚାରୀ ଏବଂ ମେଡ଼ିକାଲ ଛାତ୍ରମାନଙ୍କ ମଧ୍ୟରେ ଗଣ୍ଡଗୋଳ ଲାଗିଗଲା । ଜଣେ ସୁଇପର ଗୋଟିଏ ମେଡ଼ିକାଲ ଛାତ୍ରୀକୁ ଖରାପ ବ୍ୟବହାର କରିବାକୁ କେନ୍ଦ୍ରକରି, ଏଇ ଗଣ୍ଡଗୋଳ ସୂତ୍ରପାତ ହୋଇ କଲେଜ ପରିସରର ଭଙ୍ଗାରୁଜା ଆରମ୍ଭ ହେଲା । ମୋତେ ସେଠାରେ ରାତି ରାତି ଜଗି କରି ରହିବାକୁ ପଡ଼ିଲା । ଗଣ୍ଡଗୋଳକୁ ସମାଧାନ କରିବା ପାଇଁ ଛାତ୍ର, ଶିକ୍ଷକ, ୪ର୍ଥଶ୍ରେଣୀ କର୍ମଚାରୀ ସଂଘ, ଏମାନଙ୍କ ସଙ୍ଗେ ବସି କଥାବାର୍ତ୍ତା କରିବାରେ ରାତି ପାହିଲା ମାତ୍ର ସମାଧାନ ହୋଇ ପାରୁନଥାଏ । ଏ ଘଟଣା ମଧ୍ୟରେ, ମୋର ଡି.ଆଇ.ଜି.କୁ ପ୍ରମୋଶନ ଅର୍ଡ଼ର ଅଗଷ୍ଟ ୨୦ ତାରିଖରେ ଆସିଗଲା ଏବଂ ମୋର ପୋଷ୍ଟିଂ ମୁଖ୍ୟମନ୍ତ୍ରୀଙ୍କ ଡି.ଆଇ.ଜି ଭାବେ ହେଲା । ଆଦେଶ ଥାଏ, ମୁଁ ଅତିରିକ୍ତ ଏସ.ପି.ଙ୍କୁ ଦାୟିତ୍ୱ ହସ୍ତାନ୍ତର କରି ମୋ ପ୍ରମୋଶନ ପୋଷ୍ଟରେ ଜଏନ୍ କରିବି । ମାତ୍ର ଡି.ଜି., ଡି.ଏନ୍. ସିଂହ ପୁଣି ଅଡୁଆ ସୃଷ୍ଟି କଲେ । ମେଡ଼ିକାଲ କଲେଜରେ ଗଣ୍ଡଗୋଳ ଚାଲିଛି, ତାର ସମାଧାନ ନହେଲା ପର୍ଯ୍ୟନ୍ତ ମୁଁ ଦାୟିତ୍ୱ ହସ୍ତାନ୍ତର କରିପାରିବିନି ବୋଲି କହିଲେ । ମୁଁ ବି ଅସୁବିଧାରେ ପଡ଼ିଲି । ସେଇ ସମୟରେ ଦିଲ୍ଲୀରେ ''ମଣ୍ଡଳ କମିଶନ'' ଗଣ୍ଡଗୋଳ ଆରମ୍ଭ ହୋଇଯାଇଥାଏ । ଓଡ଼ିଶାରେ, ମଣ୍ଡଳ କମିଶନ୍ ଗଣ୍ଡଗୋଳ ଆରମ୍ଭ ହୋଇ ନଥିଲେ ମଧ୍ୟ, ଆରମ୍ଭ ହେବାକୁ ଯାଉଥାଏ । ମୁଁ ଦେଖିଲି, କଟକ ମେଡ଼ିକାଲ ଅବସ୍ଥା ଠିକ୍ ନହେଲେ, ଡି.ଜି. ମୋତେ ହଇରାଣକରି ପାରନ୍ତି । ତେଣୁ କୌଣସି ମତେ ବିଶ୍ୱନାଥ ପଣ୍ଡିତ ଏବଂ ଜିଲ୍ଲା କଲେକ୍ଟରଙ୍କୁ ଧରି ଛାତ୍ର ଏବଂ ୪ର୍ଥ ଶ୍ରେଣୀ କର୍ମଚାରୀଙ୍କ ଗଣ୍ଡଗୋଳର ସମାଧାନ ୨୧ ତାରିଖ ରାତ୍ରିରେ ଶେଷକଲାପରେ ୨୨ ତାରିଖ ସକାଳୁ ସେମାନେ କାମରେ ଯୋଗଦେଲେ । ସକାଳ ଆଠଟା ବେଳକୁ ମୁଁ ଡି.ଜି.ଙ୍କୁ କହି ଦାଇତ୍ୱ ହସ୍ତାନ୍ତର କରିଲାବେଳେ ସେ କହିଲେ ଯେ, ଦାୟିତ୍ୱ ଅତିରିକ୍ତ ଏସ.ପି.ଙ୍କୁ ନଦେଇ, କ୍ରାଇମ୍ ଏସ.ପି. ଉପାଧ୍ୟାୟଙ୍କୁ ଦିଅ । ମୁଁ କହିଲି, ''ହୋମ ଡିପାର୍ଟମେଣ୍ଟ ଆଦେଶ, ଅତିରିକ୍ତ ଏସ.ପି.ଙ୍କୁ ଦେବାକୁ ।'' ସେ କହିଲେ, ''ମୁଁ ଆଦେଶ ଦଉଛି,'' କହି ଗୋଟେ ଅର୍ଡ଼ର ସଙ୍ଗେ ସଙ୍ଗେ ପଠାଇଲେ । ସେ ଆଦେଶ ପାଇଲା ପରେ ମୁଁ ହୋମ ସେକ୍ରେଟାରୀ ସାହୁଙ୍କୁ ପଚାରିଲି । ସେ କହିଲେ ''ଠିକ୍ ଅଛି – ଉପାଧ୍ୟାୟକୁ ଦାୟିତ୍ୱ ଦିଅ ।'' ଘରୋଇ ବିଭାଗ ସଚିବ ମିଃ ସାହୁ ଡି.ଜି. ମିଃ ସିଂହଙ୍କୁ ସମ୍ମୁଖୀନ ହେବାକୁ ଚାହୁଁ ନଥିଲେ । ତେଣୁ ସେ ଯାହା ଚାହୁଁଥିଲେ ବିନା ଆଦେଶରେ କରୁଥିଲେ – ନହେଲେ ଘରୋଇ ସଚିବ ଆଦେଶ ଥିଲାବେଳେ, ଡି.ଜି. ତାକୁ ବଦଳାଇ ଆଉ ଗୋଟେ ଆଦେଶ ଦେବାକୁ ଚେଷ୍ଟା କରିନଥାନ୍ତେ ।

ମୋଠାରୁ ଉପାଧ୍ୟାୟ ୨୨ ଅଗଷ୍ଟରେ ଦାୟିତ୍ୱ ନେଲାପରେ ମୁଁ ୨୩ ଅଗଷ୍ଟରେ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ ଯୋଗ ଦେଲି । ମୁଁ ତାଙ୍କ କାର୍ଯ୍ୟାଳୟରେ ଯୋଗ ଦେବାର ମାତ୍ର ଦୁଇଦିନ ପରେ ସାରା ଓଡ଼ିଶାରେ ଆଣ୍ଟି ରିଜର୍ଭେସନ୍ ଏଜିଟେସନ୍ ଆରମ୍ଭ ହୋଇଗଲା । ଚାରିଆଡ଼େ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଲା । ୨୯ ତାରିଖ ଦିନ ବି.ଜେ.ବି.

କଲେଜ ପାଖରେ ପୁଲିସ ବ୍ଲାଙ୍କ ଫାୟାରିଙ୍ଗ କଲେ । ସେତେବେଳକୁ ମୋ ପୁଅ ଦେବୀଦତ୍ତ ବି.ଜେ.ବି. କଲେଜର ଛାତ୍ରନେତା । ମୁଁ ବଡ଼ ଅଡୁଆରେ ପଡ଼ିଲି । ସେଇଦିନ ଏସ.ପି. ଭୁବନେଶ୍ୱରକୁ ଜଣେ ଓକିଲ ମାଡ଼ ଦେଲେ ବୋଲି ଖବର ପ୍ରକାଶ ପାଇଲା । କଟକ, ଭୁବନେଶ୍ୱରରେ ଛାତ୍ର ଆନ୍ଦୋଳନ ତୀବ୍ରତର ହେଲା । କଂଗ୍ରେସର ଛାତ୍ରନେତାମାନେ ଏଇ ଆନ୍ଦୋଳନକୁ ତେଜାଉଥାନ୍ତି । କଟକରେ ଆଲୋକ ମହାପାତ୍ର, ଭୁବନେଶ୍ୱରରେ ଲୁଲୁ ମହାପାତ୍ର, ଏମାନଙ୍କ ନାମ ଶୁଣାଯାଉଥାଏ । କଟକରେ ଛାତ୍ର ଆନ୍ଦୋଳନ ଏପରି ତୀବ୍ରତର ହେଲା ଯେ, କଟକ ଚଣ୍ଡୀଛକ ପାଖେ ପୁଲିସ୍ ଗୁଳିଚାଳନାରେ କଂଗ୍ରେସ ଦଳର ଛାତ୍ରନେତା ଆଲୋକ ମହାପାତ୍ର, ଚଣ୍ଡୀଛକ ପାଖେ ଟଳି ପଡ଼ିଲେ । କଟକ ରେଲୱେ ଷ୍ଟେସନ ପାଖେ ଗୁଳିରେ ଜଣେ ସାମ୍ବାଦିକ ହାରୁଲାଲ ଦାସଗୁପ୍ତା ଗୁଳିବିଦ୍ଧ ହୋଇ ଡାକ୍ତରଖାନାରେ ଜୀବନ ସଙ୍ଗେ ସଂଗ୍ରାମ ଆରମ୍ଭ କଲେ । କଟକର ଅବସ୍ଥା ଅସମ୍ଭାଳ ହେବାରୁ କଟକରେ କର୍‌ଫିଉ ଜାରି ହେଲା । ପରେ ପରେ ପୁରୀ ଜିଲ୍ଲାର ବାଲୁଗାଁ ପାଖେ ପୁଲିସ୍ ଗୁଳିରେ ୨ଜଣ ଘଟଣା ସ୍ଥଳରେ ମୃତ୍ୟୁବରଣ କଲାବେଳେ, ଆଉ ୩ଜଣ ଡାକ୍ତରଖାନାରେ ମଲେ । ଓଡ଼ିଶାର ବିଭିନ୍ନ ସ୍ଥାନରେ ଗୁଳିଚାଳନା, ଲାଠିଚାଳନା ଚାଲିଲା । ପୁରୀ ଜିଲ୍ଲାରୁ ସାତଜଣ ମୃତ୍ୟୁବରଣ କଲେ ।

ମୋର ଭାଗ୍ୟ ଭଲ, ଦୁଇଦିନ ଆଗରୁ ମୁଁ କଟକ ଜିଲ୍ଲା ଛାଡ଼ି ଚାଲି ଆସିଥିଲି । ମୋ ଠାରୁ ଉପାଧ୍ୟାୟ ଜିଲ୍ଲାର ଦାୟିତ୍ୱ ନେଲାପରେ ସେ କଟକ ଏସ.ପି. ଭାବେ ଜଏନ୍ କଲେ ୨୯ ଅଗଷ୍ଟରେ । ମାତ୍ର ଆଣ୍ଟି ରିଜରଭେସନ ଏଜିଟେସନ୍ ଏବଂ କଟକରେ ପୁଲିସ ଗୁଳିଚାଳନାରେ ମୃତ୍ୟୁ ଯୋଗୁ ତାଙ୍କୁ ସେପ୍ଟେମ୍ବର ୩ ତାରିଖରେ କୁଳମଣି ଦେଓଙ୍କୁ ଦାୟିତ୍ୱ ହସ୍ତାନ୍ତର କରିବାକୁ ପଡ଼ିଥିଲା । ମୁଁ ଅଗଷ୍ଟ ୩୧ରେ ଚାର୍ଜ ଦେଇ ଓଡ଼ିଶା ଛାଡ଼ି ଦିଲ୍ଲୀ ଅଭିମୁଖେ ଯାତ୍ରା ପାଇଁ ପ୍ରସ୍ତୁତ ହେଲି ।

**ଦିଲ୍ଲୀ ଯାତ୍ରା :** ସେପ୍ଟେମ୍ବର ମାସ ୯ ତାରିଖ ଦିନ ସକାଳୁ ଇଣ୍ଡିୟାନ୍ ଏୟାର ଲାଇନ୍ ଫ୍ଲାଇଟ୍ ୪୭୦ରେ ମୁଁ ଦିନ ୧୨ଟାରେ ଦିଲ୍ଲୀ ବିମାନବନ୍ଦରରେ ପହଞ୍ଚିଲି । ''ଇଂଜିନିୟରିଂ ପ୍ରୋଜେକ୍ଟ ଇଣ୍ଡିଆ ଲିମିଟେଡ୍'' ସରକାରୀ କମ୍ପାନୀର ପ୍ରଶାସନିକ ଜେନେରାଲ ପ୍ରୋଜେକ୍ଟ ମ୍ୟାନେଜର ଶ୍ରୀଯୁକ୍ତ ପାଣ୍ଡେ ମୋତେ ରିସିଭ୍ କରିବାକୁ ବିମାନଘାଟୀକୁ ଆସିଥିଲେ । ମୁଁ ବିମାନ ବନ୍ଦରରୁ ଓଡ଼ିଶା ନିବାସ ଗଲି ଏବଂ ଘର ଠିକ୍ ନହେବା ପର୍ଯ୍ୟନ୍ତ ସେଇଠି ରହିବି ବୋଲି ଠିକ୍ କରିଥାଏ । ଓଡ଼ିଶା ସରକାରଙ୍କ ନିୟମ ଅନୁସାରେ ଡେପୁଟେସନ୍‌ରେ ଯାଉଥିବା ଅଫିସରମାନେ ତିନିମାସ ଲାଗି ଓଡ଼ିଶା ନିବାସରେ ରହିପାରିବେ । ତେଣୁ ମୁଁ ସେଇଠି ରହିବାକୁ ଆଦେଶ ନେଇ ଯାଇଥାଏ । ପରଦିନ ସେପ୍ଟେମ୍ବର ଦଶ ତାରିଖ ଦିନ ଦଶଟା ଦଶ ମିନିଟରେ ମୁଁ ଇ.ପି.ଆଇ.ଏଲ.ରେ ଏକ୍‌ଜିକ୍ୟୁଟିଭ୍ ଡାଇରେକ୍ଟର ଭିଜିଲାନ୍ସ ଭାବେ ଦାୟିତ୍ୱ ଗ୍ରହଣ କଲି । ମୋ ପୂର୍ବରୁ ସେଇ ଅନୁଷ୍ଠାନରେ ବାହାର ଅଫିସର ଭିଜିଲାନ୍ସ ଡାଇରେକ୍ଟର ଭାବେ ନଥିଲେ । ଜଣେ ସିନିୟର ଜେନେରାଲ ମ୍ୟାନେଜର ତାର ଦାୟିତ୍ୱରେ ଥା'ନ୍ତି । ତାଙ୍କ ନାଁ ମିଃ ମାଥୁର । ଦିଲ୍ଲୀର ଲୋକ । ସେ ଜଣେ ଇଞ୍ଜିନିୟର । ଜର୍ମାନୀରେ କିଛି ଦିନ କାମ କଲାପରେ ସେ ଏଇ

ପ୍ରୋଜେକ୍ଟରେ ଆରମ୍ଭ ଦିନରୁ ଅଛନ୍ତି । ତାଙ୍କ ଠାରୁ ଦାୟିତ୍ୱ ନେଲାପରେ, ମୁଁ ସବୁ ସେକସନ୍ ବୁଲି, ଅଫିସରମାନଙ୍କ ସଙ୍ଗେ ଚିହ୍ନା ହେଲି । ଇଂଜିନିୟରିଂ ପ୍ରୋଜେକ୍ଟ ଇଣ୍ଡିଆ ଲିମିଟେଡ୍ ଗୋଟିଏ କନ୍‌ଷ୍ଟ୍ରକସନ୍ କମ୍ପାନୀ । ଗଠନ ହେଲାପରେ ଏଇ କମ୍ପାନୀ ଇରାକ୍ ଏବଂ ସାଉଦୀ ଆରବରେ ହଜାର ହଜାର କୋଟି ଟଙ୍କାର କାମ କରିଥିଲା । ଇରାକ୍‌ର ପ୍ରେସିଡ଼େଣ୍ଟ ସଦାମ୍ ହୁସେନ୍‌ଙ୍କ ବିଲ୍‌ଡ଼ିଂ ଠାରୁ ଆରମ୍ଭ କରି, ବାଗଦାଦ ସହରର ସବୁ ସରକାରୀ ଘର ଏଇ କମ୍ପାନୀ କରି ବିଦେଶରେ ନାଁ କରିଥିଲା । ଭାରତର ଏଇ ପ୍ରଥମ କମ୍ପାନୀ ଯେ କି ବିଦେଶରେ କନଷ୍ଟ୍ରକସନ୍ କାମ କରି ସୁନାମ ଅର୍ଜନ କରି ପାରିଥିଲା, ମୁଁ ଜଏନ୍ କଲାବେଳକୁ କମ୍ପାନୀର ଆର୍ଥିକ ଅବସ୍ଥା ସେତେ ଭଲ ନଥାଏ । କମ୍ପାନୀର ଅପରେସନାଲ ପ୍ରଫିଟ୍ ବର୍ଷକୁ ତିନି ଚାରିକୋଟି ହେଉଥିଲାବେଳେ କମ୍ପାନୀର ଲାୟାବିଲିଟ୍ ବହୁତ ଥାଏ । ତଥାପି କମ୍ପାନୀ ସାରା ଦେଶରେ ଏବଂ ବିଦେଶରେ ମଧ କାମ କରୁଥିଲା । ମୁଁ ଜଏନ୍ କଲାବେଳେ, କମ୍ପାନୀର ନିଜସ୍ୱ ଚେୟାରମ୍ୟାନ୍ ନଥାନ୍ତି । ଭାରୀ ଶିଳ୍ପ ବିଭାଗର ଯୁଗ୍ମ ଶାସନ ସଚିବ ମିଃ ଏନ୍. ପି. ସିଂହ ଏହାର ଦାୟିତ୍ୱରେ ଥା'ନ୍ତି । ୧୯୭୩ ମସିହାରେ ଏହି କମ୍ପାନୀ ଗଠନ ହେଲାବେଳେ ଏହାର ତତ୍‌କାଳୀନ ଚେୟାରମ୍ୟାନ୍ କମ୍ପାନୀର କାର୍ଯ୍ୟପ୍ରଣାଳୀରେ ଏକ ନୂତନ ରୂପରେଖ ଦେଇ ଗଠନ କରିଥିଲେ । ଦେଶର ନାମଜାଦା ଇଂଜିନିୟରିଂ କଲେଜର ଭଲ ଛାତ୍ରମାନଙ୍କୁ ନେଇ କମ୍ପାନୀ ଗଢ଼ିଲାବେଳେ, କମ୍ପାନୀ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଉଚ୍ଚଶିକ୍ଷିତା, ନିପୁଣା ଏବଂ ସୁନ୍ଦରୀ ପି.ଏ ମାନଙ୍କୁ ମୃତୟନ କରିଥିଲେ । ସେମାନଙ୍କ ଦରମା, ଭତ୍ତା ମଧ ଅନ୍ୟ କମ୍ପାନୀଠାରୁ ଯଥେଷ୍ଟ ଭଲଥିଲା ଏବଂ ଯେଉଁମାନେ କମ୍ପାନୀରେ କାମ କରୁଥିଲେ, ସମସ୍ତେ ତିନିବର୍ଷରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ ବିଦେଶରେ କାର୍ଯ୍ୟ କରିବାକୁ ଯାଉଥିଲେ । ଏହାର ମୁଖ୍ୟ ଦପ୍ତର ଦିଲ୍ଲୀର କର୍ଣ୍ଣାଟ୍‌ପ୍ଲେସର କୈଳାସ ବିଲ୍‌ଡ଼ିଂରେ ଥିଲାବେଳେ ଦୁଇଟି ଆଞ୍ଚଳିକ ଦପ୍ତର ବମ୍ବେ ଏବଂ କଲିକତାରେ ଥିଲା ।

ମୁଁ ଦାୟିତ୍ୱ ନେଲାପରେ ଜାଣିଲି ଯେ, ମିଃ ମାଥୁର, ମୋ ଆଗରୁ ଭିଜିଲାନ୍ସ ଦାୟିତ୍ୱରେ ଥିଲେ, ତାଙ୍କ ନାମରେ ମଧ ସି.ବି.ଆଇ. କେସ୍ ପେଣ୍ଡିଂ ଅଛି । ତାଛଡ଼ା ପ୍ରାୟ ୧୦-୧୨ଜଣ ସିନିୟର ଅଫିସରଙ୍କ ନାମରେ ସି.ବି.ଆଇ. କେସ୍ ପେଣ୍ଡିଂ ଥିବା ଯୋଗୁ ସେମାନେ ପ୍ରମୋଶନ ପାଇ ପାରୁନାହାନ୍ତି କିମ୍ବା ଅନ୍ୟ କେଉଁ କମ୍ପାନୀକୁ ଉଚ୍ଚ ପଦବୀରେ ଯାଇ ପାରୁନାହାନ୍ତି । ଅଫିସରେ ସମସ୍ତେ ଭିଜିଲାନ୍ସକୁ ଭୟ କରୁଥାନ୍ତି ଏବଂ ଆଡ଼େଇ ଚାଲିଥାନ୍ତି । ମୋର ଭିଜିଲାନ୍ସ 'ସେଲରେ କାମ କରିବା ପାଇଁ ମୋତେ ଦୁଇଜଣ ପ୍ରୋଜେକ୍ଟ ମ୍ୟାନେଜରର ର୍ୟାଙ୍କର ଅଫିସର ଦେଇଥିଲେ ଏବଂ ଦୁଇଜଣ ସିନିୟର ପି.ଏ. ଦେଇଥାନ୍ତି । ମିସେସ୍ ବଲଜିତ୍ ଶେଖର ମୋର ପି.ଏ. ଥା'ନ୍ତି । ସେ ମଧ ଆଗରୁ, ମିଃ ମାଥୁରଙ୍କ ପାଖେ କାମ କରୁଥିଲେ । ତାଙ୍କଠାରୁ ସବୁକଥା ଆସ୍ତେ ବୁଝିଲି । ପ୍ରଥମେ ମୁଁ ଠିକ୍ କଲି, ସି.ବି.ଆଇ. ଡାଇରେକ୍ଟରଙ୍କୁ ଦେଖାକରି, ବର୍ଷ ବର୍ଷ ଧରି ପେଣ୍ଡିଂ ଥିବା କେସ୍ ଗୁଡ଼ିକୁ କ୍ଲୋଜ୍ କରିବି । ତେଣୁ ମୁଁ ସେତେବେଳର ଡାଇରେକ୍ଟର ମିଃ ଶେଖରଙ୍କୁ ଏବଂ ଓଡ଼ିଆ କ୍ୟାଡ଼ରର ମିଃ ଏନ୍. କେ. ସିଂହ ଅତିରିକ୍ତ ନିର୍ଦ୍ଦେଶକଙ୍କୁ ଦେଖାକରି, ଏଇ ପୁରୁଣା କେସ୍ ଗୁଡ଼ିକ ବିଷୟରେ କଥାବାର୍ତ୍ତା କରି ଏହାର

ସମାପ୍ତି ଘଟାଇବାକୁ ଅନୁରୋଧ କଲି । ବହୁ କେସ୍ ଅଯଥା ପଡ଼ିଥାଏ । ତାପରେ ମଧ ମୁଁ ମୁଖ୍ୟ ଭିଜିଲାନ୍ସ କମିଶନର ଓଡ଼ିଆ କ୍ୟାଡ଼ର ଆଇ.ଏ.ଏସ. ବିଜୟ ଶେଖରଙ୍କୁ ମଧ ଦେଖାକଲି । ମୁଁ ଭୁବନେଶ୍ୱର ଏସ.ପି. ଥିଲା ବେଳେ ସେ ମୋତେ ଜାଣିଥିଲେ । ସେ ମଧ ମୋତେ ଏଥିରେ ସାହାଯ୍ୟ କଲେ । ଚାରି ମାସ ମଧରେ ପ୍ରାୟ ୫ଜଣ ଅଫିସର ସି.ବି.ଆଇ. କବଳରୁ ମୁକ୍ତ ପାଇଲେ । ଅଫିସରେ ମୋ ଉପରେ ଆସ୍ଥା ବଢ଼ିବାକୁ ଲାଗିଲା । ପୁଲିସ୍ ଅଫିସର ହୋଇଥିବା ଦୃଷ୍ଟିରୁ ତଳସ୍ତରୀୟ କର୍ମଚାରୀମାନେ ସେମାନଙ୍କ ନିଜ ନିଜ ସମସ୍ୟାର ସମ୍ୟକ ସମାଧାନ ପାଇଁ ମୋତେ ବେଳେ ବେଳେ ଆସି ଅନୁରୋଧ କରନ୍ତି ଏବଂ ଯେତେଦୂର ପାରେ ମୁଁ ଲୋକାଲ୍ ଏସ.ପି. ପାଖକୁ ଚିଠି ଲେଖି ତାର ସମାଧାନ ପାଇଁ ଚେଷ୍ଟାକରେ । ଏଥିଯୋଗୁ ତଳ ଏବଂ ମଝି ସ୍ତରର ଅଫିସରଙ୍କ ମଧ ମୋ ପ୍ରତି ଆସ୍ଥା ବଢ଼ିଲା । ଏହାର କିଛି ଦିନ ପରେ ସି.ଭି.ସି.ଙ୍କ ପରାମର୍ଶ ଅନୁସାରେ ମୁଁ ପ୍ରଥମେ ଦିଲ୍ଲୀ ହେଡ୍‌କ୍ୱାଟର ପରେ କଲିକତା ଏବଂ ବମ୍ବେ ଆଞ୍ଚଳିକ ଅଫିସମାନଙ୍କରେ, ଭିଜିଲାନ୍ସର କାର୍ଯ୍ୟକ୍ରମ ଏବଂ ଭିଜିଲାନ୍ସ କିପରି ସାଧୁ, ସଚ୍ଚୋଟ୍, ଅଫିସରମାନଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ କମ୍ପାନୀକୁ ଅସାଧୁ ଅଫିସରଙ୍କ ଦାଉରୁ ରକ୍ଷାକରେ, ସେ ବିଷୟରେ ଓ୍ୟାର୍କସପ୍, ସେମିନାର କରି ସି.ବି.ଆଇ. ଡାଇରେକ୍ଟର କଲିକତା ଠାରେ ସି.ବି.ଆଇ.ର ପୂର୍ବତନ ଡାଇରେକ୍ଟର ମିଃ ମୁଖାର୍ଜୀ ଏବଂ ଅନ୍ୟମାନଙ୍କୁ ଡାକି ସେମିନାର, ଡିସକସନ୍ କରିବା ଦ୍ୱାରା ଏଇ ସଂସ୍ଥାର କର୍ମଚାରୀମାନଙ୍କ ଭିଜିଲାନ୍ସ ପ୍ରତି ଯେଉଁ ଭୁଲ ଧାରଣା ଥିଲା, ତାହା ବହୁ ପରିମାଣରେ ଦୂର ହୋଇଗଲା । ଏହାପରେ ମୋ ପାଖକୁ ଅନେକ ଖବର ବିଭିନ୍ନ ମାଧମରେ ଆସିଲା । କର୍ମଚାରୀମାନେ ଭାରତର ଯେଉଁ ଯେଉଁ ସ୍ଥାନରେ କମ୍ପାନୀ କାମ କରୁଥାନ୍ତି, ସେଇ ସ୍ଥାନମାନଙ୍କଠାରୁ ଦୁର୍ନୀତି ଜଡ଼ିତ ଖବରମାନ ପଠାଇଲେ । ଇନ୍‌କ୍ୱାରୀରେ ମଧ ସେ କଥା ପ୍ରମାଣିତ ବହୁ ସ୍ଥାନରେ ହେବା ଦ୍ୱାରା କେତେ ଯାଗାରୁ ଅଫିସରମାନେ ସସ୍‌ପେଣ୍ଡ ହେବାବେଳେ ଆଉ କେତେକ କମ୍ପାନୀ ଛାଡ଼ି ଚାଲିଗଲେ । କେତେକଙ୍କ ନାମରେ ପ୍ରୋସିଡ଼ିଂ ଆରମ୍ଭ ହେଲା । ମାତ୍ର ଯେଉଁମାନଙ୍କ ନାମରେ କାର୍ଯ୍ୟାନୁଷ୍ଠାନ ହେଲା, ସେମାନଙ୍କୁ କମ୍ପାନୀର ଲୋକ ପ୍ରକୃତ ଦୁର୍ନୀତିଗ୍ରସ୍ତଭାବେ ଚିହ୍ନିଥିଲେ । ତେଣୁ ଭିଜିଲାନ୍ସ ପ୍ରତି କର୍ମଚାରୀମାନଙ୍କ ଆସ୍ଥା ଏବଂ ବିଶ୍ୱାସ ବଢ଼ିବାରେ ଲାଗିଲା । କେବଳ ସେତିକି ନୁହଁ, ଯେଉଁ କର୍ମଚାରୀମାନେ ଅଯଥା ହଇରାଣ ହେଉଥିଲେ, ସେମାନେ ମଧ ଆସି ମୋତେ ଦେଖାକଲେ । ସଚ୍ଚୋଟ୍ କର୍ମଚାରୀମାନଙ୍କୁ ସବୁ ପ୍ରକାର ସାହାଯ୍ୟ ଦିଆଗଲା ।

ମିଃ ମାଥୁର, ମିଃ ମଣ୍ଡଳ, ମିଃ ନଟରାଜନ୍, ମିଃ ନେହେରୁ, ଏମାନେ କମ୍ପାନୀର ସବୁଠାରୁ ସିନିୟର ଅଫିସର । ଏମାନଙ୍କ ନାମରେ ସି.ବି.ଆଇ. କେସ୍ ଥାଏ । ମୋ ଚେଷ୍ଟାରେ ପ୍ରଥମେ ମିଃ ମଣ୍ଡଳ ସେଥିରୁ ମୁକ୍ତିଲାଭ କଲେ । ମିଃ ମାଥୁର ବହୁତ ଦୁଃଖରେ ଥା'ନ୍ତି । ତାଙ୍କର ସି.ଏମ୍.ଡ଼ି. ହୋଇଯିବା କଥା, ମାତ୍ର ଏଇଥିଲାଗି ହୋଇପାରୁ ନଥାଏ । ତାଙ୍କ ବିରୁଦ୍ଧରେ ଯେଉଁ କେସ ଥାଏ, ତାହାର ତଦନ୍ତ ସରି ନଥିବା ଯୋଗୁ ତାକୁ କ୍ଲୋଜ କରି ହେଉ ନ ଥାଏ । ତେଣୁ

ଯେତେବେଳେ ତାଙ୍କର ପ୍ରମୋଶନ ପାଇଁ ପ୍ରସ୍ତାବ ଆସେ, ସି.ବି.ଆଇ. କେସ୍ ଥିବା ଯୋଗୁ କାଟ୍ ଖାଏ । ତେଣୁ ସେ ବଡ଼ ବ୍ୟସ୍ତ ଏବଂ ରାଗରେ ଥା'ନ୍ତି । ଏଥି ମଧ୍ୟରେ ମୁଁ ହାଉସ୍‌ଖାସରେ ରହିବା ପାଇଁ କମ୍ପାନୀ ତରଫରୁ ଘର ଭଡ଼ା ନେଲି । ସେ ଘର ଅତ୍ୟନ୍ତ ପୋଷ୍ ଅଞ୍ଚଳରେ ହୋଇଥିଲେ ମଧ ଘରର ମାଲିକ ମିଃ ଓଁ ଶର୍ମା ଯେ କି ଜଣେ ରିଟାୟାର ଏୟାର ଫୋର୍ସ ଅଫିସର ସେ ମୋତେ ତାଙ୍କର କ୍ୱାଇଁ ପି.କେ.ମିଶ୍ରଙ୍କ କହିବା ଅନୁସାରେ ଭଡ଼ା ଦେବା ପାଇଁ ରାଜି ହୋଇଥିଲେ । କମ୍ପାନୀରୁ ମୁଁ ଯେଉଁ ୪୫୦୦ ଟଙ୍କା ଭଡ଼ା ପାଉଥିଲି, ତାଙ୍କୁ ସେତକ ଦେଉଥିଲି । ମିଃ ଶର୍ମା ବଡ଼ ଧାର୍ମିକ ଲୋକ । ତାଙ୍କର ହିନ୍ଦୁ ଧର୍ମ ପ୍ରତି ଅଗାଧ ବିଶ୍ୱାସ ଏବଂ ସେ ସ୍ୱାମୀରାମ୍‌ଙ୍କ ଜଣେ ପରମ ଶିଷ୍ୟ । ବର୍ଷକେ ଛମାସ ଆମେରିକାରେ ତାଙ୍କ ପୁଅ ଝିଅଙ୍କ ପାଖେ ରୁହନ୍ତି । ଛମାସ ଏଠି ରୁହନ୍ତି । ପ୍ରତ୍ୟେକ ଦିନ ସକାଳ ୪ଟାରେ ଉଠି ଦି'ଘଣ୍ଟା ତାଙ୍କ ଘର ପରିସର ମଧ୍ୟରେ ଗୋଟେ ଗୁମ୍ଫାରେ ଧ୍ୟାନ କରନ୍ତି । ତାପରେ ତାଙ୍କର ସ୍ୱାମୀରାମ୍‌ଙ୍କ ସଂସ୍ଥା କାମରେ ବ୍ୟସ୍ତ ରୁହନ୍ତି । ସେ ସମ୍ପୂର୍ଣ୍ଣ ନିରାମିଶାଷୀ । ମୁଁ ପ୍ରଥମେ ଆସିଲାବେଳେ, ମୋତେ କହିଥିଲେ ଏଠି କିଛି ଚଳିବନି । ମାତ୍ର ସେ ମୋର ଚାଲିଚଳନ ଦେଖିଲାପରେ କିଛି ରେଷ୍ଟ୍ରିକସନ୍ ରଖି ନଥିଲେ । ସେ ଗ୍ରାଉଣ୍ଡ ଫ୍ଲୋରରେ ରହୁଥିଲେ, ମୁଁ ଫାଷ୍ଟ ଫ୍ଲୋରରେ ରହୁଥାଏ ।

ମୁଁ ସେଠି ରହିବା ଯୋଗୁ, ମୋ ଝିଅ ରୀନାର ସୁବିଧା ହେଲା । ସେତେବେଳକୁ ସେ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଏମ.ଏ. ଛାତ୍ରୀ । ପ୍ରତ୍ୟେକ ଶନିବାର ଦିନ ସେ ଆସେ, ଦିନଟେ ରୁହେ । ସୋମବାର ଦିନ ଯାଏ । ବେଳେ ବେଳେ ତା ସାଙ୍ଗରେ ତାର ସାଙ୍ଗମାନେ ଆସୁଥିଲେ, ସେମାନେ ମଧ ରହୁଥିଲେ । ମାତ୍ର ଓଡ଼ିଶା ଛାଡ଼ି ନୁନା ଦିଲ୍ଲୀ ଆସିବାକୁ ଚାହିଁଲା ନାହିଁ । ଓଡ଼ିଶାରେ ଡି.ଡି. ଏମ୍.ଏ. ପଢ଼ିଲା ବେଳେ, ରୁଲି ଷ୍ଟୁଆର୍ଟ ସ୍କୁଲରେ ପଢୁଥାଏ । ତାର ସରିନଥାଏ । ତେଣୁ ମୁଁ ଏଠାରେ ଏକୁଟିଆ ରହୁଥିଲେ ମଧ ଏଠାରେ ପ୍ରାୟ ପ୍ରତ୍ୟେକ ଦିନ କେହିନା କେହି ଆସୁଥିଲେ । ମୋତେ ସାହାଯ୍ୟ କରିବାକୁ ଓଡ଼ିଶା ଭବନର କାମ କରୁଥିବା ମିଶ୍ର ଗୋଟିଏ ବେଳା ରୋଷେଇ କରୁଥାଏ । ଗୋଟେ ବେଳା ମୁଁ ରୋଷେଇ କରିଦିଏ । ପାଖରେ, ପଞ୍ଚଶିଳ ପାର୍କ ଅଞ୍ଚଳରେ ଗୋପାଳ ରହୁଥାଏ । ଚାଲି କରି ଯିବା ବାଟ । ସେତେବେଳେ ଗୋପାଳର ପାରିବାରିକ ସମସ୍ୟାଯୋଗୁଁ ସେ ଅତ୍ୟନ୍ତ ଦୁଃଖରେ ଥାଏ । ତେଣୁ ପ୍ରତ୍ୟେକ ଦିନ ରାତିରେ ସେ ମୋ ପାଖକୁ ଆସେ । ଆମେ ସାଙ୍ଗ ହୋଇ କିଛି ସମୟପାଇଁ ବୁଲିଯାଉ । କଥାବାର୍ତ୍ତା ମାଧ୍ୟମରେ ତାର ମନରେ ମଧ ଟିକିଏ ପରିବର୍ତ୍ତନ ହୁଏ । ସେତେବେଳେ ସେ ଯେଉଁ କଷ୍ଟରେ ଥାଏ, ସେ କଥା ତାକୁହିଁ ଜଣା । ଏଣେ ପାରିବାରିକ ସମସ୍ୟା, ତେଣେ ତା କମ୍ପାନୀ ଅବ୍ୟବସ୍ଥା । ତଥାପି ପ୍ରାୟ ପ୍ରତ୍ୟେକ ଦିନ ରାତିରେ ଆମେ ମିଶୁ ।

ମୁଁ ଏଇଠି ଥିବା ସମୟରେ କିଛି ଦିନ ପାଇଁ ସୁମୁ, ଲକ୍ଷିଆ ଯାଇ ମୋ ପାଖରେ ଗୋଟିଏ ରୁମ୍‌ରେ ରହିଲେ । ତା ଆଗରୁ ସୁନିତାର ଦିଲ୍ଲୀ ଇଉନିଭରସିଟ୍‌ରେ ନାଁ ଲେଖା ଯାଇଥିଲେ ମଧ ହଷ୍ଟେଲ ସିଟ୍ ମିଳି ନଥିବା ଯୋଗୁ ସେ ମଧ ମୋ ପାଖରେ ଥାଏ । ପ୍ରାୟ ୨ମାସ ରହିଲା ପରେ ସେ ହଷ୍ଟେଲକୁ ଗଲା ।

ବର୍ଷେକାଳ ଦିଲ୍ଲୀରେ କଟାଇଲା ମଧ୍ୟରେ, ଆମ ଦୈନିକ ଖବରକାଗଜ ''ଦିନଲିପି''ର ଦିଲ୍ଲୀ ସମ୍ବାଦଦାତା ରମେଶ ପାଲ ସଙ୍ଗେ ଦେଖାହୁଏ । ସେ ଏବଂ ତା ସାଙ୍ଗରେ ମହାପାତ୍ର ଆସନ୍ତି ଏବଂ ମୋ ଅଫିସରେ କିଛି ସମୟ ବସି ଦିଲ୍ଲୀ ଖବର ଦିଅନ୍ତି । ସେ ଦୁଇଜଣ ଏଠାକାର ହିନ୍ଦୀ ସାପ୍ତାହିକ ''ପରିବର୍ତ୍ତନ'' ପତ୍ରିକାର ସାମ୍ବାଦିକ ଥାଆନ୍ତି । ଏଇ ସାପ୍ତାହିକ ପତ୍ରିକାର ମାଲିକ ଥାନ୍ତି ମିଃ ବେଦୀ । ସେ କର୍ଣ୍ଣାଟପ୍ଲେସରେ ଖଣ୍ଡେ ଛୋଟ ଘର ଭଡ଼ା ନେଇ ସେଇଠୁ ଏ ପତ୍ରିକାଟି ବାହାର କରିବା ସାଙ୍ଗକୁ ଅନ୍ୟାନ୍ୟ କାମରେ ମଧ୍ୟ ହାତ ଦେଇଥାନ୍ତି । ଦିଲ୍ଲୀରେ ତାଙ୍କର ଜଣାଶୁଣା ବହୁତ ଭଲ । ରାଜନୈତିକ ନେତାଙ୍କ ଠାରୁ ଆରମ୍ଭ କରି ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କ ସଙ୍ଗେ ତାଙ୍କର ଚିହ୍ନା ପରିଚୟ । ରମେଶ ପାଲ ଯୋଗୁ ମୋର ତାଙ୍କ ସହିତ ଚିହ୍ନା ହୁଏ । ସେ ମଧ୍ୟ ବେଳେ ବେଳେ ମୋ ଅଫିସକୁ ଆସି ମୋ ଠାରୁ ଲେଖାନେଇ ତାକୁ ହିନ୍ଦୀରେ ଟ୍ରାନସ୍‌ଲେଟ୍ କରି ତାଙ୍କ କାଗଜରେ ଛାପୁଥିଲେ । ତାଙ୍କ ସଙ୍ଗେ ଚିହ୍ନା ହେଲା ମଧ୍ୟରେ, ଆମେରିକାରେ ରହୁଥିବା ମିଃ ଶର୍ମାଙ୍କ ସଙ୍ଗେ ଚିହ୍ନା ହେଲା । ଶର୍ମା ଜଣେ ଯୁବକ । ବୟସ ପଚିଶ ଛବିଶ, ବିବାହ କରି ନଥାଏ । ତାର ଉପର ଭାଇ ଦୁଇଜଣ ଆମେରିକାରେ ଥା'ନ୍ତି । ଦିନେ କଥାବାର୍ତ୍ତା ମଧ୍ୟରେ ସେ ଆମକୁ ଆମେରିକା ଯିବା ପାଇଁ କହିଲା । ମୋ ଶାଳୀ ବିନ୍ଦୁ, ଆମେରିକା ଗଲା ଦିନଠାରୁ ଭାରତକୁ ଆସି ନଥାଏ । ମୋର ଭାରି ଇଚ୍ଛା ଥିଲା ଆମେରିକା ଯିବାପାଇଁ । ଜଣେ ସାମ୍ବାଦିକ ଭାବେ ତାର ଦିଲ୍ଲୀର ବିଭିନ୍ନ ଟ୍ରାଭଲ ଏଜେଣ୍ଟଙ୍କ ସଙ୍ଗେ ଭଲ ଚିହ୍ନା । ସେ ମୋତେ କହିଲେ ଯେ କୋଡ଼ିଏ ହଜାର ଟଙ୍କାରେ ଦିଲ୍ଲୀରୁ ନିଉୟର୍କ ଯାଇ ଫେରି ହେବ । ଗଲାବେଳେ ଆମେ ରୋମ, ଲଣ୍ଡନ, ପ୍ୟାରିସ ହୋଇ ଯାଇ ପାରିବୁ । ମୁଁ ଅଫିସରୁ ପରମିଶନ ନେଇ, ଟଙ୍କା ଯୋଗାଡ଼ କରି ଯିବାପାଇଁ ପ୍ରସ୍ତୁତ ହେଲି । କୋଡ଼ିଏ ହଜାର ଟଙ୍କାରୁ କିଛି ବି ବାକି ରହିଲା । ସେତେବେଳେ ବିଦେଶକୁ ଗଲେ, ମାତ୍ର ପାଞ୍ଚଶହ ଡଲାର ନେଇ ହେଉଥିଲା । ତେଣୁ ୫୦୦ ଡଲାର ପାଇଁ ୧୫୦୦୦ ଟଙ୍କା ଯୋଗାଡ଼ କରି ବେଦୀ ସଙ୍ଗେ ବାହାରିଲି । ଆମେ ପ୍ରଥମେ ରୋମ, ଲଣ୍ଡନ, ପ୍ୟାରିସ୍ ଦେଖି, ନିଉୟର୍କ, ନିଉଜର୍ସି, ସାନ୍ ଆଣ୍ଟିନିଓ, ବର୍ମିଂହାମ୍ ନେସେଭିଲି ଦେଇ ଦିଲ୍ଲୀ ଫେରିଲି । ବହୁଦିନ ପରେ ବିନ୍ଦୁକୁ ସାନ୍‌ଆଣ୍ଟିନିଓ ବିମାନ ବନ୍ଦରରେ ଦେଖିଲାବେଳେ, ଆଖିରେ ଆଖିଏ ଆନନ୍ଦାଶ୍ରୁ ଆସି ଯାଇଥିଲା ।

ବିଦେଶରୁ ଫେରିଲା ପରେ, ଅଫିସ କାର୍ଯ୍ୟରେ ମୋତେ ସାରା ଦେଶଟା ଯାକ ବୁଲିବାକୁ ପଡୁଥାଏ । ସେତେବେଳେ ଇ.ପି.ଆଇ. ନେପାଳ, ଭୁଟାନରେ ମଧ୍ୟ କାମ ନେଇଥିଲା । ଭୁଟାନରେ ବହୁଦିନରୁ ଗୋଟେ ଇନ୍‌କ୍ୱାରୀ ବାକି ପଡ଼ିଥାଏ । ତେଣୁ ମୁଁ ନେପାଳ ଦେଇ, ତିନିଦିନ ପାଇଁ ଭୁଟାନର ରାଜଧାନୀ ଥିମ୍ପୁ ଗଲି ସେଠାକାର ଇନ୍‌କ୍ୱାରୀ କରି ଫେରିଲି । ତାଛଡ଼ା ଅନ୍ୟାନ୍ୟ କାମ ଏବଂ ତଦନ୍ତକୁ ନେଇ ମୋତେ ପ୍ରାୟ ସବୁ ସ୍ଥାନକୁ ଯିବାକୁ ପଡୁଥାଏ । ଓଡ଼ିଶାର ରାଉରକେଲାରେ ୨୦୦ କୋଟିରୁ ଅଧିକା କାମ ଚାଲୁଥିବା ଯୋଗୁ ମୋତେ ମଧ୍ୟ ରାଉରକେଲା, ଭାଇଜାଗ ଇସ୍ପାତ କାରଖାନାକୁ ଦେଖିବାକୁ ପଡୁଥିଲା । ପ୍ରାୟ ପ୍ରତ୍ୟେକ ମାସରେ ମୁଁ ଭୁବନେଶ୍ୱର ଦେଇ ଯାଇ ପାରୁଥିଲି । ନୁନା

ଭୁବନେଶ୍ୱର ଘରେ ଥାଏ । ଦେବୀଦତ୍ତ ବି.ଏ. ଅନର୍ସ ପାଶ କଲା, ସେ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟରେ ଭୂଗୋଳରେ ସ୍ଥାନ ପାଇଲା ନାହିଁ । କାରଣ ସେ ବର୍ଷ ପ୍ରଥମ ଥରପାଇଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଭୂଗୋଳରେ ଲିଖିତ ପରୀକ୍ଷା କରିଥିଲେ । ସେ ପରୀକ୍ଷା ଦେଇ ପାରିନଥିଲା । ରୁଲି, ଷ୍ଟୁଆର୍ଟରୁ ପାଶ୍ କଲାପରେ, ଦିଲ୍ଲୀରେ ପଢ଼ିବାକୁ ରାଜି ହେଲାନି । ତେଣୁ ସେମାନେ ଭୁବନେଶ୍ୱରରେ ରହିଲେ । କେବଳ ରୀନା ଜେ.ଏନ୍.ୟୁରେ ପଢୁଥାଏ । ଇ.ପି.ଆଇରେ ଥିଲା ସମୟରେ ମୁଁ ୧୯୯୨ ମସିହାରେ ଚାରିଧାମ ଦର୍ଶନ କରିଥିଲି । ସେଇ ବର୍ଷ ମେ ମାସରେ ବେଦୀର ମାରୁତି ଜିପ୍‌ରେ ଗୋପାଳ, ମୁଁ, ବେଦୀ, ଆଉ ଦୁଇଜଣ ଦିଲ୍ଲୀରୁ କେଦାରନାଥ ବୈଦ୍ରିନାଥ ଦର୍ଶନ କରି ଫେରିଲୁ । ସେତେବେଳେ ଏନ.ଆର. ପଟ୍ଟନାୟକ, ଆଇ.ଟି.ବି.ପିର ହେଡ୍‌କ୍ୱାଟର ଆଇ.ଜି. ଥା'ନ୍ତି । ଆମେ ଗଲାବେଳେ ସେ ବାଟରେ ରହିବା ପାଇଁ, ଆଇ.ଟି.ବି.ପି.ର ପ୍ରତ୍ୟେକ ଗେଷ୍ଟ ହାଉସକୁ କହି ଦେଇଥିବା ଯୋଗୁ ଯିବା ଏବଂ ଆସିବା ବେଳେ କିଛି ଅସୁବିଧା ହୋଇନଥିଲା ।

## ଦିଲ୍ଲୀରୁ ପ୍ରତ୍ୟାବର୍ତ୍ତନ :

ମୁଁ ଯେଉଁ ଲକ୍ଷ୍ୟ ନେଇ ଦିଲ୍ଲୀ ଗଲି ତାହା ପୂରଣ ହେଲାନି । ରୀନାକୁ ଛାଡ଼ିଦେଲେ, ଡି.ଡି. ରୁଲି ଏବଂ ନୁନା ଏମାନେ ସମସ୍ତେ ଭୁବନେଶ୍ୱରରେ ରହିଲେ । ଏଇ ସମୟ ମଧ୍ୟରେ ଇ.ପି.ଆଇ ରେ ମଧ୍ୟ ପରିବର୍ତ୍ତନ ହେଲା । ମିଃ ସାକ୍‌ସେନା କ୍ୟାବିନେଟ ସେକ୍ରେଟାରୀ ହେବା ପରେ, ମିଃ ମାଥୁର, ଇ.ପି.ଆଇର ଚେୟାରମ୍ୟାନ ପଦ ପାଇଁ ଚେଷ୍ଟା ଆରମ୍ଭ କରିଦେଲେ । ମାତ୍ର ତାଙ୍କ ନାମରେ ସି.ବି.ଆଇ କେସ୍ ଥିବା ଯୋଗୁ ତାହା ଥରକୁ ଥର ଫେରୁଥାଏ । ଏଥରକ ସେ ସବୁଆଡୁ ଚେଷ୍ଟାକରିବା ସଙ୍ଗେ ମିଃ ସାକସେନାଙ୍କୁ ମଧ୍ୟ କହିଥିଲେ । ଦିନେ ମୁଁ ସି.ବି.ଆଇ ଡାଇରେକ୍ଟରଙ୍କ ଠାରୁ ଫୋନ ପାଇଲି ଯେ, ମାଥୁର ନାମରେ ଥିବା କେସ୍ ତଦନ୍ତାଧିନ ଥିଲେ ମଧ୍ୟ ତାଙ୍କ ନାମରେ ଏପର୍ଯ୍ୟନ୍ତ କିଛି ପ୍ରମାଣ ନାହିଁ ବୋଲି ଇଣ୍ଡଷ୍ଟ୍ରି ଡିପାର୍ଟମେଣ୍ଟକୁ ଗୋଟେ ରିପୋର୍ଟ ଦେବାପାଇଁ । ମୁଁ ମନା କଲି, କହିଲି, ସି.ବି.ଆଇ. ଯେତେବେଳେ ତଦନ୍ତ କରୁଛି, ମୁଁ କିପରି କ୍ଲିୟାରନ୍ସ ଦେବି ?'' ମୋ କହିବା ପରେ, ତାଙ୍କ ବିରୁଦ୍ଧରେ କେସ୍ ତଦନ୍ତାଧିନ ଥିଲେ ମଧ୍ୟ, ସି.ବି.ଆଇ. କ୍ଲିୟାରନ୍‌ସ ଯୋଗୁ ମିଃ ମାଥୁର ଚେୟାରମାନ ବୋର୍ଡ଼କୁ ସୁପାରିଶ ହେଲେ ଏବଂ ତାଙ୍କର ଲବି ଟାଣ ଥିବା ଯୋଗୁ ସେ ଇ.ପି.ଆଇର ଚେୟାରମ୍ୟାନ୍ ହୋଇ ଆସିଲେ । ସେ ଚେୟାରମ୍ୟାନ୍ ହେଲା ପରେ ଇ.ପି.ଆଇରେ କୋକୁଆ ଭୟ ଖେଳିଗଲା । ଆଗରୁ ତାଙ୍କର କାହାସଙ୍ଗେ ଭଲ ପଡୁ ନଥିଲା । ବହୁତ କର୍ମଚାରୀ ତାଙ୍କ ମୁହଁ ଉପରେ ତାଙ୍କୁ ସମାଲୋଚନା କରିଥିଲେ । ସେ ଚେୟାରମ୍ୟାନ୍ ହେଲା ପରେ ପରେ ପ୍ରଥମେ ମିଃ ପାଣ୍ଡେଙ୍କୁ ସସ୍‌ପେଣ୍ଡ କଲେ । ପାଣ୍ଡେ ଇ.ପି.ଆଇ.ରୁ ଚାକିରି ଛାଡ଼ି ପଳେଇଲେ । ତାପରେ ତାଙ୍କର ଏବଂ ଡାଇରେକ୍ଟର ମଣ୍ଡଳଙ୍କ ମଧ୍ୟରେ ଗଣ୍ଡଗୋଳ ଆରମ୍ଭ ହେଲା । ଓଡ଼ିଶାର ଜଣେ ଦକ୍ଷ ଇଞ୍ଜିନିୟର ମିଃ ମହାନ୍ତି, ସେ

ମଧ୍ୟ ଇ.ପି.ଆଇ. ଛାଡ଼ିଲେ । ଯଦିଓ ମୋ ସଙ୍ଗେ ତାଙ୍କର କିଛି ନଥିଲା, ମାତ୍ର ସେ ପୁଲିସ୍ ଅଫିସରଙ୍କ ଉପସ୍ଥିତିକୁ ତାଙ୍କ ସଂସ୍ଥାରେ ଚାହୁଁ ନଥିଲେ । ତା ଛଡ଼ା ତାଙ୍କର ଯେଉଁ କେତେଜଣ ଅନୁଗତ ଅଫିସର ଥିଲେ, ସେମାନଙ୍କ ମଧ୍ୟରୁ ତିନି ଚାରିଜଣ ଭିଜିଲାନ୍ସ ଇନ୍‌କ୍ୱାରିରେ ଦୋଷୀ ସାବ୍ୟସ୍ତ ହୋଇଥିବାରୁ ତାଙ୍କ ନାମରେ ପ୍ରୋସିଡିଂ କରିବାକୁ ମୁଁ ଲେଖିଥାଏ । ସେ ଫାଇଲ ତାଙ୍କରି ପାଖରେ ଥାଏ । ଆଉ ଗୋଟିଏ କଂଟ୍ରାକ୍ଟରେ ତାଙ୍କର ଜଣେ ପାଖ ଲୋକ ଦେଢ଼କୋଟି ଟଙ୍କା ଅଧିକାରେ କାମ ଦେଲାବେଳେ, ଟେଲିଫୋନ୍‌ରେ ଖବର ପାଇ, ମୁଁ ତାଙ୍କୁ କହିବା ପରେ ସେଇ କାମକୁ ୪.୫ କୋଟିରେ ଦିଆଗଲା । କମ୍ପାନୀ ୧.୫ କୋଟି ଟଙ୍କା ଅଧିକା ଦେବାରୁ ରକ୍ଷା ପାଇଲା ମାତ୍ର ସେଥିଲାଗି ସେ ସନ୍ତୁଷ୍ଟ ନଥିଲେ । ଏସବୁ ଯୋଗୁ ମୋତେ ବି ସେଇ ସଂସ୍ଥାରେ କିମିତି ଅଣନିଃଶ୍ୱାସୀ ହେଲା ପରି ଲାଗିଲା ।

ଦିନେ ମୁଁ ଓଡ଼ିଶା ଭବନକୁ ଯାଇଥାଏ । ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ଆସିଥାନ୍ତି । ମୁଁ ଓଡ଼ିଶା ଭବନକୁ ଗଲାବେଳେ ସେ ସିଡ଼ିରୁ ଓହ୍ଲାଇ ଆସୁଥାନ୍ତି । ମୋତେ ଦେଖି କହିଲେ ''ତୁ କାହିଁକି ଏଠି ବୁଲୁଛୁ ?'' ମୁଁ କହିଲି ''ମୁଁ ଦି ବର୍ଷ ହେଲା ଡେପୁଟେସନ୍‌ରେ ଆସିଲିଣି ।'' ସେତେବେଳ ପର୍ଯ୍ୟନ୍ତ ସେ ଭାବୁଥିଲେ, ମୁଁ ବୋଧେ ଓଡ଼ିଶାରେ ଅଛି । ସଙ୍ଗେ ସଙ୍ଗେ କହିଲେ ''ଓଡ଼ିଶା ଫେର'' । କଟକରେ ମଦ ମୃତ୍ୟୁରେ ଲୋକ ମଲେଣି ।'' ଓଡ଼ିଶା ଫେରିବା ପାଇଁ ସେ ତତ୍‌କାଳୀନ ରେସିଡ଼େନ୍‌ସ କମିଶନରଙ୍କୁ ମୋତେ ଓଡ଼ିଶାକୁ ଫେରାଇ ଦେବାପାଇଁ ଗୋଟେ ଡି.ଓ. ଚିଠି ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କ ପାଖକୁ ଲେଖିବାକୁ କହିଲେ । ସେ ବାହାରକୁ ଯିବାପରେ, ମିଃ ବାଗ୍‌ଚି, ଗୋଟେ ଡିଓ ଲେଖି ରଖିଥାନ୍ତି । ବିଜୁ ବାବୁ ଫେରିଲା ପରେ ଡି.ଓରେ ଦସ୍ତଖତ କରି ପ୍ରଧାନମନ୍ତ୍ରୀଙ୍କ ପାଖକୁ ପଠାଇ ତାର ଗୋଟେ କପି ହୋମ ମିନିଷ୍ଟର ମିଃ ଚହ୍ୱାନଙ୍କୁ ଦେଲେ । ଏଣେ ମୁଁ ମଧ୍ୟ ଗୋଟେ ଦରଖାସ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଦେଲି । ଓଡ଼ିଶା ସରକାର ମୋତେ ଫେରାଇ ନେବେବୋଲି, ମିନିଷ୍ଟ୍ରି ଅଫ୍ ହୋମ୍ ଆଫେୟାରସ୍‌କୁ ଚିଠି ଦେଇ, ତାର କପି ଆମର ଭାରି ଶିଳ୍ପ ବିଭାଗକୁ ପଠାଇ ଦେଲେ । ସେତେବେଳେ ପ୍ରସନ୍ନ ହୋତା ଜଏଣ୍ଟ ସେକ୍ରେଟାରୀ ସେ ଏସବୁ ବୁଝୁଥାନ୍ତି । ଓଡ଼ିଶା ସରକାରଙ୍କ ଚିଠି ଉପରେ ସେ ମୋତେ ଶୀଘ୍ର ରିଲିଭ୍ କରିବାକୁ ମନ୍ତ୍ରୀଙ୍କଠାରୁ ଆଦେଶ ନେଇ, ମୋର ରିଲିଭ୍ ଆଦେଶ ପଠାଇ ତାର ଗୋଟେ କପି ଡି.ଓ.ପି. କୁ ପଠାଇଲେ । ଡି.ଓ.ପି. ଏ ଚିଠି ପାଇ ତାଙ୍କୁ ପ୍ରତିଉତ୍ତରରେ ଲେଖି ଜଣାଇଲେ ଯେ, ତ୍ରିପାଠୀଙ୍କ ଓଡ଼ିଶା ଫେରିବା ଆଦେଶ ରଦ୍ଦ କରାଗଲା । କାରଣ ପରସନାଲ ଡିପାର୍ଟମେଣ୍ଟର ଅଜାଣତରେ ଏସବୁ ହୋଇଛି । ତାଛଡ଼ା ଜଣେ ଅଫିସର ତାଙ୍କର ପାଞ୍ଚବର୍ଷ ଡେପୁଟେସନ୍ ପିରିୟଡ଼ ନପୂରୁଣୁ ଫେରିବାକୁ ହେଲେ, ତାହା ଆପଏଣ୍ଟମେଣ୍ଟ ସବ୍ କମିଟି ମାଧ୍ୟମରେ ଯିବ । ମୁଁ ବଡ଼ ଅସୁବିଧାରେ ପଡ଼ିଗଲି । ଏଣେ ଯିବାପାଇଁ ବାହାରିଲା ବେଳକୁ ପରସନାଲ ଡିପାର୍ଟମେଣ୍ଟ ମନା କରିଦେଲା ।

ତାର ଆଠ ଦିନ ପରେ ବିଜୁ ବାବୁ ଦିଲ୍ଲୀ ଆସିଥାନ୍ତି । ମୁଁ ତାଙ୍କୁ ଦେଖା କଲି । ସେ ମୋତେ କହିଲେ ''ମୁଁ ତ ତୋତେ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ କରି ପୋଷ୍ଟିଂ କରି ସାରିଲାଣି । ତତେ

ଛାଡୁ ନାହାନ୍ତି କ'ଣ ପାଇଁ ?'' ସେ ବାଗ୍‌ଚି ସାହେବଙ୍କୁ କହିଲେ, ପ୍ରଧାନମନ୍ତ୍ରୀ ନରସିଂହରାଓଙ୍କ ପାଖକୁ ଫୋନ ଲଗାଇବାକୁ । ଫୋନ୍‌ରେ ନରସିଂହ ରାଓଙ୍କ ସଙ୍ଗେ କଥାବାର୍ତ୍ତା କଲେ ଏବଂ ମୋତେ ଶୀଘ୍ର ଛାଡ଼ି ଦେବାକୁ ତାଙ୍କୁ ଫୋନରେ କହିଲେ । ପ୍ରଧାନମନ୍ତ୍ରୀ ନରସିଂହ ରାଓ, ତାଙ୍କ ଟେଲିଫୋନ ପାଇଲାପରେ, ବିଜୁବାବୁ ପଠାଇଥିବା ଡି.ଓ. ଚିଠିକୁ ମଗାଇ, ତାରି ମାରିଜିନ୍‌ରେ ନିଜ ହାତରେ ଲେଖିଦେଲେ ଯେ "Sri B.K. Tripathy, should be repatriated to his cadre immediately.'' ସେ ଚିଠି ପି.ଏମ୍‌.ଓ.ରୁ ହୋମକୁ ଆସିଲା ପରେ ତାକୁ ହୋମର ସ୍ପେଶାଲ ଅଫିସର ମିଃ ବୁଆସିଂହ ଫାଇଲରେ ଘରୋଇ ମନ୍ତ୍ରୀଙ୍କ ପାଖକୁ ପଠାଇଲେ । ସେଥିରେ ମଧ ଡେରି ହେବାଯୋଗୁ କେ.ପି.ସିଂହଦେଓ, ତାଙ୍କୁ କହିବାକୁ ପଡ଼ିଲା । ସେଠାରୁ ଫାଇଲ ଫେରିଲା ପରେ ଘରୋଇ ବିଭାଗର ଜଏଣ୍ଟ ସେକ୍ରେଟାରୀ ପୁଣି ଫାଇଲି ଆପଏଣ୍ଟମେଣ୍ଟ ସବ୍ କମିଟିକୁ ପଠାଇବାକୁ କହିଲେ । ଏଣେ ଓଡ଼ିଶାରେ ମୋର କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଭାବେ ପୋଷ୍ଟିଂର ନୋଟିଫିକେସନ ବାହାରିଗଲାପରେ, ମିଃ ସହେଦ୍ ଅସ୍ଥାୟୀ ଦାୟିତ୍ୱରେ ଥା'ନ୍ତି ଏବଂ ଡି.ଜି. ପ୍ରଫୁଲ୍ଲ ରଥ ମଧ ପଚାରୁଥାନ୍ତି କେବେ ମୁଁ ଯାଇ ଜଏନ୍ କରୁଛି ବୋଲି ।

ଡିପାର୍ଟମେଣ୍ଟ ଅଫ୍ ପରସ୍‌ନେଲେ ଯେଉଁପରି ସମସ୍ୟା ସୃଷ୍ଟିକଲା, ମୁଁ ଭାବିଲି ଆଉ ଫେରିହେବନି । ଜଏଣ୍ଟ ସେକ୍ରେଟାରୀ ମିସେସ୍ କ୍ରିଷ୍ଣା ସିଂହ, ଥରକୁ ଥର ମନା କରି ପଠାଉଥାନ୍ତି । ପ୍ରାୟ ୧୫ଦିନପରେ ବିଜୁବାବୁ ପୁଣି ଦିଲ୍ଲୀ ଆସିଲେ । ମୁଁ ଯାଇ ନଥିବାରୁ ବିରକ୍ତି ପ୍ରକାଶ କରି ସଙ୍ଗେ ସଙ୍ଗେ କ୍ୟାବିନେଟ୍ ସେକ୍ରେଟାରୀଙ୍କୁ ଫୋନ କଲେ । କେବଳ ଫୋନ କଲେନି ମୋ ସାମ୍ନାରେ ମଧ କହିଲେ ଯେ ଯଦି କେନ୍ଦ୍ର ମୋ ଅଫିସରଙ୍କୁ ପ୍ରଧାନମନ୍ତ୍ରୀ କହିଲା ପରେ ଛାଡୁନି, ତାହେଲେ ମୁଁ ପ୍ରଧାନମନ୍ତ୍ରୀଙ୍କ ସଙ୍ଗେ ଅଫିସରମାନଙ୍କ ଡେପୁଟେସନ ବିଷୟରେ କଥାବାର୍ତ୍ତା କରୁଛି । କ୍ୟାବିନେଟ୍ ସେକ୍ରେଟାରୀଙ୍କୁ ଏକଥା କହିଲାର ପରଦିନ ପରସନାଲ ଡିପାର୍ଟମେଣ୍ଟର ଜଏଣ୍ଟ ସେକ୍ରେଟାରୀ ମିସେସ୍ ସିଂହ, ଯେ କି ମୋତେ ଭଲ ଭାବେ ଜାଣି ସୁଦ୍ଧା ଛାଡ଼ିବେନି ବୋଲି ଆଗରୁ କହୁଥିଲେ, ସେ ହେଭି ଇଣ୍ଡଷ୍ଟ୍ରି ଜଏଣ୍ଟ ସେକ୍ରେଟାରୀ ପ୍ରସନ୍ନ ହୋତାଙ୍କୁ ଫୋନ କରି କହିଲେ ଯେ ମୋତେ ଶୀଘ୍ର ରିଲିଭ କରିବା ପାଇଁ । ମୁଁ ପରେ ଶୁଣିଲି କ୍ୟାବିନେଟ୍ ସେକ୍ରେଟାରୀ ମିନିଷ୍ଟ୍ରି ଅଫ୍ ହୋମରୁ ଫାଇଲ ମଗାଇ ଦେଖିଲେ ପ୍ରଧାନମନ୍ତ୍ରୀ ବିଜୁ ବାବୁଙ୍କ ଡି.ଓ. ଉପରେ ମୋର ଫେରିବା ପାଇଁ ଆଦେଶ ଦେଇଛନ୍ତି । ତେଣୁ ସେ ଲେଖିଲେ, ଯେହେତୁ ପ୍ରଧାନମନ୍ତ୍ରୀ, ଯେ କି ଆପଣ୍ଟମେଣ୍ଟ ସବ୍‌କମିଟିର ଚେୟାରମ୍ୟାନ୍, ସେ ନିର୍ଦ୍ଦେଶ ଦେଇଥିବା ଯୋଗୁ ତ୍ରିପାଠୀଙ୍କୁ ଆଗ ଫେରାଇ ଦିଆଯାଇ ପରେ ଫାଇଲ୍‌ରେ ଆଦେଶ ନିଆ ଯିବାରେ କିଛି ଅସୁବିଧା ନାହିଁ ତାଛଡ଼ା ହୋମ ମିନିଷ୍ଟ୍ରି ମଧ ଆଗରୁ ତାଙ୍କର ମତାମତ ଦେଇଥିବା ଯୋଗୁ ଅଯଥା ବିଳମ୍ବ କରିବା ଦରକାର ନାହିଁ ବୋଲି ସେ ଫାଇଲ୍‌ରେ ଆଦେଶ ଦେଲେ ।

ଏ ଆଦେଶ ଆସିଲା ପରେ, ପ୍ରସନ୍ନ ହୋତା, ଇଣ୍ଡଷ୍ଟ୍ରି ଜେ.ଏସ. ମୋତେ ସଙ୍ଗେ ସଙ୍ଗେ ରିଲିଭ୍ କରିଦେଲେ । ମୁଁ ଡି.ଜି. ରଥ ସାହେବଙ୍କୁ ଟେଲିଫୋନ୍ କଲି । ସେ କହିଲେ

ଯେ,''ତୁମର ଆସିବା ଡେରିଯୋଗୁ ସରକାର ବି.ବି. ମିଶ୍ରଙ୍କୁ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ ଭାବେ ପୋଷ୍ଟିଂ ପାଇଁ ଆଦେଶ ଦେବାପାଇଁ ଫାଇଲ ଯାଇଛି । ସେ ଯାହା ହେଉ ତୁମେ ଫେରିଆସ ।'' ମୁଁ ଅଗଷ୍ଟ ୧୬ ତାରିଖ ଦିନ ରିଲିଭ ହେଲାପରେ, କଟକରେ ୧୭ ତାରିଖରେ ପହଞ୍ଚିଲି । ମୁଁ କଟକରେ ପହଞ୍ଚିଲା ବେଳକୁ ବି.ବି. ମିଶ୍ରଙ୍କ ନୋଟିଫିକେସନ ହୋଇଯାଇଥାଏ ମାତ୍ର ସେ ଜଏନ୍ କରିନଥାନ୍ତି । ଏଣେ ଅନାଦି ସାହୁ, ୨୪ ଘଣ୍ଟା ମଧ୍ୟରେ ବଦଳି ହୋଇଗଲା ପରେ, ମିଃ ସାହେଦ୍ ମଧ ଦାୟିତ୍ୱ ଦେଇଦେବାପାଇଁ ତରତର ହେଉଥାନ୍ତି । ମୁଁ ପହଞ୍ଚିଲା ପରେ, ମୋତେ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ ଭାବେ ଜଏନ୍ କରିବାକୁ ଆଦେଶ ଦିଆଗଲା । ମୁଁ ୧୯/୮ରେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଭାବେ ଜଏନ୍ କଲି ।

**କେନ୍ଦ୍ରାଞ୍ଚଳ ଡି.ଆଇ.ଜି :** ମୁଁ ଜଏନ୍ କଲାଆଗରୁ କଟକରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ଜଟିଳ ଅବସ୍ଥା ଧାରଣ କରିଥିଲା । ରେଭେନ୍ସା କଲେଜରେ ଛାତ୍ର ଆନ୍ଦୋଳନ ମୁଣ୍ଡଟେକି ଥାଏ ଏବଂ ଛାତ୍ରମାନେ କଲେଜ ପରିସର ମଧ୍ୟରେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିଥାନ୍ତି । ଆଇନ ଶୃଙ୍ଖଳା ପରିସ୍ଥିତି ଦୃଷ୍ଟିରୁ, ମୁଁ କଟକ ଏସ.ପି. ବିଧୁ ମିଶ୍ରଙ୍କୁ ନିର୍ଦ୍ଦେଶ ଦେଇ ଗୋଟେ ପ୍ଲାଟୁନ ଫୋର୍ସ କଲେଜ ଛକ ପାଖ ପୋଷ୍ଟ ଅଫିସ ନିକଟରେ ରଖିଥିଲି ମାତ୍ର ଦିନକ ପରେ କଲେଜ ପରିସର ମଧ୍ୟରୁ ଟେକା ପଥର ସେମାନଙ୍କ ଉପରେ ପଡ଼ିଲା । ପରଦିନ ମୁଁ ନିଜେ ଏସ.ପିଙ୍କୁ ଧରି କଲେଜ ପାଖକୁ ଗଲାବେଳେ, ପିଲାମାନେ ଦୁଇପଟୁ ଆମ ଉପରକୁ ଟେକା ପକାଇବା ଆରମ୍ଭ କଲେ । ପୁଲିସ ବାଲା ଖଣ୍ଡିଆ ଖାବରା ହେଲେ । ମୁଁ ଯେତେ ଚେଷ୍ଟାକଲି, ବୁଝେଇଲି, ସେମାନେ ଶୁଣିଲେନି । ସେମାନଙ୍କ ଧାରଣା ଥିଲା, ପୁଲିସ କଲେଜ ପରିସର ମଧ୍ୟକୁ ପ୍ରବେଶ କରିବନି । ଏଣେ କଲେଜ ଅଧ୍ୟକ୍ଷ ମଧ ତାଙ୍କ ଅଫିସ୍‌ରୁ ବାହାରକୁ ବାହାରୁ ନଥାନ୍ତି । ଛାତ୍ରମାନେ ତାଙ୍କୁ ଭୟଭୀତ କରି ରଖିଥାନ୍ତି । ଅବସ୍ଥା ଅସମ୍ଭାଳ ହେବା ଯୋଗୁ ମୋ ନିର୍ଦ୍ଦେଶରେ ପ୍ରଥମେ କଲେଜ ପରିସର ମଧ୍ୟକୁ ଟିୟର ସ୍ମୋକ, ପରେ ପରେ ପରିସରମଧ୍ୟକୁ ପୁଲିସ୍ ପ୍ରବେଶ କରି ଲାଠି ଚାଳନା ଦ୍ୱାରା ପିଲାମାନଙ୍କୁ ଘଉଡ଼ାଇ ଦିଆଗଲା ଏବଂ କଲେଜ ପରିସରରେ ଶାନ୍ତି ଅଳ୍ପଦିନରେ ଫେରି ଆସିଲା । ଯଦିଓ ପୁଲିସ କଲେଜ ପରିସର ମଧ୍ୟରେ ପ୍ରବେଶ କଲା, ମାତ୍ର ସଂଯମତାର ସହିତ କାର୍ଯ୍ୟ କରିଥିବା ଯୋଗୁ କୌଣସି ଅପ୍ରିତିକର ଘଟଣା ଘଟି ନଥିଲା ।

କଟକରେ ଛାତ୍ର ଅଶାନ୍ତି ଦୂର ହେଲା ପରେ, ହଠାତ୍ ସାଧୁ ଗୌଡ଼େଶ୍ୱର କଲେଜ, ଯାଜପୁରରେ ପୁଲିସ ଗୁଳିରେ ଜଣେ ଛାତ୍ର ଆହତ ହୋଇ ମେଡ଼ିକାଲରେ ଚିକିତ୍ସା ହେବା ଯୋଗୁ, ସେଠାରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ଅସମ୍ଭାଳ ହୋଇ ପଡ଼ିଲା । ମୁଁ ସେଠାକୁ ଯାଇ ପରିସ୍ଥିତି ଅନୁଧ୍ୟାନ କରି, ତାର ସମାଧାନ କଲି । ପରେ ପରେ ଏଇ ପୁଲିସ ଫାୟାରିଙ୍ଗ ପାଇଁ ଆର.ଡି.ସି. ଏବଂ ଡି.ଆଇ.ଜି. ଯୁଗ୍ମ ତଦନ୍ତ କରିବା ପାଇଁ ସରକାର ନିର୍ଦ୍ଦେଶ ଦେଲେ । ତତ୍‌କାଳୀନ ଆର.ଡି.ସି. ମିଃ ସୁଧାଂଶୁ ମୋହନ ପଟ୍ଟନାୟକ ଏବଂ ମୁଁ ଏଇ ତଦନ୍ତକୁ ଘଟଣାସ୍ଥଳରେ ଦୁଇଦିନ ରହି ଶେଷ କରି, ଆମର ତଦନ୍ତ ରିପୋର୍ଟ ସରକାରଙ୍କୁ

ଦେଲୁ । ଗୋଟିଏ କଥା ତଦନ୍ତ ବେଳେ ଜଣାଗଲା ଯେ, ଯେଉଁ କନେଷ୍ଟବଳ ବନ୍ଧୁକରୁ ଗୁଳି ଫୁଟିଥିଲା, ସେ ଛାତ୍ରକୁ ଗୁଳି କରିବା ପାଇଁ ଲକ୍ଷ୍ୟ କରିନଥିଲା । ଗଣ୍ଡଗୋଳର ଆଶଙ୍କା କରି ଚାର୍ଜ ମାଗାଜିନ୍ କରି ବନ୍ଧୁକକୁ ରଖିବା ପାଇଁ ହାବିଲଦାର ନିର୍ଦ୍ଦେଶ ଦେଲାବେଳେ, ସେ ୩୦୩ ବନ୍ଧୁକରେ ଗୁଳି କିପରି ଲୋଡ଼ହୁଏ ନଜାଣି ଥିବାଯୋଗୁ ଭୁଲବଶତଃ ବନ୍ଧୁକରୁ ଗୁଳି ଫୁଟିଗଲା ଏବଂ ଫୁଟିବା ଗୁଳିଟି ୬୦ ଡିଗ୍ରି କୋଣରେ ଯାଇ ଦୁଇମହଲା ଉପର କାଛର ଝରକାର ମୋଟା ଲୁହାରେଲିଂ ଦେହରେ ବାଜି ଖଣ୍ଡ ବିଖଣ୍ଡ ହୋଇ ଗଲାପରେ ଖଣ୍ଡେ ଭଙ୍ଗା ଲୁହାଖଣ୍ଡ(ଭଙ୍ଗା ଗୁଳି ଖଣ୍ଡେ) ଝରକା ପାଖରେ ଠିଆ ହୋଇ ଦେଖୁଥିବା ଜଣେ ଛାତ୍ରଙ୍କ ଦେହରେ ବାଜିଥିଲା ଏବଂ ପରେ ପରେ ତାର ମୃତ୍ୟୁ ଘଟିଥିଲା । ତଦନ୍ତ ବେଳେ ଏହା ମଧ ଜଣାପଡ଼ିଥିଲା ଯେ, କେବଳ କଟକ ଜିଲ୍ଲାରେ, ସେତେବେଳେ ୪ଶହରୁ ଅଧିକ ଏ.ପି.ଆର. ଏବଂ ଓ.ଆର. କନେଷ୍ଟବଳ ୩୦୩ ବନ୍ଧୁକରେ ଗୁଳି ଫୁଟାଇ ଜାଣି ନାହାନ୍ତି, କାରଣ ୩ ବର୍ଷ ହେଲା ୩୦୩ ଗୁଳି ନମିଳୁଥିବା ଯୋଗୁ ଯେଉଁମାନେ ଟ୍ରେନିଂ ଯାଇ ଫେରିଲେ ଏବଂ ଏ.ପି.ଆର.ରେ ପୋଷ୍ଟିଂ ହେଲେ, ସେମାନେ ୩୦୩ ବନ୍ଧୁକ ଚାଳନା ଶିଖିନଥିଲେ । ମାତ୍ର ଆଇନ ଶୃଙ୍ଖଳା ପରିସ୍ଥିତି ସମୟରେ ପୁଲିସ ମାନୁଆଲ ଅନୁସାରେ ସେମାନଙ୍କୁ ୩୦୩ ରାଇଫଲ ନେଇ ଯିବାକୁ ପଡୁଥିଲା । ଏକଥା ସିନିୟର ଅଫିସରମାନେ ଜାଣୁ ନଥିଲେ । କାମ ଚାଲୁଛି ଚାଲୁଛି, ଏଇ ଚିନ୍ତା ଧାରାରେ ଟ୍ରେନିଂ ନପାଇଥିବା ଲୋକଙ୍କୁ ମଧ ୩୦୩ ରାଇଫଲ ଚାଳନା କରିବାକୁ ଦିଆଯାଉଥିଲା । କେବଳ କଟକ ଜିଲ୍ଲାରେ ନୁହଁ, ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ଏଇ ଅବସ୍ଥା ଥିଲା । ଆମ  ତଦନ୍ତ ରିପୋର୍ଟରେ ମଧ ଏଇକଥା ସରକାରଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଲେଖା ଯାଇଥିଲା । ତାଛଡ଼ା ମୁଁ ମଧ ଗୋଟେ ଡି.ଓ. ଚିଠି ଲେଖି ଡି.ଜି.ଙ୍କୁ ଜଣାଇଲି ଏବଂ ଏହାର ଭୟାଭୟ ପରିସ୍ଥିତି ବିଷୟରେ ଲେଖିଥିଲି । ପରେ ପରେ ଡି.ଜି.ମଧ ପ୍ରତ୍ୟେକ ଜିଲ୍ଲା ଏସ.ପି.ମାନଙ୍କ ପାଖକୁ ଯେତେଦୂର ସମ୍ଭବ ରେଞ୍ଜଟ୍ରେନିଂ ଦେବାପାଇଁ ନିର୍ଦ୍ଦେଶ ଦେଲେ । କେତେ ଜଣ ଏ.ପି.ଆରଙ୍କୁ ଯେତିକି ଗୁଳିଥିଲା, ସେତିକିରେ ରେଞ୍ଜ ଟ୍ରେନିଂ ଦିଆଗଲା । ମାତ୍ର ଅବସ୍ଥାର ଆଶାନୁରୂପକ ଉନ୍ନତି ଘଟିନଥିଲା ।

ସେପ୍ଟେମ୍ବର ମାସ ବେଳକୁ ଓଡ଼ିଶା ପୁଲିସରେ ପୁଣି ଏକ ହଇଚଇ ସୃଷ୍ଟି ହେଲା । ଡି.ଜି. ପି.ସି. ରଥ ଅକ୍ଟୋବର ୧୯୯୨ ମସିହାରେ ଅବସର ନେଲାପରେ, ତାଙ୍କପରେ ସିନିୟରଟି ଦୃଷ୍ଟିରୁ ରବିନାରାୟଣ ମହାପାତ୍ର ଡି.ଜି. ହେବାକଥା । ମାତ୍ର ତାଙ୍କୁ ଡି.ଜି. କରାନଯାଇ, ଶରତଚନ୍ଦ୍ର ମିଶ୍ରଙ୍କୁ ଡି.ଜି. କରାଗଲା । ମିଃ ମିଶ୍ର ଓଡ଼ିଶାରୁ ଡେପୁଟେସନରେ ଯାଇ ପ୍ରାୟ ୨୫ ବର୍ଷରୁ ଉର୍ଦ୍ଧ୍ୱ ସମୟ ବାହାରେ ଥିଲେ । ଜଣେ ଦକ୍ଷ ପୁଲିସ ଅଫିସର ଭାବେ ବାହାରେ ଜଣାଶୁଣା ହୋଇଥିଲେ ମଧ ବହୁବର୍ଷ ଓଡ଼ିଶା ବାହାରେ ଥିବା ଦୃଷ୍ଟିରୁ ତତ୍‌କାଳୀନ ଓଡ଼ିଶା ପୁଲିସକୁ ସେ ଯେଉଁପରି ଭାବେ ଜାଣିଥିଲେ, ମିଃ ରବିନାରାୟଣ ମହାପାତ୍ର ତାଙ୍କ ଠାରୁ ଅଧିକା ଜାଣିଥିବା କଥା କୁହାଯାଇଥିଲା । ତା ଛଡ଼ା ମିଃ ମହାପାତ୍ର ବହୁ ଜିଲ୍ଲାରେ ଏସ୍.ପି ରେଞ୍ଜରେ ଡି.ଆଇ.ଜି. ଭାବେ କାର୍ଯ୍ୟ କରିଥିବାବେଳେ ମିଃ ମିଶ୍ର କେବଳ ଗୋଟିଏ ଜିଲ୍ଲାରେ ଏସ୍.ପି ହେଲା ପରେ

କେନ୍ଦ୍ରକୁ ଚାଲିଯାଇଥିଲେ । ସେଥିଯୋଗୁ ତାଙ୍କୁ ଡି.ଜି. କରାଯିବା ଆଶା କରାଯାଉଥିଲା । ସେ ଦୁଇଜଣ ବ୍ୟାଚ୍‌ମେଟ୍ ଏବଂ ରହୁଥାନ୍ତି ଗଡ଼ଖାଇ ଭିତରେ ପାଖାପାଖି କ୍ୱାଟରରେ । ଶରତ ମିଶ୍ର ଡେପୁଟେସନରୁ ଫେରିଲା ବେଳେ ମିଃ ମହାପାତ୍ର ଆଇ.ଜି. ପ୍ରଶାସକ ଭାବେ କାର୍ଯ୍ୟ କରୁଥିଲେ । ସେତେବେଳେ ଦୁହିଁଙ୍କ ମଧ୍ୟରେ ସଂପର୍କ ଭଲଥିଲା, ମାତ୍ର ଯେଉଁପରି ଭାବେ ମିଃ ମହାପାତ୍ରଙ୍କୁ ଆଇ.ଜି. ପ୍ରଶାସନରୁ ବିଦାୟ ଦେଇ ମିଃ ମିଶ୍ରଙ୍କୁ ସେ ସ୍ଥାନ ଦିଆଗଲା, ସେଥିରେ ମିଃ ମହାପାତ୍ର କ୍ଷୁବ୍ଧ ହେଲେ ଏବଂ ଏଥିରେ ଅନ୍ୟମାନଙ୍କର ସଂପୃକ୍ତକୁ ସନ୍ଦେହକରି, ନୂତନ ପୋଷ୍ଟରେ ଜଏନ୍ ନକରି କିଛି ଦିନ ଛୁଟିରେ ରହିଲେ । ଏଇ ଘଟଣା ପରଠାରୁ ସେ ଦୁଇଜଣଙ୍କ ମଧ୍ୟରେ ସଂପର୍କ ତିକ୍ତ ହେଲା । ଏପରିକି ପାଖାପାଖି ଘରେ ପଡ଼ୋଶୀ ହୋଇ ରହିଥିଲା ବେଳେ କେହି କାହାଘରକୁ ମଧ୍ୟ ଯାଉନଥିଲେ । ତେଣୁ ଶରତ ମିଶ୍ର ଡି.ଜି. ହେଲାପରେ ଆର.ଏନ. ମହାପାତ୍ର ପୁଲିସ ହାଉସିଂ କର୍‌ପୋରେସନ୍‌ର ସି.ଏମ୍.ଡ଼ି. ହେଲେ । ପୁଲିସର ଦୁଇ ତୁଙ୍ଗ ଅଫିସରଙ୍କ ମଧ୍ୟରେ ବ୍ୟକ୍ତିଗତ ମତାନ୍ତର ଥିବା ଯୋଗୁ, ତାର ପ୍ରଭାବ ସମସ୍ତ ପୁଲିସ ଅଫିସରଙ୍କଠାରୁ ଆରମ୍ଭ କରି କନେଷ୍ଟବଲଙ୍କ ଉପରେ ପଡ଼ିଲା । ମିଃ ମହାପାତ୍ରଙ୍କ ଘରକୁ କିଏ ଗଲା, ଅଇଲା ସେ ଖବର ଶରତ ମିଶ୍ରଙ୍କୁ ଦେବା ପାଇଁ ଲୋକ କମ୍ ନଥିଲେ । ଖବର ପହଞ୍ଚିଲେ ଯେ କ'ଣ ଗୋଟେ ବିରାଟକାଣ୍ଡ ଘଟିବ, ଏକଥା ନୁହଁ । ମାତ୍ର ଦୁଇଜଣଙ୍କ ମତାନ୍ତର ଯୋଗୁ ଏହାର ସୁଯୋଗ କେତେକ ଗୋଡ଼ାଣିଆ, ଚତୁର କର୍ମଚାରୀ ନେଲେ ଏବଂ ଜଣଙ୍କ ପାଖେ ଅନ୍ୟଜଣକ କଥା କହିଲାବେଳେ, ତାଙ୍କୁ ଏକ ପ୍ରକାର ଖୁସିଲାଗୁଥିଲା । କିନ୍ତୁ ପୁଲିସ୍ ବିଭାଗରେ ଏହାର ସୁଦୂରପ୍ରସାରୀ ପ୍ରଭାବ ପଡ଼ିଲା । ସିନିୟର ଅଫିସରମାନେ ହାତେ ମାପି ଚାଖଣ୍ଡେ ଚାଲିବାକୁ ଆରମ୍ଭ କଲେ, କାରଣ ଶରତମିଶ୍ର ଅବସର ନେଲାପରେ, ମିଃ ମହାପାତ୍ର ଆହୁରି ଦୁଇବର୍ଷରୁ ଅଧିକ ଚାକିରିରେ ରହିବେ । ସେମାନଙ୍କ ମତାନ୍ତର ଯୋଗୁ, ପୁଲିସ ହେଡ଼କ୍ୱାଟରରେ କେତେକ ଟ୍ରାଡ଼ିସନାଲ ଫଙ୍କସନରେ ମଧ୍ୟ ମିଃ ମହାପାତ୍ର ଯୋଗ ଦେଉନଥିଲେ । ତାଛଡ଼ା, ପ୍ରତ୍ୟେକ ଦିନ ସ୍ଥାନୀୟ ସମ୍ବାଦ ପତ୍ରମାନଙ୍କରେ କିଛି ନା କିଛି ଖବର, ସେମାନଙ୍କୁ କିମ୍ବା ସେମାନଙ୍କ କାର୍ଯ୍ୟକୁ କେନ୍ଦ୍ରକରି ବାହାରୁଥାଏ । ପୁଲିସ ଡି.ଜି.ଙ୍କୁ ଆକ୍ଷେପ କଲାଭଳି ସମ୍ବାଦ ପ୍ରକାଶ ପାଇଲେ, ଏହା ମିଃ ଆର.ଏନ. ମହାପାତ୍ରଙ୍କ ପ୍ରରୋଚନାରେ ହୋଇଛି ବୋଲି କୁହାଗଲା । ଏପରିକି ଅପରାଧ ବଢ଼ିବା ଖବର ପ୍ରକାଶ ପାଇଲେ, ସେଥିରେ ତାଙ୍କର ହାତ ଅଛି ବୋଲି ସନ୍ଦେହ କରାଗଲା ଏବଂ କେତେକ ସିନିୟର, ଜୁନିୟର ଅଫିସର ମଧ୍ୟ କାନକୁହା କଥା କହି ଅବସ୍ଥାକୁ ଆହୁରି ଖରାପ କରିଦେଲେ । ଏହା ସତ୍ୟଯେ ସିନିୟର ଅଫିସରମାନଙ୍କ ମଧ୍ୟରୁ ସୁରେନ୍ଦ୍ର ସ୍ୱାଇଁ, ଅନାଦି ସାହୁ ଖୋଲାଖୋଲିଭାବେ ମିଃ ମହାପାତ୍ରଙ୍କ ପାଖେ ସଂପର୍କ ରଖୁଥିଲା ବେଳେ, ଆଉ କେତେକ ଲୁଚାଛପାରେ ସଂପର୍କ ରଖୁଥିଲେ ।

ମୁଁ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ ହେଲାପରେ, ମୋର ସଂପର୍କ ଦୁଇଜଣଙ୍କ ସଙ୍ଗେ ଭଲଥିଲା ଯଦିଓ ମିଃ ମିଶ୍ର ଡି.ଜି. ଥିବା ଯୋଗୁ ପ୍ରତ୍ୟେକ ଦିନ ତାଙ୍କ ସହିତ ଦୈନନ୍ଦିନ କାର୍ଯ୍ୟପାଇଁ

ସଂପର୍କ ରହିଥିଲା । କିଛିଦିନ ପାଇଁ ମିଃ ମହାପାତ୍ର, ମୋତେ ସନ୍ଦେହ କଲେ ଯେ ମୁଁ ତାଙ୍କୁ ପଚାରୁନି । ସେମିତି ଦିନେ ମୁଁ ମିଶ୍ରଙ୍କ ଅଫିସରେ ବସିଥିଲା ବେଳେ ମିଃ ମିଶ୍ର କଥାବାର୍ତ୍ତା ବେଳେ କହିଲେ "You are not my choice". କାରଣ ସେ ଜାଣିଥିଲେ ଯେ, ମିଃ ରଥ ମୋର କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ପୋଷ୍ଟିଂ ପାଇଁ ଚେଷ୍ଟା କରିଥିଲେ । ତାହାଛଡ଼ା ସେ ମଧ ଜାଣିଥିଲେ ମୁଖ୍ୟମନ୍ତ୍ରୀ ନିଜେ ଚାହୁଁଥିବା ଯୋଗୁ ମୁଁ ଦିଲ୍ଲୀରୁ ଫେରିଥିଲି । କେବଳ ମୁଁ ନୁହେଁ, ମୋ ପରି ଅନେକ ଅଫିସର ମଧ, ଏହିପ୍ରକାର ସମସ୍ୟାର ସମ୍ମୁଖୀନ ହେଲେ । ଯେଉଁଠି ତୁଙ୍ଗ ସ୍ତରରେ ସନ୍ଦେହ ସୃଷ୍ଟିହୁଏ ସେ ସନ୍ଦେହର କୁହେଳିକା ଅନୁଷ୍ଠାନର ସବୁସ୍ତରକୁ ଆଚ୍ଛାଦିତ କରେ । ଶରତ ମିଶ୍ରଙ୍କ ଡି.ଜି. ହେବାପୂର୍ବରୁ ଏବଂ ତାଙ୍କ ପରେ ମଧ କୁହେଳିକାର ପରଦା ଆଜି ପର୍ଯ୍ୟନ୍ତ ପୁଲିସ ବିଭାଗକୁ ଆଚ୍ଛାଦିତ କରି ରଖିଛି ।

ଅବଶ୍ୟ କେନ୍ଦ୍ରାଞ୍ଚଳରେ କାମ କରିବାପାଇଁ, ମୋ ପକ୍ଷରେ ବିଶେଷ ଅସୁବିଧା ନଥିଲା । ମୁଁ କଟକ, ପୁରୀ, ଭୁବନେଶ୍ୱର ଏସ.ପି. ଥିଲି । ତା ଆଗରୁ କଟକ ସହର, ଖୋର୍ଦ୍ଧା ଇତ୍ୟାଦିରେ ଏସ.ଡି.ପି.ଓ. ଥିଲି । ତେଣୁ କେନ୍ଦ୍ରାଞ୍ଚଳର ପ୍ରତ୍ୟେକ ଥାନା ମୋତେ ଜଣାଥିଲା । ଅଫିସରମାନେ ଜଣାଥିବା ବେଳେ, ରାଜନୈତିକ ନେତାଙ୍କ ଠାରୁ ଆରମ୍ଭ କରି ସେମାନଙ୍କର ଚାମଚା, ସାଧାରଣ ଲୋକ ଏବଂ ଜିଲ୍ଲାମାନଙ୍କର ଜଣାଶୁଣା ଅପରାଧୀମାନେ ମଧ ଜଣାଥିଲେ । ତେଣୁ କୌଣସି ଗୋଟେ ଘଟଣା କିମ୍ବା ଆଇନଶୃଙ୍ଖଳା ପରିସ୍ଥିତିର ସମ୍ଭାବନା ଦେଖା ଦେଲେ, ସେ ପରିସ୍ଥିତିକୁ କିପରି ଭାବେ ସମ୍ମୁଖୀନ ହେବାକୁ ପଡ଼ିବ, ଅନ୍ତତଃ ସେତକ ଜାଣିବାକୁ ଅସୁବିଧା ନଥିଲା ।

ସାଧୁ ଗୌଡ଼େଶ୍ୱର କଲେଜରେ ପୁଲିସ୍ ଗୁଳି ଚାଳନାର ତଦନ୍ତ ସରିଲାପରେ କଟକରେ ଅକ୍ଟୋବର ମାସରେ ଦଶହରା ପୂଜା ଆସିଯାଇଥିଲା । କଟକ ସହରରେ ଦଶହରା ସବୁଠାରୁ ବଡ଼ ପର୍ବ ଏବଂ ଆଇନ ଶୃଙ୍ଖଳା ପରିସ୍ଥିତି ଦୃଷ୍ଟିରୁ କଡ଼ା ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । ୧୯୯୧ ମସିହା ଦଶହରା ଭସାଣୀ ଉତ୍ସବ ସମୟରେ ଟିପ୍ପଣୀ ମାରିବାକୁ କେନ୍ଦ୍ରକରି ସାଂପ୍ରଦାୟିକ ଦଙ୍ଗା ମୁଣ୍ଡ ଟେକିବାକୁ ବସିଥିଲା ଏବଂ ଦୁଇ ସଂପ୍ରଦାୟଙ୍କ ମଧରେ ତିକ୍ତତା ଦେଖାଦେଇଥିଲା । ତେଣୁ ଏ ବର୍ଷ ଯେପରି କୌଣସି ପ୍ରକାର ଅପ୍ରିତିକର ପରିସ୍ଥିତି ନଉପୁଜେ, ସେଥିପାଇଁ ମାତେ ଆବଶ୍ୟକୀୟ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥିଲା ଏବଂ କଟକ ଏସ.ପି.ଙ୍କୁ ସେଇପରି ଭାବେ ନିର୍ଦ୍ଦେଶ ଦିଆଯାଇଥିଲା । ସେ ବର୍ଷ କଟକରେ ଦୁର୍ଗାପୂଜା, କାଳୀପୂଜା, ବାଲିଯାତ୍ରା ଅତ୍ୟନ୍ତ ସୁରୁଖୁରୁରେ ସମାହିତ ହୋଇଥିଲା । ଭସାଣୀ ବେଳେ, ସାରା ରାତ୍ରି ଗୌରୀଶଙ୍କର ପାର୍କ ପାଖେ ଜଗି କରି ବସିବାକୁ ପଡ଼ିଥିଲା । କେବଳ ମୁଁ ନୁହେଁ, ମୋ ସଙ୍ଗେ ଆର.ଡି.ସି., କଲେକ୍ଟର, ଏସ.ପି. ଏବଂ ଅନ୍ୟାନ୍ୟ ଅଫିସରମାନେ ସମସ୍ତ ମେଢ଼ ଗୌରୀଶଙ୍କର ପାର୍କ ନଟପିବା ପର୍ଯ୍ୟନ୍ତ ସେଠାରେ ରହିଥିଲେ । ତେଣୁ ଯାତ୍ରା ସମୟରେ କୌଣସି ପ୍ରକାର ଅଘଟଣ ଘଟିନଥିଲା ।

**ବ୍ରାବିମସ୍‌ଜିଦ ଭଙ୍ଗା ଏବଂ କଟକରେ ଦଙ୍ଗା :** ବିଶ୍ୱହିନ୍ଦୁ ପରିଷଦ ଆନୁକୁଲ୍ୟରେ ଅଯୋଧାରେ ରାମମନ୍ଦିର ଗଠନ ପାଇଁ ଦେଶର ପ୍ରତ୍ୟେକ ରାଜ୍ୟରୁ ଇଟା ଖଣ୍ଡମାନ

କରସେବକଙ୍କ ମାଧ୍ୟମରେ ଅଯୋଧ୍ୟା ଯାଉଥାଏ । ଓଡ଼ିଶାରୁ ମଧ୍ୟ, ସେଇପରି ଇଟା- 'ରାମଇଟା', ବିଭିନ୍ନ ସ୍ଥାନରୁ ପୂଜା ଅର୍ଚ୍ଚନା ପରେ, ଅଯୋଧ୍ୟା ଯାତ୍ରା କରୁଥାଏ । ବହୁତ କରସେବକ, ରାମ ଭକ୍ତ ଅଯୋଧ୍ୟା ଯାଇଥାନ୍ତି । ଡିସେମ୍ବର ମାସ ୬ ତାରିଖଦିନ ଅଯୋଧ୍ୟାରେ ରାମମନ୍ଦିର ଶିଳାନ୍ୟାସ ହେବାର ଦିନ ଠିକ୍ ହୋଇଥିଲା । ଏଥିଲାଗି ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କରିବା ଲାଗି କେନ୍ଦ୍ର ଏବଂ ରାଜ୍ୟ ସରକାର କେତେକ ପ୍ରତିଶୋଧମୂଳକ ବ୍ୟବସ୍ଥା ଗ୍ରହଣ କରିଥାନ୍ତି । କଟକ ବାଟ ଦେଇ ଏବଂ କଟକ ସହରରୁ ମଧ୍ୟ କେତେକ କର ସେବକ ଅଯୋଧ୍ୟା ଯାଇଥିଲେ, ମାତ୍ର କଟକରେ କୌଣସି ପ୍ରକାର ସାଂପ୍ରଦାୟିକ ଅଶାନ୍ତିର ଗୁଂଜରଣ ଶୁଣାଯାଉ ନଥିଲା । ମୁସ୍‌ଲିମ୍ କମ୍ୟୁନିଟିର ଲୋକମାନେ ଅଯୋଧ୍ୟାରେ କ'ଣ ଘଟୁଛି ତା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ଯଦିଓ ବାହାରକୁ କିଛି ଜଣା ପଡୁନଥାଏ; ଆଭରଣ ଭିତରେ ଜଳନ୍ତା ନିଆଁର ଆଭାସ ମିଳୁଥିଲା । ଡିସେମ୍ବର ପାଞ୍ଚତାରିଖ ଅପରାହ୍ନ ଠାରୁ ମୁସଲିମ୍ ପକେଟମାନଙ୍କରେ ସ୍ୱତନ୍ତ୍ର ପାଟ୍ରୋଲିଂ ଏବଂ ପିକେଟ୍ ଦିଆଯାଇଥାଏ । ମସଜିଦ୍‌ମାନଙ୍କ ପାଖରେ ଗାର୍ଡଥାଏ ଡିସେମ୍ବର ଛଅ ତାରିଖ ଦିନ ୧୦ଟା ବେଳକୁ ମୁଁ ସହରରେ ପାଟ୍ରୋଲିଂ ତଦାରଖକରି ଡି.ଜି.ଙ୍କ ଅଫିସ୍‌କୁ ୧୨ଟା ବେଳକୁ ଫେରିଲି । ଏସ୍.ପି କଟକ ଏବଂ ଅନ୍ୟ ଅଫିସରମାନେ ସହରମଧ୍ୟରେ ପାଟ୍ରୋଲିଂ କରୁଥାନ୍ତି । ମୁଁ ଡି.ଜି. ଙ୍କ ଅଫିସ୍‌ରେ ବସିଥିବାବେଳେ ଡି.ଜି. ମିଃ ଶରତ ଚନ୍ଦ୍ର ମିଶ୍ର, ଦିଲ୍ଲୀକୁ ଫୋନ କରି ବୁଝିଲେ ଯେ, ସେତେବେଳକୁ ହଜାର ହଜାର କରସେବକ ବାବେରୀ ମସ୍‌ଜିଦ୍‌କୁ ଭାଙ୍ଗିବା ଆରମ୍ଭ କରି ଦେଇଥାନ୍ତି । ବାବେରୀ ମସ୍‌ଜିଦ୍ ଭାଙ୍ଗିବା ଖବର ପାଇଲା ପରେ, ସାଂପ୍ରଦାୟିକ ଦଙ୍ଗାହେବାର ସମ୍ଭାବନାକୁ ଏଡ଼ାଯାଇ ନପାରେ ବୋଲି, ମୁଁ କଟକ ସହର, କେନ୍ଦ୍ରାପଡ଼ା, ଯାଜପୁର, ପୁରୀ, ନୟାଗଡ଼ ଏବଂ ଅନ୍ୟାନ୍ୟ ସ୍ଥାନରେ ପୁଲିସ୍ ପାଟ୍ରୋଲିଂର ବ୍ୟବସ୍ଥା କଡ଼ାକଡ଼ିଭାବେ କରିବାକୁ ସବୁ ଏସ୍.ପିମାନଙ୍କୁ, ମୋ ଅଫିସରୁ ଫୋନ କରି କହିବା ପରେ, ବେତାର ମାଧ୍ୟମରେ ମଧ୍ୟ ନିର୍ଦ୍ଦେଶ ଦେଲି । ଡିସେମ୍ବର ୬ ତାରିଖ ସନ୍ଧ୍ୟାବେଳକୁ ବି.ବି.ସି, ସମ୍ବାଦରେ ବାବେରୀ ମସ୍‌ଜିଦ୍ ଭାଙ୍ଗିବାର ଦୃଶ୍ୟଠାରୁ ଆରମ୍ଭ କରି ଟିକିନିକି ବିବରଣୀ ଟେଲିଭିଜନରେ ଦେଖାଗଲା । ପରଦିନ ବିଭିନ୍ନ ସମ୍ବାଦ ପତ୍ରମାନଙ୍କରେ ମଧ୍ୟ ଏ ସଂବାଦ ପରିବେଶଣ କରାଗଲା । ହଜାର ହଜାର ପୁଲିସ୍‌ଙ୍କ ସାମ୍ନାରେ କରସେବକମାନେ ମସଜିଦ୍ ଭାଙ୍ଗିଦେଲେ, ପୁଲିସ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲାନି । କେନ୍ଦ୍ରରେ ନରସିଂହ ରାଓ ସରକାରଙ୍କୁ ଏଥିପାଇଁ କେତେକ ସମ୍ବାଦପତ୍ର ଦାୟୀକଲେ । କଟକ ସହରରେ ବାବେରୀ ମସଜିଦ୍ ଭାଙ୍ଗିବା ଖବର ପ୍ରଚାର ହେଲାପରେ ସହରର ମୁସଲିମ୍ ପକେଟମାନଙ୍କରେ ଅସ୍ୱାଭାବିକ୍ ନିରବତା ଦେଖାଦେଲା । ସେମାନେ ସର୍ବଭାରତୀୟ ସ୍ତରରେ କ'ଣ ଘଟୁଛି ଦେଖିବାକୁ ଅପେକ୍ଷା କରିଥାନ୍ତି । ମସ୍‌ଜିଦ୍ ଭାଙ୍ଗିବାକୁ କେନ୍ଦ୍ରକରି ଡିସେମ୍ବର ମାସ ୭ତାରିଖ ଦିନ ଦେଶର କେତେକ ସ୍ଥାନରେ ବନ୍ଦ ଡାକରା ଦିଆଯାଇଥିଲା ଏବଂ କେତେକ ସ୍ଥାନରେ ମଧ୍ୟ ସାଂପ୍ରଦାୟିକ ଦଙ୍ଗା ଆରମ୍ଭ ହୋଇଗଲା । କଟକ ସହର, କେନ୍ଦ୍ରାପଡ଼ା ପ୍ରଭୃତି ସାଂପ୍ରଦାୟିକ ଉତ୍ତେଜନାପୂର୍ଣ୍ଣ

ସ୍ଥାନମାନଙ୍କଠାରେ ଅଧିକ ସତର୍କତାର ସହିତ ପାଟ୍ରୋଲିଂ, ପିକେଟ ଦେବା ପାଇଁ ଆଦେଶ ଗଲା । ସାତ ତାରିଖ ଦିନ ସନ୍ଧ୍ୟା ବେଳକୁ ଶୁଣିବାକୁ ମିଳିଲା ଯେ ଆଠ ତାରିଖ ଦିନ ମୁସଲମାନ ସଂପ୍ରଦାୟ ବାବେରୀ ମସଜିଦ୍ ଭାଙ୍ଗିବା ପ୍ରତିବାଦରେ ସେମାନଙ୍କ ଦୋକାନ ବନ୍ଦ ରଖିବେ ଏବଂ କଟକ ସହର ବନ୍ଦ କରିବା ପାଇଁ ଚେଷ୍ଟା କରିବେ । ଯଦିଓ ଏ ବିଷୟରେ ସଠିକ୍ ଖବର ମିଳୁନଥିଲା, ତେବେ ସାତ ତାରିଖ ରାତି ସୁଦ୍ଧା ଜଣା ପଡ଼ିଥିଲା ଯେ, ମୁସ୍‌ଲିମ୍ କମ୍ୟୁନିଟିର ଲୋକମାନେ ତାଙ୍କ ଦୋକାନ ବନ୍ଦ କରିବେ । ତେବେ ଏହାର ନେତୃତ୍ୱ କିଏ ନେବ, କ'ଣ କରାଯିବ, ସେ ବିଷୟରେ ବିଶେଷ ଖବର କିଛି ନଥାଏ । ଏପରିକି ସ୍ପେସାଲ ବ୍ରାଞ୍ଚ ମଧ ଠିକ୍ ଭାବରେ କିଛି ଜଣାଇ ନଥାନ୍ତି । ତେବେ ଯାହା ଖବର ମିଳିଥିଲା, ତାରି ଉପରେ ବେସ୍ କରି, ଆଠତାରିଖ ଦିନ ସହରରେ ପୁଲିସ ପାଟ୍ରୋଲିଂ ଅଧିକ ସଂଖ୍ୟାରେ ଦିଆଗଲା ଏବଂ ଅଧିକା କିଛି ଫୋର୍ସ କଟକ ରିଜର୍ଭ ଲାଇନ୍‌ରେ ଆପତ୍ତିକାଳୀନ ପରିସ୍ଥିତିକୁ ସମ୍ମୁଖୀନ ହେବା ପାଇଁ ରଖାଯାଇଥିଲା । ଆଠ ତାରିଖ ଦିନ ସକାଳ ୯ଟାରେ ମୁଁ ଅଫିସରେ ପହଞ୍ଚିଲା ପରେ ବେତାର ମାଧ୍ୟମରେ ସବୁ ଜିଲ୍ଲା ଏବଂ କଟକ ସହରର ଖବର ବୁଝିଲି । ସେ ପର୍ଯ୍ୟନ୍ତ କୌଣସି ସ୍ଥାନରେ କିଛି ଗଣ୍ଡଗୋଳର ଆଶଙ୍କା ନଥିଲା । ମାତ୍ର ଷ୍ଟୁଆର୍ଟ ସ୍କୁଲରେ ଜଣେ ମୁସଲମାନ ଛାତ୍ର ଗୋଟେ ହିନ୍ଦୁ ଛାତ୍ରକୁ ମାଡ଼ ଦେଇଥିବାକୁ କେନ୍ଦ୍ର କରି ସେମାନଙ୍କ ମଧ୍ୟରେ ଟଣାଓଟରା ହୋଇ କେତେକ ଦୁର୍ବୃତ୍ତ ସକାଳୁ ସକାଳୁ ଷ୍ଟୁଆର୍ଟ ସ୍କୁଲ ପରିସରମଧ୍ୟକୁ ପଛପଟୁ ଟେକା ପଥର ପକାଉ ଥିବା ଖବର ପାଇ କାଣ୍ଟନ୍‌ମେଣ୍ଟ ଇନ୍‌ସପେକ୍ଟର ମିଃ ରାଏ, ଗୋଟିଏ ପ୍ଲାଟୁନ୍ ଓ.ଏସ.ପି. ଫୋର୍ସ ନେଇ ସ୍କୁଲଆଡ଼େ ଯାଇଥିବାର ଖବର ପାଇଲି । ଦଶଟା ବେଳକୁ ଅଫିସରୁ ବାହାରି ସହରର ଭିତରକୁ ବକ୍ସି ବଜାର ବାଟ ଦେଇ ଗଲା ବେଳେ ଦେଖିଲି ଜନତା ଦଳ ମନ୍ତ୍ରୀ ମୁସ୍ତାଫିଜ୍ ଅହମ୍ମଦ, କେତେକ ଲୋକଙ୍କ ସଙ୍ଗେ ଖୋଲା ହୋଇଥିବା ଦୋକାନ ବନ୍ଦ କରିବାକୁ ଅନୁରୋଧ କରୁଥାନ୍ତି । ମୁସଲମାନ କମ୍ୟୁନିଟିର ଦୋକାନ ସବୁ ବନ୍ଦଥାଏ । ଯେଉଁମାନେ ବନ୍ଦ କରୁ ନଥିଲେ, ସେଠାରେ ବନ୍ଦକାରୀ ଏବଂ ଦୋକାନଦାରଙ୍କ ମଧ୍ୟରେ, କଥା କଟା କଟି ମଧ ଚାଲିଥିଲା । ମାତ୍ର କୌଣସି ପ୍ରକାର ଗଣ୍ଡଗୋଳ ହୋଇନଥିଲା । ମୁଁ ବକ୍ସିବଜାର, ଚୌଧୁରୀ ବଜାର ଦେଇ ଚଣ୍ଡିଛକ ପାଖେ ପହଞ୍ଚିଲା ବେଳକୁ ମୋ ଗାଡ଼ି ଓ୍ୱାରଲେସରେ ଶୁଣିଲି ପଟାପୋଲ, ପେନ୍‌ସନ୍ ଲେନ୍‌ରେ ଖୁବ୍ ଜୋରରେ ଢେଲାପଥରମାଡ଼ ହେଉଛି । ମୁଁ ସିଧା ଚଣ୍ଡୀଛକରୁ ବକ୍‌ସି ବଜାରଦେଇ, ପଟାପୋଲ ଅଞ୍ଚଳକୁ ପଶିଲାବେଳକୁ ଦେଖିଲି ରାସ୍ତା ଉପରେ କାଣ୍ଟନ୍‌ମେଣ୍ଟ ଇନସ୍‌ପେକ୍ଟର ତାଙ୍କ ପୋଷାକ ଖୋଲି, ଜଣକ ପିଣ୍ଡା ଉପରେ ଶୋଇଲା ପରି ପଡ଼ିଛନ୍ତି । ପଟାପୋଲ, ଏବଂ ବକ୍ସିବଜାରେ ପରିବା ମାର୍କେଟ୍ ପାଖରୁ ଭୀଷଣ ଟେକା ପଥର ବୃଷ୍ଟି ହେଉଥାଏ । ସେଇ ଟେକା ପଥର ଭିତରେ ମୁଁ ମୋ ମାରୁତି ଜିପକୁ ଧରି ଇନ୍‌ସ୍‌ପେକ୍ଟରଙ୍କୁ ଉଠାଇଲି । ସେ ଠିକ୍ ଥିଲେ, ମାତ୍ର ତାଙ୍କ ଛାତିରେ ପଥର ମାଡ଼ ଯୋଗୁ ସେ ନିଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ଅନୁଭବ କରୁଥିବା ହେତୁ ଶୋଇ ଯାଇଥିଲେ । ତାଙ୍କ ପାଖରେ ଗୋଟେ ପ୍ଲାଟୁନ୍ ଓ.ଏସ୍.ପି. ଥିଲେ । ଟେକାପଥର ମାଡ଼ ଦେଖି, ମୁଁ ସେଇ ପ୍ଲାଟୁନ୍ ଧରି ବକ୍ସିବଜାର ପରିବା

ମାର୍କେଟ ଆଡ଼କୁ ଗଲା ବେଳେ, ହଠାତ୍ ମାର୍କେଟର କ୍ୟାବିନ୍ ଦୋକାନମାନଙ୍କରେ ନିଆଁ ଲାଗି ଜଳିବାରେ ଲାଗିଲା । ନିଆଁ ଲିଭାଇବା ପାଇଁ ମୁଁ ଦମ୍‌କଳକୁ ଖବର ଦେଲା ପରେ ଦେଖିଲି, ପଟାପୋଲ, ତେଲଙ୍ଗା ବସ୍ତିରେ ଚାଳଘରମାନଙ୍କରେ ନିଆଁ ଲାଗି ଗଲା ଏବଂ ନିଆଁ ହୁତ୍‌ହୁତ୍ ହୋଇ ଜଳିବାରେ ଲାଗିଲା । ଗାଡ଼ି ଭି.ଏଚ. ଏଫ୍‌ରେ ଅଧିକା ଫୋର୍ସ ପାଇଁ କହି,ଏସ୍.ପି.ଙ୍କୁ ଘଟଣାସ୍ଥଳକୁ ଶୀଘ୍ର ଆସିବାକୁ ନିର୍ଦ୍ଦେଶ ଦେଇ, ମୁଁ ଜିପରେ ଚାରି ଜଣ ଆର୍ମଡ଼ କନେଷ୍ଟବଳକୁ ବସାଇ ପଟାପୋଲ ଦେଇ ଓଡ଼ିଆ ବଜାର ଆଡ଼େ ଗଲାବେଳେ, ମୋ ଜିପ୍ ଉପରକୁ ଚାରିପଟୁ ଢେଲାମାଡ଼ ହେଲା । ମୁଁ ଦୁଇ ରାଉଣ୍ଡ ଗୁଳି ଚାଳନା କରିବାକୁ ନିର୍ଦ୍ଦେଶ ଦେଲି, ଏବଂ ଦୁଇ ରାଉଣ୍ଡ ଗୁଳି ଚାଳନା କରାଗଲା । ଗୁଳିରେ କେହି ମୃତାହତ ହୋଇ ନଥିଲେ ମଧ୍ୟ, ଢେଲାମାଡ଼ ବନ୍ଦହେବାରୁ ମୁଁ ଓଡ଼ିଆ ବଜାର ଦେଇ ପୁଣି ଚଣ୍ଡୀଛକରେ ଉଠିଲି । ପଟାପୋଲ, ଓଡ଼ିଆ ବଜାର, ବକ୍ସି ବଜାର ମାର୍କେଟ୍, ବକ୍ସିବଜାର ଛକ ଅଞ୍ଚଳରେ ଦଙ୍ଗାହେଙ୍ଗାମ ଲାଗିରହିଲା । ଉଭୟପଟରେ କ୍ୟାବିନ ଗୁଡ଼ିକରେ ନିଆଁ ଲାଗିଲା । ଦୋକାନ ଘର ଭାଙ୍ଗିଲା । ଏପରିକି ଦମକଳର ମୁଖ୍ୟ ଅଫିସକୁ ଲାଗି ଏବଂ ସାମ୍ନାରେ ଥିବା ମୁସଲିମ୍ କମ୍ୟୁନିଟିର ଦୋକାନ, କ୍ୟାବିନ୍‌ରେ ନିଆଁ ଲାଗିଲା । ପୁଲିସ୍ ଏବଂ ଦମକଳ ବାଲା ଠିଆ ହୋଇଥିଲେ ମଧ୍ୟ କାର୍ଯ୍ୟାନୁଷ୍ଠାନ କରିବାକୁ ଆଗେଇ ଆସିନଥିଲେ । ପ୍ରାୟ ୨ଟା ବେଳକୁ ସହରରେ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଲୁଚାଛପା ଭାବେ କ୍ୟାବିନ୍ ପୋଡ଼ା ଆରମ୍ଭ ହେଲା ।

ପଟାପୋଲ, ଓଡ଼ିଆ ବଜାରକୁ ଅଧିକ ଫୋର୍ସ ଆଣି ସେଠାକାର ଅବସ୍ଥାକୁ କଣ୍ଟ୍ରୋଲ କଲା ପରେ ମୁଁ ହେଡ଼କ୍ୱାଟରକୁ ସନ୍ଧ୍ୟାରେ ଫେରି ଅଧିକା ଫୋର୍ସ ଏବଂ ଅଫିସର ନେଇ, ସହରର ପ୍ରତ୍ୟେକ ଗଳିକନ୍ଦିରେ ପାଟ୍ରୋଲିଂ, ମସଜିଦ୍ ଏବଂ ବସ୍ତିପାଖେ ବନ୍ଧୁକ ଧାରୀଗାର୍ଡ଼ ଦେବା ପାଇଁ ବନ୍ଦୋବସ୍ତ କଲି । ରାତ୍ରି ୧୨ଟା ସୁଦ୍ଧା ବସ୍ତିବାଲା ଏବଂ ସାହି ମୁରବୀଙ୍କୁ ଡାକି ସାହି ସାହିରେ ଶାନ୍ତି ପ୍ରତିଷ୍ଠା ପାଇଁ ଶାନ୍ତିକମିଟି ଗଠନ ପାଇଁ କଲେକ୍ଟର, ଏସ.ପି. କାର୍ଯ୍ୟ ଆରମ୍ଭ କଲେ । ସେ ଦିନ ରାତି ପାହିଗଲା । ଖାଇବାକୁ ସୁବିଧା ମିଳିଲାନି ।

ସକାଳକୁ ସାଂପ୍ରଦାୟିକ ଦଙ୍ଗା ପଟାପୋଲ, ସୂତାହାଟ ଓଡ଼ିଆ ବଜାର ଓ ବକ୍ସି ବଜାରରୁ କଟକ ସହରର ବକ୍ସକବାଟୀ ରାସ୍ତା, କେଶରପୁର, ଦରଘାବଜାର ଦୋଳମୁଣ୍ଡାଇଛକ, ଏପରିକି ବିଶ୍ରାମ ହୋଟେଲ ପାଖ ମୋଟର ରିପାୟାରିଂ ଗ୍ୟାରେଜ ଆଡ଼କୁ ବ୍ୟାପିଲା । ଦୁର୍ବୃତ୍ତମାନେ ସୁବିଧା ଉଣ୍ଡି କ୍ୟାବିନ୍ ଏବଂ ମୋଟର ଗ୍ୟାରେଜ୍‌ରେ ନିଆଁ ଲଗାଇ ଦେଉଥାନ୍ତି । ପ୍ରଥମେ କଟକରେ ଅଧିକା ଫୋର୍ସ ନଥିବା ଯୋଗୁ ପୂର୍ଣ୍ଣ ପୁଲିସ୍ ବନ୍ଦୋବସ୍ତ ପାଇଁ ଆମକୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମାତ୍ର ୯ତାରିଖ ସନ୍ଧ୍ୟାସୁଧା ଅଧିକା ଫୋର୍ସ କିଛି ପ୍ରୋବେସନାରୀ ଆଇ.ପି.ଏସ. ଅଫିସର ଏବଂ କ୍ରାଇମ ବ୍ରାଞ୍ଚ ଆଦି ଅନ୍ୟାନ୍ୟ ସଂସ୍ଥାରୁ ଅଫିସରମାନେ ଆସିବା ଯୋଗୁ, କଟକ ସହରକୁ ବିଭିନ୍ନ ସେକ୍ଟର କରି ପ୍ରତ୍ୟେକ ସେକ୍ଟରରେ ୨୪ ଘଣ୍ଟା ପାଟ୍ରୋଲିଂ, ପିକୁଟିଂ ଦେବା ଦ୍ୱାରା ପୋଡ଼ାଜଳା କମିବାକୁ ଲାଗିଲା । କିନ୍ତୁ ଏଇ ପୋଡ଼ାଜଳା ୧୦ ତାରିଖ ଦିନ ରାଉସ୍‌ପାଟଣା ଗମ୍ଭାଡ଼ିହା ଅଞ୍ଚଳରେ ବିଶେଷ ଭାବେ

ଦେଖାଦେଲା । ସେଠାରେ ଥିବା ଦୁଇ କମ୍ୟୁନିଟି ମଧ୍ୟରେ ପଥର ମରାମରି ଠାରୁ ଆରମ୍ଭ କରି ନିଆଁ ଲଗାଇବା କାର୍ଯ୍ୟଚାଲିଥାଏ । ସେ ଦିନ ମୁଁ ସେଇବାଟେ ପାଟ୍ରୋଲିଂ କଲାବେଳେ, ମୋ ପିସ୍ତଲରୁ ଦୁଇ ରାଉଣ୍ଡ ଗୁଳିଚାଳନା କରିବାକୁ ବାଧ୍ୟ ହୋଇଥିଲି । ଗୁଳିରେ ଜଣେ ଆହତ ହୋଇଥିଲେ ମଧ୍ୟ ଆହତ ଲୋକ କଟକ ଛାଡ଼ି ବାହାରେ ଚିକିତ୍ସା ହେବା କଥା ପରେ ଶୁଣିଲି ।

ଗମ୍ଭାଡ଼ିହା ପାଖେ ଆଇ.ପି.ଏସ. ପ୍ରୋବେସନରମାନେ ଆଠ ଘଣ୍ଟିଆ ଡିଉଟିରେ ରହିଥିଲେ । ବାରତାରିଖ ସୁଦ୍ଧା ସହରରୁ ଗଣ୍ଡୋଗଳ କମିଗଲା, ପୋଡ଼ାଜଳା ବନ୍ଦ ହୋଇଗଲା । ଏଇ ସାଂପ୍ରଦାୟିକ ଦଙ୍ଗାରେ ଜଣେ ନିରୀହ ମୁସଲମାନ ଯୁବକ ହିନ୍ଦୁ ସଂପ୍ରଦାୟର ଦୁର୍ବୃତ୍ତଙ୍କ ହାତରେ ପ୍ରାଣ ହରାଇଥିବା ବେଳେ ଜଣେ ନିରୀହ ହିନ୍ଦୁ ଯୁବକ, ମୁସଲମାନ ଦୁର୍ବୃତ୍ତଙ୍କ ଗୁଳିରେ ପ୍ରାଣ ହରାଇଥିଲେ । ପୁଲିସ୍ ଗୁଳିରେ କେହି ମରିନଥିଲେ । ତାଛଡ଼ା ଏଇ ଦଙ୍ଗାରେ ଲୁଟ୍ ତରାଜ ହୋଇନଥିଲା ବେଳେ କୌଣସି ରହିବା ଘର ପୋଡ଼ିନଥିଲା କିମ୍ବା କୌଣସି ସ୍ତ୍ରୀ ଲୋକ ଅତ୍ୟାଚାରିତ ହୋଇନଥିଲେ । ବାବେରୀମସ୍‌ଜିଦ୍ ପର ଦଙ୍ଗାରେ ଭାରତର ବହୁ ସହରରେ ଯେଉଁ ପ୍ରକାର ଲୋମହର୍ଷଣକାରୀ ସାଂପ୍ରଦାୟିକ ଦଙ୍ଗା ଘଟିଥିଲା, କଟକ ସହରରେ ସେପରି କିଛି ଘଟିନଥିଲା । ଦଙ୍ଗାରେ ପ୍ରାୟ ୧୮୦ରୁ ଊର୍ଦ୍ଧ୍ୱ କ୍ୟାବିନ୍, ଦୋକାନ ଘର, ମୋଟର ଗ୍ୟାରେଜ୍ ପୋଡ଼ିଥିଲେ ମଧ୍ୟ କେତେକ ସ୍ଥାନରେ ଚୋରୀକୁ ଛାଡ଼ିଦେଲେ ସମସ୍ତଙ୍କ ଆଖି ଆଗରେ ଲୁଟ୍ ତରାଜ ହୋଇ ନ ଥିଲା ।

ସାଂପ୍ରଦାୟିକ ପରିସ୍ଥିତିର ଉନ୍ନତି ଘଟିଲା ପରେ ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ସହରର ଦଙ୍ଗାଗ୍ରସ୍ତ ଅଞ୍ଚଳ ବୁଲି ଦେଖିଥିଲେ ଏବଂ ଲୋକମାନଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ । କଟକ ସହରରେ ଏତେ ବଡ଼ ଦଙ୍ଗାକୁ ଉପଯୁକ୍ତ ଭାବେ ପୁଲିସ ସମ୍ମୁଖୀନ ହୋଇଥିବା, ପୁଲିସ ଗୁଳିରେ ଲୋକ ମରିନଥିବା ଏବଂ କୌଣସି ମହିଳା ଅତ୍ୟାଚାରିତା ହୋଇନଥିବା ଯୋଗୁ, ସେ ପୁଲିସ କାର୍ଯ୍ୟର ଉଚ୍ଚ ପ୍ରଂଶସା କରିଥିଲେ ଏବଂ ପରେ ଅଫିସରମାନଙ୍କ ଉଚ୍ଚମାନର କାର୍ଯ୍ୟ ପାଇଁ ପ୍ରଶଂସା ପତ୍ର ଦେଇଥିଲେ ।

୧୯୯୩ ମସିହାରେ ଜଗତସିଂହପୁରର ଏସ.ପି. ବଂଶୀଧର ରାଉତଙ୍କ ବିରୁଦ୍ଧରେ ଗୋଟେ ଅଭିଯୋଗ ଆସିଲା ଯେ, ସେ ପୁଲିସ ପ୍ଲାଟୁନ୍ ଧରି ଗାଁରେ ରାତିରେ ପ୍ରବେଶ କରି ଅନ୍ୟାୟ ଭାବରେ ଗ୍ରାମବାସୀଙ୍କ ଘରକରଣା ଜିନିଷ ପତ୍ର ଭାଙ୍ଗିବା ସଙ୍ଗେ ସଙ୍ଗେ କେତେକ ସ୍ତ୍ରୀଲୋକଙ୍କୁ ପୁଲିସବାଲା ରେପ କଲେ, କେତେ ଜଣଙ୍କୁ ମୋଲେଷ୍ଟେସନ କଲେ ଏବଂ କେତେକଙ୍କ ଘରୁ ଜିନିଷ ପତ୍ର ଚୋରାଇ ନେଲେ । ସେତେବେଳେ ଜଗତସିଂହପୁର ସି.ପି.ଆଇ. ଏମ୍.ପି. ଶ୍ରୀ ଲୋକନାଥ ଚୌଧୁରୀ ଏ ଘଟଣା ଲୋକସଭାରେ ଉଠାଇଲେ ଏବଂ ଏହାର ଏକ ତଦନ୍ତ ଦାବୀ କଲେ । ଲୋକସଭାରେ ଏକଥା ଉଠିଲା ବେଳେ, ମିସେସ ଜୟନ୍ତୀ ପଟ୍ଟନାୟକ, ତତ୍‌କାଳୀନ କେନ୍ଦ୍ର ମହିଳା ଆୟୋଗର ଅଧକ୍ଷ୍ୟା, ତାଙ୍କର କେତେଜଣ ସଦସ୍ୟଙ୍କୁ ଧରି ସେ ଗାଁ ବୁଲି, ଘଟଣା ସତ୍ୟ ବୋଲି କହିଲେ । ତା ପୂର୍ବରୁ ରାଜ୍ୟ ମହିଳା କମିଶନର ଅଧକ୍ଷା ରାନୁ

ମିଶ୍ର, ନିଜେ ସେ ଗାଁ କୁ ଯାଇ, ତଦନ୍ତ କରି, ତଦନ୍ତ ରିପୋର୍ଟରେ ଲେଖିଥିଲେ ଯେ ଅଭିଯୋଗ ଗୁଡ଼ିକରେ କୌଣସି ସତ୍ୟତା ନାହିଁ । ରାଜନୈତିକ ଦୃଷ୍ଟିକୋଣରୁ ଏବଂ ଗାଁବାଲା ପୁଲିସ୍ ଉପରେ କରିଥିବା ଆକ୍ରମଣରୁ ରକ୍ଷା ପାଇବା ପାଇଁ ଏପରି ମିଥ୍ୟା ଅଭିଯୋଗ ଆଣିଛନ୍ତି । ସେ ତାଙ୍କର ତଦନ୍ତ ରିପୋର୍ଟ ଦେଲା ପରେ, ରାଜ୍ୟ ବିଧାନ ସଭାରେ ଏକଥା ମଧ୍ୟ ଉଠିଲା । ବିରୋଧିଦଳର ସଦସ୍ୟମାନେ ସଭାଗୃହରେ ପାଟିତୁଣ୍ଡ କରିଥିଲେ । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ବିଧାନ ସଭାରେ କହିଲେ ଯେ ଡି.ଆଇ.ଜି. କେନ୍ଦ୍ରାଞ୍ଚଳ ତଦନ୍ତ କରି ଦୁଇଦିନ ମଧ୍ୟରେ ରିପୋର୍ଟ ଦେବେ, ଯାହାକି ବିଧାନସଭା ଗୃହରେ ଉପସ୍ଥାପିତ କରାଯିବ । ମୋତେ ମୁଖ୍ୟମନ୍ତ୍ରୀ ବିଧାନସଭାର ତାଙ୍କ ଅଫିସ୍‌ରେ ଏଇ ଆଦେଶ ଦେଲେ । ଘଟଣାଟି ଯାହାହେଉ,ଏହା ଯେ ଏକ ରାଜନୈତିକ ଟଣାଓଟରାରେ ପରିଣତ ହେଲାଣି ଏକଥା ମୁଁ ବୁଝିସାରିଥିଲି । ସେତେବେଳେ କେନ୍ଦ୍ରରେ କଂଗ୍ରେସ ମନ୍ତ୍ରିମଣ୍ଡଳ । ଜୟନ୍ତୀ ପଟ୍ଟନାୟକ, କେନ୍ଦ୍ର ମହିଳା ଆୟୋଗର ଅଧକ୍ଷା । ଓଡ଼ିଶାରେ ଜନତା ଦଳ, ରାନୁ ମିଶ୍ର, ରାଜ୍ୟ ମହିଳା ଆୟୋଗର ଅଧକ୍ଷା ଦୁହିଁଙ୍କ ତଦନ୍ତ ରିପୋର୍ଟ ଗୋଟିଏ ଘଟଣାକୁ କେନ୍ଦ୍ର କରି ଭିନ୍ନ । ମୁଁ ତଦନ୍ତ ଆଦେଶ ପାଇଲା ପରେ, ପରଦିନ କୁଜଙ୍ଗ ଥାନା ଅଞ୍ଚଳର ସେଇ ଗାଁକୁ ଯାଇ ଘଟଣାର ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କଲି । ସାଙ୍ଗରେ ମଧ୍ୟ କୌଣସି ସ୍ଥାନୀୟ କିମ୍ବା ଅଭିଯୁକ୍ତ ପୁଲିସ ଅଫିସରଙ୍କୁ ନେଇ ନଥିଲି । ମୋ ଯିବା ଖବର ଶୁଣି ସି.ପି.ଆଇର କେତେକ ଲୋକ ସେଠାରେ ପହଞ୍ଚି, ମହିଳାମାନଙ୍କୁ କିପରି କହିବାକୁ ହେବ, କ'ଣ କହିବାକୁ ହେବ, ଘରେ ଘରେ ବୁଲି କହୁଥାନ୍ତି । ତଦନ୍ତବେଳେ ସେମାନେ ଯାହା କହିଲେ ତାହା ହେଲା ତାଙ୍କ ଗାଁ ଏବଂ ତାଙ୍କ ପାଖ ଗାଁ ମଧ୍ୟରେ ସେତେବେଳେ ବହୁ ବର୍ଷଧରି ଜମିବିକାକୁ କେନ୍ଦ୍ର କରି ଗଣ୍ଡଗୋଳ ଲାଗି ରହିଥାଏ । ଏପରିକି ଏ ଗାଁ ବାଲା, ଆରଗାଁ ବାଲାଙ୍କ ଘରେ ପଶି, ଧାନ ଇତ୍ୟାଦି ବୋହି ଆଣିବା, ବାଡ଼େଇବା ଯୋଗୁ ସେମାନଙ୍କ ବିରୁଦ୍ଧରେ ବହୁ ମାମଲା ଥାନାରେ ରୁଜୁ ହୋଇ ସେତେବେଳକୁ କୋର୍ଟରେ ବିଚାରାଧିନ ଥାଏ । ସେମାନଙ୍କ ମଧ୍ୟରୁ କେତେଜଣ ମଧ୍ୟ ପଳାତକ ହୋଇ ରହିଥାନ୍ତି । ଏପରି ଅବସ୍ଥାରେ, ଆର ଗାଁ ବାଲା ପୁଲିସ ଷ୍ଟେସନରେ ଖବର ଦେଲେଯେ, ଏଇ ଗାଁର ଲୋକମାନେ ତାଙ୍କ ଘର ଉପରେ ଚଢ଼ାଉ କରିବା ପାଇଁ ତିଆର ହେଉଛନ୍ତି । ଥାନାବାବୁ ଏଖବର ପାଇ ଓ୍ୟାନ୍‌ଫୋର ଏପ.ପି.ଆର. କନେଷ୍ଟବଲକୁ ଧରି ସେଇ ଗାଁକୁ ପାଟ୍ରୋଲିଂରେ ଯାଇଥିଲେ । ଥାନାବାବୁଙ୍କ ସଙ୍ଗରେ ଏ.ଏସ. ଆଇ ମଧ୍ୟ ଥିଲେ । ଗାଁରେ ତଦନ୍ତ କରି ଫେରିଲା ବାଟରେ ସେମାନେ ଏଇ ଗାଁ ର ଜଣେ ଲୋକ ଯାହା ନାମରେ ଜାମିନି ବିହୀନ ପରଓ୍ୱାନା ଥିଲା ତାକୁ ଗିରଫ କରି ନଈ ପାର ହେବା ପାଇଁ ଘାଟକୁ ଆସିଲା ବାଟରେ ଗାଁର ସ୍ତ୍ରୀ, ପୁରୁଷ ପ୍ରାୟ ୧୦୦ଜଣ ଏକାଠି ହୋଇ ପୁଲିସଙ୍କୁ ମାଡ଼ ଦେଇ ସେ ଓ୍ୟାରେଣ୍ଟିକୁ ଛଡ଼ାଇ ନେଲେ ଏବଂ ପୁଲିସ ଏ.ଏସ. ଆଇ.ଙ୍କୁ ମାଡ଼ ମାରିବା ସଙ୍ଗେ ସଙ୍ଗେ ଏ.ପି.ଆର କନେଷ୍ଟବଲଙ୍କ ଠାରୁ ବନ୍ଧୁକ ଛଡ଼େଇ ନେଲେ । ପୁଲିସ ଆତ୍ମରକ୍ଷା ପାଇଁ ଫାଙ୍କା ଗୁଳିଚଳେଇଲେ ଏବଂ ସେ ଦିନ ରାତିର ପାହାନ୍ତା ପହରରେ, ପୁଲିସକୁ ମାଡ଼ ମାରିବା, ବନ୍ଧୁକ ଛଡ଼େଇ ନେବା ଅପରାଧରେ ଅପରାଧିମାନଙ୍କୁ ଧରିବା ପାଇଁ ଗାଁ କୁ ଅଧିକା ଫୋର୍ସ ଆଣି

ଘେରାଉ କରି ଘର ଘର ତଦନ୍ତ କରି କେତେକଙ୍କୁ ଗିରଫ କରିଥିଲେ ମଧ୍ୟ ଅନ୍ୟମାନେ ପଳାଇଯାଇଥିଲେ । ଏଇ ଘଟଣାଟାକୁ ନେଇ ସି.ପି.ଆଇର ସପୋର୍ଟରମାନେ ଏମ୍.ପି.ଙ୍କୁ ଅଲଗା କଥା କହିଥିଲେ । ମୁଁ ଘଟଣା ସ୍ଥଳରେ ତଦନ୍ତ କଲାବେଳେ, ପୁଲିସ ଘରେ ପଶିବା କଥା ଜାଣିଲି ମାତ୍ର କେହି ରେପ୍ ବା ମୋଲେଷ୍ଟେସନ କଥା ସରଜମିନ୍ ତଦନ୍ତ ବେଳେ କହିନଥିଲେ । ଜଣେ ଭଦ୍ର ମହିଳା ତାଙ୍କୁ ମୋଲେଷ୍ଟେସନ କରିଥିବା କଥା କହିଥିବା ଯୋଗୁ ଗୋଟିଏ ୩୫୪ ଦଫାରେ କେସ୍ କରି ତଦନ୍ତ କରିବାକୁ ଆଦେଶ ଦେଲି । ମୋ ସରଜମିନ ତଦନ୍ତ ରିପୋର୍ଟ ବିଧାନ ସଭାରେ ପେସ୍ କରାଗଲା । ମାତ୍ର ବିରୋଧି ଦଳ ଏଥିରେ ସନ୍ତୋଷ ନହେବାରୁ ସିକିମ୍ ହାଇକୋର୍ଟର ଅବସର ପ୍ରାପ୍ତ ମୁଖ୍ୟ ବିଚାରପତି ବି.ଏନ୍ ମିଶ୍ରଙ୍କୁ ଏହାର ତଦନ୍ତ ପାଇଁ ଏକ ବିଚାର ବିଭାଗୀୟ ତଦନ୍ତ କମିଶନ ବସିଲା । ଡକ୍ଟର ମିଶ୍ର ତଦନ୍ତ କମିଶନ, ସେ ଗାଁକୁ ଦେଖିବା ପାଇଁ ଯାଇଥିଲେ ଏବଂ କୁଜଙ୍ଗ ଡାକବଙ୍ଗଳାଠାରେ ସାକ୍ଷ୍ୟ, ପ୍ରମାଣ ଗ୍ରହଣ କରି ତାଙ୍କ ତଦନ୍ତ ରିପୋର୍ଟ ଠିକ୍ ଦୁଇମାସ ମଧ୍ୟରେ ସରକାରଙ୍କୁ ଦେଇଥିଲେ । ଓଡ଼ିଶା ଇତିହାସରେ ଏହି ବିଚାର ବିଭାଗୀୟ ତଦନ୍ତ କମିଶନ ପ୍ରଥମ ଥର ପାଇଁ ଠିକ୍ ସମୟ ମଧ୍ୟରେ ତାଙ୍କ ରିପୋର୍ଟ ଦେଇ ପାରିଥିଲେ । ସେ ମୋ ରିପୋର୍ଟକୁ ମଧ୍ୟ ଭଲଭାବେ ଦେଖିଥିଲେ ଏବଂ ପୁଲିସ୍ କୌଣସି ବେନିୟମ କାର୍ଯ୍ୟ କରିନାହିଁ ବୋଲି କହିଥିଲେ ।

ଏସବୁ ଘଟଣା ଚାଲିଥିଲାବେଳେ, ପୁଲିସ ସଦରମହକୁମାରେ ପରସ୍ପର ବିରୋଧି ପ୍ରଚାର ମଧ୍ୟ ଖୁବ୍ ଜୋରରେ ଚାଲିଥାଏ । ଦଳେ ସିନିୟର ଅଫିସର, ଶରତ ଚନ୍ଦ୍ରଙ୍କୁ କାଢ଼ି, ମିଃ ମହାପାତ୍ରଙ୍କୁ ଡି.ଜି କରାଯାଉ ବୋଲି ବିଭିନ୍ନ ସମ୍ବାଦ ପତ୍ରରେ ନାନା କଥା ଲେଖୁଥିଲା ବେଳେ, କେତେକ ରାଜନୈତିକ ନେତାଙ୍କୁ ମଧ୍ୟ ଧରାଧରି କରୁଥିଲେ । ମୁଖ୍ୟତଃ 'ସମାଜ' ଖବର କାଗଜରେ ପ୍ରାୟ ପ୍ରତ୍ୟେକ ଦିନ କିଛି କିଛି ଖବର ଡି.ଜିଙ୍କ ବିରୁଦ୍ଧରେ ପ୍ରକାଶ ପାଇଥାଏ । ଏସବୁ ଖବର ପୁଲିସବାଲାମାନେ ସମ୍ବାଦପତ୍ରକୁ ଦେଉଥିବା ସନ୍ଦେହରେ କେତେକ ଅଫିସରଙ୍କୁ ମଧ୍ୟ ନଜର ଉପରେ ରଖାଗଲା । କଟକ ଏସ.ପି. ବିଧୁଭୂଷଣଙ୍କ ବିରୁଦ୍ଧରେ ବହୁ ପିଟିସନ ବିଭିନ୍ନ ଅଫିସକୁ ଦିଆଗଲା । ସେ ଢେଙ୍କାନାଳ ଲୋକ ହୋଇଥିବାଯୋଗୁଁ ଶରତ ମିଶ୍ର ଡି.ଜି. ସେଇ ଜିଲ୍ଲାର ଲୋକ ଭାବେ ତାଙ୍କର କୁକର୍ମକୁ ଘଣ୍ଟ ଘୋଡ଼ାଉଛନ୍ତି ବୋଲି ପିଟିସନ୍‌ରେ ଅଭିଯୋଗ ଅଣାଗଲା । ସିନିୟର ଅଫିସରମାନଙ୍କ ମଧ୍ୟରେ ସନ୍ଦେହର ବାତାବରଣ ସୃଷ୍ଟି ହୋଇଥାଏ । କିଏ କୁଆଡ଼େ କାହ ପାଖକୁ ଗଲା, ସନ୍ଧ୍ୟା ବେଳେ କିଏ କାହାପାଖରେ ବସିଲେ, କାନକୁହାମାନେ ଚୁପୁରୁ ଟାପର ହେବା ଆରମ୍ଭ କରିଦେଲେ ଏବଂ ଓରଲଓଣ୍ଡି ଜଣକୁ ସୁହାଇଲା ଭଳିଆ କାନ ପାଖରେ କଥାଟି ପକାଇବାକୁ ପଛେଇଲେ ନାହିଁ । ଐତିହାସିକ ମୋଗଲ ଦରବାରରେ ଗୃହ କନ୍ଦଳ ଏବଂ ଷଡ଼ଯନ୍ତ୍ର ଚାଲିଲା ପରି, ପୁଲିସ୍ ସଦର ମହକୁମାରେ ସେଇପରି ପରିସ୍ଥିତି ସୃଷ୍ଟି ହୋଇଥିଲା ।

୧୯୯୩ ମସିହା ସରିଆସିଲା ବେଳକୁ ବିଜୁପଟ୍ଟନାୟକ ସରକାର ଜିଲ୍ଲା ପୁର୍ନଗଠନ କରିବାକୁ ପ୍ରସ୍ତାବ ନେଲେ ଏବଂ ସାରା ରାଜ୍ୟରେ ଏକ ରାଜନୈତିକ ହଟଟମଟ ଆରମ୍ଭହୋଇ ଗଲା । କେଉଁ ଜିଲ୍ଲା କେତେଭାଗ ହେବ ଓ କେଉଁ ସବ୍‌ଡ଼ିଭିଜନ ଜିଲ୍ଲା ହେବ ଏହାକୁ ନେଇ

ରାଜନୈତିକ ଟଣାଓଟରା ଚାଲିଲା । ଏଇବର୍ଷ ଆରମ୍ଭରେ କୋରାପୁଟ ଜିଲ୍ଲାକୁ ଭାଗି ଚାରୋଟି ଜିଲ୍ଲାରେ ବିଭକ୍ତ କରାଗଲା । ବର୍ଷର ଶେଷ ଆଡ଼କୁ କଟକ ଜିଲ୍ଲାକୁ ଭାଙ୍ଗି, କଟକ, ଯାଜପୁର, କେନ୍ଦ୍ରାପଡ଼ା, ଜଗତ୍‌ସିଂହପୁର ଜିଲ୍ଲାରେ ପରିଣତ କରାଗଲା । ପୁରୁଣା କଟକ (ରୁରାଲ) ଜିଲ୍ଲାର ଆଠଗଡ଼ ସବ୍‌ଡ଼ିଭିଜନ କଟକ ସଦର (ପୁଲିସ) ଜିଲ୍ଲାରେ ରହିଲା । ଜିଲ୍ଲା ଭାଙ୍ଗିବାପରେ ମୋତେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଭାବରେ ପ୍ରତ୍ୟେକ ଜିଲ୍ଲାର ଭାଗ ଅନୁସାରେ ଫୋର୍ସ, ଅଫିସର, ଜିନିଷପତ୍ର ଗୁଳିଗୁଳା ଇତ୍ୟାଦି ବାଣ୍ଟିବା ଏବଂ ସେଇ ଜିଲ୍ଲାକୁ ପଠାଇବା ଦାୟିତ୍ୱ ଦିଆଗଲା । ଏସ୍.ପିମାନେ ଜିଲ୍ଲାରେ ପୋଷ୍ଟିଂ ହେଲାପରେ, ସେମାନଙ୍କ ରହିବା ପାଇଁ କିମ୍ବା ଅଫିସ କରିବା ପାଇଁ ସ୍ଥାନ ନଥାଏ । କଲେକ୍ଟରମାନେ ପି.ଡବ୍ଲ୍ୟୁ.ଆଇ.ବି.ମାନଙ୍କରେ ଅଫିସ କମ୍ ରେସିଡ଼େନ୍ସେ କରି କାର୍ଯ୍ୟ ଆରମ୍ଭ କଲାବେଳେ, ଏସ.ପି. ମାନଙ୍କ ପାଇଁ ଇରିଗେସନ ଆଇ.ବି. କିମ୍ବା ପୁରୁଣା ରେଭେନ୍ୟୁ ରେସେସେଡ଼ ମିଳିଲା । ନୂଆ ହୋଇ ଗଢ଼ା ହୋଇଥିବା ଯାଜପୁର ଜିଲ୍ଲାର ଏସ.ପି. ପାଞ୍ଚନମ୍ବର ରାଜପଥର ପାଣିକୋଇଲି ପାଖରେଥିବା ରାଜପଥର ଆଇ.ବି. ରେ ଅଫିସ କଲେ ଏବଂ ସେଇଠି ରହିଲେ । ବଣ୍ଟା ହୋଇଥିବା ଫୋର୍ସ, ଗୁଳିଗୁଳା, ନେଇ ଗୋଟେ ଢାବା ମାଲିକଙ୍କ ଚାରି ବଖୁରୀଆ ଭଡ଼ା ଘରେ ରିଜର୍ଭ ଅଫିସ ଖୋଲିଲେ ଏବଂ ଟ୍ରଙ୍କ୍ ଉପରେ ଫୋର୍ସ ରାତିରେ ଶୋଇଲେ । ପାଣି ନାହିଁକି ପାଇଖାନା ନାହିଁ । ରହିବାକୁ ଯାଗା ନାହିଁ କି ଖାଇବାକୁ ରୋଷଇ ଘର ନାହିଁ । ସେମିତି ଜଗତସିଂହପୁରରେ ଏସ.ପି. ଇରିଗେସନ ଆଇ.ବି.ରେ ରହିଲେ । ଭଡ଼ାଘର ନେଇ ଅଫିସ ଆରମ୍ଭ ହେଲା । ତା ପାଖକୁ ଆଉଗୋଟେ ଭଡ଼ା ଘରେ ଗୁଳିଗୁଳା ବନ୍ଧୁକ ରହିଲା । ଫୋର୍ସର ଲୁଗା ପଟା ଷ୍ଟୋର ସେଇ ଗୋଟେ ଭଡ଼ାଘରେ ରହିଲା । କ୍ଲଦିଂ ରହିବାକୁ ଯଥେଷ୍ଟ ଯାଗା ନଥାଏ । ଭଲ ଭଡ଼ାଘର ବି ମିଳୁନଥାଏ । କେନ୍ଦ୍ରପଡ଼ାରେ ପୁରୁଣା ଦରଭଙ୍ଗା କେନ୍ଦ୍ରାପଡ଼ା ସର୍କଲ ଇନସ୍‌ପେକ୍ଟରଙ୍କ ଘରେ ପୁଲିସ ଅଫିସ ଆରମ୍ଭ ହେଲା । ପାଖରେ ଥିବା ବହୁକାଳର ଭଙ୍ଗା ପୁରୁଣା ଘରକୁ ମରାମତି କରି ସେଇଠି ରିଜର୍ଭ ଅଫିସ୍ ହେଲାବେଳେ ଏସ.ପି. ସହର ଭିତରେ ଭଡ଼ା ଘରେ ରହିଲେ ।

ପରେ ପରେ ପୁରୀ ଜିଲ୍ଲା ମଧ ଭଙ୍ଗାଯାଇ ଖୋର୍ଦ୍ଧା ଏବଂ ନୟାଗଡ଼ ଜିଲ୍ଲା ହେଲା । ଖୋର୍ଦ୍ଧା ସବ୍‌ଡ଼ିଭିଜନ ଭୁବନେଶ୍ୱର ପୁଲିସ ଜିଲ୍ଲା ସଙ୍ଗେ ମିଶିଗଲା ଏବଂ ନୟାଗଡ଼ ସବ୍‌ଡ଼ିଭିଜନ ନୂତନ ଜିଲ୍ଲା ଭାବେ କାର୍ଯ୍ୟ କଲା । ଜିଲ୍ଲା ପୁର୍ନଗଠନରେ ପୁଲିସ ବହୁ ଅସୁବିଧାର ସମ୍ମୁଖୀନ ହେଲା । ଅଫିସର ଏବଂ ଫୋର୍ସ ରହିବାକୁ ଯାଗା ନମିଳିଲା ବେଳେ, ପୁଲିସ୍‌ର ଦୈନନ୍ଦିନ ପି.ଟି. ପ୍ୟାରେଡ଼ ପୁରାମାତ୍ରାରେ ବନ୍ଦ ହୋଇଗଲା । ପୁଲିସ୍‌ର ପି.ଟି ପ୍ୟାରେଡ଼ ତାଙ୍କୁ ଶୃଙ୍ଖଳିତ କରିବା ସଙ୍ଗେ ସଙ୍ଗେ ପୁଲିସ ପରି କଷ୍ଟ କାମ କରିବା ପାଇଁ ନିଜକୁ ଫିଟ୍ ରଖିଥାଏ । ଜିଲ୍ଲା ଭାଙ୍ଗିଗଲା ପରେ, ନୂଆ ହୋଇ ଗଢ଼ା ହୋଇଥିବା ଜିଲ୍ଲାମାନଙ୍କରେ ଏସବୁ ଅଭାବ ପରିଲକ୍ଷିତ ହେଲା । ଏସ୍.ପି.ମାନେ କେତେକ ସ୍ଥଳରେ ନୂଆ ଜିଲ୍ଲାମାନଙ୍କୁ ଯିବାକୁ ଅନିଚ୍ଛା ପ୍ରକାଶ କଲେ କିନ୍ତୁ ବାଧ ହୋଇ ଅସୁବିଧା ମଧରେ କାମ କଲେ । ତେଣୁ ପୁଲିସ୍‌ର ଶୃଙ୍ଖଳା ଏବଂ କାର୍ଯ୍ୟ ଶୈଳୀରେ ବାଧା ସୃଷ୍ଟିହେଲା ।

ଭାରତର ଅନ୍ୟ ପ୍ରଦେଶରେ ଜିଲ୍ଲା ପୁର୍ନଗଠନ ହୋଇଥିଲା ମାତ୍ର ପୁର୍ନଗଠନ ପୂର୍ବରୁ ଜିଲ୍ଲା ପ୍ରଶାସନ ପାଇଁ ଯାହା ନିତାନ୍ତ ଆବଶ୍ୟକ, ତାହା ଆଗରୁ ପ୍ରସ୍ତୁତ କରାଯାଇଥିଲା । ଉଦାହରଣ ସ୍ୱରୂପ କର୍ଣ୍ଣାଟକରେ ନୂତନ ଜିଲ୍ଲାପାଇଁ ସରକାରୀ ଆଦେଶନାମା ହେଲା ବେଳକୁ, ଯେଉଁ ପର୍ଯ୍ୟାୟରେ ନୂତନ ଜିଲ୍ଲା ହେଲା, ସେଠାରେ ଏସ.ପି., କଲେକ୍ଟରଙ୍କ ବାସଗୃହ ସହିତ କାର୍ଯ୍ୟାଳୟ ମଧ ଗଠନ କରାଯାଇଥିଲା । ତେଣୁ ଜିଲ୍ଲା କାର୍ଯ୍ୟ କରିବାରେ ଅସୁବିଧା ସୃଷ୍ଟି ହୋଇନଥିଲା । କେନ୍ଦ୍ରାଞ୍ଚଳର ଦୁଇଟି ମୁଖ୍ୟ ରାଜସ୍ୱଜିଲ୍ଲା ବର୍ତ୍ତମାନ ସାତୋଟି ଜିଲ୍ଲାରେ ପରିଣତ ହେଲା ଏବଂ ଏହାପରେ  ମଧ ସେ ଶୃଙ୍ଖଳା ଏପର୍ଯ୍ୟନ୍ତ ଫେରିପାରିଲା ନାହିଁ, କାରଣ ନୂତନ ଭାବେ ଗଠନ ହୋଇଥିବା ଜିଲ୍ଲାମାନଙ୍କରେ ଏପର୍ଯ୍ୟନ୍ତ ରିଜର୍ଭ ଲାଇନ୍, ପ୍ୟାରେଡ୍ ପଡ଼ିଆ, ବାସଗୃହ ଇତ୍ୟାଦି ହୋଇପାରି ନାହିଁ ।  କେତେକ ଜିଲ୍ଲାରେ ଏସ.ପି.ମାନଙ୍କ ଘର ତିଆରି ହେଲାବେଳେ ଅଫିସ ପ୍ରଭୃତି ଭଡ଼ା ଘରେ ଚାଲୁଛି ।

ନୂତନ ଜିଲ୍ଲା ହେବାପରେ, ପୁଲିସ ପ୍ରଶାସନରେ ଆଉ ଏକ ଅସୁବିଧା ସୃଷ୍ଟି ହେଲା । ପୁଲିସ୍ ସେବାରେ ମାତ୍ର ଚାରି ବର୍ଷ ଚାକିରୀ କରିନଥିବା ଯୁବକ ଆଇ.ପି.ଏସ. ଅଫିସରମାନେ ଜିଲ୍ଲା ଏସ.ପି. ଭାବେ ନିଯୁକ୍ତି ପାଇଲେ । ସେମାନଙ୍କ ମଧ୍ୟରୁ କେତେକ ଚାରି ମାସ ପାଇଁ ମଧ ଅତିରିକ୍ତ ଏସ.ପି. କାମ କରିନଥାନ୍ତି । ଜିଲ୍ଲାର କାର୍ଯ୍ୟ ଯେଉଁପରି ଭାବେ ଚାଲିବା କଥା, ଅଭିଜ୍ଞତା ଅଭାବ ଯୋଗୁ ଜିଲ୍ଲା ପୁଲିସ୍ ପ୍ରଶାସନ ଠିକ୍ ଭାବେ ଚାଲି ପାରିଲା ନାହିଁ । ଏଥି ଲାଗି ଫୋର୍ସମାନଙ୍କ ମଧ୍ୟରେ ମଧ ଅଶାନ୍ତି ସୃଷ୍ଟି ହେବାର ଦେଖା ଦେଲା । ଫୋର୍ସର ନେତୃତ୍ୱ ନେଲାପରି, ଜିଲ୍ଲା ଏସ.ପି.ମାନଙ୍କ ପାଖେ ଲିଡ଼ରସିପ୍ କ୍ୱାଲିଟିର ଅଭାବ ପରିଲକ୍ଷିତ ହେବା ଯୋଗୁ ବହୁସ୍ଥଳରେ,  ଜୁନିୟର ପୁଲିସ ଅଫିସରମାନେ ରାଜନୈତିକ ନେତାମାନଙ୍କ ପାଖେ ଆଶ୍ରୟ ନେଲେ । ନେତାମାନେ,ଏହାର ସୁଯୋଗ ନେବା ଯୋଗୁ ପୁଲିସ-ରାଜନୈତିକ ନେତାମାନଙ୍କ ମଧ୍ୟରେ ଏକ ନୂତନ ନେକ୍ସସ୍ ସୃଷ୍ଟି ହେଲା ଯାହାକି ଜିଲ୍ଲା ପୁଲିସ ପ୍ରଶାସନର ମେରୁଦଣ୍ଡକୁ ଦୁର୍ବଳ କରି ଦେଲା ।

## ପୁରୀରେ ନାଗାର୍ଜ୍ଜୁନ ବେଶ :

୧୯୯୩ ମସିହା ଦଶହରା କଟକରେ ଭଲରେ ଭଲରେ ସରିଗଲା । ସେତେବେଳକୁ କଟକର ଆର.ଡି.ସି. ଭାବେ ଦେବୀ ପ୍ରସାଦ ବାଗ୍‌ଚୀ ଜଏନ୍ କରିଥାନ୍ତି । ଭସାଣୀଦିନ ସେ ମଧ ପୂର୍ବବର୍ଷଭଳି ରାତିତମାମ୍ ଗୌରୀଶଙ୍କର ପାର୍କ ପାଖେ ରହି, ମେଢ଼ ସବୁ ପାର୍କପାର ହେବା ପର୍ଯ୍ୟନ୍ତ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଲକ୍ଷ୍ୟ କରିଥିଲେ । କଦମ୍‌ରସଲୁ ସାମ୍ନାରେ ମେଢ଼ଗଲା ବେଳେ ପୁଲିସକୁ ଅତ୍ୟନ୍ତ ସତର୍କତା ଅବଲମ୍ବନ କରିବାକୁ ପଡ଼ିଥାଏ । କାରଣ ଏଇସ୍ଥାନଟି ମୁସଲିମ୍ କମ୍ୟୁନିଟି ପାଇଁ ଅତ୍ୟନ୍ତ ସମ୍ବେଦନଶୀଳ ଏବଂ କୌଣସି ଗୋଟିଏ ଛୋଟିଆ ଘଟଣାକୁ କେନ୍ଦ୍ରକରି ସାଂପ୍ରଦାୟିକ ଉତ୍ତେଜନା ପ୍ରକାଶ ପାଇପାରେ । ଦଶହରା ଉତ୍ସବ ଶେଷ ହେଲାପରେ, ମୋର ପାରିବାରିକ ସମସ୍ୟା ମଧ୍ୟରେ ରୀନା ବାହାଘର ଠିକ୍ ହେଲା । ଡିସେମ୍ବର ୧୦ ତାରିଖକୁ ତାର ବିବାହ  ଠିକ୍ କରିଥିଲୁ । ସେ ବର୍ଷ ପୁରୀରେ ଜଗନ୍ନାଥଙ୍କର ନାଗାର୍ଜ୍ଜୁନ

ବେଶ ପଡ଼ିଥାଏ । ଜଗନ୍ନାଥଙ୍କର ଏହି ବେଶ ବହୁବର୍ଷ ପରେ ପଡ଼େ । ସେ ବର୍ଷ ୮୦ ବର୍ଷ ପରେ ପଡୁଥିଲା ବୋଲି ପୁରୁଣା ଲୋକମାନେ କହୁଥିଲେ । ପୁରୀଜିଲ୍ଲା ପ୍ରଶାସନ, ମନ୍ଦିର ପ୍ରଶାସନ ଏଥିଲାଗି ସମସ୍ତ ପ୍ରସ୍ତୁତି କାର୍ଯ୍ୟ କରିଥାନ୍ତି । ସେତେବେଳେ ପୁରୀର ଏସ.ପି. ବିନୟ ବେହେରା ଥା'ନ୍ତି ଏବଂ ନାଗାର୍ଜ୍ଜୁନ ବେଶ ପାଇଁ ମନ୍ଦିରରେ ପୁଲିସ ବନ୍ଦୋବସ୍ତର ବ୍ୟବସ୍ଥା କରୁଥାନ୍ତି । ନାଗାର୍ଜ୍ଜୁନ ବେଶପୂର୍ବରୁ, ଚିଲିକାରେ ଚିଙ୍ଗୁଡ଼ି ଘେରୀବନ୍ଧ ଭାଙ୍ଗିବା ପାଇଁ ସରକାରଙ୍କ ନିର୍ଦ୍ଦେଶରେ ୧୫ ପ୍ଲାଟୁନ୍ ଫୋର୍ସ ପୁରୀ ଏସ.ପି.ଙ୍କୁ ଦିଆଯାଇଥାଏ । ଚୁଙ୍ଗୁଡ଼ି ଘେରି ଭଙ୍ଗାକାର୍ଯ୍ୟ ଚିଲିକାରେ ସାତପଡ଼ା ପାଖାପାଖି ଅଞ୍ଚଳରେ ଚାଲିଥାଏ । କଲେକ୍ଟର ଏସ.ପି. ଘେରିଭାଙ୍ଗିବା ବେଳେ ଚିଲିକା ହ୍ରଦରେ ଆଇନ୍ ଶୃଙ୍ଖଳା ରକ୍ଷା କରିବା ପାଇଁ, କେତେଦିନ ପର୍ଯ୍ୟନ୍ତ ସେ କାମରେ ବ୍ୟସ୍ତ ଥିଲେ । ନାଗାର୍ଜ୍ଜୁନ ବେଶ ପାଇଁ, ଏସ.ପି. ଯେତିକି ଫୋର୍ସ ମାଗିଲେ, ସେତିକି ଫୋର୍ସ ତାଙ୍କୁ ଦିଆଗଲା ଏବଂ କୁହାଯାଇଥିଲା ଯେ, ଚିଲିକା ଚିଙ୍ଗୁଡ଼ି ଘେରୀ ବନ୍ଧ ଭାଙ୍ଗିବାକୁ ଯାହା ଫୋର୍ସ ଦିଆଯାଇଛି ସେ ସମସ୍ତ ଫୋର୍ସକୁ ସେ ନାଗାର୍ଜ୍ଜୁନ ବେଶ ପାଇଁ ବ୍ୟବହାର କରିବେ ।

ନାଗାର୍ଜ୍ଜୁନ ବେଶ ପାଇଁ, ପୁରୀ ଏସ.ପି. ପୁଲିସ ବନ୍ଦୋବସ୍ତ କରିବା ଦାୟିତ୍ୱ ନେଇଥିବା ଯୋଗୁ, ମୋତେ ବେଶ ସମୟରେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଦେଖିବା ପାଇଁ କିମ୍ବା ଏହାର ଦାୟିତ୍ୱରେ ରହିବା ପାଇଁ ଡି.ଜି. କିମ୍ବା ସରକାରଙ୍କ ଠାରୁ କିଛି ନିର୍ଦ୍ଦେଶ ନଥିଲା । ଏପରିକି ଏସ.ପି. ମଧ ଏଥିପାଇଁ ମୋର ସାହାଯ୍ୟ ଲୋଡ଼ିନଥିଲେ । ନାଗାର୍ଜ୍ଜୁନ ବେଶ, ନଭେମ୍ବରମାସ ଛବିଶ ତାରିଖରେ ପଡ଼ିଥାଏ । ସେଇଦିନଟି ଶୁଭଦିନ ହୋଇଥିବା ଯୋଗୁ, ମୋ ଝିଅର ବାହାଘର ନିମନ୍ତ୍ରଣ ପତ୍ର ନେଇ ମନ୍ଦିରରେ ପହଞ୍ଚିଲି, ଜଗନ୍ନାଥଙ୍କୁ ନିମନ୍ତ୍ରଣ କରିବା ପାଇଁ । ପୁରୀ ଜିଲ୍ଲାରେ ବିବାହ-ବ୍ରତ ଘରେ ଆଗ ଜଗନ୍ନାଥଙ୍କୁ ନିମନ୍ତ୍ରଣ କଲାପରେ, ଅନ୍ୟମାନଙ୍କୁ ନିମନ୍ତ୍ରଣ କରାଯିବାର ପରମ୍ପରା ଆଜିପର୍ଯ୍ୟନ୍ତ ଚଳି ଆସୁଛି । ସେ ଦିନ ମୁଁ,ମୋ ସ୍ତ୍ରୀ, ମୋ ଶାଶୁ ନିମନ୍ତ୍ରଣ ପତ୍ର ନେଇ ସିଂହଦ୍ୱାର ମୁହଁରେ ପହଞ୍ଚି ଦେଖିଲୁ, ଭିଡ଼ରେ ଯିବା ବହୁ କଷ୍ଟ । ସିଂହଦ୍ୱାର ପାଖରେ ଯେଉଁ ଅଫିସର ରହିବା କଥା ସେ ଅଫିସର ସେଠାରେ ନଥିଲେ । ଲୋକ ଗହଳି ଯୋଗୁ ସିଂହଦ୍ୱାର ଠାରୁ ବାଇଶିପାହାଚ ଯିବା କଷ୍ଟକର ହେଲା । କଷ୍ଟେମଷ୍ଟେ ବାଇଶ ପାହାଚ ପାର ହୋଇ ଆମେ ମୁକ୍ତିମଣ୍ଡପ ପର୍ଯ୍ୟନ୍ତ ଯାଇ ବେହରଣଦ୍ୱାର ପାଖକୁ ଉଠିଲୁ । ସେତେବେଳକୁ ମନ୍ଦିରର ଭିତର ସବୁ ଦ୍ୱାର ବନ୍ଦ ଥାଏ । ସାତ ପାହାଚ ପାଖେ ହଜାରେ ଲୋକ ପେଲାଠେଲା ଭିତରେ ଠିଆ ହୋଇଥାନ୍ତି । ମୁଁ ବହୁତ କଷ୍ଟରେ ଗୋଟିଏ ଦ୍ୱାର ଖୋଲାଇ ମନ୍ଦିର ମଧକୁ ପ୍ରବେଶ କରି ଦେଖିଲା ବେଳକୁ, ମନ୍ଦିର ମଧରେ ଡି.ଏସ.ପି. (ସିଟି) ବାସୁଦେବ ସିଂହ, ଏବଂ କଲେକ୍ଟର ମିଃ. ସାମଲ ଠିଆ ହୋଇଥାନ୍ତି । ଭିତରେ ଦୁଇ ସେକସନ୍ ଓ ଏସ୍.ପି. ଫୋର୍ସ ଝାଳନାଳ ହୋଇ ଲାଠି ଧରି ଠିଆ ହୋଇଥାନ୍ତି । ମୋତେ ଦେଖି କଲେକ୍ଟର କହିଲେ "ସେବକମାନଙ୍କ ମଧରେ ଅସହଯୋଗ ଏବଂ ଠାକୁରଙ୍କ ନୀତିରେ ଚାରି ଘଣ୍ଟା ବିଳମ୍ବ ଯୋଗୁ ହଜାର ହଜାର ଦର୍ଶକ ବାହାରେ ଅପେକ୍ଷା କରିଛନ୍ତି ।" କେବଳ ଦର୍ଶକମାନେ ସାତପାହାଚ ଦେଇ, ମନ୍ଦିର ମଧକୁ ପ୍ରବେଶ କରୁଥିବା ଯୋଗୁ, ସାତପାହାଚ ଏବଂ ଚନ୍ଦନ ଚକଡ଼ା ମଧରେ ଲୋକମାନେ ଖୁନ୍ଦିହୋଇ ଠିଆ ହୋଇଥାନ୍ତି । ଏପରିକି ମନ୍ଦିର ଚାରିପଟେ ବେଢ଼ ବୁଲିବା ପାଇଁ

ସମ୍ଭବ ହେଉନଥାଏ । ଚାରିପଟେ ଜନସମାଗମ । ଏତକ ଜନସମାଗମ ପାଇଁ ଯେତିକି ପୁଲିସ ଦରକାର, ସେତିକି ପୁଲିସ୍ ମୃତୟନ ହୋଇନଥାନ୍ତି । କେବଳ ଡି.ଏସ.ପି. (ସିଟି)ଙ୍କୁ ମନ୍ଦିର ମଧ୍ୟରେ ଛାଡ଼ି ଦେଲେ ଭିତର ପାଖରେ ଜଣେ ହେଲେ ଇନସ୍‌ପେକ୍ଟର ଦେଖିବାକୁ ପାଇଲିନି । ଦର୍ଶନ ଘଣ୍ଟା ଘଣ୍ଟା ଧରି ବନ୍ଦଥିବା ଯୋଗୁ, ଯାତ୍ରୀମାନେ ପ୍ରବଳ ପାଟିତୁଣ୍ଡ କରୁଥାନ୍ତି । ମୁଁ ଆସିବା ପୂର୍ବରୁ କେତେବେଳ ଦର୍ଶକଙ୍କୁ ମନ୍ଦିର ମଧ୍ୟକୁ ଛଡ଼ାଯାଇଥିଲା । ମାତ୍ର ପ୍ରବଳ ପେଲାଠେଲା ଯୋଗୁ ପୁଣି ବନ୍ଦ କରାଗଲା । ସେ ବର୍ଷ ଠାକୁରଙ୍କ ବେଶ ଅତ୍ୟନ୍ତ ସୁନ୍ଦର ହୋଇଥିଲା ଏବଂ ଯେ ଦେଖୁଥିଲା ସେ ଶୀଘ୍ର ଦର୍ଶନସାରି ଛାଡ଼ି ଯିବାକୁ ଚାହୁଁ ନଥିଲା । ଏତେ ଫୋର୍ସ କମ୍, ଅଫିସର ନଥିବା ଯୋଗୁ, ଏସ.ପି. ଙ୍କ ବସାକୁ ଟେଲିଫୋନ୍ କରି ଶୀଘ୍ର ମନ୍ଦିର ପାଖକୁ ଆସିବା ସଙ୍ଗେ ସଙ୍ଗେ ଆଉ ଚାରି ପ୍ଲାଟୁନ୍ ଫୋର୍ସ, ଇନସ୍‌ପେକ୍ଟର, ଅଫିସର ଶୀଘ୍ର ମନ୍ଦିରକୁ ପଠାଇବାକୁ କହିଲି । ସନ୍ଧ୍ୟା ପୂର୍ବରୁ ସାତପଡ଼ା ପାଖରେ ଥିବା ଓ.ଏସ.ପିକୁ ଶୀଘ୍ର ପୁରୀ ଆସିବାକୁ ନିର୍ଦ୍ଦେଶ ଦେଲି ।

ଏଣେ ମୋ ସ୍ତ୍ରୀ, ଶାଶୁ ସେମାନେ ମନ୍ଦିର ଭିତରକୁ ପ୍ରବେଶ କରି ନପାରି ବାହାରୁ ୨ଜଣ ସେବକଙ୍କ ହାତରେ ନିମନ୍ତ୍ରଣ କାର୍ଡ଼ ଓ ପୂଜା ସାମଗ୍ରୀ ପଠାଇ ଦେଇଥିଲେ ଏବଂ ଦର୍ଶନ କରି ନପାରି ପଳାଇ ଯାଇଥିଲେ । ମାତ୍ର ମନ୍ଦିର ଅବସ୍ଥା ଦେଖି, ମୁଁ ଯଦିଓ ଡିଉଟିରେ ଆସିନଥିଲି ବାଧ ହୋଇ ସେଠାରେ ରହିଲି । ସେତେବେଳ ପର୍ଯ୍ୟନ୍ତ ଏସ୍.ପି. ମନ୍ଦିରକୁ ଆସିନଥାନ୍ତି । ଅଧିକା ଫୋର୍ସ ମଧ ପହଞ୍ଚି ପାରିଲେ ନାହିଁ ।

୩ଟା ବେଳକୁ, ସାତପାହାଚ ଦ୍ୱାର ଖୋଲା ହୋଇ ଦଳଦଳ ହୋଇ ଦର୍ଶକ ମନ୍ଦିରକୁ ପ୍ରବେଶ କଲେ । ପ୍ରାୟ ଛ ସାତ ଦଳ ଦର୍ଶକ ଦର୍ଶନକଲା- ପରେ ସାତ ପାହାଚ ସାମ୍ନାରେ ଚାରିଟାବେଳକୁ ପ୍ରବଳ ଠେଲାପେଲା ଆରମ୍ଭ ହୋଇଥିଲା । ପାହାଚ ଦ୍ୱାର ପାଖରେ ଥିବା ଦୁଇ ସେକ୍‌ସନ୍ ଓ.ଏସ.ପି. ଫୋର୍ସ ଦ୍ୱାର ବନ୍ଦ କରିପାରିଲେନି । ସେହି ଭିଡ଼ ଦେଇ ଯେତେବେଳେ ଲୋକମାନେ ଠେଲାପେଲା କରି, ମନ୍ଦିର ଭିତରକୁ ଆସିଲେ କେତେକ ଦର୍ଶକ ସେଇଠି ତଳେ ପଡ଼ି ଯିବା ଯୋଗୁ ତାଙ୍କ ଉପରେ ଲୋକମାନେ ଚଢ଼ିଗଲେ । ଦଳାଚକଟା ଯୋଗୁ ସାତ ପାହାଚ ଦ୍ୱାର ନିକଟରେ ବହୁ ଲୋକ ସଂଜ୍ଞାହୀନ ହୋଇଗଲେ ଏବଂ ସେମାନଙ୍କ ମଧ୍ୟରୁ ପାଞ୍ଚ ଜଣଙ୍କୁ ଡାକ୍ତରଖାନା ନିଆଗଲା । ତିନିଜଣ ମୃତ୍ୟୁବରଣ କଲେ । ମନ୍ଦିରମଧ୍ୟରେ ଏବଂ ସାତ ପାହାଚ ପାଖ କୀର୍ତ୍ତନ ଚକଡାରେ ପୁଲିସ ଫୋର୍ସର ସଂଖ୍ୟା କମ୍ ଏବଂ ଆଶାତୀତ ଦର୍ଶକମାନଙ୍କର ଭିଡ଼ ଏବଂ ସେମାନଙ୍କ ମଧ୍ୟରୁ କେତେକ ଯୁବକଙ୍କ ଭିଡ଼ ମଧ୍ୟରେ ମହିଳାମାନଙ୍କ ପ୍ରତି ଅଶ୍ଳୀଳ ବ୍ୟବହାର ହିଁ ଦଳାଚକଟାର ମୁଖ୍ୟ କାରଣ ହୋଇଥିଲା । ଦଳାଚକଟାରେ ଲୋକ ପ୍ରାଣ ହରାଇଲା ପରେ, ସଙ୍ଗେ ସଙ୍ଗେ ସାତପାହାଚ ପ୍ରବେଶ ଦ୍ୱାରକୁ ବନ୍ଦ କରିଦିଆଗଲା । ଅଧିକା ଫୋର୍ସ ନଆସିବା ପର୍ଯ୍ୟନ୍ତ ଦର୍ଶକମାନଙ୍କୁ ମନ୍ଦିର ମଧ୍ୟକୁ ସେଇ ଅବସ୍ଥାରେ ଛାଡ଼ିବା ବିପଦପୂର୍ଣ୍ଣ ଥିଲା । ତେଣୁ ଅଧିକା ଫୋର୍ସ ପାଇଁ ଅପେକ୍ଷା କରାଗଲା । ଏଣେ ଦର୍ଶକମାନଙ୍କ ଦଳଚକଟାରେ ଲୋକେ ଆହତ, ମୃତ୍ୟୁ ହେବାର କଥାକୁ ଦେଖି ମଧ ଜଗନ୍ନାଥଙ୍କ ନାଗାର୍ଜୁନ ବେଶର ଦର୍ଶନ ପାଇଁ ବାହାରେ ହଜାର ହଜାର ସଂଖ୍ୟାରେ ଲୋକମାନେ ଅପେକ୍ଷା କରିଥାନ୍ତି । ଏପରି ଘଟଣା ଘଟିଥିଲେ ମଧ ବାହାରକୁ ଖବର ଦେବାପାଇଁ ମନ୍ଦିର ମଧ୍ୟରୁ କିଛି ବ୍ୟବସ୍ଥା

ନଥାଏ କିମ୍ବା କାହାକୁ ପଠାଇ ଖବର ଦେବା ପାଇଁ ସୁବିଧା ନଥାଏ । ଏଣେ ମନ୍ଦିର ଭିତରେ ଥିବା ଗାରଦ ଘରର ଟେଲିଫୋନ ମଧ୍ୟ କଟିଗଲା । ଦର୍ଶନ ବନ୍ଦ ହେଲା ପରେ ମୁଁ ମନ୍ଦିର ମଧ୍ୟରୁ ବହୁ କଷ୍ଟରେ ବାହାରି ସିଂହଦ୍ୱାର ପାଖକୁ ଗଲି । ସେଠାରେ ମଧ୍ୟ ଟେଲିଫୋନ କିମ୍ବା ବେତାର ସୁବିଧା ନଥିବାରୁ ଗୋଟେ ପୁଲିସ ଜିପ୍‌ରେ ସରକିଟ୍ ହାଉସ ଯାଇ, ସେଠାରେ ଉପସ୍ଥିତ ଥିବା ହୋମ୍ ସେକ୍ରେଟାରୀ ଶ୍ରୀଯୁକ୍ତ ପଟ୍ଟନାୟକ ଏବଂ ଆର.ଡି.ସି. ଶ୍ରୀ ବାଗ୍‌ଚିଙ୍କୁ ଏକଥା କହିଲା ପରେ, ମୁଖ୍ୟମନ୍ତ୍ରୀଙ୍କୁ ଏହା ଜଣାଇ ଦିଆଗଲା । ତା ସହିତ ଅଧିକ ଫୋର୍ସ ଓ ଅଫିସର, ଭୁବନେଶ୍ୱର, କଟକରୁ ତୁରନ୍ତ ପଠାଇବାକୁ ଅନୁରୋଧ କରି ମନ୍ଦିରକୁ ଫେରିଲାବେଳକୁ ସାତପାହାଚ ସାମ୍ନାରେ ପୁଲିସ୍ ଏବଂ ଜନତା ମଧ୍ୟରେ ପେଲାପେଲି ଲାଗିଯାଇଛି । ଏସ୍.ପି. ସେଠାରେ ଉପସ୍ଥିତଥା'ନ୍ତି । ଦର୍ଶକମାନଙ୍କ ଟେକାପଥର ମାଡ଼ରେ କେତେ ପୁଲିସ୍ ଖଣ୍ଡିଆ ଖାବରା ହେଲା ପରେ ଲାଠିଧାରୀପୁଲିସ୍ ଘଉଡ଼ାଇ ଦେବା ଯୋଗୁ ବହୁ ଦର୍ଶକ ପଡ଼ିଉଠି କୀର୍ତ୍ତନ ଚକଡ଼ା ଠାରୁ ଦୂରକୁ ଚାଲିଗଲେ । ଏଥିମଧ୍ୟରେ ଆଉ ଦୁଇପ୍ଲାଟୁନ୍ ଫୋର୍ସ, ଆର.ଆଇ., କିଛି ଅଫିସର ଆସିଲାପରେ, ଦର୍ଶକମାନଙ୍କୁ ଶୃଙ୍ଖଳିତ କରି ଅନ୍ୟବାଟରେ ଗୋଟିଏ ଲାଇନ କରି ମନ୍ଦିର ମଧ୍ୟକୁ ଛଡ଼ାଗଲା । ସେତେବେଳକୁ ମନ୍ଦିରକୁ ସ୍ଥାନୀୟ ସଂସଦ, ବିଧାନସଭା ସଭ୍ୟମାନେ ଆସିଯାଇଥିଲେ । ପ୍ରାୟ ଭୋର ଚାରିଟା ପର୍ଯ୍ୟନ୍ତ ଦର୍ଶନ ଚାଲିଲା ଏବଂ ମୋତେ ସେଇପରି ଠିଆ ହେବାକୁ ପଡ଼ିଥିଲା । ପରଦିନ କାର୍ତ୍ତୀକ ପୂର୍ଣ୍ଣିମା, ପୁଣି ଭିଡ଼ ହେବାର ସମ୍ଭାବନା । ତେଣୁ ସେ ଦିନ ମଧ୍ୟ ସେହିପରି ମନ୍ଦିର ମଧ୍ୟରେ ରହି, ଦର୍ଶକମାନଙ୍କୁ ନିୟନ୍ତ୍ରଣ କରିବାକୁ ପଡ଼ିଥିଲା । ହଜାର ହଜାର ସଂଖ୍ୟାରେ ଦର୍ଶକ କାର୍ତ୍ତିକ ପୂର୍ଣ୍ଣିମା ଦିନ ଆସିଲେ ମଧ୍ୟ କୌଣସି ପ୍ରକାର ଅପ୍ରିତିକର ଘଟଣା ଘଟିନଥିଲା । ସେଦିନ ସନ୍ଧ୍ୟାରେ ସିଂହଦ୍ୱାର ସାମ୍ନାରେ ପୂର୍ବବର୍ଷପରି ସଂଗୀତ ସମାରୋହର ଆୟୋଜନ ସଙ୍ଗୀତଜ୍ଞ ପ୍ରଫୁଲ୍ଲ କର କରିଥାନ୍ତି । ଲୋକଭିଡ଼ ହେବା ଦୃଷ୍ଟିରୁ ସେଠାରେ, ପୁଲିସ ବନ୍ଦୋବସ୍ତ କରାଗଲା ଏବଂ ତାହା ସୁଚାରୁ ରୂପେ ସମାପନ ହୋଇଥିଲା । ମନ୍ଦିର ମଧ୍ୟରେ ଦଳାଚକଟାରେ ମୃତ୍ୟୁବରଣ କରିବା ଘଟଣା ସମସ୍ତଙ୍କ ମନରେ ଦାରୁଣ ଦୁଃଖ ଦେଇଥିଲେ ମଧ୍ୟ ସିଂହଦ୍ୱାର ସାମ୍ନାରେ ଭକ୍ତି ସଂଗୀତ ସମାରୋହରେ ଏସ.ପି. ଶ୍ରୀ ବିନୟ ବେହେରା ଅଂଶ ଗ୍ରହଣ କରି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭକ୍ତିସଂଗୀତ ପରିବେଷଣ କରିଥିଲେ ।

ପରଦିନ ମୁଖ୍ୟମନ୍ତ୍ରୀ ଏଇ ଦଳାଚକଟା ଘଟଣାର ତଦନ୍ତ ପାଇଁ ବିଚାର ବିଭାଗୀୟ ତଦନ୍ତ ବସାଇଲେ । ସ୍ୱାଧୀନତା ପରେ ମନ୍ଦିର ପରିସର ମଧ୍ୟରେ ଏପରି ଘଟଣା ଘଟିଥିବା ଯୋଗୁ ବିରୋଧିଦଳର ଦାବୀକୁ ମାନି ନେଇ ମାନ୍ୟବର ଅବସର ପ୍ରାପ୍ତ ବିଚାରପତି ମହାପାତ୍ରଙ୍କୁ ନେଇ ଏକ କମିଶନ ଆରମ୍ଭ ହେଲା । ମୋ ଝିଅ ବାହାଘର ଥିଲେ ମଧ୍ୟ ମୋତେ ପୁରୀରେ ୨୬ ତାରିଖରୁ ପ୍ରାୟ ଡିସେମ୍ବର ୩ତାରିଖ ପର୍ଯ୍ୟନ୍ତ ରହିବାକୁ ପଡ଼ିଥିଲା ଏବଂ ପୁରୀରେ କାର୍ତ୍ତିକ ପୂର୍ଣ୍ଣିମା ଯେପରି ଭଲଭଲରେ ପାଳିତ ହୁଏ, ତା ଉପରେ ସତର୍କଦୃଷ୍ଟି ରଖି ପୁଲିସ୍ ବ୍ୟବସ୍ଥା କରିଥିଲି ।

ତଦନ୍ତ କମିଶନ ପ୍ରାୟ ୬ମାସ ପରେ ଆରମ୍ଭହେଲା । ଅବଶ୍ୟ ଏ କମିଶନ ତଦନ୍ତବେଳେ, ମୋତେ କିମ୍ବା ଆର.ଡି.ସିଙ୍କୁ ସାକ୍ଷ୍ୟଦେବା ପାଇଁ ଡକା ଯାଇନଥିଲା । କମିଶନକୁ

ତିନିଗୋଟି ବିଷୟରେ ଅନୁଧାନ କରି ତଦନ୍ତ ରିପୋର୍ଟ ଦେବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ପ୍ରଥମେ ଦଳାଚକଟା ଘଟଣା କଅଣ ପାଇଁ ଏବଂ କେଉଁପରିସ୍ଥିତିରେ ଘଟିଲା ଏବଂ ଭବିଷ୍ୟତରେ ଏପରି ନଘଟିବାକୁ କିପ୍ରକାରର ପ୍ରତିଶେଧକ ବ୍ୟବସ୍ଥା ଗ୍ରହଣ କରାଯିବା ଉଚିତ୍ । ପୁଲିସ ପକ୍ଷରୁ ପୁରୀର ଜଣାଶୁଣା କ୍ରିମିନାଲ୍ ଓକିଲ ପୂର୍ଣ୍ଣକାନୁନ୍‌ଗୋକୁ ଦିଆଯାଇଥିଲା । କମିଶନ ପ୍ରାୟ ଦେଢ଼ବର୍ଷ ପରେ ତାଙ୍କର ତଦନ୍ତ ରିପୋର୍ଟ ଦେଇଥିଲେ ଏବଂ ତାହା ମୁଖ୍ୟମନ୍ତ୍ରୀଙ୍କ ପାଖରେହିଁ ରହିଗଲା ।

ମୋ ପୁଲିସ୍ ଜୀବନ ମଧ୍ୟରେ, ମୁଁ କେବେ ହେଲେ ଆଇନ୍ ଶୃଙ୍ଖଳା ରକ୍ଷା କରିବାରେ ଏପରି ଅସହାୟ ପରିସ୍ଥିତିର ସମ୍ମୁଖୀନ ହୋଇନଥିଲି । ଯଦିଓ ନାଗାର୍ଜ୍ଜୁନ ବେଶ ଦିନ, ଆଶାତୀତ ଦର୍ଶକ ଜଗନ୍ନାଥଙ୍କ ଦର୍ଶନ ପାଇଁ ଆସିଥିଲେ, ମାତ୍ର ଜିଲ୍ଲା ପୁଲିସ ପ୍ରଶାସନ ତାଙ୍କ ପାଖରେ ଥିବା ପୁଲିସ ଫୋର୍ସ, ଓ.ଏସ୍.ପି. ଫୋର୍ସ, ଅଫିସରମାନଙ୍କୁ ଯଦି ଉପଯୁକ୍ତ ଭାବେ ମନ୍ଦିର ମଧ୍ୟରେ ମୂତୟନ କରିଥାନ୍ତେ, ତାହେଲେ ଏପରି ପରିସ୍ଥିତି କେବେ ଉପୁଜିନଥାନ୍ତା । ଘଟଣା ସମ୍ବନ୍ଧରେ ମୁଁ ଏବଂ ଆର.ଡି.ସି. ମଧ୍ୟ ଏକ ଯୁଗ୍ମ ତଦନ୍ତ ରିପୋର୍ଟ ସରକାରଙ୍କୁ ଦେଇଥିଲୁ । ପରବର୍ତ୍ତୀ ବର୍ଷରେ ମଧ୍ୟ ନାଗାର୍ଜ୍ଜୁନ ବେଶ ପଡ଼ିଥିଲା ମାତ୍ର ଉପଯୁକ୍ତ ପୁଲିସ ବନ୍ଦୋବସ୍ତ ଯୋଗୁ କୌଣସି ପ୍ରକାର ଅପ୍ରିତୀକର ଘଟଣା ଘଟିନଥିଲା । ଜିଲ୍ଲା ଏସ.ପି. ଯଦି ଘଟଣାର ଗୁରୁତ୍ୱକୁ ଉପଲବ୍ଧି କରି ପୁଲିସ ବନ୍ଦୋବସ୍ତ କରିବେ, ତାହା ହେଲେ ଏପରି ଘଟଣା ଘଟିବା ସମ୍ଭବ ନୁହେଁ ।

## କଟକ ମଦମୃତ୍ୟୁ ଘଟଣା :

୧୯୯୨ ମେ ମାସର ପ୍ରଥମ ସପ୍ତାହରେ କଟକ-ଭୁବନେଶ୍ୱର ଦୈତ୍ୟ ସହରରେ ବିଷାକ୍ତ ଦେଶୀମଦ ପାନ କରି ୧୩୫ ଜଣ ଲୋକ ମୃତ୍ୟୁବରଣ କରିଥିଲା ବେଳେ ଶହେରୁ ଉର୍ଦ୍ଧ୍ୱଲୋକ ଅନ୍ଧ ହୋଇ ଯାଇଥିଲେ । ଏ ଘଟଣା ସାରାଦେଶରେ ଚହଳ ସୃଷ୍ଟି କରିଥିଲା । ଓଡ଼ିଶାରେ ଆବାଳ ବୃଦ୍ଧ ଜନତା ଏହାର ନିନ୍ଦା କରିବା ସଙ୍ଗେ ସଙ୍ଗେ ଏଥି ସହିତ ଜଡ଼ିତ ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ଦାବୀ କରିଥିଲେ । କଟକ ଭୁବନେଶ୍ୱର ସହରରେ ଏଇଦେଶୀମଦ କାରବାର ପାଇଁ ''ବେଲୁ'' ଓରଫ ସୁରେନ୍ଦ୍ର ଦାସଙ୍କୁ ମୁଖ୍ୟ ଆସାମୀ ଭାବେ ଦାୟୀ କଲାବେଳେ, ତାହାକୁ ରାଜନୈତିକ ସାହାଯ୍ୟ ତତ୍‌କାଳୀନ ବିଜୁପଟ୍ଟନାୟକ ମନ୍ତ୍ରୀମଣ୍ଡଳର ଜଣାଶୁଣା ମନ୍ତ୍ରୀ ବିଜୟ ମହାପାତ୍ର, ନଳିନୀ ମହାନ୍ତି ଏବଂ କଟକର ଜନତା ନେତା ମୁସ୍ତାଫିଜ ଅହମ୍ମଦ, ଦେବୀରାଏ, ପ୍ରଭାତ ତ୍ରିପାଠୀ ପ୍ରଭୃତି ପ୍ରଦାନ କରୁଥିଲେ ବୋଲି ଅଭିଯୋଗ ଅଣାଯାଇ ଏହାର ପୁଙ୍ଖାନୁପୁଙ୍ଖ ତଦନ୍ତ ଦାବୀକରାଯାଇଥିଲା । ମଦମୃତ୍ୟୁ ଘଟଣାର ମୁଖ୍ୟ ଆସାମୀ ''ବେଲୁ'' ୧୯୮୨ ମସିହାରେ ତାର ଅସାମାଜିକ କାର୍ଯ୍ୟ ପାଇଁ ନ୍ୟାସନାଲ ସିକ୍ୟୁରିଟ୍ ଆକ୍ଟରେ ବନ୍ଦୀ ହୋଇ ଜେଲ୍ ଯାଇଥିଲା । ତତ୍‌କାଳୀନ କଟକ ଏସ.ପି. ଅନାଦି ସାହୁ କେତେଜଣ ଅସାମାଜିକ ବ୍ୟକ୍ତିଙ୍କୁ ସାମାଜିକୀକରଣ କରିବା ପାଇଁ ସେମାନଙ୍କୁ କିଛି ଆର୍ଥିକ ସୁବିଧା ଏବଂ ସାହାଯ୍ୟ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ ''ବେଲୁ'' କୁ ଗୋଟିଏ ବ୍ୟାଙ୍କରୁ ୩୦,୦୦୦ ଟଙ୍କା ଋଣ କରାଇ ଗୋଟିଏ ମେଟାଡ଼ର କିଣାଇଦେଇଥିଲେ । ଏଇ ସାମାଜିକୀକରଣ ଉତ୍ସବରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକ ପୌରହିତ କରିଥିଲେ । ୧୯୮୨ରୁ ୯୨ ଦଶବର୍ଷ

ମଧରେ "ବେଲୁ" ସାରା ଓଡ଼ିଶାର ତାର ମଦ ସାମ୍ରାଜ୍ୟ ବିସ୍ତାର କରି କୋଟି କୋଟି ଟଙ୍କା ସମ୍ପତ୍ତିର ମାଲିକ ହୋଇ ପାରିଥିଲା । ସାଧାରଣ ଲୋକେ କହୁଥିଲେ, ଏହା କେବଳ ସମ୍ଭବ ହୋଇଛି ତାକୁ ରାଜନୈତିକ ଏବଂ ପ୍ରଶାସନିକ ସାହାଯ୍ୟ ମିଳିଥିବା ଯୋଗୁ । ପୁଲିସ୍ ଏବଂ ଅବକାରୀ ବିଭାଗ ତା ପ୍ରତି ଅନୁକମ୍ପା ପ୍ରଦର୍ଶନ କରୁଥିଲେ ବୋଲି ମଧ ଅଭିଯୋଗ ହୋଇଥିଲା ।

ସମସ୍ତ ସମ୍ବାଦ ପତ୍ରରେ ବିଭିନ୍ନ ପ୍ରକାର ସମ୍ବାଦ ଏବଂ ବିଜୁପଟ୍ଟନାୟକ ସରକାର ଲୋକଦୃଷ୍ଟିରେ ଶରବ୍ୟ ହେଲା । ୧୯୯୨ ମେ ମାସ ଆଠ ତାରିଖଦିନ ରାଜ୍ୟସରକାର କେନ୍ଦ୍ରାଞ୍ଚଳ ଆର.ଡି.ସି. ଙ୍କୁ ଏହାର ପ୍ରଶାସନିକ ତଦନ୍ତ କରି ରିପୋର୍ଟ ଦେବା ପାଇଁ ଆଦେଶ ଦେଲେ ଏବଂ ତଦନ୍ତ ପାଇଁ ଚାରିଗୋଟି ଦିଗ ନିର୍ଣ୍ଣୟ କରିଥିଲେ । ଆର.ଡି.ସି. ତାଙ୍କର ପ୍ରଶାସନିକ ତଦନ୍ତ ରିପୋର୍ଟ ୧୯୯୨ ମସିହା ଜୁଲାଇ ମାସ ୧୩ ତାରିଖରେ ଦେବାପରେ, ସରକାର ତାଙ୍କ ରିପୋର୍ଟରେ କୁହାଯାଇଥିବା ପ୍ରଶାସନିକ ଅବହେଳା ପାଇଁ ଦାୟୀ ହୋଇଥିବା ଅଫିସରମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଥିଲେ । ମାତ୍ର ଏଇ ରିପୋର୍ଟରେ ସନ୍ତୁଷ୍ଟ ନହୋଇ କେତେଜଣ ନାଗରିକ ଏବଂ ରାଜନୈତିକ ବ୍ୟକ୍ତି ବିଶେଷ ଓଡ଼ିଶା ହାଇକୋର୍ଟରେ ରିଟ୍‌ପିଟିସନ୍ ମାଧମରେ ମଦମୃତ୍ୟୁ ଘଟଣା ପାଇଁ ବିଚାର ବିଭାଗୀୟ ତଦନ୍ତ ବସାଇ, ଘଟଣାର ଅନୁସନ୍ଧାନ କରି ପ୍ରକୃତ ବ୍ୟକ୍ତି ଯେଉଁମାନେ ବେଲୁର ଏଇ ଅସାମାଜିକ କାର୍ଯ୍ୟରେ ସାହାଯ୍ୟ କରିଛନ୍ତି ସେମାନଙ୍କୁ ମଧ ଲୋକଲୋଚନକୁ ଅଣାଯାଉ ବୋଲି ଦାବୀ କରିଥିଲେ । ମାନ୍ୟବର ଓଡ଼ିଶା ହାଇକୋର୍ଟର ଡିଭିଜନ ବେଞ୍ଚ, ମୁଖ୍ୟ ବିଚାରପତିଙ୍କ ଅଧକ୍ଷତାରେ ବସି ଓଡ଼ିଶା ସରକାରଙ୍କୁ ନିର୍ଦ୍ଦେଶ ଦେଲେ ଯେ ମଦମୃତ୍ୟୁ ଭଳି ଏକ ପବ୍ଲିକ୍ ଇମୋଟାନ୍ସ ଘଟଣାର ବିଚାର କରାଯାଇ ତଦନ୍ତ ହେବା ଉଚିତ । ଏହି ନିର୍ଦ୍ଦେଶ ପାଇଲା ପରେ ଓଡ଼ିଶା ସରକାର ୨୦.୭.୯୩ ମସିହାରେ ଅବସରପ୍ରାପ୍ତ ମାନ୍ୟବର ବିଚାରପତି ବାଳକୃଷ୍ଣ ବେହେରାଙ୍କୁ ଏଇଘଟଣାର ତଦନ୍ତ ପାଇଁ ନିଯୁକ୍ତି ଦେଲେ ।

ସେତେବେଳକୁ ମୁଁ କଟକରେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଭାବେ ଅବସ୍ଥାପିତ ହୋଇଥାଏ । ମଦମୃତ୍ୟୁ ଘଟଣା ବେଳେ କଟକରେ ଶ୍ରୀ ପ୍ରଫୁଲ୍ଲ ରଥ ଡି.ଜି. ଥିଲାବେଳେ ଶ୍ରୀ ଅନାଦି ସାହୁ କଟକ କେନ୍ଦ୍ରାଞ୍ଚଳ ଡି.ଆଇ.ଜି, ବିଧୁ ମିଶ୍ର କଟକ ଏସ.ପି., ମହାଦେବ ମିଶ୍ର ଡି.ଏସ.ପି. କଟକ(ସିଟି) ଥିଲେ । ମୁଁ ମଦ ମୃତ୍ୟୁର ତିନିମାସ ପରେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ଭାବେ ଜଏନ୍ କରିଥିଲି । ଅନାଦି ସାହୁଙ୍କୁ କଟକରୁ କୋରାପୁଟ ରେଞ୍ଜକୁ ବଦଳି କରାଯାଇଥିଲା । ମଦମୃତ୍ୟୁ ଘଟଣା ସହିତ ମୋର କିଛି ସମ୍ପର୍କ ନଥିଲା ମାତ୍ର ଅନାଦି ସାହୁ, ତାଙ୍କର ସାକ୍ଷ୍ୟ ପ୍ରଦାନ ବେଳେ କେତେ ଗୁଡ଼ିଏ କଥା କମିଶନ ଆଗରେ ସାକ୍ଷ୍ୟ ଦେଇ କହିବା ଦ୍ୱାରା ମୋତେ ଏଇ ଘଟଣା ମଧକୁ ଟାଣି ଆଣିଲେ ।

To quote " Similar startling revealation were made by Anadi Sahu DIG regarding interpolations inthe files of DIG Office indicates that some deliberate mischief has been made in changing the note sheets. In reading between the lines one can mark that Sri Bata Krishna Tripathy, IPS, who according to Anadi Sahu should not have return from Delhi from his central deputation before completing three years there".

ମୁଁ ଆଗରୁ ପ୍ରକାଶ କରିଛି, ମୁଁ କ'ଣ ପାଇଁ ମୋର ଡେପୁଟେସନ୍ ପିରିଅଡ଼ ପୂରିବା ପୂର୍ବରୁ ଓଡ଼ିଶାକୁ ଫେରିଲି । ମଦମୃତ୍ୟୁ ଘଟଣା ସହିତ ମୋର କିଛି ସଂପର୍କ ନଥିଲା କି ମୁଁ ଆସି କେନ୍ଦ୍ରାଞ୍ଚଳ ଡି.ଆଇ.ଜି ହେଲାପରେ, ସେ ବିଷୟରେ କିଛି ଅନୁସନ୍ଧାନ କରିଥିଲି । ଯେତେବେଳେ ବେହେରା କମିଶନ ତଦନ୍ତ ଆରମ୍ଭ କଲେ, ଦିନେ ମିଃ ଅନାଦି ସାହୁ ମୋତେ ଟେଲିଫୋନ୍ କରି କହିଲେ ଯେ, ତାଙ୍କୁ କମିଶନ ଆଗରେ ସାକ୍ଷୀ ଦେବାପାଇଁ ଅଛି, ତେଣୁ ସେ ଅଫିସର କେତେ ଗୁଡ଼ିଏ ଫାଇଲ ଦେଖିବାକୁ ଚାହୁଁଛନ୍ତି ମୋ ଅଫିସକୁ ଆସି ଫାଇଲ୍ ଦେଖିବା ପାଇଁ ମୁଁ ସବୁ ପ୍ରକାର ବନ୍ଦୋବସ୍ତ କରି ଦେଇଥିଲି ଏବଂ ସେ ମୋ ଅଫିସକୁ ଆସି ଫାଇଲ ଦେଖିଲେ ମାତ୍ର ସାକ୍ଷୀ ଦେଲାବେଳେ ସେ କହିଲେ ଯେ କେତେକ ଫାଇଲ୍‌ରେ ତାଙ୍କ ଦସ୍ତଖତକୁ ଜାଲ୍ କରାଯାଇଛି । ତାଙ୍କ ଡିପୋଜିସନର ପାରାଗ୍ରାଫ ୨୧-ରେ ସାକ୍ଷ୍ୟ ଦେଲାବେଳେ ଶ୍ରୀ ସାହୁ କହିଥିଲେ,,"Though the note sheets in the file were genuine, the exhibits 3.222/1 and 232/1 purported to be his signature, were not his and asserted that after he handed over charge as DIG on 7.2.92 the notes in the 12 case reeords have been replaced as the signatures on the note sheets were not his".

The commission after examining Sri Divakar Acharya, the Crime Inspector of DIG, CR Office, come to conclusion that the DIG, was not in the habit of signing the note sheets and the signature as per exhibit 221/1 and 232/1 are the signature of Sri Acharya and that no one have fored the signature "of Sri Sahu". When confronted before commission "Anadi Sahu, admitted that he had not signed on any of the pages in the note sheets" The commission observed that "Sri Anadi Sahu's deposition that a set of instructions were removed from these case records is nothing but untruth".

ମୁଁ ଜାଣିନଥିଲି, ମୋତେ କହିଁକି ଏଇ ଘଟଣା ସହିତ କମିଶନ ତଦନ୍ତ ବେଳେ ଟାଣିଓଟାରି ପୂରାଇ ଦିଆଯାଉଛି । ପରେ ଭାବିଲି ବୋଧେ, ମୁଁ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ହୋଇ ଆସିଲି ବୋଲି, ଅନୁଶୟା ଭାବନେଇ ମିଃ ସାହୁ ଏକଥା କହିଥିଲେ । ତାଛଡ଼ା ସେ ମଧ ଭଲଭାବେ ଜାଣିଥିଲେ ଯେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ, ମୋତେ ଦିଲ୍ଲୀରୁ ଆଣିବାରେ ସାହାଯ୍ୟ କରିଥିଲେ ଏବଂ ମୋର ସଂର୍ପକ ତତ୍‌କାଳୀନ ମନ୍ତ୍ରୀ ବିଜୟ ମହାପାତ୍ର, ନଳିନୀ ମହାନ୍ତିଙ୍କ ସଙ୍ଗେ ଭଲ ଥିଲା । ଅବଶ୍ୟ ଏକଥା କହିବା ଠିକ୍ ନୁହେଁ, ଯେ ସମୟରେ କେବଳ ଭଲଥିଲା, ସେମାନେ ରାଜନୀତିରେ ପ୍ରବେଶ କରିବା ଦିନଠାରୁ, ସେମାନଙ୍କ ସଙ୍ଗେ ମୋର ସଂର୍ପକ ଭଲ । ମନ୍ତ୍ରୀ ଥିଲାବେଳେ ସେମାନେ ମୋତେ ଭାଇନା ଡାକନ୍ତି, ମନ୍ତ୍ରୀ ନଥିଲା ବେଳେ ମଧ ସେଇ ସଂର୍ପକ ଥିଲା । କେବଳ ସେମାନେ ନୁହଁନ୍ତି,ପ୍ରତ୍ୟେକ ରାଜନୈତିକ ଦଳର ନେତା ଏବଂ କର୍ମୀମାନଙ୍କ ସହିତ ମୋର ସଂର୍ପକ ସବୁବେଳେ ଭଲ । ମୋର କେହି ବିରୋଧି ନଥାନ୍ତି କି ମୁଁ କାହାର ନୁହେଁ, ଅବଶ୍ୟ ଜଣେ ରାଜନୈତିକ ନେତାଙ୍କୁ ଛାଡ଼ି ଦେଲେ, ମୁଁ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ହେଲା ପରେ, ମୋ ବିରୋଧି ରାଜନୈତିକ ନେତା ମଧ ମୋତେ ନିଜେ ଡାକି ଥରେ କହିଥିଲେ, "ବୁଝିଲେ, ଆପଣ ଏସ.ପି ଥିଲାବେଳେ ମୁଁ ସିନା ଆପଣଙ୍କ ଉପରେ ବିଗୁଡ଼ୁ ଥିଲି, ଏବେ

ମନ୍ତ୍ରୀ ହେଲା ପରେ ବୁଝୁଛି, ଆପଣ ଯାହା କରୁଥିଲେ, କହୁଥିଲେ, ସେ କଥା ଠିକ୍'' ।

ବେହେରା ତଦନ୍ତ କମିଶନରେ ପୁଲିସ, ପୁଲିସ ବିରୁଦ୍ଧରେ ସାକ୍ଷୀ ପ୍ରମାଣ ଦେବାରେ ଟଣା ଓଟରା ଭଲ ଚାଲିଲା । ଏସ୍.ପି, ଡି.ଆଇ.ଜିଙ୍କ ବିରୁଦ୍ଧରେ ଗଲା ବେଳେ, ଡି.ଆଇ.ଜି ଏସ୍.ପିଙ୍କୁ ଦାୟୀ କଲେ । କେବଳ ସେତିକି ନୁହେଁ ଇନସ୍‌ପେକ୍ଟର ସ୍ତରରୁ ଆରମ୍ଭକରି ଡି.ଜି ଙ୍କ ପର୍ଯ୍ୟନ୍ତ କେହି ଠିକ୍ କଥା କହିବାକୁ ଆଗେଇଲେ ନାହିଁ । ନିଜେ ନିଜକୁ ରକ୍ଷା କରିବା ପାଇଁ ମିଛି କହିବାକୁ ପଛେଇଲେ ନାହିଁ । ଦେଶୀ ମଦ କଟକ ସହରରେ ବହୁଳ ଭବେ ପ୍ରସାର ଲାଭ କରିବାରେ ଏବଂ ବେଲ୍ଟର କାର୍ଯ୍ୟକଳାପକୁ ଭଲ ଭାବରେ ତନଖି ନକରିବାରେ, ଅବକାରୀ ବିଭାଗର ଦାୟିତ୍ୱ ହୋଇଥିଲେ ମଧ, ସାକ୍ଷ୍ୟ ପ୍ରମାଣ ବେଳେ ସେମାନେ ପଛରେ ପଡ଼ିଗଲେ । ଲୋକଲୋଚ଼ନକୁ ସେମାନଙ୍କ ଅବହେଳା କିଛି ସମାଲୋଚ଼ନାର ବିଷୟ ହୋଇ ଆସିଲାନି । ପ୍ରତ୍ୟେକଦିନ କେବଳ ପୁଲିସ୍ ବାଲା, କିଏ କାହା ବିରୁଦ୍ଧରେ କ'ଣ କହିଲା, ତାହାହିଁ ସମ୍ବାଦପତ୍ରମାନଙ୍କରେ ବାହାରୁଥାଏ । ଶେଷରେ ଅନାଦି ସାହୁ କହିଥିଲେ ଯେ ସେ କେନ୍ଦ୍ରାଞ୍ଚଳ ଡି.ଆଇ.ଜି ଥିଲାବେଳେ ତାଙ୍କ ହାତଗୋଡ ବନ୍ଧାଥିଲା । ତାଙ୍କ ପାଟି ଫିଟୁ ନଥିଲା ଏବଂ ସେତିକି ବେଳକୁ ''The pyramidal structure of police administration was crumbling" ବୋଲି କହିଥିଲେ ।

ବେହେରା କମିଶନ ଆସ୍ତେ ଆସ୍ତେ ଏକ ରାଜନୈତିକ ପ୍ଲାଟଫର୍ମ ହେବାକୁ ଲାଗିଲା । କଂଗ୍ରେସ ଦଳ ସେତେବେଳେ ବିରୋଧି ଦଳ ଥିବା ହେତୁ ଏବଂ ଆଗକୁ ସାଧାରଣ ନିର୍ବାଚନ ଆସୁଥିବା ଯୋଗୁ, ଜନତା ସରକାର ବିରୁଦ୍ଧରେ ଏବଂ ତାଙ୍କର ମନ୍ତ୍ରୀମାନଙ୍କ ବିରୁଦ୍ଧରେ ପ୍ରତ୍ୟେକ ଦିନ ଯଦି ସମ୍ବାଦପତ୍ରମାନଙ୍କରେ କିଛିନା କିଛି କୁତ୍ସାରଟନା କରାଯାଏ ତାହେଲେ ତାହା ତାଙ୍କ ରାଜନୈତିକ ପଟ୍ଟଭୂମିକୁ ସାହାଯ୍ୟ କରିବ ବୋଲି ସେମାନେ ମଧ ଏହି କମିଶନର ତଦନ୍ତ ସମୟକୁ ଗଡ଼ାଇବାରେ ସାହାଯ୍ୟ କରୁଥାନ୍ତି । କୁହାଯାଏ, ଅନାଦି ସାହୁଙ୍କୁ ତତ୍‌କାଳୀନ କଂଗ୍ରେସ ନେତାମାନେ ବିଜୁ ସରକାର ବିରୁଦ୍ଧରେ କହିବାପାଇଁ ସବୁପ୍ରକାର ସାହାଯ୍ୟ ଦିଆଯିବ ବୋଲି କହିଥିଲେ ଏବଂ ତାଙ୍କର କମିଶନ ଆଗରେ ଯେଉଁ ସାକ୍ଷ୍ୟ ପ୍ରଦାନ କରିଥିଲେ, ତାହା କୁଆଡ଼େ ୯୦ ପୃଷ୍ଠାରୁ ଉର୍ଦ୍ଧ୍ୱ ହୋଇଥିଲା । ଜନତାଦଳ ଏକଥା ଜାଣିଥିଲେ, ମାତ୍ର କିଛି କରିପାରୁନଥିଲେ, କାରଣ ଜନତା ସରକାରରେ ମଧ ନିଜ ନିଜ ମଧରେ ରାଜନୈତିକ ମତାନ୍ତର ଯୋଗୁ କେତେଜଣ ଜନତା ମନ୍ତ୍ରୀ ବିଜୁବାବୁଙ୍କୁ ସେମାନଙ୍କର ଇସ୍ତଫାଦେଇ ଭିତରେ ଭିତରେ ବିଜୟ, ନଳିନୀ ଗୋଷ୍ଠୀ ବିରୁଦ୍ଧରେ ବିଷ ଉଦ୍‌ଗାର କରୁଥାନ୍ତି । ଏଇ ସମୟ ମଧରେ ଅନାଦି ସାହୁ, ସୁନାବେଡ଼ାରୁ ଭୁବନେଶ୍ୱର କ୍ରୀଡ଼ା ନିର୍ଦ୍ଦେଶକ ଭାବେ ବଦଳିହୋଇ ଆସି ଯାଇଥାନ୍ତି । ଦୁଇବର୍ଷରୁ ଅଧିକ ସମୟ ନେଲାପରେ ବେହେରା କମିଶନ ତାଙ୍କର ତଦନ୍ତ ରିପୋର୍ଟ ଦେଇଥିଲେ । ତାଙ୍କ ରିପୋର୍ଟ ଆସିଲାବେଳକୁ ଜନତା ସରକାର ନିର୍ବାଚ଼ନରେ ହାରି କଂଗ୍ରେସ ସରକାର ଆସିଗଲେଣି । କଂଗ୍ରେସ ସରକାର ଆସିଲାପରେ, ପୁଣି ଜାନକୀ ପଟ୍ଟନାୟକ କଂଗ୍ରେସ ସରକାର ମୁଖ୍ୟ ହୋଇ ମୁଖ୍ୟମନ୍ତ୍ରୀ ହେଲେ ଏବଂ ବସନ୍ତ ବିଶ୍ୱାଳ ଉପମୁଖ୍ୟମନ୍ତ୍ରୀ ହେଲେ । ସରକାର ବଦଳିବା ପରେ, ଯେତେବେଳେ ତଦନ୍ତ ରିପୋର୍ଟ ପ୍ରକାଶ ପାଇଲା, କେତେକ ସମ୍ବାଦ ପତ୍ରରେ ଏହାର ସମାଲୋଚ଼ନା ମଧ କରାଯାଇଥିଲା । ତଦନ୍ତ କମିଶନ ଉପରେ ବିଜୁବାବୁଙ୍କର ଏକଦା ଡେପୁଟୀ

ସେକ୍ରେଟାରୀ ଗୌର ମୋହନ ଷଡ଼ଙ୍ଗୀ "High way and By Lanes of Behera Commission" ଲେଖିଛନ୍ତି । ସେଇ ପୁସ୍ତକରେ କମିଶନର କାର୍ଯ୍ୟାବଳୀ, ଇତ୍ୟାଦି ଉପରେ ସବିଶେଷ ବିବରଣୀ ମିଳିପାରିବ ।

ବେହେରା କମିଶନ ଚାଲିଥିଲାବେଳେ, ପୁଲିସ୍ ସଦର ମହକୁମାରେ ସିନିୟର ଅଫିସରମାନଙ୍କୁ ଇନ୍‌ଭଲଭ୍ କରି ଗୋଟାକ ପରେ ଗୋଟେ ପିଟିସନ୍ ଚାରିଆଡ଼କୁ ଯାଉଥାଏ । ଶରତ ମିଶ୍ର, ଏ.ବି. ତ୍ରିପାଠୀ, ପ୍ରଫୁଲ୍ଲ ରଥ (ଅବସରପ୍ରାପ୍ତ) ଏମାନଙ୍କ ନାମରେ ପିଟିସନ୍ ପଡୁଥାଏ । ୧୯୯୪ ମସିହା ଜାନୁୟାରୀ ମାସ ୧୮ ତାରିଖ ଦିନ ଶରତ ମିଶ୍ର ଡି.ଜି. ପଦବୀରୁ ଅବ୍ୟାହତ ନେଇ ଷ୍ଟାଫ୍ ସିଲେକସନ୍ କମିଶନର ପ୍ରଥମ ଚେୟାରମ୍ୟାନ ପଦ ଗ୍ରହଣ କରିନେଲେ । କାରଣ ଏଥିରେ ସେ ଆଉ ଚାରିବର୍ଷ ରହିପାରିବେ । ନହେଲେ ଜୁନ୍ ୧୯୯୪ ମସିହାରେ ତାଙ୍କର ଅବସର ନବା କଥା । ତାଙ୍କ ବ୍ୟାଚ୍‌ମେଟ୍ ଆର.ଏନ୍ ମହାପାତ୍ରଙ୍କର ସେତେବେଳକୁ ଆହୁରି ଅଢ଼େଇ ବର୍ଷ ଚାକିରୀ ଥାଏ । ସେ ଡି.ଜି. ପଦରୁ ବିଦାୟ ନେଲାପରେ ଶ୍ରୀ ଆର୍.ଏନ୍.ମହାପାତ୍ର ଜାନୁୟାରୀ ୧୮ ତାରିଖ ଦିନ ୩.୧୦ ମିନିଟ୍‌ରେ ଡି.ଜି. ଦାୟିତ୍ୱ ଗ୍ରହଣ କଲେ । ତାଙ୍କର ମୋର ସଂପର୍କ ବହୁଦିନର । ମୁଁ କଟକ ହେଡ୍‌କ୍ୱାଟର ଡି.ଏସ.ପି ତାଙ୍କରି ପାଖେ ୧୯୭୧ ମସିହାରେ ଥିଲି । ସେଇଦିନୁ ତାଙ୍କ ସହିତ ଏବଂ ତାଙ୍କ ପରିବାର ସହିତ ମୋ ପରିବାରର ସଂପର୍କ ଏକପ୍ରକାର ଘରୋଇ ସଂପର୍କ । ସେ ଡି.ଜି. ହେଲାପରେ, ତାଙ୍କୁ ତାଙ୍କ ଅସମୟରେ ଯେଉଁମାନେ ଚିହ୍ନାପଡ଼ି ସାହାଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରୁ କେତେଜଣଙ୍କୁ ସେ ଭଲ ପୋଷ୍ଟରେ ରଖିବାକୁ ଚାହୁଁଥିଲେ । କେନ୍ଦ୍ରାଞ୍ଚଳ ଡି.ଆଇ.ଜି ଭାବେ ସୁରେନ୍ଦ୍ର ସ୍ୱାଇଁଙ୍କୁ ସେ ଆସିଲାପରେ ଆଣିବାକୁ ଚାହିଁଥିଲେ ମଧ୍ୟ ତାହା ହୋଇପାରିନଥିଲା । ସେ ମୋତେ ଡି.ଆଇ.ଜି ପ୍ରଶାସନ କରି ଆଣିବାକୁ ଚାହୁଁଥିଲେ । ପୋଷ୍ଟରେ ପରିବର୍ତ୍ତନ ନହେବାରୁ ସୁରେନ୍ଦ୍ର ସ୍ୱାଇଁ ଡି.ଆଇ.ଜି. (ପ୍ରଶାସନ) ହୋଇଆସିଲେ । ସେତେବେଳେ ମି. ମହାପାତ୍ରଙ୍କୁ କୁହାଯାଉଥିଲା, ମୁଁ ଏ.ବି.ତ୍ରିପାଠୀଙ୍କ ଲୋକ । ଅଳ୍ପଦିନ ତଳେ ଶରତ ମିଶ୍ରଙ୍କ ଲୋକଥିଲି ଶରତ ମିଶ୍ରଙ୍କ ସମୟରେ ପ୍ରଫୁଲ୍ଲ ରଥଙ୍କ ଲୋକ ଥିଲି । ଏବେ ପୁଣି ଏ.ବି.ତ୍ରିପାଠୀଙ୍କଲୋକ । ଏଥି ମଧ୍ୟରେ ଏ.ବି.ତ୍ରିପାଠୀ, ଯେକି ମିଃ ମହାପାତ୍ରଙ୍କ ପରେ ଡି.ଜି. ହେବାକଥା, ଅନେ୍କ ବହୁତେ ତାଙ୍କ ପଛରେ ପଡ଼ିଥିଲେ । ତେଣୁ ମିଃ ମହାପାତ୍ରଙ୍କ ସନ୍ଦେହର କୁହେଳିକା ପୁଣି, ଏ.ବି.ତ୍ରିପାଠୀଙ୍କ ସହିତ ସଂପର୍କ ଥିବା ଅଫିସରଙ୍କ ଉପରେ ଘାରି ଦେଲା । ଏଣେ ନାନା ପ୍ରକାର ରଂଗ ଦେଇ ପିଟିସନ୍‌ମାନ ସିନିୟର ଅଫିସରଙ୍କ ବିରୁଦ୍ଧରେ ପଡୁଥାଏ । ସମସ୍ତେ ଜାଣୁଥିଲେ ପିଟିସନ୍ ଦେଉଥିବା ଉଚ୍ଚ ପୁଲିସ ପଦାଧିକାରୀଙ୍କ ବିରୁଦ୍ଧରେ ସେପରି କିଛି ଆଖିଦୃଶିଆ ଆକ୍‌ସନ୍ ନିଆଯାଉନଥିବାଯୋଗୁ ଗୋଟାକ ପରେ ଗୋଟାଏ ପିଟିସନ୍ ସମସ୍ତଙ୍କ ନାମରେ ସବୁଆଡ଼କୁ ଯାଉଥାଏ ।

ନିର୍ବାଚନକୁ ଆଖିଆଗରେ ରଖି, ୧୯୯୪ ମସିହା ଜୁନ୍ ମାସରେ କଂଗ୍ରେସ ଦଳ, ଜନତା ସରକାରର କୁଶାସନ ବିରୋଧରେ, ରାଜଭବନ ଘେରାଉ କରିବାପାଇଁ ଡକରା ଦେଇଥିଲା । ଗଣତନ୍ତ୍ର ପଦ୍ଧତି ଶାସନରେ, ଘେରାଉ, ଶୋଭାଯାତ୍ରା, ବିକ୍ଷୋଭ ପ୍ରଦର୍ଶନ,

ରାଜରାସ୍ତାରେ ପଟୁଆର, ବନ୍ଦ ମାଧମରେ ପ୍ରତିବାଦ ଜଣାଇବା ପଦ୍ଧତି କେବଳ ସାଧାରଣ ଜନତାକୁ ଭୂଆଁ ବୁଲାଇବା ଛଡ଼ା କିଛି ନୁହେଁ ।

ଜନତାଙ୍କ ପଇସାରେ, ହଜାର ହଜାର ସାଧାରଣ ଲୋକଙ୍କୁ ଟ୍ରକ୍, ବସରେ ଦୂରଦୂରାନ୍ତରୁ କଟକ, ଭୁବନେଶ୍ୱର ବୁଲିଯିବା ନାଁରେ, ମାଗଣାରେ ବସ୍, ଟ୍ରକରେ ଆଣି, ମାଗଣା ଖାଇବାକୁ ଦେଇ, ଭୁବନେଶ୍ୱର ରାଜ ରାସ୍ତାରେ ପଟୁଆର ବାହାର କରି, ଦଳର ସମର୍ଥନ ନିରୂପଣ କରିବା ରାଜନୈତିକ ଦଳମାନଙ୍କର ଏକ ସୁକଳ୍ପିତ ଚାଲ୍ । ଦଳ ସମର୍ଥୀତ ସମ୍ବାଦ ପତ୍ରମାନେ ସମ୍ବାଦ ପରିବେଷଣ କରନ୍ତି ଅମୁକ ଦଳର ପଟୁଆରରେ ଲକ୍ଷ ଲକ୍ଷ ଲୋକ ଯୋଗ ଦେଇଥିଲେ । ସାଧାରଣ ଲୋକ ଭାବନ୍ତି, ଏ ଦଳର କେତେ ଜନ ସମର୍ଥନ କେତେ ବଳ ମାତ୍ର ସେମାନେ ଜାଣନ୍ତିନି ଯେ, ଏମାନଙ୍କ ମଧ୍ୟରୁ ସତୁରୀ ଭାଗ ଲୋକଙ୍କୁ କଟକ-ଭୁବନେଶ୍ୱର ବୁଲାଇ ଦେବା ନାଁରେ ଅଣା ଯାଇଥାଏ । ପଟୁଆର କିମ୍ବା ଦଳର ଦାବୀ ସମ୍ବନ୍ଧରେ ସେମାନେ କିଛି ଜାଣନ୍ତି ନାହିଁ । ଏବେ ବି ସେ କଥା ଚାଲିଛି । କେତେଦିନ ପର୍ଯ୍ୟନ୍ତ ଏଇ ରାଜନୈତିକ ନେତାମାନେ ସାଧାରଣ ଜନତାକୁ ଭୂଆଁ ବୁଲାଇବେ, ତାହା ଆମପରି ନିର୍ବୋଧ ଜନତାଙ୍କ ଉପରେ ନିର୍ଭର କରେ ।

## ବିଜୁବାବୁଙ୍କ ରାଗ :

କଂଗ୍ରେସ ଦଳ,ରାଜଭବନ ଘେରାଉ କରିବା ପାଇଁ ଡାକରା ଦେଲେ । ଏହାର ନେତୃତ୍ୱ ଯଦିଓ ଜାନକୀ ପଟ୍ଟନାୟକ ନେଉଥିଲେ, ମାତ୍ର ସବୁ କଂଗ୍ରେସ ଏମ୍.ପି, ଏମ୍.ଏଲ୍.ଏ, ନେତାମାନେ ଏଥିରେ ଯୋଗ ଦେଉଥାନ୍ତି ଏବଂ ସେମାନଙ୍କ ନିର୍ବାଚନମଣ୍ଡଳୀରୁ, ବସ, ଟ୍ରକ, ଯୋଗେ ଯେତେଦୂର ପାରଯାଏ ଲୋକ ବୁହାଇ ଆଣିଥାନ୍ତି । ଦିନ ଏଗାରଟା ବେଳକୁ ରାଜଭବନ ପାଖ ପେଟ୍ରୋଲ ପମ୍ପ ସାମ୍ନା ରାସ୍ତା ଉପରେ ଏକତ୍ରିତ ହୋଇ ରାଜଭବନ ମଧ୍ୟକୁ ପ୍ରବେଶ କରିବେ ବୋଲି ଡାକରା ଦେଲେ । ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଲକ୍ଷ୍ୟକରି ପ୍ରଶାସନ ତରଫରୁ ସେଠାରେ ୧୪୪ ଧାରା ଜାରି କରାଯାଇଥାଏ । ପ୍ରାୟ ୧୦ ହଜାର ଲୋକ ଆସିଥାନ୍ତି । ମୁଁ କଲେକ୍ଟର ସେ ସ୍ଥାନରେ ଉପସ୍ଥିତ ଥିଲୁ ଏବଂ କଂଗ୍ରେସ ଦଳର ପ୍ରମୁଖ ନେତା ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ସଙ୍ଗେ ଶାନ୍ତିରକ୍ଷା ପାଇଁ କଥାବାର୍ତ୍ତା କରିଥିଲୁ । ଶହେ ଚଉରାଳିଶୀ ଧାରା ଭାଙ୍ଗିବା ପୂର୍ବରୁ, ଉପସ୍ଥିତ ସଂସଦ, ବିଧାନ ସଭା ସଦସ୍ୟ, ଆଞ୍ଚଳିକ ନେତାମାନେ ଜନତା ସରକାରଙ୍କ ବିରୁଦ୍ଧରେ ବିଷ ଉଦ୍‌ଗାର କଲେ ଯାହା କି ଗଣତନ୍ତ୍ର ପଦ୍ଧତିରେ ଦୋଷାବହ ନୁହେଁ । ଏଇ ପଦ୍ଧତିରେ କୌଣସି ବିରୋଧି ଦଳ, ସରକାରୀ ଦଳର ଭଲକାମକୁ କହିନଥାନ୍ତି କି ପସନ୍ଦ କରି ନଥାନ୍ତି । ବରଂ ଭଲକାମ କରିଥିବା ନେତା କିମ୍ବା ଦଳ ବିରୁଦ୍ଧରେ କିଛି ନା କିଛି ଭଲକାମର ଭେଲ ବାହାର କରି, ଜନତାଙ୍କ ଆଗରେ ତାଙ୍କୁ ବଖାଣିଥାନ୍ତି । ଭାଷଣ ପରେ, ସେମାନେ ପୁଲିସ୍ କଡ଼ନ୍ ଭାଙ୍ଗିବାକୁ ଗଲାବେଳେ, କଥାବାର୍ତ୍ତା ଅନୁସାରେ ସେମାନଙ୍କୁ ପୁଲିସ୍ ୧୫୧ ଧାରାରେ ଗିରଫ କରି, ଲକ୍ଷ୍ମୀସାଗର ଉଚ୍ଚବିଦ୍ୟାଳୟ ପ୍ରାଙ୍ଗଣକୁ ନେଇଯିବା ଆରମ୍ଭ ହେଲା । ପ୍ରାୟ ୨୦ ଖଣ୍ଡ ଗାଡ଼ି ସେମାନଙ୍କୁ ରାଜଭବନ ସାମ୍ନାରୁ ଗିରଫ କରି ବୋହିବାରେ ଲାଗିଥାନ୍ତି । ପୁଲିସ୍ ଗିରଫ କରିବାର ଫଟୋ ଇତ୍ୟାଦି ଦୂରଦର୍ଶନ ଏବଂ ଫଟୋ ସାମ୍ବାଦିକମାନେ ଉଠାଉଥାନ୍ତି ।

ସେମାନଙ୍କ ମଧ୍ୟରୁ କେତେକଙ୍କୁ ଦଳୀୟ ନେତାମାନେ କାହାର କିପରି ଭାବେ ଫଟୋ ନେଇ, ସମ୍ବାଦ ପତ୍ରମାନଙ୍କରେ ଛାପିବା ପାଇଁ ମଧ୍ୟ ଆଗରୁ କୁହା ସରିଥାଏ ।

କଂଗ୍ରେସ ଦଳର ନେତା ଜାନକୀ ପଟ୍ଟନାୟକ, ପଛରେ ଗିରଫ ହେବେ ବୋଲି ବସିଥାନ୍ତି । ଦଳ ଦଳ ଗିରଫ ହୋଇଗଲାପରେ, ସେ ପଛରେ ଯିବେ ବୋଲି କହୁଥାନ୍ତି । ମାତ୍ର ଆମେ ଠିକ୍ କରିଥିଲୁ, ଜାନକୀବାବୁଙ୍କୁ ଗିରଫ କରିବୁ ନାହିଁ । ମାତ୍ର ତାଙ୍କର ରାଜନୈତିକ ଷ୍ଟ୍ରାଟେଜି ଅଲଗା । ସେ ପୁଲିସ ଗାଡ଼ିରେ ଚଢ଼ିଲା ବେଳକୁ ତାଙ୍କର ଫଟୋ ଉଠାହେବ ଏବଂ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାରେ ସେଇ ଫଟୋ ବାହାରିବ । ସମସ୍ତେ ଗଲାପରେ, ପୁଲିସ ସେ ସ୍ଥାନ ଛାଡ଼ିବାକୁ ଆରମ୍ଭ କଲାବେଳେ ଜାନକୀବାବୁ ପୁଲିସ୍ ଗାଡ଼ିରେ ବସିଲେ । ତାଙ୍କ ସାଙ୍ଗରେ ପ୍ରାୟ ୧୦୦ ଲୋକଥାନ୍ତି । ଆମର ଆଉ ବିକଳ୍ପ ପନ୍ଥା ନଥିଲା, ତାଙ୍କୁ ଗିରଫ କରି ନ ନେବା ପାଇଁ । ସେ ଗଲା ପରେ, ଏ ଖବର ବିଜୁବାବୁଙ୍କ ପାଖରେ ପହଞ୍ଚିଲା । ସେତେବେଳକୁ ସେ ସଚିବାଳୟରୁ ଚାଲିଯାଇ ନିଜ ବାସଭବନରେ ଥା'ନ୍ତି । ସେଇଠୁ ସେ ମୋତେ ଖୋଜିଲେ ଏବଂ ଡକରା ପଠାଇଲେ । ମୁଁ ଓ କଲେକ୍ଟର ସେଠାକୁ ଗଲୁ । ଏସ.ପିଙ୍କୁ ରାଜଭବନ ସାମ୍ନାରେ ରହିବାକୁ କୁହାଗଲା । ତାଙ୍କ ବାସଭବନ ନବୀନ ନିବାସରେ ପହଞ୍ଚିଲାପରେ ବିଜୁବାବୁ ଉପରୁ ଓହ୍ଲାଇ ମୋତେ ଆଗ ବହେ ଗାଳି ଦେଲେ । ''କ'ଣ ଗୋଟେ ଡି.ଆଇ.ଜି ହୋଇଛୁ । ଜାନକୀଟାକୁ କାହିଁକି ଆରେଷ୍ଟ କଲୁ । ପୁଲିସ୍ ଗାଡ଼ିରୁ ତାକୁ ବାହାର କରି ଦେଇଥାନ୍ତୁ'' । ମୋ କଥା ଶୁଣିବାକୁ ସେ ପ୍ରସ୍ତୁତ ନଥିଲେ । ପରେ ପରେ ସେ ସଚୀବାଳୟକୁ ଗଲେ ମୁଁ ଏବଂ କଲେକ୍ଟର, ଏସ୍.ପି, ବିଜୟ ମହାପାତ୍ରଙ୍କୁ ବୁଝାଇଦେଲୁଯେ ଜାନକୀବାବୁଙ୍କୁ ସେଠାରେ ଗିରଫ କରିନଥିଲେ, ସେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କରିଥାନ୍ତେ, ତେଣୁ ଅନ୍ୟ ଉପାୟ ନଦେଖି, ପରିସ୍ଥିତିକୁ ଆଖି ଆଗରେ ରଖି, ତାଙ୍କୁ ଆରେଷ୍ଟ କରିବାକୁ ପଡ଼ିଥିଲା । ବିଜୟବାବୁ, ସେ କଥା ବିଜୁବାବୁଙ୍କୁ ବୁଝାଇ ଦେଲାପରେ ତାଙ୍କ ରାଗ ଶାନ୍ତ ପଡ଼ିଲା ।

ନିର୍ବାଚନ ଆଗକୁ ଥିବା ଦୃଷ୍ଟିରୁ, ୧୯୯୪ ମସିହା ଡିସେମ୍ବର ମାସ ୩୦ ତାରିଖରେ, ଭୁବନେଶ୍ୱରଠାରେ ଜନତା ଦଳ ତରଫରୁ ଏକ ବିରାଟ ରାଲିର ଆୟୋଜନ କରାଗଲା । ଏହି ରାଲିରେ ଯୋଗ ଦେବାପାଇଁ ଏନ୍.ଟି. ରାମାରାଓ, ତାଙ୍କ ସହଧର୍ମିଣୀ ଲକ୍ଷ୍ମୀପାର୍ବତୀ, ଲାଲୁ ପ୍ରସାଦ ଯାଦବ, ରାମକୃଷ୍ଣ ହେଗେଡ୍ ଆସୁଥାନ୍ତି । ପଟୁଆରରେ ପ୍ରାୟ ୧୦ ଲକ୍ଷ ଲୋକ ଯୋଗ ଦେବେ ବୋଲି ଆଶା କରି ବର୍ତ୍ତମାନର ଓବ୍‌ରାଇ ହୋଟେଲ ସାମ୍ନାରେ ସେତେବେଳେ ପଡ଼ିଥିବା ଖାଲିପଡ଼ିଆରେ ଏକ ବିରାଟ ମଞ୍ଚ ଗଠନ କରାଯାଇଥିଲା । ପଟୁଆର ବିଭିନ୍ନ ଦିଗରୁ ଆସି, ଏଇଠି ଏକତ୍ରିତ ହୋଇ, ସଭା ହେବ, ଯେଉଁଥିରେ କି ଭାରତର ବିଭିନ୍ନ ସ୍ଥାନରୁ ଆସିଥିବା ନେତାମାନେ ଭାଷଣ ଦେବେ । ବିଜୁବାବୁ ଏବଂ ବିଜୟ ମହାପାତ୍ରଙ୍କ ତତ୍ତ୍ୱାବଧାନରେ, ଏହି କାର୍ଯ୍ୟ ଚାଲିଥାଏ । ମୁଁ ଏହାର ଆଇନ୍ ଶୃଙ୍ଖଳା ଦାୟିତ୍ୱରେ ଥା'ଏ । ଏହି ପଟୁଆର ପାଇଁ ପ୍ରାୟ ୧୦ ହଜାର ଛୋଟ, ବଡ଼ ଗାଡ଼ି ଆସିଥିଲା ଏବଂ ଦୁଇଲକ୍ଷ ଲୋକ ଯୋଗ ଦେଇଥିଲେ । କୌଣସି ପ୍ରକାର ଆଇନ୍ ଶୃଙ୍ଖଳା ପରିସ୍ଥିତି ଉପୁଜି ନଥିଲା । ବିଜୁବାବୁଙ୍କ ପୂର୍ବ ରାଗର ଅବସାନ ହେଲା । ସଭା କାର୍ଯ୍ୟ ଅତ୍ୟନ୍ତ ଶାନ୍ତି ଶୃଙ୍ଖଳାରେ ଶେଷ ହୋଇଥିବା ଯୋଗୁ, ସେ ମୋତେ ''ନବୀନ ନିବାସ'' ଡାକି ଧନ୍ୟବାଦ୍ ଦେଇଥିଲେ ।

## ଭୁବନେଶ୍ୱର ପୁଲିସ ରେଞ୍ଜ :

ଏଥି ମଧ୍ୟରେ କେନ୍ଦ୍ରାଞ୍ଚଳ ରେଞ୍ଜରୁ ଭୁବନେଶ୍ୱର ପୁଲିସ ଜିଲ୍ଲାକୁ ଅଲଗା କରିବାକୁ ୧.୪.୯୪ ମସହାରୁ ନୋଟିଫିକେସନ କରାଯାଇ ସାରିଥାଏ । କେନ୍ଦ୍ରାଞ୍ଚଳ ଡି.ଆଇ.ଜିଙ୍କ ଅଧିନରୁ ଭୁବନେଶ୍ୱର ଜିଲ୍ଲାକୁ ଅଲଗା କରିବା ମୂଳରେ କେତେକ ପୁଲିସ୍ ଅଫିସର ମୁଖ୍ୟତଃ ଦାୟୀ । ଆଇନ୍ ଶୃଙ୍ଖଳା ପରିସ୍ଥିତି ଇତ୍ୟାଦି କଥା କହି କେତେଜଣ ପୁଲିସ୍ ଅଫିସର ସେଣ୍ଟ୍ରାଲ୍ ରେଞ୍ଜକୁ ଦୁଇଭାଗ କରିବାକୁ ଚାହୁଁଥିଲେ । କିନ୍ତୁ କେବଳ ଭୁବନେଶ୍ୱରରେ ଜଣେ ଡି.ଆଇ.ଜି. ରହିବେ ବୋଲି ସରକାରଙ୍କ ନିର୍ଦ୍ଦେଶ ହେଲା ଏବଂ ସେଇ ରେଞ୍ଜ ନାଁ ହେଲା ଭୁବନେଶ୍ୱର ରେଞ୍ଜ । କେବଳ ଭୁବନେଶ୍ୱର ପୁଲିସ୍ ଜିଲ୍ଲାକୁ ନେଇ ଏଇ ରେଞ୍ଜ ହେଲା । ବାକି ସବୁ କଟକ ରେଞ୍ଜରେ ରହିଲା । ନୂଆ ହୋଇ କେନ୍ଦ୍ରାଞ୍ଚଳ ରେଞ୍ଜ ନାଁ ବଦଳି ଯାଇ କଟକ ରେଞ୍ଜ ହୋଇଗଲା । ୨୪.୮.୯୪ ମସିହାରେ, ଆଶୁତୋଷ ମିଶ୍ର ଭୁବନେଶ୍ୱର ରେଞ୍ଜର ପ୍ରଥମ ଡି.ଆଇ.ଜି. ଭାବେ ଜଏନ୍ କଲେ ଏବଂ ଗୋଟେ ସରକାରୀ କ୍ୱାଟରରେ ତାଙ୍କ ଅଫିସ୍ କାମ ଆରମ୍ଭ କଲେ । ମୁଁ କଟକ ରେଞ୍ଜର ଡି.ଆଇ.ଜି. ଭାବେ ଥାଏ ।

**ନିର୍ବାଚନ ଏବଂ ମୋ ବଦଳୀ –** ୧୯୯୫ ମସିହା ମାର୍ଚ୍ଚ ମାସରେ ଓଡ଼ିଶା ପାଇଁ ସାଧାରଣ ନିର୍ବାଚନ ହେବାର ଘୋଷଣା କରାଗଲା । ବିଜୁ ପଟ୍ଟନାୟକ ନିଶ୍ଚିତଭାବେ ଆଉଥରେ ଜନତା ସରକାରଙ୍କ ନେତୃତ୍ୱ ନେଇ ମନ୍ତ୍ରୀମଣ୍ଡଳ ଗଠନ କରିବେ ବୋଲି ଆଶା କରିଥିଲେ । ତାଙ୍କର ପାଞ୍ଚବର୍ଷ ଶାସନ କାଳରେ ସେ ମହିଳାମାନଙ୍କ ପାଇଁ ବହୁ ପଦକ୍ଷେପ ନେଇଥିଲେ । ପଞ୍ଚାୟତ ସ୍ତରରେ ତିରିଶଭାଗ ମହିଳାମାନଙ୍କୁ ସ୍ଥାନ ଦେବାଠାରୁ ଆରମ୍ଭ କରି ଆଦିବାସୀ ମହିଳାଙ୍କୁ ତାଙ୍କର ଉପଦେଷ୍ଟା ମଣ୍ଡଳୀରେ ସଦସ୍ୟ ରଖି ତାଙ୍କ ଠାରୁ ଆଦିବାସୀମାନଙ୍କ ଅସୁବିଧା ବୁଝି, ତା ଉପରେ କାର୍ଯ୍ୟକରିବା ଇତ୍ୟାଦି କେତେ କାର୍ଯ୍ୟ ତାଙ୍କୁ ମହିଳା ଭୋଟ ଅଧିକ ମିଳିବା ଆଶା କରାଇ ଦେଇଥିଲା । ତା ଛଡ଼ା କଂଗ୍ରେସ ଦଳରେ ମଧ୍ୟ, ନିର୍ବାଚନ ପୂର୍ବରୁ ଛକା ପଞ୍ଝା ଲାଗିଥିବା ଯୋଗୁ ସେମାନଙ୍କ ମଧ୍ୟରେ ଏକତା ନଥିବା ସେ ଦେଖିଲେ । ଜାନକୀବାବୁ କଂଗ୍ରେସର ନେତୃତ୍ୱ ନେବାକୁ ଚାହୁଁଥିଲା ବେଳେ, ବସନ୍ତବାବୁ ତାଙ୍କୁ ବିରୋଧରେ କାର୍ଯ୍ୟ କରୁଥିଲେ । ସେ ଆଶା ବାନ୍ଧିଥିଲେ, ଏଥରକ ଜିତିଲେ ସେ ମୁଖ୍ୟମନ୍ତ୍ରୀ ହେବେ । ତେଣୁ ନିର୍ବାଚନ ରଣରୁ ସେ ତାଙ୍କ ସମର୍ଥକମାନଙ୍କୁ ଟିକେଟ ଦେଇ କିପରି ଜିତାଇବେ, ସେଥିପାଇଁ କାର୍ଯ୍ୟ କରିବା ଆରମ୍ଭ କରିଥିଲେ । ଏଣେ ଜାନକୀବାବୁ, କଂଗ୍ରେସ ପ୍ରଧାନମନ୍ତ୍ରୀ ନରସିଂହ ରାଓଙ୍କୁ ଧରି, ଓଡ଼ିଶା କଂଗ୍ରେସର ସଭାପତି ଭାବେ ନିର୍ବାଚନର ନେତୃତ୍ୱ ନେଲେ ଏବଂ ନିଜେ କୌଣସି ଆସନରୁ ପ୍ରାର୍ଥୀ ହେଲେ ନାହିଁ । ନିର୍ବାଚନ ପ୍ରଚାର ସମୟରେ ନରସିଂହ ରାଓ କହିଲେ ଯେ ନିର୍ବାଚନ ପରେ ଦଳ ତାର ନିର୍ବାଚିତ ପ୍ରତିନିଧିମାନଙ୍କୁ ମଧ୍ୟରୁ ଜଣଙ୍କୁ ମୁଖ୍ୟମନ୍ତ୍ରୀ ପଦପାଇଁ ବାଛିବେ' ବସନ୍ତବାବୁ ସେଥିରେ ଆଶ୍ୱସ୍ତ ହେଲେ ଏବଂ ଦୁହିଁଙ୍କ ନେତୃତ୍ୱରେ କଂଗ୍ରେସ ନିର୍ବାଚନ ରଣାଙ୍ଗନକୁ ଲମ୍ଫ ଦେଲା । ଏଣେ ବିଜୁବାବୁ, ତାଙ୍କର ଦଳ ନିଶ୍ଚିତଭାବେ ନିର୍ବାଚିତ ହେବ ବୋଲି ମନେ ମନେ ଧରିନେଲେ । ତାଙ୍କୁ ମଧ୍ୟ କେତେକ ନେତା ଏବଂ ପୁଲିସ୍‌ବାଲା ସେଇ କଥା କହିଥିଲେ । ନିର୍ବାଚନ ଯେତେ ପାଖେଇ ଆସିଲା, ପୁଲିସ୍ ସେତିକି ସନ୍ଦିହାନ ହୋଇ ଉଠିଥିଲା, କେଉଁ ଦଳ ନିର୍ବାଚନରେ ସଂଖ୍ୟାଗରିଷ୍ଠ ହୋଇ ଫେରିବ । ତେଣୁ ଉପରିସ୍ଥିତ ପୁଲିସ୍ କର୍ମକର୍ତ୍ତାମାନେ ମୃଦଙ୍ଗର ଦୁଇପଟରେ ଟିପମାରିଲେ । ଦିନରେ ବିଜୁ ତ ରାତିରେ ଜାନକୀ । ପୁଲିସ୍ ଗୁଇନ୍ଦାବିଭାଗ (ସ୍ପେସାଲ୍ ବ୍ରାଞ୍ଚ) ଯାହା ଖବର ଦେଉଥିଲା, ତା ଠାରୁ ଅଧିକ ଖବର ପ୍ରେସ୍‌ବାଲା ସ୍ୱାପ୍‌ଫୁଲ

କରି ବିଭ୍ରାଟ ସୃଷ୍ଟି କରୁଥିଲେ । ଆଜି ଯଦି ଗୋଟେ ସମ୍ବାଦ ପତ୍ର ଭବିଷ୍ୟତ ବାଣୀ ଶୁଣାଇଲେଣି କଂଗ୍ରେସ୯୦ରୁ ଅଧିକ ଆସନରେ ଆସିବ, କାଲି ସେଇ ସମ୍ବାଦ ପତ୍ର କହିଲା ଜନତା ଦଳ ୯୦ଆସନରୁ ଅଧିକା ଆସିବ । ସରକାରୀ ଦଳ ପୁଲିସ୍‌ବାଲାଙ୍କ ରିପୋର୍ଟକୁ ଛାଡ଼ି, ପ୍ରେସ୍ ବାଲାଙ୍କୁ ଧରିଲେ, କାରଣ ପୁଲିସ୍ ସ୍ପେସାଲ ବ୍ରାଞ୍ଚର ରିପୋର୍ଟ ଗୁପ୍ତ । ତା ଦ୍ୱାରା ଜନତାର ମତ ପ୍ରଭାବିତ ହୁଏନି, ମାତ୍ର ପ୍ରେସ ବାଲାଙ୍କୁ ଧରି କେଉଁ ଦଳ ଅଧିକା ପାଇବ, ସେ ବିଷୟରେ ସମ୍ବାଦ ପରିବେଷଣ କରିବାକୁ ମଧ ଭିତରେ ବନ୍ଦୋବସ୍ତ କରାଗଲା । ତେଣୁ ଯେଉଁ ପୁଲିସ ଅଧିକାରୀମାନେ, ନିର୍ବାଚନ ପରେ ଭଲ ସିଡ଼ିପା ପିନ୍ଧିବେ ବୋଲି ଆଶା କରୁଥିଲେ, ସେମାନେ ଦୁଇ ପଟରେ ହାତମାରୁଥାନ୍ତି ।

ପ୍ରାକ୍ ନିର୍ବାଚନ ପ୍ରଚାର ସମୟରେ ମୋ ରେଞ୍ଜରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ହେବାର ଆଶା କରାଯାଇଥିଲେ ମଧ କୌଣସି ସ୍ଥାନରେ ସେପରି ପରିସ୍ଥିତି ଉପୁଜିନଥିଲା । କାରଣ କଟକ ଅଭିଭକ୍ତ ଜିଲ୍ଲାରୁ ସବୁ ନାମ୍‌ଜାଦା ନେତାମାନେ ଲଢୁ ଥା'ନ୍ତି । କିନ୍ତୁ ନିର୍ବାଚନ ଫଳାଫଳ, ବିଜୁବାବୁଙ୍କ ଆଶାକୁ ସଂପୂର୍ଣ୍ଣ ଭାବେ ଧୂଳିସାତ୍ କରିଦେଲା । କଂଗ୍ରେସ ୮୦ ଟି ସ୍ଥାନ ପାଇଲା ବେଳେ, ଜନତା ଦଳ ୪୫ଟି ଏବଂ ବି.ଜେ.ପି. ୯ଟି ସ୍ଥାନ ପାଇଲା । ବି.ଜେ.ପି. ଏଥରକ ଓଡ଼ିଶାରେ ମୁଣ୍ଡ ଟେକିଲା ପରି ଜଣା ଗଲା । ନିର୍ବାଚନ ପରେ କଂଗ୍ରେସର ନେତା ଜେ.ବି. ତାଙ୍କ ସମର୍ଥକମାନଙ୍କୁ ଧରି ନେତା ନିର୍ବାଚନରେ ନିର୍ବାଚିତ ହୋଇଗଲେ ଏବଂ ମୁଖ୍ୟମନ୍ତ୍ରୀ ହେଲେ ଯଦିଓ ସେ ନିର୍ବାଚନରେ କୌଣସି ସ୍ଥାନରେ ଲଢ଼ିନଥିଲେ । ତାଙ୍କୁ ମୁଖ୍ୟମନ୍ତ୍ରୀ କଲାପରେ, କଂଗ୍ରେସ ଦଳରେ ଟଣାଓଟରା ଆରମ୍ଭ ହେଲା ମାତ୍ର ତାଙ୍କୁ ସମ୍ଭାଳିବାକୁ ଯାଇ, ସେ ଦୁଇଜଣ ଉପମୁଖ୍ୟମନ୍ତ୍ରୀ ପଦ ସୃଷ୍ଟି କଲେ । ବସନ୍ତ ଏବଂ ହେମାନନ୍ଦ, ଉପମୁଖ୍ୟମନ୍ତ୍ରୀ ହେଲେ । ବସନ୍ତ ଉପମୁଖ୍ୟମନ୍ତ୍ରୀ ହେଲେ, ସେ ଦାବୀ କରିବସିଲେ, କେତେକ ନିର୍ଦ୍ଦିଷ୍ଟ ବିଭାଗ ନେବା ପାଇଁ । ତାଙ୍କ ଦାବୀକୁ ଜେ.ବି.ପ୍ରତ୍ୟାଖାନ କରିପାରିଲେ ନାହିଁ ଏବଂ ସେ ଯାହା ଦାବୀ କଲେ,ସେଇ ବିଭାଗ ତାଙ୍କୁ ଦିଆଗଲା । ନିର୍ବାଚନରେ ଆସିନଥିବା ଯୋଗୁ, ଛ ମାସ ମଧରେ ଜେ.ବି. କୌଣସି ଗୋଟିଏ ସ୍ଥାନରୁ ଲଢ଼ିବାକୁ ପଡ଼ିବ, ସେଇ ଭୟରେ ସେ ବସନ୍ତଙ୍କୁ ଡରିକରି ରହିଥାନ୍ତି ଏବଂ ବସନ୍ତଙ୍କ ଔଦ୍ଧତ୍ୟକୁ ସହିଯିବାକୁ ବାଧ ହେଉଥାନ୍ତି ।

ଜେ.ବି. ମୁଖ୍ୟମନ୍ତ୍ରୀ ହେଲାପରେ, ପ୍ରଥମେ ଇନ୍ଦ୍ରଜିତ୍ ରାଏଙ୍କୁ, ଆଡ୍‌ଭୋକେଟ୍ ଜେନେରାଲ୍ ପଦବୀ ଦେଲେ । ପରେ ପରେ, ଅଫିସର ମାନଙ୍କ ବଦଳି ପାଇଁ ତାଙ୍କ ପାଖେ ଭିଡ଼ ଆରମ୍ଭ ହେଲା । ପୁଲିସ୍‌ର ଅନାଦି ସାହୁ ଏବଂ ଅନ୍ୟମାନେ ତାଙ୍କ ପାଖେ ପହଞ୍ଚିଗଲେ । ଡି.ଜି. ମିଃ ମହାପାତ୍ର, ଏମାନଙ୍କ ଜରିଆରେ ଜେ.ବିଙ୍କ ପାଖେ ପହଞ୍ଚିଲେ । ଆଗରୁ ଅନାଦି ବାବୁ, ମଦମୃତ୍ୟୁ ତଦନ୍ତ ସମୟରେ ଜନତା ସରକାରଙ୍କ ବିରୁଦ୍ଧରେ ଯାଇଥିବା ହେତୁ, କଂଗ୍ରେସ ସରକାର ଆସିଲା ପରେ ସେ କଂଗ୍ରେସ ମୁଖ୍ୟଙ୍କ ନିକଟତର ହେଲେ ଏବଂ ପୁଲିସ ବିଭାଗର ଅଦଳବଦଳରେ ସେ ମୁଖ୍ୟ ଅଂଶ ଗ୍ରହଣ କଲେ ବୋଲି କୁହାଗଲା । ମୁଖ୍ୟମନ୍ତ୍ରୀ ହେବାର ପ୍ରାୟ ପନ୍ଦର ଦିନ ପରେ, ପୁଲିସ ବିଭାଗରେ ବଦଳି ଧନ୍ଦା ଆରମ୍ଭ ହୋଇଗଲା । ଅନାଦିବାବୁ ଏବଂ ପୁଲିସ୍‌ରେ ତାଙ୍କର ସମର୍ଥକମାନଙ୍କ ପରାମର୍ଶରେ ଡି.ଜି. ଶ୍ରୀ ମହାପାତ୍ର ପରିଚାଳିତ ହେଲେ । ସେ ଯଦିଓ ସମସ୍ତଙ୍କ ଠାରୁ ସିନିୟର ମାତ୍ର ବିଜୁବାବୁଙ୍କ ସମୟରେ ଡି.ଜି. ହୋଇଥିବା

ଯୋଗୁ, ଜାନକୀ ଆସିଲାପରେ, ତାଙ୍କର ବଦଳିକୁ ଭୟଥାଏ । ତେଣୁ ଜାନକୀଙ୍କ ପାଖ ଲୋକ ଅନାଦିକୁ ସେ ହାତ କରିଥାନ୍ତି । ପ୍ରଶାସନରେ ମୁଖ୍ୟ ଶାସନ ସଚିବ ରବି ନାରାୟଣ ଦାସ ଆଗରୁ ବିଜୁବାବୁଙ୍କ ସମୟରେ ଚାକିରୀରେ ଛ'ମାସ ଏକ୍ସଟେସନ ପାଇଥିଲେ । ଆଇ.ଏ.ଏସ. ବାଲା ଚାହିଁ ବସିଥିଲେ,ଆର୍.ଏନ୍. ଦାସ ଯିବେ ମାତ୍ର ଜାନକୀବାବୁ ତାଙ୍କୁ ଆଉ ଛ'ମାସ ଏକ୍ସଟେନ୍ସନ ଦେଇ ମୁଖ୍ୟ ଶାସନ ସଚିବ କରି ରଖିଲେ । ପୁଲିସ୍‌ରେ ଅଦଳ ବଦଳ ପ୍ରପୋଜାଲରେ ଡି.ଜି. ମୋତେ କହିଥିଲେ, ମୋତେ ଡି.ଆଇ.ଜି. ପ୍ରଶାସନ କରି ଆଣିବା ପାଇଁ ପ୍ରସ୍ତାବ ଦେଇଛନ୍ତି ଏବଂ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ପାଇଁ ସୁରେନ୍ଦ୍ରର ପ୍ରସ୍ତାବ ଯାଇଛି । କଂଗ୍ରେସ ସରକାର ଆସିଲାପରେ ମୋର କେନ୍ଦ୍ରାଞ୍ଚଳରୁ ବଦଳି ହେବ, ଏହା ମୁଁ ନିଶ୍ଚିତ ଥିଲି । ତାଛଡ଼ା ମୋର ଏଠାରେ ତିନିବର୍ଷରୁ ଊର୍ଦ୍ଧ୍ୱ ସମୟ ହୋଇଥିବା ଯୋଗୁ ମୁଁ ବଦଳି ହୋଇ କଟକରେ ରହିବାକୁ ଚାହୁଁଥିଲି ।

ଏପ୍ରିଲ୍ ପହିଲା ୧୯୯୫ ଦିନ ଉତ୍କଳ ଦିବସ ଉପଲକ୍ଷେ ଆୟୋଜିତ ସଭାରେ ମୋତେ ସମ୍ମାନିତ ଅତିଥିଭାବେ ନିମନ୍ତ୍ରିତ କରିଥାନ୍ତି । ମୁଖ୍ୟଅତିଥି ଡେପୁଟି ଚିଫ୍ ମିନିଷ୍ଟର ବସନ୍ତ ବିଶ୍ୱାଳ, ଜନତା ସମୟରେ ସେ ମୋର ବିରୋଧି ହୋଇଯାଇଥାନ୍ତି । ତାଙ୍କୁ ଆମ ପୁଲିସ୍‌ରୁ କେତେଜଣ ଧାରଣା ଦେଇଥିଲେ ଯେ, ସେ ସରକାରରେ ନଥିଲା ବେଳେ ମୁଁ ତାଙ୍କ କଥା ଶୁଣୁନଥିଲି । ଏକଥା ଆଦୌ ସତ୍ୟ ନୁହେଁ । ସେ କେବେ ମୋତେ କିଛି କହିନଥିଲେ କି ମୁଁ ଜାଣିବାରେ ତାଙ୍କର କିଛି କାମ କରିନଥିଲି । ଥରେ ମୁଁ ଘରେନଥିଲା ସମୟରେ ସେ ମୋତେ ଟେଲିଫୋନ କରିଥିଲେ । ମୁଁ ନଥିବା ଯୋଗୁ ଅର୍ଡ଼ଲି ମନା କରିଦେଇଥିଲା । କିନ୍ତୁ ତାଙ୍କ ପାଖ ଲୋକ କହିଥିଲେ ଯେ ମୁଁ ଘରେ ଥାଇ ତାଙ୍କ ଟେଲିଫୋନ ଧରିଲିନି । ଥରେ ସେ ମୋତେ, ସରକାରକୁ ଆସିଲା ପରେ ଏଇକଥା କହିଥିଲେ । ଲୋକ ଯେତେବେଳେ ନଦୀର ଆରପଟେ ଥା'ନ୍ତି, ଏ ପଟ ଦୃଶ୍ୟ ତାଙ୍କୁ ଅସ୍ପଷ୍ଟ.ଦିଶେ । ପାଖରେ ଠିଆ ହୋଇ ଥିବା ଲୋକ ଯାହା କହିଥାନ୍ତି, ସେଇ କଥାକୁ ହିଁ ବିଶ୍ୱାସ କରାଯାଏ ଏବଂ ସତ୍ୟ ବୋଲି ଧରି ନିଆଯାଏ । ତେଣୁ ତାଙ୍କ ସହିତ ମୋର କିଛି ମତାନ୍ତର ନଥିଲେ ମଧ ସେ ମୋ ଉପରେ ସନ୍ତୁଷ୍ଟ ନଥାନ୍ତି । ମାରୁତି ମଣ୍ଡପରେ ବସିଥିଲା ବେଳେ ସଭାର ଆୟୋଜକ ଅକ୍ଷୟ ପଣ୍ଡା ତାଙ୍କୁ ପୁଲିସ୍‌ରେ ବଦଳି ବିଷୟରେ ପଚାରିଲେ । ସେ କହିଲେ, ବଦଳି ହେଉଛି ଏବଂ କଟକ କେନ୍ଦ୍ରାଞ୍ଚଳକୁ ସ୍ୱାଇଁ ଡି.ଆଇ.ଜି. ହୋଇ ଆସୁଛନ୍ତି । ଏକଥା ମୁଁ ଆରମ୍ଭରୁ ଜାଣିଥିଲି । ଡି.ଜି.ଆର. ଏନ୍ ମହାପାତ୍ର, ମୋତେ ଡି.ଆଇ.ଜି. ପ୍ରଶାସନ କରି ଆଣିବାକୁ ଚାହୁଁଥିଲେ ଏବଂ ସୁରକୁ ସେଣ୍ଟ୍ରାଲରେଞ୍ଜକୁ ଆସିବାକୁ ପ୍ରସ୍ତାବ ଦେଲେ । ସେଇ ପ୍ରସ୍ତାବ ଅନୁସାରେ ଘରୋଇ ସଚିବ, ମିଃ ରଥ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫାଇଲ ପଠାଇଥିଲେ । ଫାଇଲ, ମୁଖ୍ୟମନ୍ତ୍ରୀଙ୍କ ପାଖକୁଗଲା ପରେ, ସେଇଠି ଆମ ପୁଲିସ୍‌ରୁ ଜଣେ ବ୍ୟକ୍ତି, ଯେକି ମୁଖ୍ୟ ଏବଂ ଉପମୁଖ୍ୟଙ୍କ ପାଖେ ପୁଲିସ୍ ଅଦଳ ବଦଳରେ ଭାଗ ନେଇଥିଲେ, ସେ ମୁଖ୍ୟମନ୍ତ୍ରୀଙ୍କ ପାଖେ ମୋର ବଦଳି ଡି.ଆଇ.ଜି. ପ୍ରଶାସନକୁ କାଟି, ମୋତେ କୋରାପୁଟ ସୁନାବେଡ଼ାକୁ ବଦଳି କରିଥିଲେ । ଜେ.ବି. ତାଙ୍କରି କଥାରେ ମୋର ବଦଳି କୋରାପୁଟ୍‌କୁ କରିଦେଲେ । ମୁଁ ବୁଝିପାରିଲିନି ଯେ, ଜେ.ବି. ୧୯୮୦ ମସିହାରୁ ମୁଖ୍ୟମନ୍ତ୍ରୀ ଥିଲାବେଳୁ ମୁଁ ଏସ୍.ପି. ଭୁବନେଶ୍ୱର ଭାବେ ତାଙ୍କ ପାଖେ ସାଢ଼େତିନିବର୍ଷରୁ ଅଧିକ ସମୟ ଥିଲି ଏବଂ ସେତେବେଳର ତାଙ୍କୁ ନେଇ ସମସ୍ତ ସମସ୍ୟା ମୁଁ ଜାଣିଥିଲି । କେବେ ସେ ମୋ

କାର୍ଯ୍ୟରେ ଅସନ୍ତୁଷ୍ଟ ନଥିଲେ । ସେହିପରି ତାଙ୍କର ଦ୍ୱିତୀୟ ମୁଖ୍ୟମନ୍ତ୍ରୀ ସମୟରେ, ମୁଁ ପୁରୀ ଏସ.ପି. ଭାବେ ଥିଲି । ପ୍ରତ୍ୟେକ ମାସରେ ସେ ପୁରୀ ନିୟମିତ ଯାଉଥିଲେ ଏବଂ ସେତିକି ବେଳେ, ତାଙ୍କର ଜଙ୍କିଆ ଥାନାରେ ନିଜ ଗ୍ରାମର ସମସ୍ୟା ଏବଂ ତାକୁ ନେଇ ମାଲି, ମକଦ୍ଦମା ସମ୍ବାଦ ପରିବେଷଣ, ସେସବୁ ମୁଁ ଜାଣିଥିଲି ଏବଂ ଯେତିକି ମୋ ଦ୍ୱାରା ହେବା କଥା, ସାହାଯ୍ୟ କରିଥିଲି । ତାଛଡ଼ା ସେ ଯେତେବେଳେ ୧୯୯୦ ମସିହା ନିର୍ବାଚନରେ ହାରିଗଲେ ଏବଂ ଯେଉଁ ସମୟରେ ଦିଲ୍ଲୀଯାଇ, ତାଙ୍କର ସଫଦରଜଙ୍ଗ ଘରେ ରହୁଥିଲେ, ପ୍ରାୟ ପ୍ରତ୍ୟେକ ସମୟରେ ମୁଁ ତାଙ୍କୁ ଦେଖା କରୁଥିଲି । ସେତେବେଳେ କୌଣସି ଅଫିସର ତାଙ୍କ ପାଖ ମାଡୁ ନଥିଲେ । ଦିଲ୍ଲୀରେ ବହୁତ ଅଫିସର ଥିଲେ, ଯେଉଁମାନେ ପୂର୍ବ ସମୟରେ ତାଙ୍କ ପାଖରେ ଘନିଷ୍ଠଥିଲେ, ସେମାନଙ୍କୁ ମୁଁ ଦିନେ ହେଲେ ତାଙ୍କ ପାଖରେ ଦେଖିନି କିଛି କାମ ନଥିଲେ ମଧ୍ୟ ମୁଁ ତାଙ୍କୁ ଦେଖା କରିଛି । ତାଛଡ଼ା ମୁଁ ଦିଲ୍ଲୀରୁ ଆସିଲା ପରେ, କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଥିଲା ବେଳେ, ତାଙ୍କ ନିର୍ବାଚନମଣ୍ଡଳୀ ଆଠଗଡ଼ରୁ ଯେତେ ପ୍ରକାର ସମସ୍ୟା ଆସେ ସେ କଟକ ଶେଖ୍‌ବଜାର ''ଗୁଡୁ'' ମାଧ୍ୟମରେ ମୋ ପାଖକୁ ପଠାନ୍ତି । ସେ ମଧ୍ୟ ଫୋନ କରନ୍ତି ଏବଂ ମୁଁ କେବେ ହେଲେ ସେ କହିଥିବା କାର୍ଯ୍ୟକୁ ଉପେକ୍ଷିତ କରିନଥିଲି । ଏସବୁ ସତ୍ତ୍ୱେ ସେ ମୋର ବଦଳି, କୋରାପୁଟକୁ ଆଉ ଜଣେପୁଲିସ ଅଫିସରଙ୍କ କଥାରେ ପଡ଼ି କଲେ । ମୋତେ ଆଶ୍ଚର୍ଯ୍ୟ ଏବଂ କଷ୍ଟ ଲାଗିଲା । ସେ ପ୍ରାୟ ୧୧ଟା ବେଳେ ଫାଇଲ୍‌ରେ ଦସ୍ତଖତ କଲେ । ମୁଁ ୧୨.୩୦ ବେଳକୁ ଏ.ବି. ତ୍ରିପାଠୀଙ୍କ ପାଖରୁ ଖବର ପାଇଲି ଯେ ମୋର ସୁନାବେଡ଼ା ବଦଳି ହୋଇଛି । ମୁଖ୍ୟମନ୍ତ୍ରୀଙ୍କ ପାଖରେ ପୂର୍ବ ପ୍ରସ୍ତାବ କାଟ ଖାଇଗଲା । ଦିନ ସାଢ଼େ ଗୋଟେ ବେଳେ, ମୁଁ ମୁଖ୍ୟମନ୍ତ୍ରୀଙ୍କ ସଚିବାଳୟ ଅଫିସରେ ପହଞ୍ଚିଲି । ସେତେବେଳକୁ ଫାଇଲ ଘରୋଇ ସଚିବଙ୍କ ପାଖକୁ ଯାଇ ନୋଟିଫିକେସନ୍ ହେଉଥାଏ । ପ୍ରାୟ ଘଣ୍ଟାଏ ତାଙ୍କ ସଚିବଙ୍କ କକ୍ଷରେ ଅପେକ୍ଷା କଲା ପରେ, ସେ ମୋତେ ଡକାଇଲେ ନାହିଁ । ସାଢ଼େ ଦୁଇଟା ବେଳକୁ ଅଫିସରୁ ବାହାରିଲା ବେଳକୁ ମୁଁ କରିଡ଼ରରେ ତାଙ୍କୁ ଦେଖା କଲି ଏବଂ ମୋ ସୁନାବେଡ଼ା ବଦଳି କଥା କହିଲି । ମୋ କଥା ଶୁଣି ସେ ସେମିତି ଚାଲୁଚାଲୁ କହିଲେ '' ସୁନାବେଡ଼ା ରେଞ୍ଜ ଅବସ୍ଥା ବଡ଼ ଖରାପ ହୋଇ ଗଲାଣି । ମୁଁ ସେଠାକୁ ଜଣେ ଭଲ ଅଫିସର ଦେବାକୁ ଚାହୁଁଥିବା ଦୃଷ୍ଟିରୁ ତୁମକୁ ସେଠି ପୋଷ୍ଟିଂ କରିଛି । ତୁମେ ଯାଅ, ମୁଁ ଚାରି ମାସ ପରେ ନେଇ ଆସିବି'' । ପ୍ରତ୍ୟେକ ରାଜନୈତିକ ନେତାଙ୍କ ପ୍ରତିଶୃତି ପାଣିର ଗାର ସଦୃଶ ଏକଥା ମୋତେ ବୁଝିବାକୁ ବାକିନଥିଲା ଏବଂ ଜେ.ବି.ଙ୍କ କଥା ଉପରେ ମୋର ଆଦୌ ବିଶ୍ୱାସ ନଥିଲା । ମୁଁ ତାଙ୍କୁ କହିଲି ''ସାର୍ ମୁଁ ଛୁଟିରେ ଯିବି ପଛେ, ସୁନା ବେଢ଼ା ଯିବିନି ।'' ସେତେବେଳକୁ ତାଙ୍କ ସାଙ୍ଗରେ ମୁଁ ଲିଫ୍‌ଟିରୁ ଓହ୍ଲାଇ ତାଙ୍କ ଗାଡ଼ି ପାଖେ ପହଞ୍ଚି ଯାଇଥିଲି । ସେ ଗାଡ଼ିରେ ବସିଥିଲେ, ମୁଁ କଟକ ଫେରିଲି ।

ମୁଁ ଫେରିଲା ପରେ, ମୁଖ୍ୟ ଶାସନ ସଚିବ କେତେକ ଅଦଳ ବଦଳ ବିଷୟରେ କଥାବାର୍ତ୍ତା କରି, ଦିନ ଗୋଟାଏ ବେଳେ ଯେଉଁ ନୋଟିଫିକେସନ ବାହାରିଥିଲା, ତାଦେହରେ ପରିବର୍ତ୍ତନ କରି ରାତି ନଅଟା ବେଳେ ନୋଟିଫିକେସନ୍‌ରେ ମୋର ସୁନାବେଢ଼ା ପରିବର୍ତ୍ତେ ଭୁବନେଶ୍ୱର ଫରେଷ୍ଟ କରପୋରେସନ୍‌କୁ ଭିଜିଲାନ୍ସ ଡି.ଆଇ.ଜି. ଭାବେ ବଦଳି ହେଲା ବୋଲି କହିଲେ ମୁଁ ଏକଥା ଶୁଣିଲା ପରେ ମନେ ମନେ ଠିକ୍ କଲି, ଦୁଇଦିନ ମଧ୍ୟରେ ଭୁବନେଶ୍ୱରରେ ଜଏନ୍ କରିବି । ପ୍ରାୟ ରାତି ଦଶଟା ବେଳକୁ ଫରେଷ୍ଟ କରପୋରେସନର ଏମ.ଡି. ମିଃ. ପ୍ରସାଦ

ଟେଲିଫୋନ କରି ଅନୁରୋଧ କଲେ ମୁଁ ଯେପରି ଶୀଘ୍ର ଜଏନ୍ କରେ ଏବଂ ଏକଥା ମଧ କହିଲେ ଯେ ମୋର କଟକରେ ରହିବାର ସବୁ ବନ୍ଦୋବସ୍ତ କରିଦେବେ । ପରଦିନ ସକାଳୁ ଡି.ଜି. ମିଃ ମହାପାତ୍ର, ଫୋନ କରି ପଚାରିଲେ ଯେ ସେ ଦେଇଥିବା ବଦଳି ପ୍ରସ୍ତାବରେ କିପରି ଆମୂଳଚୂଳ ପରିବର୍ତ୍ତନ ହେଲା । ତାର ପ୍ରତିବାଦରେ ସେ ସକାଳୁ ସକାଳୁ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି, ପୁଣି ବଦଳିଆଦେଶକୁ ବାତିଲି କରି, ଆଉ ଗୋଟିଏ ଆଦେଶ ସେଇ ଦିନ ବାହାର କଲେ । ଏଇ ଆଦେଶରେ ମୋର ବଦଳି ଆଦେଶ ପୁଣି ବଦଳାଯାଇ ମୋତେ କଟକ ଟ୍ରେନିଂ ରିସର୍ଚ୍ଚ ଏବଂ ଡେଭଲପମେଣ୍ଟ ଡି.ଆଇ.ଜି. କରି ପୋଷ୍ଟିଂ କଲେ ଏବଂ ବଦଳି ଆଦେଶ ବାହାରିଲା ପରେ, ମିଃ ମହାପାତ୍ର ମୋତେ ଫୋନ କରି କହିଲେ । ଅବଶ୍ୟ ମୋ ସହିତ ଅନ୍ୟମାନଙ୍କର ମଧ ବଦଳି ଆଦେଶକୁ ବଦଳା ଯାଇଥିଲା । ଆଦେଶ ଆସିବାର ଦୁଇ ଦିନ ପରେ ମୁଁ ସୁରେନ୍ଦ୍ରକୁ ଦାୟିତ୍ୱଦେଇ ଟି.ଆର୍.ଡିରେ ଜଏନ୍ କଲି । ସୁରେନ୍ଦ୍ର ଜଏନ୍ କରିବାର ଅଳ୍ପଦିନ ପରେ, ଭୁବନେଶ୍ୱର ରେଞ୍ଜ ଡି.ଆଇ.ଜି. ପଦ ଉଠିଗଲା ଏବଂ କଟକ ରେଞ୍ଜ ମଧ ଉଠି ଯାଇ, ପୁଣି କେନ୍ଦ୍ରାଞ୍ଚଳ ହୋଇଗଲା ।

ଜେ.ବି. ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେଲାପରେ, ଉପର ପଦପଦବୀରେ ଅଦଳ ବଦଳ ହେବା ସଙ୍ଗେ ସଙ୍ଗେ ପୁଲିସ୍‌ରେ ପ୍ରମୋଶନ କଥା ଉଠିଲା । ସେତେବେଳକୁ ଅନାଦି ସାହୁ ଡି.ଆଇ.ଜି. ର୍‍ୟାଙ୍କରେ କ୍ରୀଡ଼ା ନିର୍ଦ୍ଦେଶକ ଥା'ନ୍ତି । ସେ ପୁଲିସ୍‌କୁ ଫେରିବାକୁ ଚାହୁଁଥିଲେ । ଜେ.ବି. ମୁଖ୍ୟମନ୍ତ୍ରୀ ହେଲା ପରେ, ସେ ତାଙ୍କର ପ୍ରମୋଶନ ପାଇଁ ଲାଗିପଡ଼ିଲେ । ଓଡ଼ିଶାରେ ବିଗତ କେତେବର୍ଷ ଧରି,ବ୍ୟକ୍ତି ବିଶେଷଙ୍କୁ ଆଖି ଆଗରେ ରଖି ''ପଦଉନ୍ନତି'' ତ୍ୱରାନ୍ୱିତ ହୁଏ ଯାହାର ରାଜନିତୀଆ ଧର୍ମବାପ ନାହିଁ, ତାର ପଦନ୍ନୋତି ସମୟ ଆସିଥିଲେ ମଧ ଫାଇଲ୍ ଉପରକୁ ଉଠେନି । ଅନାଦି ସାହୁଙ୍କୁ, ଆଇ.ଜି. ପ୍ରଶାସନ କରି ଆସିବାକୁ ଜେ.ବି. ଚାହାଁନ୍ତୁ କି ନଚାହାନ୍ତୁ, ଅନାଦି ସାହୁ ଚାହିଁଥିଲେ ।

ମିଃ ମହାପାତ୍ର ମଧ ତାଙ୍କୁ ପୁଲିସ୍‌କୁ ଫେରାଇ ଆଣି, ଆଇ.ଜି. ପ୍ରମୋଶନ ଦେବା ପାଇଁ ମୁଖ୍ୟମନ୍ତ୍ରୀଙ୍କ କାନରେ କହିଥିଲେ ମାତ୍ର ଅନାଦିବାବୁଙ୍କୁ ଆଇ.ଜି. କରିବାକୁ ହେଲେ, ତାଙ୍କ ଉପରେ ଆଉ ତିନିଜଣଙ୍କୁ ପଦନ୍ନୋତି ଦେବାକୁ ପଡ଼ିବ । ସେ ପର୍ଯ୍ୟନ୍ତ ତାଙ୍କ ଉପରେ ଥିବା ଆଉ ତିନିଜଣ ଅଫିସର ପଦନ୍ନୋତି ପାଇନଥାନ୍ତି । ଅନାଦିବାବୁଙ୍କୁ ଆଇ.ଜି. ପ୍ରମୋସନ ଦେବାପାଇଁ, ଜେ.ବି. ଏକାଥରକେ ଚାରିଜଣଙ୍କୁ ପ୍ରମୋଶନ ଦେଲେ ଏବଂ ଅନାଦିବାବୁଙ୍କୁ ଆଇ.ଜି. ପ୍ରଶାସନ କରି ପୋଷ୍ଟି କଲେ ।

ସେଇ ସମୟରେ ଅମୀୟ ଭୂଷଣ ତ୍ରିପାଠୀ, ଡି.ଜି. ପାହ୍ୟାରେ ଡାଇରେକ୍ଟର ଭିଜିଲାନ୍ସ ଥା'ନ୍ତି । ଜନତା ସରକାର ୧୯୯୦ ମସିହାରେ ସରକାରକୁ ଆସିବାପରେ ପୂର୍ବ କଂଗ୍ରେସ ମନ୍ତ୍ରୀମାନଙ୍କ ବିରୁଦ୍ଧରେ ଭିଜିଲାନ୍ସ କେସ୍ କରି, ସେମାନଙ୍କ ଘର ଖାନ୍‌ତଲାସ ପରେ, ଭିଜିଲାନ୍ସ କେସ୍ ପ୍ରାୟ ୧୫ ଜଣ ମନ୍ତ୍ରୀଙ୍କ ନାମରେ ରୁଜୁ କରିଥିଲେ । ସେଇ ପ୍ରକାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ପରେ, ଜାନକୀ ସରକାର ଜନତା ସରକାରଙ୍କ ମୁଖ୍ୟ ବିଜୁବାବୁଙ୍କ ନାମରେ ଏବଂ ଅନ୍ୟମନ୍ତ୍ରୀ ସାତ ଆଠ ଜଣଙ୍କ ନାମରେ ଭିଜିଲାନ୍ସ କେସ୍ ଆରମ୍ଭ କରି ତାଙ୍କ ଘର ମଧ ଖାନତଲାସ କରାଇଥିଲେ । ବିଜୁବାବୁ, ଚଉଦ୍ୱାରରେ ବନ୍ଦ ହୋଇ ଯାଇଥିବା ଟିଟାଗଡ଼ କାଗଜ

କଳକୁ ପୁନଉଦ୍ଧାର କରି ଥାପରଗ୍ରୁପ୍‌କୁ ଦେଇ ତାହାକୁ ପରିଚାଳନା କ୍ଷମ କରିଥିଲେ । ଏହି କାଗଜ କଳ ଚାଲିବାଦ୍ୱାରା ପ୍ରାୟ ୧୦୦୦ ରୁ ଊର୍ଦ୍ଧ୍ୱ ଶ୍ରମିକ ଏବଂ ସେମାନଙ୍କ ପରିବାରବର୍ଗ ଉପକୃତ ହୋଇଥିଲେ । କଂଗ୍ରେସ୍ ସରକାର ଆସିଲାପରେ, ବିଜୁବାବୁଙ୍କ ନାମରେ ଅଭିଯୋଗ ଆଣିଲେ ଯେ, ଥାପର ଗ୍ରୁପ୍ ଠାରୁ ଟଙ୍କା ନେଇ ତାଙ୍କୁ ଏ ସୁବିଧା ଦେଇଛନ୍ତି ଏବଂ ବାଉଁଶ କିଣିବା ପାଇଁ ରିହାତି ଦେଇଛନ୍ତି । କେବଳ ସେତିକି ନୁହେଁ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ କଳିଙ୍ଗର ପୂର୍ବ ନୌବାଣିଜ୍ୟର ଇତିହାସକୁ ପରିଚିତ କରାଇବା ପାଇଁ ପାରାଦ୍ୱୀପ ବନ୍ଦର ଠାରୁ ଗୋଟିଏ ମଣିଷ ଚାଳିତ ପୋତ, ବାଲିଦ୍ୱୀପ ଅଭିମୁଖରେ ଯାତ୍ରା ଆରମ୍ଭ କରାଇ, ସେଇ ପୋତରେ ଓଡ଼ିଶାର ଗୋଟିଏ ଝିଅ ସଙ୍ଗେ କେତେକ ନୌବାହୀନର ଅଫିସରକୁ ପଠାଇଥିଲେ । ପୂର୍ବ କାଳରେ ଯେଉଁ ବାଟ ଏବଂ ଯେଉଁ ସମୟରେ କଳିଙ୍ଗର ବଣିକମାନେ ନୌବାଣିଜ୍ୟ ପାଇଁ ବାଲି, ସୁମାତ୍ରା, ଜାଭା ପ୍ରଭୃତି ଦ୍ୱୀପପୁଞ୍ଜକୁ ବାଣିଜ୍ୟତରୀ ନେଇ ଯାତ୍ରା ଆରମ୍ଭ କରୁଥିଲେ, ବିଜୁବାକୁ ସେଇପରି ଏଭ ତରୀଟିକୁ ପାରାଦ୍ୱୀପ ବନ୍ଦରଠାରୁ ବିଦାୟ ଦେଇଥିଲେ । ତରୀ ବାଲିଦ୍ୱୀପରେ ପହଞ୍ଚିଲା ପୂର୍ବରୁ ସେଠାରେ ଓଡ଼ିଶାର ଏକ ସାଂସ୍କୃତିକ ଦଳ, ମଧ ବାଲିରେ ପହଞ୍ଚିଥିଲେ । ପ୍ରାୟ ଆଠ ଦିନ ଧରି ଉତ୍କଳୀୟ ସଂସ୍କୃତି ଏବଂ ବାଲିଦ୍ୱୀପର ସଂସ୍କୃତିର ଏକ ମିଳନ ଘଟିଥିଲା । ଏହାପରେ ବାଲି ଦ୍ୱୀପପୁଞ୍ଜରୁ ମଧ ନୃତ୍ୟଦଳ ଓଡ଼ିଶା ଆସି ବାଲିର ରାମାୟଣ ନୃତ୍ୟ ପ୍ରଦର୍ଶନ କରିଥିଲେ । ସେମାନଙ୍କ ଆସିବା, ଯିବା ଏବଂ ରହିବା ଖର୍ଚ୍ଚ ସେ ତାଙ୍କ ପକେଟ୍‌ରୁ ଦେଇଥିଲେ । ବିଜୁବାବୁଙ୍କୁ ଆଧୁନିକ ଓଡ଼ିଶାର ଖାରବେଳ ବୋଲି ଲୋକମାନେ କହୁଥିଲେ । ଏପ୍ରିଲ୍ ପହିଲା ୧୯୯୪ ଦିନ ସକାଳ ୬ଟାରେ ବିଜୁବାବୁ, ବାରବାଟୀ ଦୁର୍ଗର ମୁଖ୍ୟ ଫାଟକ ଉପରେ ଠିଆ ହୋଇ କହିଥିଲେ ''ମୁଁ ଏବର ଖାରବେଳ କହୁଛି'' ତାଙ୍କ ଭାଷଣ ସେଦିନ ହୃଦୟସ୍ପର୍ଶୀ ଥିଲା । ମୁଁ ନିଜେ ସେଇ ସମୟରେ ଉପସ୍ଥିତ ଥିଲି । କଂଗ୍ରେସ ସରକାର ଆସିଲା ପରେ, ତାଙ୍କ ନାମରେ ଭିଜିଲାନ୍ସ ଇନ୍‌କ୍ୱାରୀ ଆରମ୍ଭ ହେଲା । ବାଲିଯାତ୍ରା ବିଷୟରେ ତଦନ୍ତ କଲା ବେଳେ, ଭିଜିଲାନ୍ସ ତାଙ୍କର ଗୋଟିଏ ବ୍ୟାଙ୍କ୍ ଆକାଉଣ୍ଟ, ବାପୁଜୀନଗର ବ୍ୟାଙ୍କ୍‌ରୁ ପାଇଥିଲେ ଏବଂ ତାହା ଉପରେ ତର୍ଜମା କରି, ତାଙ୍କୁ ସେଇ କେସ୍‌ରେ ଚାର୍ଜସିଟ୍ କଲେ । ବିଜୁବାବୁଙ୍କ ଶେଷ ଜୀବନରେ ଏହା ଏକ ଶକ୍ତ ଧକ୍କା ଥିଲା ।

ଏକଥା ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା କିପରି ଭାବେ ଶତାବ୍ଦୀର ଶେଷଭାଗରେ ପୁଲିସ୍‌କୁ ରାଜନୈତିକ ଉଦ୍ଦେଶ୍ୟ ସାଧନରେ, ରାଜନୈତିକ ନେତାମାନେ ବ୍ୟବହାର କରୁଥିଲେ । ଏହା କେବଳ ଯେ ଓଡ଼ିଶାରେ ଥିଲା ଏକଥା ନୁହେଁ, ସାରା ଦେଶରେ ଏହିପ୍ରକାର ଅବସ୍ଥା ଦେଖା ଦେବା ଦ୍ୱାରା ପୁଲିସ୍‌ର ମର୍ଯ୍ୟାଦାରେ କଳଙ୍କ ଲାଗିଗଲା । ଯେଉଁ ମନ୍ତ୍ରୀ, ନେତାମାନେ ତାଙ୍କ ଦଳ ସରକାରରେ ଥିଲା ବେଳେ ନିର୍ମଳ ଭାବମୂର୍ତ୍ତୀ ଧାରଣ କରି ଜନତାର ସେବାରେ ଲାଗିଥିଲେ ବୋଲି କହି ବୁଲୁଥିଲେ, ସେମାନେ ଶାସନ କ୍ଷମତାରୁ ଗଲା ପରେ ପରେ କଳଙ୍କିତ ଭାବମୂର୍ତ୍ତୀ ଧାରଣ କଲେ ଏବଂ ଯେଉଁ ଭିଜିଲାନ୍ସ ବିଭାଗ, ସେ ସମୟରେ ତାଙ୍କ ବିରୁଦ୍ଧରେ କୌଣସି ପ୍ରକାର ଅଭିଯୋଗ ପାଇଁ ତଦନ୍ତ କରିନଥିଲେ, ସେମାନେ ସରକାରରୁ ଗଲାପରେ, ତାଙ୍କ ନାମରେ ମାମଲା ଦାୟର କରି ଚାର୍ଜ ସିଟ୍ କଲେ । ଓଡ଼ିଶାରେ କଂଗ୍ରେସ୍ ସରକାର ଗଲାପରେ ଜନତା ସରକାର, ଜାନକୀ, ନିରଞ୍ଜନ, ଯୁଗଳ, ହରିହର, ନାଗାର୍ଜୁନ, କିଶୋର, ବଟକୃଷ୍ଣ, ସୁର, ଶରତ, ରାମ, ହବିବ୍, କାହ୍ନୁ, ଯଦୁଙ୍କ ନାମରେ ଭିଜିଲାନ୍ସ କେସ୍ କଲା

ବେଳେ, କଂଗ୍ରେସ ସରକାର ଆସିଲା ପରେ ସେମାନେ ବିଜୁ, କାଳନ୍ଦୀ, ଦାମ, ସୂର୍ଯ୍ୟନାରାୟଣ, ଦୀଲିପ ପ୍ରଭୃତିଙ୍କ ନାମରେ ଭିଜିଲାନ୍ସ ମାମଲା ଆରମ୍ଭ କଲେ । ଯିଏ ଭିଜିଲାନ୍ସ ମାମଲା କଲା, ସେମାନେ ସେ ସରକାର ବେଳେଥିଲେ, ଏ ସରକାର ଆସିଲା ବେଳେ ବି ଥିଲେ । ଜନସାଧାରଣ ବିଭାଗର ଏପରି କାର୍ଯ୍ୟକଳାପରୁ ଯାହା ବୁଝିଥିବେ । ପୁଲିସ୍‌କୁ କେତେ ଦୂର ପର୍ଯ୍ୟନ୍ତ ରାଜନୈତିକରଣ କରାଯାଇପାରେ ଏହା ତାର ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ସେତେବେଳକୁ ଓଡ଼ିଶା ପୁଲିସ୍ ସଦର ମହାକୁମାରେ ଛକାପଞ୍ଝା ନୀତି ଚାଲୁଥାଏ । ମିଃ ମହାପାତ୍ର ତାଙ୍କର କେତେଜଣ ଅନୁଗତ ଅଫିସରଙ୍କୁ ଧରି ଲବି କଲାବେଳେ, ମିଃ ଏ.ବି. ତ୍ରିପାଠୀ, ସେତେବେଳର ଆଡ଼ଭୋକେଟ୍ ଜେନେରାଲ୍‌ଙ୍କ ନିକଟତମ ହୋଇଥିଲେ । ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାପରେ ତାଙ୍କ ନାମରେ ଥିବା ଭିଜିଲାନ୍ସ କେସ୍ ପ୍ରତ୍ୟାହାର କରିନିଆଗଲା । ଭିଜିଲାନ୍ସ ବିଭାଗ ରାଜନୈତିକ ଚାପରେ ଜାନକୀ ପଟ୍ଟନାୟକ ନିର୍ବାଚନ ଲଢ଼ିବା ପୂର୍ବରୁ ଏହାକୁ ପ୍ରତ୍ୟାହାର କରିନେଲେ ବୋଲି ସମ୍ବାଦମାନ ପ୍ରକାଶ ପାଇଲା । ଏଇ ସମୟରେ କେତେକ ଖବର କାଗଜରେ ମଧ୍ୟ, ପୁଲିସ୍ ବିଭାଗର ଅପାରଗତା ବିଷୟରେ ସମ୍ବାଦ ମାନ ପ୍ରକାଶ ପାଇବାକୁ ଲାଗିଲା । ତେଣୁ ମିଃ ଆର.ଏନ୍ ମହାପାତ୍ରଙ୍କ ସନ୍ଦେହ କେତେ ଜଣ ଅଫିସରଙ୍କ ଉପରକୁ ଗଲା, ଯଦିଓ ତାଙ୍କର ନିକଟତମ ଲୋକ ତାଙ୍କୁ ସବୁବେଳେ କହୁଥିଲେ ଯେ ସେ ଅବସର ନବା ପର୍ଯ୍ୟନ୍ତ ଡି.ଜି. ପଦବୀରେ ହିଁ ରହିବେ । ସେ ତାଙ୍କର ଭରସାରେ ହେଉ କିମ୍ବା ନିଜର ଉପରେ ଅଧିକ ବିଶ୍ୱାସ ହେଉ, ତାଙ୍କୁ କେହି ହଟାଇ ପାରିବେନି ବୋଲି ଆଶା ବାନ୍ଧି ବସିଥିଲେ । ମାତ୍ର ତାଙ୍କୁ ହଟାଇବା ପାଇଁ ପୁଲିସ୍‌ର ଗୋଟେ ଗୋଷ୍ଠୀ ସକ୍ରିୟ ଥିଲା ଏକଥା ସେ ଜାଣିଥିଲେ ମଧ୍ୟ ତା ଉପରେ ଗୁରୁତ୍ୱ ଦେଉନଥିଲେ । ତାଙ୍କୁ ଡି.ଜି.ପଦରୁ ହଟାଇବା ପାଇଁ ମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକଙ୍କ ମାଧ୍ୟମରେ ମୁଖ୍ୟମନ୍ତ୍ରୀଙ୍କୁ କହିବା ପାଇଁ କେତେକ ସିନିୟର ପୁଲିସ୍ ଅଫିସର ଯାଇ ତାଙ୍କୁ ଦେଖାକରିଥିଲେ । ଜାନକୀ ପଟ୍ଟନାୟକ, ଆଡ୍‌ଭୋକେଟ୍ ଜେନେରାଲଙ୍କ ଠାରୁ ଆରମ୍ଭ କରି କେତେକ ମନ୍ତ୍ରୀ, ଅଫିସରମାନଙ୍କ ପ୍ରେସରରେ ମିଃ ମହାପାତ୍ରଙ୍କୁ ଡି.ଜି. ପଦବୀରୁ ହଠାଇ ଏ.ବି. ତ୍ରିପାଠୀଙ୍କୁ ଡି.ଜି. କରିବା ପାଇଁ ସଂପୂର୍ଣ୍ଣ ଭାବେ ଇଚ୍ଛା ପ୍ରକାଶ କରିନଥିଲେ ମଧ୍ୟ ସୁବିଧା ଖୋଜୁଥିଲେ ।

୧୯୯୫ ନଭେମ୍ବର ମାସ ସତର କି ଅଠର ତାରିଖ ଦିନ କଟକ ଭୁବନେଶ୍ୱର ରାସ୍ତାରେ ପ୍ରାୟ ସାତ ଆଠ ଘଣ୍ଟା ଧରି ରାସ୍ତା ଅବରୋଧ ଯୋଗୁ ଯାତାୟାତ୍ ବନ୍ଦ ହୋଇଗଲା । ଏତେ ଘଣ୍ଟା କାଳ ରାସ୍ତାବନ୍ଦକୁ ନେଇ, ପ୍ରାୟ ପ୍ରତ୍ୟେକ ସମ୍ବାଦପତ୍ର, ପୁଲିସ୍‌ର ନିଷ୍କ୍ରିୟତା ଉପରେ ମନ୍ତବ୍ୟ ଦେଲେ । ଏହି ଘଟଣାକୁ କେନ୍ଦ୍ରକରି, ମିଃ.ମହାପାତ୍ରଙ୍କ ବଦଳି ଆଦେଶ ଆସିଲା । ସେ ତାଙ୍କ ବଦଳି ବିଷୟରେ ପୂର୍ବରୁ କିଛି ଜାଣିନଥିଲେ । ସେଦିନ ସେ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରିବାକୁ ଭୁବନେଶ୍ୱର ଯାଇଥିଲେ । ମୁଖ୍ୟମନ୍ତ୍ରୀ ତାଙ୍କର ବଦଳି ଆଦେଶ ଦସ୍ତଖତ୍ କରିଥିଲେ ମଧ୍ୟ ତାଙ୍କୁ କିଛି କହିନଥିଲେ । ବସନ୍ତ ବିଶ୍ୱାଳଙ୍କ ପାଖରୁ ଟିକିଏ ସନ୍ଦେଶପାଇଁ ମୁଖ୍ୟ ଶାସନ ସଚିବ ଭୂଜବଳଙ୍କୁ ପଚାରିଥିଲେ । ସେ ଜାଣିଥିଲେ ମଧ୍ୟ କିଛି ଜାଣନ୍ତିନି ବୋଲି କହିଥିଲେ । ଭୁବନେଶ୍ୱରରୁ ଫେରି ସେ କଟକରେ ଦିନ ଗୋଟାକରେ ପହଞ୍ଚିଲା ପରେ, ମୁଁ ଓ ଏ.କେ. ପଟ୍ଟନାୟକ ତାଙ୍କୁ ଦେଖା କରିଥିଲୁ ଏବଂ ସେ ନିଜେ ଏଇକଥା କହିଥିଲେ । ଏଇ

ନୋଟିଫିକେସନ୍‌ରେ ମୋର ବଦଳି ଟି.ଆର୍.ଡି.ରୁ ପରିଚାଳନା ନିର୍ଦ୍ଦେଶକ, ଓଡ଼ିଶା ଚଳଚ୍ଚିତ୍ର ନିଗମ ଏବଂ ସି.ଏମ୍.ଡି.କଳିଙ୍ଗ ଷ୍ଟୁଡ଼ିଓ ଭାବେ ହେଲା । ବହୁ ଆଗରୁ ୧୯୮୯ ମସିହାରେ ମୁଁ ପୁରୀ ଏସ.ପି.ଥିଲା ବେଳେ, ତତ୍‌କାଳୀନ ମୁଖ୍ୟ ଶାସନ ସଚିବ ଶ୍ରୀ ଏନ. କେ. ପଣ୍ଡା ଏବଂ ଶିକ୍ଷ ସଚିବ ଶ୍ରୀ ଏସ.ବି. ମିଶ୍ର ମଧ୍ୟ ମୋତେ ପରିଚାଳନା ନିର୍ଦ୍ଦେଶକ ହେବାପାଇଁ ପ୍ରସ୍ତାବ ଦେଇ, ଫାଇଲ ଶିକ୍ଷ ମନ୍ତ୍ରୀଙ୍କ ଅନୁମୋଦନ ପରେ, ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କ ପାଖକୁ ପଠାଇଥିଲେ । ମାତ୍ର ସେତେବେଳେ ସେ ପ୍ରସ୍ତାବ ତାଙ୍କରି ପାଖରେ କାଟ୍ ଖାଇଥିଲା । ମୁଁ ପରେ ଶୁଣିଲି ଯେ, ସେ ନନ୍ଦନକାନନ ଜଙ୍ଗଲ ବିଭାଗ ବଙ୍ଗଳାରେ ବସି ଫାଇଲ୍ ଦେଖୁଥିଲାବେଳେ, ମୋର ବଦଳି ଫାଇଲ୍ ତାଙ୍କପାଖକୁ ଯାଇଥିଲା, ମାତ୍ର ତାଙ୍କର ତତ୍‌କାଳୀନ ସେକ୍ରେଟାରୀଙ୍କ କହିବା ଅନୁସାରେ ତାହାକୁ ସେ ଅନୁମୋଦନ କରିନଥିଲେ । ଏତେ ଦିନପରେ, ପୁଣି ମୋତେ ସେ ପରିଚାଳନା ନିର୍ଦ୍ଦେଶକ କରି ନେଲେ । ମୋ ପୂର୍ବରୁ ମିଃ ପି.କେ. ମିଶ୍ର ମଧ୍ୟ ବହୁଦିନ ଧରି, ନିର୍ଦ୍ଦେଶକ ଥିଲେ । ତାଙ୍କର ବଦଳି ପରେ, ମୁଁ ଏ ଦାୟିତ୍ୱ ଗ୍ରହଣ କଲି ।

**ଓଡ଼ିଶା ଚଳଚ୍ଚିତ୍ର ନିଗମରେ :**

୧୯୯୫ ମସିହା ନଭେମ୍ବର ମାସ ଶେଷ ଆଡ଼କୁ ମୁଁ ଓଡ଼ିଶା ଚଳଚ୍ଚିତ୍ର ନିଗମର ପରିଚାଳନା ନିର୍ଦ୍ଦେଶକଭାବେ ଜଏନ୍ କଲି । କଳିଙ୍ଗ ଷ୍ଟୁଡ଼ିଓ, ଚଳଚ୍ଚିତ୍ର ନିଗମଅଧିନରେ ଥିବା ଯୋଗୁ ମୋତେ ମଧ୍ୟ ଷ୍ଟୁଡ଼ିଓରେ ସି.ଏମ୍.ଡ଼ି. ଦାୟିତ୍ୱ ଦିଆଯାଇଥାଏ । ମୁଁ ଜଏନ୍ କଲା ପରେ, ନିଗମର ଅବସ୍ଥା ବିଷୟ ଜାଣିବା ପୂର୍ବରୁ, ଓଡ଼ିଆ ସିନେମାର ଷାଠିଏ ବର୍ଷ ଏବଂ ସିନେମାର ଶହେ ବର୍ଷ ପୂର୍ତ୍ତୀ ଉତ୍ସବ ପାଳନ କରିବାର ଆୟୋଜନ ମୁଖ୍ୟ କାର୍ଯ୍ୟ ଭାବେ ଦେଖା ଦେଇଥିଲା । ପୂର୍ବତନ ନିର୍ଦ୍ଦେଶକ ମିଃ ପି.କେ ମିଶ୍ର ଏହାର ପ୍ରାରମ୍ଭିକ ଆୟୋଜନ କରିସାରିଥିଲେ ମାତ୍ର ଅସୁବିଧା ଯୋଗୁ, ଉତ୍ସବର ଦିନକୁ ଅକ୍ଟୋବର ମାସରୁ ପରବର୍ତ୍ତୀ ସମୟକୁ ଘୁଞ୍ଚାଇ ଦେଇଥିଲେ । ସରକାର ବଦଳିବା ସାଙ୍ଗେ, ନିର୍ଦ୍ଦେଶକ ବଦଳିବାପରେ, ନିଗମର ବୋର୍ଡ଼ ସଦସ୍ୟମାନେ ମଧ୍ୟ ବଦଳି ଥିଲେ । ପୁରୁଣା ସଦସ୍ୟଙ୍କ ସ୍ଥାନରେ ନୂଆ ସଦସ୍ୟମାନେ ଆସିଥିଲେ ଯଦିଓ କେତେଜଣ ପୁରୁଣା ସଦସ୍ୟ ନୂତନ ବୋର୍ଡ଼ର ସଦସ୍ୟ ରହିଥିଲେ । ସେତେବେଳେ ଓଡ଼ିଆ ସିନେମାର ପ୍ରଯୋଜକ, ନିର୍ଦ୍ଦେଶକ,ଏପରିକି କଳାକାରମାନଙ୍କ ମଧ୍ୟରେ ଉପଯୁକ୍ତ ସମନ୍ୱୟ ନଥିଲା । ନିଜ ନିଜର ସ୍ୱାର୍ଥକୁ ଆଖି ଆଗରେ ରଖି ସେମାନଙ୍କ ମଧ୍ୟରେ ଟଣାଓଟରା ଚାଲିଥିଲା, ଯାହାର ପ୍ରଭାବ ମଧ୍ୟ ଓଡ଼ିଆ ଚଳଚ୍ଚିତ୍ର ଉପରେ ପଡ଼ିଥିଲା । ମୁଁ ଜଏନ୍ କରିବା ପୂର୍ବରୁ, ନିଗମର ଡେପୁଟୀଜେନେରାଲ୍ ମ୍ୟାନେଜରଙ୍କୁ, ନିଗମରୁ ବହିଷ୍କାର କରାଯାଇଥିଲା । ଏହି ବହିଷ୍କାରର ବୈଧତାକୁ ଆପତ୍ତିକରି ସେ ସରକାରଙ୍କୁ ତାଙ୍କର ରିପ୍ରେଜେଣ୍ଟେସନ ଦେଇଥିଲେ । ସରକାର ତାଙ୍କ ଅଭିଯୋଗକୁ ଗ୍ରହଣ କରି ଆଦେଶ ଦେଇଥିଲେ ଯେ ତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ଗୁଡ଼ିକୁ ପୁନର୍ବାର ତଦନ୍ତ କରି, ସରକାରୀ କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ନିୟମାବଳୀ ଅନୁସାରେ କାର୍ଯ୍ୟଗ୍ରହଣ କରାଯାଉ । ତାଛଡ଼ା ସରକାରଙ୍କ ନିର୍ଦ୍ଦେଶଥିଲା ତାଙ୍କୁ ତାଙ୍କ ପୂର୍ବପଦରେ ପୁନଃନିଯୁକ୍ତି ଦେବାପାଇଁ । ସରକାରଙ୍କ ଆଦେଶ ଅନୁସାରେ ମୁଁ ଡି.ଜି.ଏମଙ୍କୁ ତାଙ୍କ ପୂର୍ବ ପଦବୀରେ ପୁନଃନିଯୁକ୍ତି ଦେଲି,ଏବଂ ଜଣେ ବାହାର ସିନିୟର କ୍ଲାସ-ଓ୍ୱାନ୍ ଅଫିସର ତଦନ୍ତର ଦାୟିତ୍ୱ ନେଇଥିଲେ । ଅବଶ୍ୟ ଆଗରୁ କେତେଜଣ ପୁରୁଣା ସଦସ୍ୟ, ଡି.ଜି.ଏମ୍‌ଙ୍କୁ

ପୁନଃନିଯୁକ୍ତି ନଦେବା ପାଇଁ ଚାପ ପକାଇଥିଲେ ମାତ୍ର ସରକାରଙ୍କ ନିର୍ଦ୍ଦେଶନାମାକୁ ଅବମାନନା କରିବା ମୋ ପକ୍ଷରେ ସମ୍ଭବ ନଥିଲା । ସରକାରଙ୍କ ଏହି ଆଦେଶ ବିରୁଦ୍ଧରେ, ଜଣେ ପୁରୁଣା ସଦସ୍ୟ ମିଃ ଶରତ ପୂଜାରୀ, ହାଇକୋର୍ଟରେ ରିଟ୍ ଦାୟର କଲେ ଏଇ ରିଟ୍ ଦାୟର ପରେ, ଚଳଚ୍ଚିତ୍ର ସହିତ ସଂପୃକ୍ତ ବ୍ୟକ୍ତି ବିଶେଷମାନଙ୍କ ମଧ୍ୟରେ ତିକ୍ତତା ବୃଦ୍ଧି ପାଇଥିଲା । କେତେକ ବ୍ୟକ୍ତି ବିଶେଷ ମିଛ ସତ ଲେଖି ବିଭିନ୍ନ ଦପ୍ତରକୁ ପିଟିସନ୍‌ମାନ ପଠାଇବାକୁ ଆରମ୍ଭ କଲେ । କେତେକ ସମ୍ବାଦପତ୍ରରେ ନାନାକଥା ପ୍ରଚାର କଲେ । ତାର ପ୍ରତିବାଦ ମଧ୍ୟ ଆଉ କେତେକ କଲେ । ଏହାଦ୍ୱାରା ଚଳଚ୍ଚିତ୍ର ଶିଳ୍ପର ଉନ୍ନତି ଘଟିନଥିଲା ବରଂ ନିଜ ନିଜ ମଧ୍ୟରେ ତିକ୍ତତା ବଢ଼ିଥିଲା ଯାହାର ମୂଲ୍ୟକିଛି ନଥିଲା । ପରବର୍ତ୍ତୀ ସମୟରେ, ତଦନ୍ତକାରୀ ଅଫିସର ଡି.ଜି.ଏମଙ୍କୁ ଦୋଷମୁକ୍ତ କରି ତାଙ୍କର ତଦନ୍ତ ରିପୋର୍ଟ ଦେଇଥିଲେ । ଯାହାକୁ ହାଇକୋର୍ଟକୁ ପଠାଇଲା ପରେ, ରିଟ୍ ଖାରଜ ହୋଇ ଯାଇଥିଲା । ମୋର ଏଥିରେ କିଛି ସମ୍ବନ୍ଧ ନଥିଲେ ମଧ୍ୟ, ପରିଚାଳନା ନିର୍ଦ୍ଦେଶକଭାବେ ମୋତେ ଓଡ଼ିଆ ଚଳଚ୍ଚିତ୍ରର ଷାଠିଏ ବର୍ଷ ପୂର୍ତ୍ତୀ ଉତ୍ସବ ଆଗରୁ କେତେ ଗୁଡ଼ିଏ ଅଯଥା ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

୧୯୯୬ ମସିହା ଫେବୃୟାରୀ ଶେଷ ଏବଂ ମାର୍ଚ୍ଚ ପ୍ରଥମ ସପ୍ତାହ ମଧ୍ୟରେ ଏଇ ଉତ୍ସବ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ସମସ୍ତ କଳାକାର, ପ୍ରଯୋଜକ, ନିର୍ଦ୍ଦେଶକମାନଙ୍କୁ ନେଇ ଖୁବ୍ ସଫଳତାର ସହିତ ପାଳନ କରାଯାଇଥିଲା । ଉତ୍ସବକୁ ମୁଖ୍ୟମନ୍ତ୍ରୀ ଜେ.ବି. ପଟ୍ଟନାୟକ ଉଦ୍‌ଘାଟନ କଲା ବେଳେ, ଉତ୍ସବରେ ମୁଖ୍ୟବକ୍ତା ଭାବେ ବମ୍ବେ ଚଳଚ୍ଚିତ୍ର ଜଗତର ସୁପରିଚିତ ଅଭିନେତା ଏବଂ ସାଂସଦ ରାଜେଶ ଖାନ୍ନା ଯୋଗ ଦେଇଥିଲେ । ଉଦ୍‌ଘାଟନ ଉତ୍ସବ ଦିନ, ଗୋଟିଏ ସ୍ମରଣିକା ହରପ୍ରସାଦ ଦାସଙ୍କ ସଂପାଦକୀୟତାରେ ପ୍ରକାଶ ପାଇଥିଲା ଏବଂ ଷାଠିଏ ଜଣ ବୟୋଜ୍ୟେଷ୍ଠ କଳାକାରଙ୍କୁ ସମ୍ମାନିତ କରାଯାଇଥିଲା । ଓଡ଼ିଆ ସିନେମା ସୀତାବିବାହ ଠାରୁ ଆରମ୍ଭ କରି ୧୯୯୬ ମସିହାରେ ମୁକ୍ତି ଲାଭ କରିଥିବା ଚଳଚ୍ଚିତ୍ର ମାନଙ୍କରୁ କିୟଦଂଶକୁ ନେଇ ଗୋଟିଏ ୪୫ ମିନିଟ୍ କ୍ୟାସେଟ୍ ମଧ୍ୟ ପରିବେଶଣ କରାଯାଇଥିଲା । ଏହି ଉତ୍ସବର ଉଦ୍‌ଯାପନ ଦିବସ ମାର୍ଚ୍ଚ ଦୁଇ ତାରିଖରେ ତତ୍‌କାଳୀନ ଲୋକସଭା ବାଚସ୍ପତି ପି.ଏ. ସାଙ୍ଗମାଙ୍କ ପୌରୋହିତ୍ୟରେ ସମାପନ କରାଯାଇଥିଲା ।

ଉଦ୍‌ଯାପନ ଦିନର ମୁଖ୍ୟ ଆକର୍ଷଣ ଥିଲା କେନ୍ଦ୍ରମନ୍ତ୍ରୀ ଶ୍ରୀ ଗିରିଧର ଗାମାଙ୍ଗଙ୍କ ନୃତ୍ୟ ପରିବେଶଣ । ଏଇ ନୃତ୍ୟରେ ଷାଠିଏ ଜଣରୁ ଉର୍ଦ୍ଧ୍ୱ ଆଦିବାସୀ ଭାଇ-ଭଉଣୀମାନେ ଅଂଶ ଗ୍ରହଣ କରିଥିଲେ । ଓଡ଼ିଆ ଚଳଚ୍ଚିତ୍ର ନିଗମ ହେବା ଦିନଠାରୁ ଏହି ଉତ୍ସବ ଏକ ଉନ୍ନତ ମାନର ଉତ୍ସବ ଥିଲା ବୋଲି କୁହାଯାଇଥିଲା ।

ମୁଁ ନିର୍ଦ୍ଦେଶକ ହୋଇ ଆସିଲା ପରେ ଦେଖିଲି, ଚଳଚ୍ଚିତ୍ର ନିଗମ ଏବଂ କଳିଙ୍ଗ ଷ୍ଟୁଡ଼ିଓର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଦୁର୍ବଳ । ଏହା ଗୋଟିଏ ଲାଭଜନକ ନିଗମ କୁହାଯାଉଥିଲାବେଳେ ପ୍ରକୃତରେ ନିଗମ କ୍ଷତିରେ ଚାଲୁଥିଲା । ନିଗମର ପ୍ରକୃତ ବାର୍ଷିକ ଆୟ ଯେତିକି ହେଉଥିଲା, ପ୍ରକୃତ ବ୍ୟୟ ତାହାଠାରୁ ଯଥେଷ୍ଟ ଅଧିକ ହେଉଥିଲା ମାତ୍ର ହିସାବରକ୍ଷକମାନେ ଏହାକୁ ଲାଭଜନକ ନିଗମ ବୋଲି ଦର୍ଶାଇଥିଲେ । ନିଗମର ଆୟ ହେଲା ଧାର ଦେଇଥିବା ଟଙ୍କାର ସୁଧ ଏବଂ ପ୍ରସେସିଂ ଫି । ପ୍ରାୟ ଅଢ଼େଇ କୋଟି ଟଙ୍କା ଧାର ପଡ଼ିଥିଲା ବେଳେ ସୁଧବାବଦକୁ

ଆଦାୟ ମାତ୍ର ୫ଲକ୍ଷ ହେଉଥିଲା କିନ୍ତୁ ହିସାବରକ୍ଷକମାନେ ଅଢ଼େଇ କୋଟି ଟଙ୍କାର ବାର୍ଷିକ ସୁଧକୁ ମିଶାଇ ଲାଭ କ୍ଷତି ହିସାବ କରୁଥିଲେ ଯାହାକି ପ୍ରକୃତରେ ଆଦାୟ ହେଉନଥିଲା ।

ସେଇପରି କଳିଙ୍ଗ ଷ୍ଟୁଡ଼ିଓର ବାର୍ଷିକ ଆୟ ମାତ୍ର ୨୬ ଲକ୍ଷଥିଲା ଏବଂ ବ୍ୟୟ ପ୍ରାୟ ସେତିକି କିମ୍ୱା ତାଠାରୁ ବେଶୀ । କିନ୍ତୁ ଷ୍ଟୁଡ଼ିଓର ଯନ୍ତ୍ରପାତି, ଏବଂ ସରଞ୍ଜାମର ଡିପ୍ରିସିଏସନ୍‌କୁ ହିସାବ କଲାବେଳେ, ଏହାର କ୍ଷତିର ପରିମାଣ ପଚିଶି ଲକ୍ଷ ପାଖାପାଖି ଥିଲା । ମୁଁ ଦାୟିତ୍ୱ ନେଲାପରେ, ନିଗମର ବାକି ପଡ଼ିଥିବା ଟଙ୍କା ଆଦାୟ କରିବା ପାଇଁ ସମସ୍ତଙ୍କ ସହଯୋଗ ନେଲି । ନିଗମରୁ ୬୪ ଟି ସିନେମାହଲ, ହଲନିର୍ମାଣ କରିବାକୁ ନିଗମ ଏବଂ ନିଗମ ଦାୟିତ୍ୱରେ ବ୍ୟାଙ୍କମାନଙ୍କରୁ ଲୋନ୍ ନେଇଥିଲେ । ୬୪ଟି ହଲରୁ ମାତ୍ର ୧୫ଟି ହଲ ତାର ଲୋନ ଦେଇଥିଲା ବେଳେ ୪୯ଟି ହଲ ମାଲିକ ୧୦ ବର୍ଷରୁ ଅଧିକ କାଳ ବିଭିନ୍ନ ଆକାରରେ ଧାର ନେଇଥିବା ଟଙ୍କା ସୁଝୁ ନଥିଲେ କିମ୍ବା ତାଙ୍କ ଠାରୁ ଆଦାୟ କରିବା ପାଇଁ ଦୃଢ଼ ପଦକ୍ଷେପ ନିଆଯାଇନଥିଲା । ମୋର ସ୍ୱଳ୍ପ ସମୟ ରହଣି ମଧ୍ୟରେ ବାର୍ଷିକ ପନ୍ଦର, ଷୋହଳ ଲକ୍ଷରୁ ପଚାଶ, ପଞ୍ଚାବନ ଲକ୍ଷ ପର୍ଯ୍ୟନ୍ତ ସୁଧ ଆଦାୟ ହେବା ଦ୍ୱାରା ନିଗମର ଆୟ ବଢ଼ିଥିଲା ଏବଂ ନିଗମ ପ୍ରକୃତରେ ଲାଭ କରିଥିଲା । ଷ୍ଟୁଡ଼ିଓର ଅବସ୍ଥା ମଧ ତତୋଽଧିକ । ସାତ ଆଠ ଲକ୍ଷଟଙ୍କା ବାକି । ବାକିପଇସା ଆଦାୟ ପାଇଁ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ନିଆ ହେଉନଥିଲା । ଆୟ ମଧ କମ୍ ଥିଲା । ସମସ୍ତଙ୍କ ସାହାଯ୍ୟରେ ମୁଁ ଆସିବା ବେଳକୁ ଷ୍ଟୁଡ଼ିଓର ଆୟ ବାର୍ଷିକୁ ସତୁରୀଲକ୍ଷରେ ପହଞ୍ଚିଥିଲା । କେବଳ ସେତିକି ନୁହେଁ, ଏଇ ଦୁଇବର୍ଷମଧରେ ଷ୍ଟୁଡ଼ିଓର କେତେକ ଯନ୍ତ୍ରପାତି କିଣା, ମରାମତି ମଧ କରାଯାଇଥିଲା ।

ଷ୍ଟୁଡ଼ିଓର ଆୟ ବୃଦ୍ଧି ପାଇଁ, ଓଡ଼ିଶା ବାହାରରୁ ପ୍ରଯୋଜକମାନେ ଆସିବା ପାଇଁ ବନ୍ଦୋବସ୍ତ କରାଯାଇଥିଲା । ତତ୍‌କାଳୀନ ବଙ୍ଗଳା ଦେଶରେ ଥିବା ଭାରତୀୟ ଦୂତାବାସର ସାଂସ୍କୃତିକ ସଚିବ, ମିଃ. ପଟ୍ଟନାୟକଙ୍କ ସହାୟତାରେ ବଙ୍ଗଳା ଦେଶରୁ ପ୍ରଯୋଜକ, ଓଡ଼ିଶାକୁ ଆସି ବଙ୍ଗଳାଦେଶି, ବଙ୍ଗଳା ଏବଂ ଓଡ଼ିଆ ଭାଷାରେ ଚାରୋଟି ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ସେଥିଯୋଗୁ ଷ୍ଟୁଡ଼ିଓର ହାରାହାରୀ ୮୦ ଶତାଂଶ ସମୟ ବ୍ୟବହାର ହୋଇ ପାରିଥିଲା । ୧୯୯୮ ମସିହାରେ ୨୧ଟି ଓଡ଼ିଆ ଚଳଚ୍ଚିତ୍ର ମୁକ୍ତି ଲାଭ କରି, ନିଗମ ହେବା ଦିନଠାରୁ, ଗୋଟିଏ ବର୍ଷରେ ସର୍ବାଧିକ ଚଳଚ୍ଚିତ୍ର ପ୍ରଯୋଜନା ଏବଂ ମୁକ୍ତି ଲାଭ କରି ପାରିଥିବାର ଗୌରବ ଅର୍ଜନ କରିଥିଲା । ନିଗମ ଏବଂ ଷ୍ଟୁଡ଼ିଓର କାର୍ଯ୍ୟ ଏବଂ ଲୋନ ଦେବା ପ୍ରଣାଳୀରେ ସଂଶୋଧନ ଆଣିବା ଦ୍ୱାରା ନିଗମର ଧାର ଦେବା ପଇସା ବୁଡ଼ିଯିବାର ବାଟ ବନ୍ଦ କରି ଦିଆଗଲା । ଏଥି ଯୋଗୁ ବହୁ ପ୍ରଯୋଜକ ମୋର ବିରୁଦ୍ଧାଚରଣ କଲେ । ସେମାନେ ନିଗମରୁ ଲୋନ ନେଇ ବର୍ଷବର୍ଷ ଧରି ଗୋଟିଏ ପରେ ଗୋଟିଏ ଚଳଚ୍ଚିତ୍ର କରି ଲାଭ ପାଉଥିଲେ ମଧ ନିଗମ ପଇସା ଫେରାଉ ନଥିଲେ । ସରକାରୀ ମାଲ, ତାର ବାପା-ମା କେହିନଥାନ୍ତି । ଯଦିଓ କେତେକ ମୁଷ୍ଟିମେୟ ବ୍ୟକ୍ତି ତାଙ୍କର ନିଜ ସ୍ୱାର୍ଥଦୃଷ୍ଟିରୁ ଏହାକୁ ବିରୋଧ କରୁଥିଲେ ମାତ୍ର ନିଗମର ସ୍ୱାର୍ଥ ଦୃଷ୍ଟିରୁ ଅନ୍ୟମାନେ ସମସ୍ତେ ଏହାକୁ ଗ୍ରହଣ କରିଥିଲେ ।

ମୁଁ ଚଳଚ୍ଚିତ୍ର ନିଗମକୁ ଆସିଥିଲେ ମଧ ପୁଲିସ ସଦର ମହକୁମା ସହିତ ସମ୍ପର୍କ ରଖିଥିଲି । ସେଥିମଧରେ ଏ.ବି.ତ୍ରିପାଠୀ, ଡି.ଜି. ହେଲାପରେ ପୁଲିସ୍ ବିଭାଗରେ କିଛି ଉନ୍ନତି

ହେବ ବୋଲି ସମସ୍ତେ ଆଶା କରିଥିଲେ । କାରଣ ତାଙ୍କ ପାଖରେ ସେ ଦକ୍ଷତା ଥିଲା । ବର୍ଷ ବର୍ଷ ଧରି, ପୁଲିସ୍ ଉପର ମହଲରେ ଗୋଷ୍ଠୀ କନ୍ଦଳ ଯୋଗୁ ତାର ପ୍ରଭାବ ସାରା ପୁଲିସ ବିଭାଗରେ ପଡ଼ି ଥିଲାବେଳେ, ଅନ୍ୟମାନେ ଏହାର ସୁଯୋଗ ନେଉଥିଲେ । ଯଦିଓ ମିଃ ତ୍ରିପାଠୀ ଜଏନ୍ କଲାପରେ ଏଇ ଗୋଷ୍ଠୀ କନ୍ଦଳ କେତେକାଂଶରେ କମିଲା ମାତ୍ର ତାହା ସଂପୂର୍ଣ୍ଣ ଭାବେ ଶେଷ ହୋଇନଥିଲା । ଭିତରେ ଭିତରେ ଏଇ କଳହର ନିଆଁ କୁହୁଳୁଥିଲା ଏବଂ ପୂର୍ବପରି ପିଟିସନ ଲେଖା ବନ୍ଦ ହୋଇନଥିଲା ।

ମିଃ ତ୍ରିପାଠୀ, ଭିଜିଲାନ୍ସ ଡି.ଜି. ପଦରୁ ଆସିଲା ପରେ ତାଙ୍କ ସ୍ଥାନରେ ମିଃ ଉମାଶଙ୍କର ମିଶ୍ର ଭିଜିଲାନ୍ସର ଦାୟିତ୍ୱ ନେଲେ । ତାଙ୍କ ଉପରେ ବହୁ ସିନିୟର ଥିଲା ବେଳେ, ଡି.ଜି ପଦକୁ କାଟି ଜଣେ ଜୁନିୟର ଆଇ.ଜି.ଙ୍କୁ, ଭିଜିଲାନ୍ସର ଦାୟିତ୍ୱ ଦେବାଯୋଗୁ ଅନ୍ୟମାନେ ଭିତରେ ଭିତରେ ଖୁସି ନଥିଲେ । ଏ.ବି.ତ୍ରିପାଠୀ, ଡି.ଜି. ହେଲାପରେ, ତାଙ୍କର ଗୋଟିଏ ଛୋଟ ଗୋଷ୍ଠୀ ସୃଷ୍ଟି ହେଲା । ଡି.ଜି. ଶ୍ରୀ ତ୍ରିପାଠୀ, ଆଡ୍‌ଭୋକେଟ୍ ଜେନେରାଲ ମିଃ ରାଏ, ଭିଜିଲାନ୍ସ ଡ଼ାଇରେକ୍ଟର ମିଃ ମିଶ୍ର, ସବୁ ସମୟରେ ଏକାଠି ହେଉଥିଲେ । ଏହାର ମଧ୍ୟ ପ୍ରଭାବ ପୁଲିସ ଉଚ୍ଚସ୍ତର ଠାରୁ ନିମ୍ନସ୍ତର ପର୍ଯ୍ୟନ୍ତ ପଡୁଥିଲା । ୧୯୯୭ ମସିହା ଅକ୍ଟୋବର ମାସରେ ଡି.ଜି. ଏ.ବି. ତ୍ରିପାଠୀ ଅବସର ନେବା କଥା । ତାର ଠିକ୍ ଅଢ଼ମାସ ପୂର୍ବରୁ ୨୯/୫/୧୯୯୭ ଦିନ ଅଞ୍ଜନା ମିଶ୍ର ମାମଲା ଓଡ଼ିଶା ପୁଲିସ୍‌ରେ ଆଲୋଡ଼ନ ସୃଷ୍ଟି କଲା । ଅଞ୍ଜନା ମିଶ୍ର ତାଙ୍କ ଭାରତୀୟ ଜଙ୍ଗଲ ସେବା ଅଧିକାରୀ, ସ୍ୱାମୀ ସୁବାସ ମିଶ୍ରଙ୍କ ନାମରେ ତାଙ୍କୁ ନିର୍ଯ୍ୟାତିତ କରୁଛନ୍ତି ବୋଲି ମକଦ୍ଦମା କଲେ ଏବଂ ଏଇ ମାମଲାର ତଦନ୍ତ ଓଡ଼ିଶା ପୁଲିସ୍‌ର ମାନବିକ ଅଧିକାର ସେଲ ନେଲା । ମାମଲା ତଦନ୍ତାଧିନ ଥିଲାବେଳେ, ପୁଲିସ ତଦନ୍ତକୁ କେନ୍ଦ୍ର କରି ସମ୍ବାଦ ପତ୍ରମାନଙ୍କରେ ଏବଂ ଗୋଟିଏ ବେସରକାରୀ ମହିଳା ସଂସ୍ଥାର ଉଦ୍ୟମରେ ଏପରି ହଇଚଇ ସୃଷ୍ଟି ହେଲା ଯେ, ପୁଲିସ ବିଭାଗର କାର୍ଯ୍ୟକାରିଣୀ ଉପରେ ଲୋକମାନଙ୍କର ସନ୍ଦେହ ଦୃଷ୍ଟି ପଡ଼ିଲା । ଏଇ ତଦନ୍ତକୁ ଜଣେ ପୁଲିସର ଉଚ୍ଚ ପଦସ୍ଥ ଅଫିସର ତତ୍ତ୍ୱାବଧାନରେ ପରିଚାଳିତ କରିବା, ଡି.ଜି.ଙ୍କ ଆଦେଶକୁ ଅବମାନନା କରି ସିଧା ସଳଖ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗେ ତଦନ୍ତକୁ ସଂପୃକ୍ତ କରିବା ଇତ୍ୟାଦି ସେତେବେଳେ ସମସ୍ତେ କଥାବାର୍ତ୍ତା ହେଉଥିଲେ ଏବଂ ଏହାକୁ କେନ୍ଦ୍ର କରି ବିଭିନ୍ନ ସମ୍ବାଦ ପତ୍ର, ନାନା ପ୍ରକାର ଗଳ୍ପ ବାହାର କରି ଜନ ସାଧାରଣଙ୍କ ମନରେ ଭ୍ରାନ୍ତି ସୃଷ୍ଟି କରିଥିଲେ ଯାହାକି ରାଜ୍ୟ ପୁଲିସ୍ ପାଇଁ କ୍ଷତି କାରକ ହୋଇଥିଲା । ଶେଷରେ ଏଇ ମାମଲାର ତଦନ୍ତଭାର ସି.ବି.ଆଇ. ଗ୍ରହଣ କଲା । କିନ୍ତୁ କଥାଟି ସେଇଠି ଶେଷ ହେଲାନି । ମିଶ୍ରଙ୍କ ମାମଲା ସି.ବି.ଆଇ ତଦନ୍ତ କରୁଥିବା ବେଳେ, ଜୁନ୍‌ମାସ ଦ୍ୱିତୀୟ ସପ୍ତାହରେ, ଅଞ୍ଜନା ମିଶ୍ର, ତତ୍‌କାଳୀନ ଆଡ଼ଭୋକେଟ୍ ଜେନେରାଲ୍ ମିଃ ରାଏ ଙ୍କ ଘରକୁ ତାଙ୍କର ଉପରୋକ୍ତ ମାମଲା ସମ୍ବନ୍ଧରେ କଥାବାର୍ତ୍ତା କରିବା ପାଇଁ ଯାଇଥିଲାବେଳେ ମିଃ.ରାୟ ତାଙ୍କ ସହିତ ଅଶ୍ଳୀଳ ବ୍ୟବହାର କଲେ ବୋଲି ସାତଦିନ ପରେ କାଣ୍ଟନ୍‌ମେଣ୍ଟ ପୁଲିସ୍ ଥାନାରେ ଅଭିଯୋଗ କଲେ । ଘଟଣା ଘଟିବାର ସାତଦିନ ପରେ, ମାମଲା ଥାନାରେ ପଞ୍ଜୀକରଣ ହେବା ଯୋଗୁଁ ଏବଂ ଏଥି ସହିତ ଏଇ ସାତଦିନ ମଧ୍ୟରେ ବହୁବ୍ୟକ୍ତି ବିଶେଷ ସଂପୃକ୍ତ ହୋଇଥିବା ଯୋଗୁ ଏଇ ମାମଲା ସାରା ଓଡ଼ିଶା କାହିଁକି ସାରା ଦେଶରେ ଆଲୋଡ଼ନ ସୃଷ୍ଟି କଲା । ମିଃ ରାଏ ଙ୍କ ସହିତ ବହୁ ଉଚ୍ଚପଦସ୍ଥ ପୁଲିସ୍ ଅଧିକାରୀମାନଙ୍କ ନିବିଡ଼ ସଂପର୍କ ଏବଂ ମିଃ ରାଏଙ୍କର ମୁଖ୍ୟମନ୍ତ୍ରୀ ଜେ.ବି. ପଟ୍ଟନାୟକଙ୍କ ସଙ୍ଗେ

ଅତ୍ୟନ୍ତ ନିବିଡ଼ ସଂର୍ପକ ଥିବାଦୃଷ୍ଟିରୁ, ଏଇ ମାମଲାର ତଦନ୍ତ ଭାର ଓଡ଼ିଶା ପୁଲିସ ହାତରେ ନରହି ପୁଣି କେନ୍ଦ୍ର ତଦନ୍ତ ବ୍ୟୁରୋକୁ ଦିଆଗଲା । ଏଇ ମାମଲାର ସି.ବି.ଆଇ, ତଦନ୍ତ ବେଳେ ଇନ୍ଦ୍ରଜିତ୍ ରାଏ ଏବଂ ଓଡ଼ିଶା ପୁଲିସ ଡି.ଜି.ଙ୍କ ମଧ୍ୟରେ ସମ୍ପର୍କ ଆସ୍ତେ ଆସ୍ତେ ତିକ୍ତ ହେବାକୁ ଆରମ୍ଭ କଲା ଏବଂ ଏହି ମକଦ୍ଦମାକୁ କେନ୍ଦ୍ର କରି ତଦନ୍ତ ସମୟରେ ବିଭିନ୍ନ ପୁଲିସ ଉଚ୍ଚଅଫିସର ଏବଂ ପୁଲିସ ଅଫିସରମାନେ ମାନ୍ୟବର ଓଡ଼ିଶା ଉଚ୍ଚନ୍ୟାୟାଳୟରେ ଦେଇଥିବା ସତ୍ୟପାଠମାନଙ୍କରେ ଯାହା ବର୍ଣ୍ଣନା କଲେ ତାହା ପୁଲିସ ବିଭାଗର ମର୍ଯ୍ୟାଦାକୁ ଲୋକଚକ୍ଷୁରେ କ୍ଷୁର୍ଣ୍ଣ କରିଥିଲା । ଏଥିପାଇଁ ପୁଲିସ ଉଚ୍ଚ ମହଲରେ ବର୍ଷ ବର୍ଷ ଧରି କୁହୁଳୁଥିବା ଅର୍ନ୍ତଃବିବାଦ ମୁଖ୍ୟଭାବେ ଦାୟୀ ବୋଲି କୁହାଯାଇପାରେ ।

ମିଃ ତ୍ରିପାଠୀ, ଅବସର ନେବା ପୂର୍ବରୁ ମୋତେ ପୁଲିସର ବିଶିଷ୍ଟ ସେବା ପଦକ ପାଇବା ପାଇଁ ଭାରତ ସରକାରକୁ ସୁପାରିସ୍ କରିଥିଲେ । ସେଇ ବର୍ଷ ମୋ ସାଙ୍ଗରେ ଗୋପାଳ ନନ୍ଦ ନାଁ ମଧ୍ୟ ଏହି ପଦକ ପାଇଁ ସୁପାରିସ୍ ହୋଇଥିଲା ଏବଂ ଆମେ ଦୁହେଁ ଏଇ ପଦକ ପାଇଥିଲୁ ।

୧୯୯୭ ମସିହା ଅକ୍ଟୋବର ମାସରେ ଶ୍ରୀ ଏ.ବି.ତ୍ରିପାଠୀ, ଡି.ଜି ପଦରୁ ଅବସର ନେଲେ ଏବଂ ତାଙ୍କ ସ୍ଥାନରେ ଡକ୍ଟର ବି.ବି. ପଣ୍ଡା, ଡି.ଜି. ଆସନ ଅଳଂକୃତ କଲେ । ସେତେବେଳେ ପୁଲିସ ବିଭାଗରେ ଅନ୍ୟାନ୍ୟ ଘଟଣା ସହିତ ଅଞ୍ଜନା ମିଶ୍ରଙ୍କ ଘଟଣା ମୁଖ୍ୟହୋଇଥାଏ । ଏଇ ମାମଲାରେ ଇନ୍ଦ୍ରଜିତ୍ ରାଏଙ୍କ ସଙ୍ଗେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜେ.ବି.କୁ ଯୋଡ଼ି ବିରୋଧିଦଳ ଏବଂ କଂଗ୍ରେସ୍‌ର କେତେକ ଜଣାଶୁଣା ଜେ.ବି. ବିରୋଧି ନେତା, ତାଙ୍କର ରେଜିଗ୍‌ନେସନ ଦାବୀ କରି ସମ୍ବାଦ ପତ୍ର ମାଧ୍ୟମରେ ହଇଚଇ ସୃଷ୍ଟି କରୁଥାନ୍ତି । ଡକ୍ଟର ପଣ୍ଡା, ପୁଲିସର ମୁଖ୍ୟ ଭାବେ ଏ ସବୁ ଘଟଣାକୁ ଏବଂ ପୂର୍ବରୁ ପୁଲିସ୍ କାର୍ଯ୍ୟାନୁଷ୍ଠାନକୁ ଆଖି ଆଗରେ ରଖି ଚାଲିଥିଲା ବେଳେ, ୧୯୯୮ ମସିହା ଜାନୁୟାରୀ ମାସ ୯ତାରିଖ ଦିନ କେତେକ ଅସାମାଜିକ ବ୍ୟକ୍ତି ଅଞ୍ଜନା ମିଶ୍ରଙ୍କ ଉପରେ କଟକ-ବାରଙ୍ଗ ରାସ୍ତାରେ ତାଙ୍କ ଯୁବ-ସାଙ୍ଗ ଅତନୁ ସାମ୍ନାରେ ପାଶବିକ ଅତ୍ୟାଚାର କଲେ । ମିସେସ୍ ମିଶ୍ର ତାଙ୍କର ପ୍ରାଥମିକ ରିପୋର୍ଟ ଥାନାରେ ଦେଲାବେଳେ, ଆଡ଼ଭୋକେଟ୍ ଜେନେରାଲ୍ ଏବଂ ମୁଖ୍ୟମନ୍ତ୍ରୀ ଜେ.ବି.ଙ୍କ ପ୍ରୋତ୍ସାହନରେ ଏପରି କାର୍ଯ୍ୟ ହୋଇଛି ବୋଲି ଲେଖିବାକୁ ଭୁଲି ନଥିଲେ । ଏଇ ଘଟଣା ସାରା ଦେଶରେ ହଇଚଇ ସୃଷ୍ଟି କଲା । ଅବଶ୍ୟ ଏହାର ତଦନ୍ତଭାର ମଧ୍ୟ ସି.ବି.ଆଇକୁ ଦିଆଯାଇଥିଲା । ଏସବୁ ସମସ୍ୟା ଯୋଗୁ ଓଡ଼ିଶା ପୁଲିସ୍ ମହକୁମାରେ ପରିସ୍ଥିତି ଭଲ ନଥାଏ ।

ସେଇ ବର୍ଷ ଅଗଷ୍ଟ ମାସରେ ମୋର ଅବସର ନେବା କଥା ମାତ୍ର ମୁଁ ଆଶା କରିଥିଲି ମୁଁ ଅବସର ନେବା ପୂର୍ବରୁ ମୋତେ ଆଇ.ଜି. ପଦକୁ ପଦନୋତି ଦେବେ ମାତ୍ର ମାର୍ଚ୍ଚ ମାସ ସୁଦ୍ଧା କିଛି ନହେବା ହେତୁ ମୁଁ ତତ୍ କାଳୀନ ମୁଖ୍ୟ ଶାସନ ସଚିବ ଶ୍ରୀଯୁକ୍ତ ମିଶ୍ରଙ୍କୁ ଏକଥା କହିଥିଲି । ସେ ମୋ କଥା ଶୁଣିଲା ପରେ, ଏକଥା ବୁଝିବେ ଏବଂ ମୁଁ ଅବସର ପାଇବା ପୂର୍ବରୁ ନିଶ୍ଚିତ ଭାବେ ପ୍ରମୋଶନ ପାଇଁ ଅବସର ନେବି ବୋଲି କହିଥିଲେ । ଯଦିଓ ଆଇ.ଜି. ସ୍ତରରେ କେତେକ ପଦଖାଲି ଥାଏ ତାକୁ ପୂରଣ କରିବା ପାଇଁ ଘରୋଇ ବିଭାଗ କେତେକ ଟେକ୍‌ନିକାଲ୍ ପଏଣ୍ଟ ଯୋଗୁ ପୂରଣ କରୁନଥାଏ । ଫେବୃଆରୀ ମାସ ଶେଷ ଆଡ଼କୁ ସୁଚିତ୍ ଦାସ,

ଡେପୁଟେସନରୁ ଫେରି ଆଇ.ଜି. ପଦ ନପାଇ ଘରେ ବସିଥାନ୍ତି । ଏପ୍ରିଲି ମାସ ବେଳକୁ ତିନିଜଣ ଆଇ.ଜି. ହେଲେ ମାତ୍ର ମୋ ପାଳି ସେଥିରେ ପଡ଼ିନଥିଲା । ମୋ ଉପରେ ଗୋପାଳ ନନ୍ଦ ଥିଲେ । ଅବଶ୍ୟ, ସେ ଆମ ତଳେ ଥିଲେ ମାତ୍ର କୋର୍ଟରେ କେସ୍ କରି ବହୁ ବର୍ଷ ପରେ, ସେ ଆମ ଉପରକୁ ଯାଇଥିଲେ । ସେଇ କେସ୍ ସ୍ୟାଟ୍‌ରେ ଚାଲିଥିବା ବେଳେ, ଆମେ ସେପରି କିଛି ଦାୟିତ୍ୱ ନେଇ ମାମଲାକୁ ପ୍ରତିଦ୍ୱନ୍ଦ୍ୱିତା କରିନଥିବା ଯୋଗୁ, ତାହା ଆମ ବିରୁଦ୍ଧରେ ଯାଇଥିଲା । ପରେ ସୁପ୍ରିମ୍ କୋର୍ଟରେ ଅପିଲ୍ କଲାବେଳକୁ ନେଡ଼ିଗୁଡ଼ କହୁଣୀକୁ ଗଡ଼ିଯାଇଥିଲା ।

ମୋର ପଦନ୍ନୋତି ପାଇଁ ଘରୋଇ ବିଭାଗରେ କେତେଜଣ ବନ୍ଧୁ ତତ୍‌ପରତା ପ୍ରକାଶ କରିଥିଲେ ମଧ୍ୟ ପ୍ରମୋଶନ ହୋଇପାରୁନଥାଏ । ତେବେ ଆଶା କରୁଥିଲି, ମେ ମାସରେ ଡ଼କ୍ଟର ପଣ୍ଡାଙ୍କ ସଙ୍ଗେ ତିନିଜଣ ଅବସର ନେଲାପରେ, ମୋର ପ୍ରମୋଶନ ମାସେ, ଦୁଇମାସ ପାଇଁ ହେବ । ଡକ୍ଟର ପଣ୍ଡା ମେ ମାସରେ ଅବସର ନେଉଥିବା ଯୋଗୁ ସେ ମଧ୍ୟ ମୋ ପ୍ରମୋଶନ ପାଇଁ ସେପରି କିଛି କାର୍ଯ୍ୟ କରିନଥିଲେ । ଠିକ୍ ଏଇ ସମୟରେ ମେ ମାସ ପନ୍ଦର ତାରିଖ ଦିନ କେନ୍ଦ୍ରମନ୍ତ୍ରୀମଣ୍ଡଳର ନିଷ୍ପତ୍ତି ଅନୁସାରେ କେନ୍ଦ୍ରକର୍ମଚାରୀଙ୍କ ଅବସର ଗ୍ରହଣ ସମୟ ଷାଠିଏ ବର୍ଷକୁ ବଢ଼ିଗଲା । ଠିକ୍ ପନ୍ଦର ଦିନ ପୂର୍ବରୁ ଡକ୍ଟର ପଣ୍ଡା, ଆଉ ଦୁଇବର୍ଷ ପାଇଁ ଚାକିରୀ ସମୟ ପାଇଗଲେ । ମୁଁ ମଧ୍ୟ ଟିକିଏ ଆଶ୍ୱସ୍ତି ପାଇଲି । ମୋର ଆଇ.ଜି.କୁ ପ୍ରମୋଶନ ଜୁଲାଇ ମାସ ୧ ତାରିଖରେ ହେଲା ଏବଂ ମୁଁ ଜୁଲାଇ ତିନି ତାରିଖରେ ହୋମଗାର୍ଡ଼ ଆଇ.ଜି. ଭାବେ ଜଏନ୍ କଲି ।

ଗୃହରକ୍ଷୀ ବାହିନୀରେ ଜଏନ୍ କଲା ପରେ କୁଳମଣି ଦେଓ ମଧ୍ୟ ଆଇ.ଜି. ହେବା ପାଇଁ ଲାଗିପଡ଼ିଲେ । ସେ ତାଙ୍କ ସମ୍ବନ୍ଧି ଭୂଜବଳଙ୍କୁ କହିବାରେ ମିଃ ଭୂଜବଳ ସୁଧାଂଶୁ ମିଶ୍ରଙ୍କୁ ତାଙ୍କ କଥା କହି ଯେ କୌଣସି ପ୍ରକାରେ ତାଙ୍କୁ ପ୍ରମୋଶନ ଦେବାର ବନ୍ଦୋବସ୍ତ କରିବାକୁ ଅନୁରୋଧ କଲେ । ଯଦିଓ ସଂଜୀବ ହୋତା, ଘରୋଇ ସଚିବ ଭାବେ ଏବଂ କୁଳମଣିଙ୍କର ସହପାଠୀ ଅନ୍ତରଙ୍ଗ ବନ୍ଧୁ ଭାବେ ସାହାଯ୍ୟ କାରିବା ପାଇଁ ପ୍ରସ୍ତୁତ ଥିଲେ କିନ୍ତୁ ତାଙ୍କର ପ୍ରମୋଶନ ହୋଇ ପାରୁନଥିଲା । କାରଣ କ୍ୟାଡ଼ର ପୋଷ୍ଟରେ ଆଇ.ଜି. ଲେଭଲ୍‌ରେ କୌଣସି ଭାକୋନ୍‌ସି ନଥିଲା । ଗୃହରକ୍ଷୀ ବାହିନୀର ଆଇ.ଜି. ଭାବେ ମୁଁ ବରହମପୁର ଗସ୍ତରେ ଯାଇଥିଲା ବେଳେ, ମୁଖ୍ୟ ଶାସନ ସଚିବ ଶ୍ରୀ ମିଶ୍ର ମୋତେ ଫୋନ୍ କଲେ ଏବଂ ଫେରିଲା ବାଟରେ ତାଙ୍କୁ ଦେଖା କରିବାକୁ କହିଲେ । ମୁଁ ବରହମପୁରରୁ ଫେରି ତାଙ୍କରି ବାଟ ଦେଇ ଆସିଲାବେଳେ ଆମେ ସାଙ୍ଗ ହୋଇ ସଚିବାଳୟରୁ କଟକ ତାଙ୍କରି ଗାଡ଼ିରେ ଆସିଲୁ । ଆସିଲା ବାଟରେ ସେ ମୋତେ କହିଲେ ଯେ କିଛି ଦିନ ପାଇଁ ମୋତେ ପୁଣିଥରେ ଚଳଚ୍ଚିତ୍ର ନିଗମର ଏମ.ଡ଼ି. ହୋଇ ଯିବାକୁ । କାରଣ ମୁଁ ନଗଲେ କ୍ୟାଡ଼ର ପୋଷ୍ଟିଂରେ ଭ୍ୟାକେନ୍ସି ହେଉନି ତେଣୁ କୁଳମଣି ପଦନ୍ନୋତି ପାଇପାରିବେ ନାହିଁ । ମୋତେ ତାଙ୍କ ଅନୁରୋଧ ରକ୍ଷାକରି ପୁଣିଥରେ ଚଳଚ୍ଚିତ୍ର ନିଗମକୁ ଏମ.ଡ଼ି. ହୋଇଗଲି । ତା ଆଗରୁ ମୁଁ ଲେଖିକରି ଦେଇଥିଲି ଯେ ମୋତେ ଆଉ ଡେପୁଟେସନରେ ନପଠାଇବା ପାଇଁ । ମୁଁ ଗଲାପରେ କୁଳମଣି ପ୍ରମୋଶନ ପାଇ ହୋମଗାର୍ଡ଼ର ଆଇ.ଜି. ହେଲେ ।

ମୁଁ ଦ୍ୱିତୀୟ ଥର ପାଇଁ ଏମ୍.ଡ଼ି. ଥିଲା ବେଳେ ଗୋଟିଏ ତ୍ରିଭାଷୀ ବଙ୍ଗଳାଦେଶୀ, ଓଡ଼ିଆ ଏବଂ ବଙ୍ଗଳା ଛବିର ସୁଟିଂପାଇଁ କୁଲୁ, ମାନାଲି ଯାଇଥିଲି । ସେଠାରୁ ଫେରିଲା ପରେ

ଶୁଣିଲି ମୋତେ ମୁଖ୍ୟମନ୍ତ୍ରୀ ଖୋଜୁଛନ୍ତି ଏବଂ ତାଙ୍କୁ ଦେଖା କରିବାକୁ କହିଛନ୍ତି । ମୁଁ ଆସିବା ପରଦିନ ତାଙ୍କୁ ଦେଖା କରିବାକୁ ଗଲି । ମୁଁ ଗଲାବେଳକୁ (ସକାଳ) ସେଠାରେ ସ୍ପେଶାଲ ବ୍ରାଞ୍ଚ ଡି.ଆଇ.ଜି. ବିପ୍ରଚରଣ ଥିଲେ । ଜେ.ବି. ଯେଉଁଦିନଠାରୁ ମୋତେ ସୁନାବେଡ଼ା ବଦଳିକରି ଥିଲେ, ସେଇଦିନଠାରୁ ମୁଁ ତାଙ୍କୁ ଦେଖାକରିନଥିଲି କି କିଛି କହିନଥିଲି । ତେଣୁ ମୁଁ ଦେଖାକଲା ପରେ, ସେ କହିଲେ ମୋତେ ସ୍ପେଶାଲ ବ୍ରାଞ୍ଚର ଅତିରିକ୍ତ ନିର୍ଦ୍ଦେଶକ ହୋଇଯିବା ପାଇଁ । ମୁଁ ମନା କରିନଥିଲି । ଆଗରୁ ମୁଁ କେବେହେଲେ ସ୍ପେଶାଲ ବ୍ରାଞ୍ଚରେ କାମ କରି ନଥିଲି । ତେଣୁ ମୋତେ ସେଠାରେ କାମ କରିବା କଷ୍ଟକର ହେବ ବୋଲି ଭାବୁଥିଲି । ମୁଁ ସ୍ପେଶାଲ ବ୍ରାଞ୍ଚରେ ଜଏନ୍ କରିବାପରେ ଗୋପାଳନନ୍ଦ ସେଠାରୁ ଚଳଚ୍ଚିତ୍ର ନିଗମକୁ ଗଲେ । ସେ ଭାବିଲେ, ମୁଁ ତାଙ୍କୁ ବଦଳି କରିଦେଲି । ତାଙ୍କ ବଦଳି ମୋର ପୋଷ୍ଟିଂ ଯୋଗୁ ହେଲା ଏଥିରେ ସନ୍ଦେହ ନାହିଁ ମାତ୍ର ମୋର ସେଥିରେ କିଛି ହାତ ନଥିଲା କି କହିବାର ନଥିଲା ।

ମୁଁ ଜଏନ୍ କଲା ବେଳେ ଦୀଲିପ୍ ମହାପାତ୍ର ନିର୍ଦ୍ଦେଶକ, ସ୍ପେଶାଲ ବ୍ରାଞ୍ଚ ଥିଲେ । ମୁଁ ତାଙ୍କ ଅଜ୍ଞତାରେ ଆସିଥିବାରୁ ମୋ ଉପରେ ସେ ବିଶେଷ ଖୁସି ନଥିଲେ । ସେ ଆଗରୁ ବିପ୍ରଚରଣଙ୍କୁ ସେଠାରୁ ବିଦାୟ କରିବାକୁ ଚାହୁଁଥିଲେ ମାତ୍ର ଜେ.ବି. ଙ୍କ ଅତ୍ୟନ୍ତ ନିକଟତମ ଲୋକ ହିସାବରେ ସେ ତାଙ୍କୁ ସେଠାରୁ ହଟାଇ ପାରୁନଥିଲେ । ସନ୍ଦେହ କଲେ, ଗୋପାଳଙ୍କ ସ୍ଥାନରେ ବିପ୍ରଚରଣ ଜେ.ବି.ଙ୍କୁ କହି ମୋତେ ନେଲେ । ଏହା ସତ୍ୟ ଯେ, ଜେ.ବି. ଚାହୁଁଥିଲେ ମିଃ ମହାପାତ୍ରଙ୍କୁ ନିର୍ଦ୍ଦେଶକ ପଦରୁ ହଟାଇ ଜହନ୍ ନାୟକଙ୍କୁ ତାଙ୍କ ସ୍ଥାନରେ ନିର୍ଦ୍ଦେଶକ କରିବା ପାଇଁ ଏବଂ ଏଇ ମର୍ମରେ ଗୋଟିଏ ବଦଳି ପ୍ରସ୍ତାବ ଦେବା ପାଇଁ ସେ ତତ୍‌କାଳୀନ ଡି.ଜି.ଡକ୍ଟର ବନବିହାରୀ ପଣ୍ଡାଙ୍କୁ କହିଥିଲେ । ତାଙ୍କ ପ୍ରସ୍ତାବ ଅନୁସାରେ ଜହନ ନାୟକଙ୍କୁ ଅପରାଧ ବିଭାଗରୁ ସ୍ପେଶାଲ ବ୍ରାଞ୍ଚକୁ ଆଣି, ତାଙ୍କ ସ୍ଥାନରେ ମିଃ ମହାପାତ୍ରଙ୍କୁ ପୋଷ୍ଟିଂ କରିବା ପାଇଁ ମାତ୍ର ଡି.ଜି. ମିଃ ପଣ୍ଡା ମୁଖ୍ୟମନ୍ତ୍ରୀଙ୍କୁ ମନା କରିଥିଲେ । ତେଣୁ ମିଃ ମହାପାତ୍ରଙ୍କ ବଦଳି ସ୍ପେଶାଲ ବ୍ରାଞ୍ଚରୁ ହୋଇପାରିଲା ନାହିଁ ।

ମୁଁ ଜଏନ୍ କଲାପରେ କଥା ପ୍ରଚାର ହେଲା ଯେ ଏ.ବି. ତ୍ରିପାଠୀ ଙ୍କ ବିରୁଦ୍ଧରେ ଗୁପ୍ତ ଖବର ସଂଗ୍ରହ କରି, ତାଙ୍କ ବିରୁଦ୍ଧରେ ଯେପରି ଗୋଟିଏ ମାମଲା ହୋଇପାରିବ ସେଥିଲାଗି ଜେ.ବି ପଟ୍ଟନାୟକ ମୋତେ ପୋଷ୍ଟିଂ କରିଛନ୍ତି । ଏହା କିନ୍ତୁ ଅତ୍ୟନ୍ତ ଅସତ୍ୟ । ମୁଖ୍ୟମନ୍ତ୍ରୀ ମୋତେ ଏ ବିଷୟରେ କେବେ କିଛି କହିନଥିଲେ । ଯଦିଓ ଏ.ବି. ତ୍ରିପାଠୀ ସରକାରୀ ଚାକିରୀରୁ ଅବସର ଗ୍ରହଣ କରିଥିଲେ ମାତ୍ର ଅଞ୍ଜନା-ଇନ୍ଦ୍ରଜିତ ମାମଲାରେ ହାଇକୋର୍ଟ ନିର୍ଦ୍ଦେଶରେ ଗୋଟିଏ ସତ୍ୟପାଠ ଦାଖଲ କଲାପରେ, ସେ ଏଇ ବିବାଦ ସହିତ ଜଡ଼ିତ ହୋଇଯାଇଥିଲେ । ଅଞ୍ଜନା ମିଶ୍ର ମାମଲା ପୁଲିସ ବିଭାଗରେ ଏକ ପ୍ରକାର ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଓଡ଼ିଶା ରାଜନୀତିରେ ସଂକଟ ସୃଷ୍ଟି କରିଥିଲା । ୨୫.୯.୧୯୯୭ ମସିହାରେ ଅଞ୍ଜନା ମିଶ୍ର ତାଙ୍କ ସ୍ୱାମୀ ସୁବାସ ମିଶ୍ରଙ୍କ ନାମରେ ନିର୍ଯ୍ୟାତନା ଅଭିଯୋଗ କରି ମକଦ୍ଦମା କରିଥିଲେ । ସେଇ ମାମଲାର ତଦନ୍ତ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ସୁରେନ୍ଦ୍ର ନାଥ ସ୍ୱାଇଁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଥିଲା ଏବଂ ତଦନ୍ତ ଚାଲିଥିଲା ବେଳେ ସୁରେନ୍ଦ୍ର ନାଥ ସ୍ୱାଇଁ, ଡି.ଜି ଶ୍ରୀ ତ୍ରିପାଠୀଙ୍କ ମଧ୍ୟରେ ମାମଲାର ତଦନ୍ତ ତତ୍ତ୍ୱାବଧାନକୁ ନେଇ ମତ ଭେଦ ସୃଷ୍ଟି ହୋଇଥିଲା । ସେ ସମୟରେ

ଆଡ଼ଭୋକେଟ ଜେନେରାଲ୍ ମିଃ ରାଏ ଏବଂ ଡି.ଜି. ଶ୍ରୀ ତ୍ରିପାଠୀଙ୍କ ସଂର୍ପକ ଅତ୍ୟନ୍ତ ଭଲ ଥିଲା । ଅଞ୍ଜନା ନିର୍ଯ୍ୟାତନା ମାମଲାର ତଦନ୍ତ ବେଳେ, ମହିଳା ପୁଲିସ୍ ଅଫିସର ଆରତୀ ମିଶ୍ର, ତଦନ୍ତରେ ସାହାଯ୍ୟ କରୁଥିଲେ । ଏଇ ତଦନ୍ତ ଚାଲୁଥିବା ବେଳେ, ଅଞ୍ଜନା ମିଶ୍ର ଆଡ଼ଭୋକେଟ୍ ଜେନେରାଲ ମିଃ ରାଏଙ୍କ ଘରକୁ ଜୁନ୍ ୧୧ ତାରିଖରେ ଯାଇଥିଲେ ଏବଂ ଜୁନ୍ ୧୯ ତାରିଖରେ, ସେ ଭାରତରେ ନଥିବା ସମୟରେ ତାଙ୍କ ବିରୁଦ୍ଧରେ ଅଶ୍ଳୀଳୀନତା ବ୍ୟବହାର ଏବଂ ପାଶବିକ ଅତ୍ୟାଚାର ଉଦ୍ୟମର ଅଭିଯୋଗ ଆଣି, କାଣ୍ଟନ୍‌ମେଣ୍ଟ ଥାନାରେ ମାମଲା ରଜୁ କରିଥିଲେ । ଏଇ ମାମଲା ଡେରିରେ ରୁଜୁ ହେବାର ଅନ୍ତରାଳରେ ଯେଉଁସବୁ ଖବର ପରେ ସମ୍ବାଦ ପତ୍ର ଏବଂ ସତ୍ୟପାଠରେ ଜଣାଗଲା, ତାହା ମୁଖ୍ୟମନ୍ତ୍ରୀ ଜେ.ବି.ଙ୍କୁ ମଧ ତାହା ମଧକୁ ଟାଣି ଆଣିଥିଲା । ଗୋଟିଏ ମହିଳା ଅନୁଷ୍ଠାନ, କେତେକ ମହିଳାଙ୍କ ସହଯୋଗରେ ଏ ସମସ୍ତ ଘଟଣାକୁ ପ୍ରତେକ ଦିନ ସମ୍ବାଦ ପତ୍ର ମାଧମରେ ଲୋକଲୋଚନକୁ ଆଣୁଥିଲେ । ପ୍ରତ୍ୟେକ ଦିନ ସମ୍ବାଦ ପତ୍ରମାନଙ୍କ ଶୀର୍ଷ ସମ୍ବାଦ ଭାବେ ଅଞ୍ଜନା-ଇନ୍ଦ୍ରଜିତ୍‌ଙ୍କୁ କେନ୍ଦ୍ର କରି ସମ୍ବାଦ ବାହାରୁ ଥାଏ ଏବଂ ଇନ୍ଦ୍ରଜିତ୍‌ଙ୍କୁ ଆଡ଼ଭୋକେଟ୍ ଜେନେରାଲ ପଦରୁ ହଟାଯାଉ ବୋଲି ଦାବୀ କରାଯାଉଥାଏ । ମୁଖ୍ୟମନ୍ତ୍ରୀ "ଆଇନ୍ ତା ବାଟରେ ଯାଉ" ବୋଲି କହିଲା ପରେ, ମହିଳା ଅନୁଷ୍ଠାନ ରାଜନୈତିକ ଦଳ, ମିଃ ରାଏଙ୍କ ବିରୁଦ୍ଧରେ ରାଜ ରାସ୍ତାକୁ ବାହାରି ପଡ଼ିଲେ ଏବଂ ମିଃ ରାଏ ମୁଖ୍ୟମନ୍ତ୍ରୀଙ୍କ ଅତ୍ୟନ୍ତ ପାଖଲୋକ ହୋଇଥିବା ଦୃଷ୍ଟିରୁ ଏହି ମାମଲାକୁ କେନ୍ଦ୍ର ତଦନ୍ତ ବ୍ୟୁରୋ ତଦନ୍ତକରୁ ବୋଲି ଦାବି ହେଲା । ଶେଷରେ କେନ୍ଦ୍ର ତଦନ୍ତ ବ୍ୟୁରୋ ଏହାର ତଦନ୍ତ ଭାର ଗ୍ରହଣ କଲେ ଏବଂ ତାଙ୍କର ଇନ୍‌କୁ । ବେଳେ ଇନ୍ଦ୍ରଜିତ୍‌ଙ୍କ ବିଷୟରେ ଡି.ଜି. ମିଃ ତ୍ରିପାଠୀଙ୍କୁ ପଚାରିଥିଲେ । ମିଃ ତ୍ରିପାଠୀ, ସି.ବି.ଆଇ, ଇନ୍‌କ୍ବାରୀ ସମୟରେ ଯାହା କହିଥିଲେ, ସେଥିମଧରୁ ଗୋଟିଏ ଲାଇନ୍ ଇନ୍ଦ୍ରଜିତ୍‌ଙ୍କ ଚରିତ୍ରକୁ ଆକ୍ଷେପ କଲାପରି କହିଥିଲେ ବୋଲି ଇନ୍ଦ୍ରଜିତ୍ ଜାଣିପାରିଲାପରେ, ତାଙ୍କ ସହିତ ତାଙ୍କର ସଂର୍ପକ ଆସ୍ତେ ଆସ୍ତେ ତିକ୍ତ ହୋଇ ଉଠିଥିଲା । ପରେ ମିଃ ତ୍ରିପାଠୀ ଚାକିରୀରୁ ଅବସର ନେଲା ପରେ ଓଡ଼ିଶା ପବ୍ଲିକ୍ ସରଭିସ୍ କମିଶନର ଅଧକ୍ଷ ହେବାର ସମ୍ଭାବନା ଥିଲା ଏବଂ ଏକଥା ଆଗରୁ ପ୍ରଚାର ଚାଲିଥିଲା । କମିଶନର ଅଧକ୍ଷ ପଦପାଇଁ ମୁଖ୍ୟମନ୍ତ୍ରୀଙ୍କ ନିଷ୍ପତ୍ତି ହିଁ ଶେଷ ନିଷ୍ପତ୍ତି ହୋଇଥିବା ଯୋଗୁ, ସେ ଇନ୍ଦ୍ରଜିତଙ୍କ ଉପରେ ଆସ୍ଥା ରଖିଥିଲେ । ସେ ଜାଣିଥିଲେ ଇନ୍ଦ୍ରଜିତ୍ କହିଲେ ଜେ.ବି. କେବେ ମନା କରି ପାରିବେ ନାହିଁ । ମାତ୍ର ଅବସର ପରେ ଜେ.ବି. ତାଙ୍କୁ ଖାଲିପଡ଼ିଥିବା ଅଧକ୍ଷ ପୋଷ୍ଟରେ ପୋଷ୍ଟିଂ ନଦେଇ, କମିଶନର ମେମ୍ବରକୁ ଅଧକ୍ଷ ପଦବୀ ଦେଲେ । ସେଥିଯୋଗୁଁ ମିଃ ତ୍ରିପାଠୀ ମିଃ ରାଏଙ୍କୁ ସନ୍ଦେହ କଲେ ଏବଂ ତିକ୍ତତା ଆହୁରି ଗମ୍ଭୀର ଆକାର ଧାରଣ କଲା ପରେ ପରେ ଏହି ମାମଲାକୁ କେନ୍ଦ୍ରକରି ତିନିଜଣ ତୁଙ୍ଗ ପୁଲିସ ଅଫିସରଙ୍କ ଓଡ଼ିଶାର ଉଚ୍ଚନ୍ୟାୟାଳୟରେ ସତ୍ୟପାଠକୁ ନେଇ ନାନା ପ୍ରକାର ସମ୍ବାଦ ପ୍ରକାଶ ପାଇଲା । ପରେ ମହିଳା ପୁଲିସ୍ ସବ୍‌ଇନ୍‌ସ୍‌ପେକ୍ଟର ମଧ ସତ୍ୟପାଠ ଦାଖଲ କଲେ । ଏ ସମସ୍ତ ଘଟଣା ଓଡ଼ିଶା ପୁଲିସ୍‌ର ସପକ୍ଷରେ ଯାଇନଥିଲା ବରଂ ଲୋକଚକ୍ଷୁରେ ପୁଲିସ୍ ଇମେଜ୍ କ୍ଷୁଣ୍ଣ ହୋଇଥିଲା । କେବଳ ସେତିକି ନୁହେଁ, ବିରୋଧି ଏବଂ ସରକାରୀ ରାଜନୈତିକ ଦଳ ମଧ ପୁଲିସ୍ ବିଭାଗକୁ ନିଜ ନିଜକୁ ସୁହାଇଲା ପରି ବ୍ୟବହାର କରିବାକୁ ଆଗେଇ ଆସିଲେ । ଯେହେତୁ ମିଃ ତ୍ରିପାଠୀଙ୍କ

ସତ୍ୟପାଠ  ଜେ.ବି. ଏବଂ ଇନ୍ଦ୍ରଜିତ୍‌ଙ୍କ ବିରୁଦ୍ଧରେ ଯାଇଥିଲା ଏବଂ ଇନ୍ଦ୍ରଜିତ୍ ମିଃ ତ୍ରିପାଠୀଙ୍କ ସହିତ ମୋର ସଂପର୍କ ଭଲ ଥିଲା  ମୋର ଅତିରିକ୍ତ ଡାଇରେକ୍ଟର ଇଣ୍ଟେଲିଜେନ୍ସ ପୋଷ୍ଟିଂ ହେଲାପରେ ପୁଲିସ ବିଭାଗର କେତେକ ଜଣାଶୁଣା ଅଫିସର କାନରେ କହିବାକୁ ଆରମ୍ଭ କଲେ ଯେ, ମୋତେ ଜାନକୀ ପଟ୍ଟନାୟକ ଏ.ବି. ତ୍ରିପାଠୀଙ୍କ ବିରୁଦ୍ଧରେ ଖବର ସଂଗ୍ରହ କରିବା ଲାଗି ଏଇ ପୋଷ୍ଟିଂ ଦେଇଛନ୍ତି, ଯାହାକି ସତ୍ୟନଥିଲା କେବଳ କେତେକ ଅଫିସରଙ୍କ ଚାଲିଥିଲା ।

ମୁଁ ଜଏନ୍ କଲା ପରେ, ମାଲକାନଗିରି ଅଞ୍ଚଳରେ ନକ୍ସଲ ଉପଦ୍ରୁତ ଅଞ୍ଚଳକୁ ଯାଇ, ନକସଲପନ୍ଥୀମାନେ ପୁଲିସ କ୍ୟାମ୍ପ୍ ଉପରେ ଆକ୍ରମଣ କରି ମାରିଥିବା ଏବଂ ଲୁଟି ନେଇଥିବା ବନ୍ଧୁକ ଇତ୍ୟାଦି ବିଷୟରେ ଏବଂ ସେ ଅଞ୍ଚଳରେ ନକ୍ସଲପନ୍ଥୀଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ଗୋଟିଏ ରିପୋର୍ଟ ଦେଇଥିଲି । ନକ୍ସଲପନ୍ଥୀମାନେ ମାଲାକାନ୍‌ଗିରି ଜିଲ୍ଲାରେ ଥିବା ମାଲିଗୁଡ଼ା ଆଣ୍ଟି ନକସଲପୋଷ୍ଟକୁ ଅର୍ଦ୍ଧରାତ୍ରରେ ସଶସ୍ତ୍ର ଆକ୍ରମଣ କରି ପୁଲିସର ସମସ୍ତଗୁଳିଗୁଳା ବନ୍ଧୁକ ଲୁଟି ନେଇଥିଲେ ଏବଂ ଜଣେ ହାବିଲଦାରଙ୍କୁ ଗୁଳି କରି ହତ୍ୟା କରିଥିଲେ । ଏପରି ଘରଣା ଓଡ଼ିଶା ପୁଲିସ୍ ଇତିହାସରେ ପ୍ରଥମ ଥର ପାଇଁ ଘଟି ଚହଳ ସୃଷ୍ଟି କରିଥଲା ।

ଏଇ ଘଟଣା ପରେ ଗଜପତି ଜିଲ୍ଲାର ଆର୍ ଉଦୟଗିରି ପୁଲିସ୍ ଷ୍ଟେସନ ପରିସର ମଧ୍ୟରେ ହଜାର ହଜାର ଆଦିବାସୀ ମେଳିହୋଇ ପୁଲିସ୍ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି ଦୁଇ ଜଣ ଅପରାଧିଙ୍କୁ ଜେଲଭାଙ୍ଗି, ଜେଲ ମଧ୍ୟରୁ ଆଣି ପୁଲିସ ଷ୍ଟେସନ୍ ପରିସରରେ ପୋଡ଼ି ମାରିଦେଇଥିଲେ । ପୁଲିସ୍ ଷ୍ଟେସନ୍ ଭାଙ୍ଗି ଦେଲେ । ଏଥିଲାଗି ମୋତେ ସେଠାକୁ ଯାଇ କିଛି ଦିନ ରହିବାକୁ ପଡ଼ିଥିଲା  ଏବଂ ମୁଁ ମଧ୍ୟ ଗୋଟିଏ ତଦନ୍ତ ରିପୋର୍ଟ ସରକାରଙ୍କୁ ଦେଇଥିଲି । ଏ ଘଟଣା ମଧ୍ୟ  ଜେ.ବି.ଙ୍କ ଶାସନ ବିରୁଦ୍ଧରେ ଗଲା । ତାଙ୍କର ବିରୋଧିମାନେ, ପୁଲିସର ଅପାରଗତା ଯୋଗୁ ଏପରି ଘଟଣା ଘଟିଲାବୋଲି କାହିବାକୁ ଆରମ୍ଭ କଲେ । ଏଇ ଘଟଣାରେ ଜିଲ୍ଲା ପ୍ରଶାସନ ସମୟାନୁସାରେ କାର୍ଯ୍ୟକରି ନଥିବା ଯୋଗୁ ସ୍ୱାଧୀନତା ପର ଓଡ଼ିଶାରେ ପ୍ରଥମ ଥର ପାଇଁ କିଲ୍ଲାପାଳ ଏବଂ ଜିଲ୍ଲା ପୁଲିସ୍ ଅଧକ୍ଷଙ୍କୁ ଚାକିରୀରୁ ନିଲମ୍ବିତ କରାଗଲା । ଘଟଣାକୁ କେନ୍ଦ୍ରକରି, ଗଜପତି ଜିଲ୍ଲାରେ ଆଦିବାସୀ ଏବଂ ଖ୍ରୀଷ୍ଟିୟାନ ଆଦିବାସୀମାନଙ୍କ ମଧ୍ୟରେ ଉତ୍ତେଜନା ମାସ ମାସ ଧରି ରହିଲା ଏବଂ ପୁଲିସ୍ ସେଠାରେ  କ୍ୟାମ୍ପ କରିବାକୁ ବାଧ ହେଲା । ଶ୍ରୀଯୁକ୍ତ ଅନାଦି ସାହୁ,କିଛି ଦିନ ପୂର୍ବରୁ ଜେ.ବି. ପଟ୍ଟନାୟକଙ୍କୁ ଛାଡ଼ି ବି.ଜେ.ପିରେ ଜଏନ୍ କରିଥାନ୍ତି । ସେ ମଧ୍ୟ ଘଟଣାସ୍ଥଳ ପରିଦର୍ଶନ କରିଥିଲେ । ତାଙ୍କ ଭ୍ରମଣ ପରେ ପରେ, କଂଗ୍ରେସ ଦଳ କହିଥିଲେ, ଏଇ ଘଟଣାରେ ବି.ଜେ.ପି.ର ହାତ ଅଛି ଇତ୍ୟାଦି । ଆଗକୁ ନିର୍ବାଚନ ଥିବା ଯୋଗୁ ପ୍ରତ୍ୟେକ ରାଜନୈତିକ ଦଳ ଶାସନରେ ଥିବା କଂଗ୍ରେସ ଦଳ ବିରୋଧରେ ଘଟଣାକୁ ଏକ୍ସପ୍ଲଏଟ୍ କଲେ । ସ୍ଥାନୀୟ ମନ୍ତ୍ରୀ ଆଦିବାସୀ ନେତା ଥିଲେ । ଘଟଣାସ୍ଥଳକୁ ସେ ବହୁ ଦିନ ଧରି ଯାଇନଥିଲେ । ମୁଖ୍ୟମନ୍ତ୍ରୀ ଆଠ ଦଶଦିନପରେ ଆର. ଉଦୟ ଗିରି ପରିଦର୍ଶନରେ ଗଲାବେଳକୁ ଘଟଣା କଂଗ୍ରେସ ଦଳ ବିରୋଧରେ ଯାଇଥିଲା ।

ଏଇ ଘଟଣାର ଅଳ୍ପଦିନ ପରେ, କେଉଁଝର  ଜିଲ୍ଲାର ଆନନ୍ଦପୁର ଥାନା ଅନ୍ତର୍ଗତ ମନୋହର ପୁର ଆଦିବାସୀ ଗ୍ରାମରେ ଗ୍ରାହାମ୍ ଷ୍ଟେନ୍ ଏବଂ ତାଙ୍କ ପୁତ୍ରକୁ ଦାରାସିଂହ ପୋଡ଼ି

ମାରିଦେବା ଅଭିଯୋଗ ସାରା ଦେଶରେ ପ୍ରଚାର ହେଲା । ଏଇ ଘଟଣାର ପରଦିନ ଜେ.ବି. ସେଠାରେ ପହଞ୍ଚିଲେ ଏବଂ ତାର ପୂର୍ବରୁ ଡି.ଜି. ଡକ୍ଟର ପଣ୍ଡା ମଧ୍ୟ ପହଞ୍ଚିଥିଲେ । ଗୋଟିଏ ପରେ ଗୋଟିଏ ଘଟଣା ଓଡ଼ିଶା ପୁଲିସ୍‌ର ଦକ୍ଷତା ଏବଂ କାର୍ଯ୍ୟକାରିତା ଉପରେ ଆଞ୍ଚ ଆଣୁଥିଲା । ଏଇ ଘଟଣା ପରେ ପରେ ବାରିପଦାରେ ଜଣେ ଖ୍ରୀଷ୍ଟିୟାନ୍ ନନ୍‌କୁ ରେପ୍ କଲେ ବୋଲି ଅଭିଯୋଗ ହେଲା । ମୁଁ ଏ ଘଟଣା ଜାଣିବାକୁ ବାରିପଦା ଯାଇଥିଲି ଏବଂ ଅତ୍ୟାଚାରିତା ନନ୍‌କୁ ମଧ୍ୟ ପଚାରିଥିଲି । ଘଟଣା ଯାହା ତାର ସତ୍ୟତା ଉପରେ କୌଣସି ପ୍ରକାର ସନ୍ଦେହମୁକ୍ତ ସାକ୍ଷୀ, ପ୍ରମାଣ ନଥିବା କଥା ମଧ୍ୟ ମୁଁ ଜେ.ବି. ତଥା ନିର୍ଦ୍ଦେଶକଙ୍କୁ କହିଥିଲି । ଏଇ ଘଟଣାର ମାତ୍ର ଦୁଇ ଚାରିଦିନ ପରେ, ଫୁଲବାଣୀରେ ଗୋଟିଏ ଆଦିବାସୀ ଝିଅକୁ ରେପ୍ କରି ମର୍ଡ଼ର କରାଗଲା । ସେ ବି ଖ୍ରୀଷ୍ଟିଆନ ଥିଲା । ସାରା ଦେଶରେ, ପ୍ରସାର ହେଲାଯେ ଓଡ଼ିଶାରେ ଖ୍ରୀଷ୍ଟିଆନ୍‌ଙ୍କ ଉପରେ ଅତ୍ୟାଚାର ଚାଲିଛି, ସରକାର କିଛି କରିପାରୁ ନାହାଁନ୍ତି । ଫୁଲବାଣୀ ଘଟଣାରେ ମୃତା ଝିଅକୁ ତାର ଗାଁର ନିଜ ଲୋକ ରେପ୍‌କରି ମର୍ଡ଼ର କରିଥିଲା, ମାତ୍ର ଏକଥା ଜଣା ପଡ଼ିବା ପୂର୍ବରୁ ଜେ.ବି. ବିରୋଧ ପ୍ରଚାର ଖୁବ୍ ଜୋରରେ ଚାଲିଥିଲା । ଏଇ ଘଟଣା ପରେ, ଜେ.ବି. ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ପଡ଼ିଲା ଯଦିଓ ନନ୍ ରେପ୍ କେଶ, ଫୁଲବାଣୀ କେଶରେ ତାଙ୍କର କିଛି କରିବାର ନଥିଲା । କାରଣ ପ୍ରଥମଟି ମିଥ୍ୟା, ଅନ୍ୟଟିରେ ନିଜ ଗାଁର ନିଜ ଲୋକ ରେପ୍ କରିଥିଲେ । ସେ ଯିବା ପୂର୍ବରୁ ଇନ୍ଦ୍ରଜିତ୍ ରାଏ, ମଧ୍ୟ ଇସ୍ତଫା ଦେଇଥିଲେ ।

ଜେ.ବି. ଗଲା ପରେ ଆଦିବାସୀ ନେତୃସ୍ଥାନୀୟ କେନ୍ଦ୍ରମନ୍ତ୍ରୀ ଗିରିଧାରୀ ଗମାଙ୍ଗ ମୁଖ୍ୟ ମନ୍ତ୍ରୀ ପଦ ଅଳଙ୍କୃତ କଲେ । ସେ କଳାକାର, ଭଦ୍ରଲୋକ । ରାଜ୍ୟ ରାଜନୀତିରେ ପ୍ରବେଶ ତାଙ୍କର ପ୍ରଥମ । ତାଙ୍କ ରାଜ୍ୟସଭା ନିର୍ବାଚନ ମଣ୍ଡଳୀକୁ ଛାଡ଼ି ଦେଲେ, ଭୁବନେଶ୍ୱର ରାଜନୀତିରେ ତାଙ୍କର ଦଖଲ ନଥିଲା । ତେଣୁ ସେ ଆସୁ ଆସୁ ପ୍ରଥମେ ମୁଖ୍ୟ ଶାସନ ସଚିବଙ୍କୁ ରାତିଅଧରେ ବିଦାୟ କଲେ ଏବଂ ପରେ ଡଃ ପଣ୍ଡାଙ୍କୁ ଡି.ଜି. ପଦରୁ ବିଦାୟ ଦେଇ ମିଃ ଡି.କେ. ମହାପାତ୍ରଙ୍କୁ ସେ ପଦମଣ୍ଡନ କରିବାକୁ ନେଲେ । ମିଃ ମହାପାତ୍ର, ଡି.ଜି. ହେବା ପାଇଁ କେନ୍ଦ୍ରରୁ ଆସିଥିଲେ, ମାତ୍ର ହଠାତ୍ ଷାଠିଏ ବର୍ଷ ଅବସର ବୟସ ସୀମା ହେତୁ ଡକ୍ଟର ପଣ୍ଡା, ସେଇପଦବୀରେ ଥିବା ହେତୁ, ସେ ଡି.ଜି. ହୋଇ ପାରୁନଥିଲେ ମାତ୍ର କିପରି ଡି.ଜି ହେବେ ସେଥିପାଇଁ ଚେଷ୍ଟିତ ଥିଲେ । ଏପରିକି ଡକ୍ଟର ପଣ୍ଡା, ଡି.ଜି. ଥିବା ସମୟରେ ତାଙ୍କର ଡକ୍ଟର ପଣ୍ଡାଙ୍କ ସହିତ କଥାବାର୍ତ୍ତା ନଥିଲା । ସେଇ ପୂର୍ବ ସମସ୍ୟା ପ୍ରଚଳନ ହେଉଥିଲା । ତେଣୁ ସେ ଡି.ଜି ହେଲାପରେ, ପୁଲିସ ପ୍ରଶାସନରେ ଏକ ଆଲୋଡ଼ନ ସୃଷ୍ଟି କରିବା ପାଇଁ, ପ୍ରଥମେ ଯେଉଁ ଅଫିସରମାନେ ଗୋଟିଏ ଜିଲ୍ଲାରେ ଦଶ ବର୍ଷରୁ ଉର୍ଦ୍ଧ୍ୱ ଥିଲେ, ତାଙ୍କୁ ବଦଳି କଲେ । ଶହ ଶହ ଅଫିସର ବଦଳି ହେଲେ, ମାତ୍ର କେତେ ଜଏନ୍ କଲେ, କେତେ ଜଏନ୍ ନକରି ତାଙ୍କର ଧର୍ମବାପ, ରାଜନୈତିକ ନେତାଙ୍କ ଘରେ ପଡ଼ିରହିଲେ । ମିଃ ମହାପାତ୍ର ମଧ୍ୟ ଭଲ ଭାବେ ଜାଣିଥିଲେ ଯେ ଗୋଟିଏ ଜିଲ୍ଲାରେ ଦଶ ବର୍ଷରୁ ଯେଉଁ ପୁଲିସ୍ ଅଫିସର ଅଧିକ ରହିଛି, ତାହା କେବଳ ତାଙ୍କ ଧର୍ମବାପାଙ୍କ ଯୋଗୁ ସମ୍ଭବ ହୋଇଛି । ଏକଥା ଜାଣି ସୁଦ୍ଧା ସେ ଏପରି ବଦଳି କରିବା ଯୋଗୁ, ସମସ୍ତେ ତାଙ୍କ ବିରୁଦ୍ଧରେ ଲାଗିଗଲେ ।

ତଳିଆ ଅଫିସରମାନଙ୍କୁ ଛାଡ଼ିଦେଲେ, ସେ ତାଙ୍କର ସହକର୍ମୀମାନଙ୍କ ସଙ୍ଗେ ମଧ, ଯଥୋଚିତ ବ୍ୟବହାର ପ୍ରଦର୍ଶନ କଲେନି । ସହକର୍ମୀମାନଙ୍କୁ ସ୍ଥାନକାଳ ବିଶେଷରେ ଅପମାନିତ, ଲଜ୍ଜିତ କରିବାକୁ କୁଣ୍ଠାବୋଧ କଲେନି । ଦିଲ୍ଲୀ ଚଳଣୀରେ, କାମ କରିବା ପାଇଁ କେତେକଙ୍କୁ ହଇରାଣ କରିବାକୁ ଲାଗିଲେ । ଏଥିରେ ତାଙ୍କର ନିଜ ବ୍ୟାଚ୍ ମେଟ୍‌ଙ୍କ ଠାରୁ ଆରମ୍ଭ କରି ଅନ୍ୟାନ୍ୟ ସହକର୍ମୀ ଅଫିସରମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ଥିଲେ । ପୁଣି ଉପରସ୍ତରରେ ସେଇପ୍ରକାର ଅବସ୍ଥା ସୃଷ୍ଟି ହେଲା । ଗମାଙ୍ଗ ମନ୍ତ୍ରୀହେଲା ପରେ, ପ୍ରସାଦ ହରିଚନ୍ଦନ ଘରୋଇ ରାଷ୍ଟ୍ରମନ୍ତ୍ରୀ ହେଲେ । ପୁଲିସ ବିଭାଗ କଥା, ମୁଖ୍ୟମନ୍ତ୍ରୀ ତାଙ୍କରି ଉପରେ ଛାଡ଼ି ଦେଲେ । ଡି.ଜି. ତାଙ୍କ ସହିତ ହାତମିଳାଇ କାମ କରିବାକୁ ଆରମ୍ଭ କଲେ ।

ମିଃ ଗମାଙ୍ଗ ମୁଖ୍ୟମନ୍ତ୍ରୀ ହେଲାପରେ, ମୋର ଇଣ୍ଟେଲେଜେନ୍ସରୁ ବଦଳି ହେଲା । ମୋର ବଦଳି ପାଇଁ ଯେଉଁମାନେ ହରିଚନ୍ଦନକୁ, ମୁଁ ଜେ.ବି. ପଟ୍ଟନାୟକ ଲୋକ ବୋଲି କହି ବଦଳି କରିଥିଲେ, ସେ ମଧ ବେଶୀ ଦିନରହି ପାରିଲେ ନାହିଁ । ମୋ ବଦଳି ସଙ୍ଗେ ବିପ୍ରଚରଣଙ୍କ, ପି.ଟି.ସି.କୁ ବଦଳି ହେଲା । ମୁଁ ୧୭.୩.୯୯ ରେ, ନିର୍ଦ୍ଦେଶକ କମ୍ ଆଇ.ଜି, ମାନବିକ ଅଧିକାର ପ୍ରକୋଷ୍ଠ ସେଲ୍‌ରେ ଜଏନ୍ କଲି ।

ସମସ୍ତେ ଆଶା କରିଥିଲେ ଦୀଲିପ ମହାପାତ୍ର, ଡକ୍ଟର ପଣ୍ଡାଙ୍କ ପରେ ତାଙ୍କର ସମସ୍ତ ସମୟତକ ଡି.ଜି ପଦବୀରେ ରହିବେ, ମାତ୍ର ଆଠ ମାସ ନପୂରୁଣ ସେଇ ଗଂମାଙ୍ଗ ମୁଖ୍ୟ ମନ୍ତ୍ରୀଙ୍କ ସମୟରେ ଏବଂ ହରିଚନ୍ଦନଙ୍କ ପରାମର୍ଶରେ ସେ ହଠାତ୍ ଡି.ଜି ପଦରୁ ବାହାରିଲେ ଏବଂ ପୁଣି ଡକ୍ଟର ପଣ୍ଡା ଡି.ଜି. ଏବଂ ଏସ୍.ବି ମିଶ୍ର ମୁଖ୍ୟ ଶାସନ ସଚିବ ହେଲେ । ପୁଲିସ୍ ଉପରସ୍ତରରେ ଏପରି ପରିସ୍ଥିତି ସୃଷ୍ଟି ହେଲା ଯେ ମିଃ ମହାପାତ୍ରଂ ତାଙ୍କ ପୁତ୍ର ବିବାହ ଘରକୁ ଡି.ଜି. ବନବିହାରୀ ପଣ୍ଡା ଏବଂ ତାଙ୍କ ପାଖରେ ଥିବା ଆଇ.ଜି ସେନାପତିଙ୍କୁ ନିମନ୍ତ୍ରଣ ବି କରିନଥିଲେ । ସେ ସନ୍ଦେହ କଲେ ଯେ, ତାଙ୍କୁ ସେଇ ପଦବୀରୁ ହଟାଇବାରେ ଡକ୍ଟର ପଣ୍ଡାଙ୍କ ହାତ ଅଛି । ତାଙ୍କର କାର୍ଯ୍ୟକଳାପ ହିଁ ତାଙ୍କର ବଦଳି ପାଇଁ ଦାୟୀ ହେଲା, ସେ କଥା ସେ ବୁଝିବାକୁ ପ୍ରସ୍ତୁତ ନଥିଲେ ।

ମାନବିକ ଅଧିକାର ସୁରକ୍ଷା ପ୍ରକୋଷ୍ଠରେ ମୁଁ ଜଏନ୍ କଲାବେଳେ ଏହି ଅଫିସ ଗୋଟିଏ ଭଡ଼ା ଘରେ ଚାଲୁଥିଲା ଏବଂ ସେଇ ଭଡ଼ାଘର ଆଇ.ଜି ଯାଚକଙ୍କର ଥିଲା । ମିଃ ଦୀଲିପ ମହାପାତ୍ର, ଡି.ଜି ହେଲା ପରେ ସେ ଘର ଛାଡ଼ି କିଲ୍ଲା ଭିତରେ ଥିବା ପୂର୍ବ ଘରକୁ ଫେରି ଆସିବାକୁ ଆଦେଶ ଦେଲେ । ଅବଶ୍ୟ ଏଇ ପୁରୁଣା ଘରେ ମୁଁ ଆଗରୁ ଡି.ଆଇ.ଜି (ଟି ଆର୍) ଭାବେ କାମ କରିଥିଲି ଏବଂ ଏଇ ଘରକୁ ଫେରିବାକୁ ମୋର ଆପତ୍ତି ନଥିଲା ମାତ୍ର ଏଇ ଘର ବଦଳିକୁ ମଧ ପରୋକ୍ଷରେ ଏକ ଆକ୍ରୋଷମୂଳକ କାର୍ଯ୍ୟ ବୋଲି କୁହାଗଲା ।

ମୁଁ ଏଇଠି ଥିଲାବେଳେ ୧୯୯୯ ମସିହା ଅକ୍ଟୋବର ମାସ ୨୯ ତାରିଖରେ, ଓଡ଼ିଶାର ଉପକୂଳ ଜିଲ୍ଲା ମାନଙ୍କରେ ବାତ୍ୟାର ତାଣ୍ଡବଲୀଳା ସୃଷ୍ଟି ହୋଇଥିଲା ଯାହାକୁ ପରବର୍ତ୍ତୀ କାଳରେ ସୁପର ସାଇକ୍ଲୋନ୍ ଆଖ୍ୟା ଦିଆଗଲା । ବାତ୍ୟା ହେବାର ସମ୍ଭାବନା ଥିବା ଦୃଷ୍ଟିରୁ ପୁଲିସ ହେଡ଼କ୍ୱାଟର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କୁ ଆଗରୁ ସତର୍କ କରାଇଥିଲେ । ଡି.ଜି ମୋତେ ନିର୍ଦ୍ଦେଶ ଦେଇଥିଲେ ତା୨୯ ଦିନ ଜଗତସିଂହପୁର ଜିଲ୍ଲାଂକୁ ଯିବା ପାଇଁ । ସେଦିନ ମୁଁ ଅଫିସକୁ ଆସିଥିଲି । ଦିନ ଦଶଟା ପରେ କଟକ ସହରରେ ବାତ୍ୟା ପ୍ରକୋପ ଆରମ୍ଭ ହେବାକୁ ଲାଗିଲା । ମୁଁ ଡି.ଜି ଅଫିସ୍‌କୁ ଗଲା ବାଟରେ, କାଣ୍ଟନ୍‌ମେଣ୍ଟ ରାସ୍ତାର ରିକୃଟିଂ ଅଫିସ ପାଖ ରାସ୍ତା ଉପରେ

ଗୋଟିଏ ବହୁବର୍ଷର ପୁରୁଣା ବରଗଛ ଭାଙ୍ଗି ପଡ଼ିଲା । ମୁଁ ଡି.ଜି. ଅଫିସରେ ପହଞ୍ଚିଲା ପରେ, ଓ୍ୱାରଲେସ୍‌ରେ ଆସିଥିବା ଖବରରୁ ଜଣାଗଲା ଯେ, ଜଗତସିଂପୁର, କେନ୍ଦ୍ରାପଡ଼ା, ପୁରୀ, କଟକ, ଜାଯପୁର ଜିଲ୍ଲା ମାନଙ୍କରେ ପ୍ରବଳ ବାତ୍ୟା ପ୍ରବାହ ହେଉଛି ଏବଂ ଘରଦ୍ୱାର, ଭାଙ୍ଗିବାରେ ଲାଗିଛି, ଗଛ ଉପୁଡ଼ି ପଡୁଛି ଇତ୍ୟାଦି । ଡି.ଜି ମୋତେ କହିଲେ ଯେ ବାତ୍ୟା ଦିନ ସାଢ଼େ ଦୁଇଟା ସୁଦ୍ଧା ଛାଡ଼ି ଯିବ, ଦୁଇଟା ପରେ ଜଗତସିଂହପୁର ଯାଇ ଦେଖିଆସିବା ପାଇଁ । ମୁଁ ତାଙ୍କ ଠାରୁ ବିଦାୟ ନେଇ ମୋ କାଣ୍ଟନ୍ ମେଣ୍ଟ ବଙ୍ଗଳା ଜେ.ଓ ୨୧କୁ ଆସି ପହଞ୍ଚିଲି ଦିନ ସାଢ଼େ ଏଗାରଟା ବେଳେ । ମୁଁ ଖାଇସାରି ଜଗତ୍‌ସିଂହପୁର ଯିବା କଥା ମାତ୍ର ବାତ୍ୟାର ପ୍ରକୋପ ଆସ୍ତେ ଆସ୍ତେ ବଢ଼ିବାରେ ଲାଗିଲା । ହଠାତ୍ ବଙ୍ଗଳାର ପଛପଟେ ଥିବା ଆମ୍ବଗଛ ଦୋହଲିବାକୁ ଲାଗିଲା । ସେ ଦିନ ଘରକୁ କେହି ଏଫ୍.ଓ ଆସି ନଥିଲେ, କେବଳ ଡ୍ରାଇଭର ଆସିଥିଲା ଏବଂ ଥିଲା । ଆମ୍ବଗଛଟି ଭାଙ୍ଗି ପଡ଼ିଲେ, ମୋ ପଡ଼ୋଶୀଙ୍କ ଘର ଉପରେ ପଡ଼ିବ ବୋଲି, ସେ ବାତ୍ୟା ଏବଂ ବର୍ଷାରେ ଡ୍ରାଇଭର ଯାଇ ତାଙ୍କ ଘରେ ଖବର ଦେଲା ଏବଂ ସେ ଫେରିବାର ପାଞ୍ଚମିନିଟ୍ ପରେ, ଆମ୍ବ ଗଛ ତାଙ୍କ ବଙ୍ଗଳା ଉପରେ ଉପୁଡ଼ି ପଡ଼ିଲା । ବାତ୍ୟା ଏବଂ ବର୍ଷା ବଢ଼ିବାରୁ ମୁଁ ଘରେ ରହିଥାଏ । ନୁନା ରୋଷେଇ ଘରେ ଥିବା ସମୟରେ ଆମ ଘର ଭିତର ଦୁଆରେ ଥିବା ଦୁଇଟି ଆମ୍ବଗଛ ଭାଙ୍ଗିପଡ଼ି, ପୂର୍ବପଟ ଗୁହାଳଘର ଭାଙ୍ଗି ଦେଲା । ବର୍ଷା, ପବନରେ, ଗୁହାଳ ଘରୁ ଗାଈଙ୍କ ବେକରୁ ପଘା କାଟି ତାଙ୍କୁ ବାହାରକୁ ବାହାରକଲି । ଏଇ ସମୟରେ ଆମପଡ଼ୋଶୀ ବେହେରାବାବୁଙ୍କ ବଙ୍ଗଳାଭିତରେ ଥିବା ବିରାଟ ଶିମିଳି ଗଛ ଭାଙ୍ଗି ପଡ଼ି ଆମର ପାଇଖାନା, ସୁଇପର କ୍ୱାଟର ସବୁ ଭାଙ୍ଗିଦେଲା । ସନ୍ଧ୍ୟା ମାଡ଼ି ଆସିବା ସାଙ୍ଗକୁ ବାତ୍ୟାର ପ୍ରକୋପ ବଢ଼ିବାରେ ଲାଗିଲା । ସାରା ସହରରୁ ବିଜୁଳି ଚାଲିଗଲା । ସବୁ ଆଡ଼େ କେବଳ ବାତ୍ୟାର ପ୍ରକୋପ । ଯେଉଁମାନେ ଅଫିସ ଯାଇଥିଲେ ସେମାନେ ଅଫିସରେ ରହିଗଲେ, ବସାକୁ ଫେରିବାକୁ ସେମାନଙ୍କୁ ସମୟ ମିଳିଲାନି । ସମସ୍ତେ ଆଶା କରୁଥିଲେ,ବାତ୍ୟା କମିଯିବ, ଘଣ୍ଟାଏ କିମ୍ବା ଦୁଇଘଣ୍ଟାରେ ମାତ୍ର ବାତ୍ୟାର ପ୍ରକୋପ ସାରା ରାତିଟି ରହିଲା । କଟକ ସହରର ହଜାର ହଜାର ଗଛ ଉପୁଡ଼ି ପଡ଼ିଲା ବେଳେ, କ୍ୟାଣ୍ଟେନ୍‌ମେଣ୍ଟ ଅଞ୍ଚଳର ସମସ୍ତ ପୁରୁଣା ଗଛ ଉପୁଡ଼ି ପଡ଼ି, ରାସ୍ତା ଘାଟ ବନ୍ଦ ହୋଇଗଲା । ମୋ ବସା ସାମ୍ନାରେ ନଡ଼ିଆଗଛ, ଆମ୍ବ ଗଛ, ବିଜୁଳି ଖୁଣ୍ଟ ତାରପଡ଼ି, ଘରୁ ବାହାରିବା ଅସମ୍ଭବ ହେଲା । ସେଇ ରାତିଟି ଆମେ ଖଣ୍ଡେ ମହମବତୀ ଜାଳି ରହିଲୁ । ଘରେ ଯାହାଥିଲା ତାକୁ ମୁଁ, ନୁନା, ଡ୍ରାଇଭର ଏବଂ ସୁଇପର ଏବଂ ତା'ର ପିଲାମାନେ ଖାଇଲୁ । ରାତ୍ରି ତିନିଟା ପର୍ଯ୍ୟନ୍ତ ବାତ୍ୟାର ପ୍ରକୋପଯୋଗୁ ଆଖିକୁ ନିଦ ଆସୁନଥାଏ । କେତେବେଳେ ଘର ଭାଙ୍ଗି ପଡ଼ିବ, ତାକୁହିଁ ଅପେକ୍ଷା କରିଥିଲୁ । ପରଦିନ ସକାଳ ହେଲା । ସକାଳ ୭ଟା ବେଳେ ମୁଁ ଗେଟ୍ ପାଖକୁ ବାହାରିଲି । ଚାରିଆଡ଼େ ଭାଙ୍ଗି ପଡ଼ିବା ଗଛ । ତାର ଖୁଣ୍ଟି, ପାଣି । ଇଣ୍ଡୋର ଷ୍ଟାଡ଼ିୟମ ଉଡ଼ି ଯାଇଥାଏ, ପଡ଼ିଆରେ ପାଣି ଚାରି ଫୁଟ । ମୁଁ ଚାଲି ଚାଲି ବାହାରିଲା ବେଳକୁ ହରିପଣ୍ଡା ବହୁତ କଷ୍ଟରେ ତା 'ଘରୁ ବାହାରୁଛି । ଆମେ ଡି.ଜି ପଣ୍ଡାଙ୍କ ଘରକୁ ଗଲାବେଳେ, ଶିକ୍ଷ ନିର୍ଦ୍ଦେଶାଳୟ ପାଖେ ୫ଫୁଟ ପାଣି, ଦୁଇଟି କାର୍ ବୁଡ଼ିଯାଇଥାଏ । ଇଉନିଭର୍ସ ଭିତରେ ଅଣ୍ଟାଏ ପାଣି । ମୁଁ ଡି.ଜିଙ୍କ ପାଖେ ପହଞ୍ଚିଲି । ତାଙ୍କର ଘରର କେତେକାଂଶ ଭାଙ୍ଗି ଥାଏ । ପାଣି ନଥିବା ହେତୁ ବର୍ଷା ପାଣିକୁ ରଖି ସେ ଗାଧୋଇଥିଲେ । କିଛି ସମୟ ବସିଲା ପରେ, ସେ ମୋତେ ସେଇ ଜଗତ୍‌ସିଂହପୁର କଥା କହିଲେ ମାତ୍ର ସେତେବେଳକୁ କଟକ ସହର ଭିତରୁ, କୌଣସି ଗାଡ଼ି ରିଙ୍ଗ୍ ବନ୍ଧ ପର୍ଯ୍ୟନ୍ତ ଯାଇପାରୁ

ନଥାଏ । ଖବର ଆସୁଥାଏ ବାତ୍ୟା ଯୋଗୁ ଜାତୀୟ ରାଜପଥ ପାଞ୍ଚନମ୍ବରରେ ଯେଉଁ ଗାଡ଼ି ଯେଉଁଠି ରହିଯାଇଥାଏ, ସେଠାରୁ ଲୋକମାନେ ଖାଇବା ଜିନିଷ ଲୁଟ୍ କରୁଛନ୍ତି । ମାତ୍ର ପୁଲିସ୍ ପହଞ୍ଚିପାରୁ ନଥାଏ । ସେଦିନ ଯାଇ ପାରିଲି ନାହିଁ । ପରଦିନ ବହୁତ କଷ୍ଟରେ କଟକ ଏସ୍.ପିଙ୍କ ଠାରୁ ଗୋଟେ ଜିପ୍ ନେଇ କଟକରୁ ଚଣ୍ଡିଖୋଲ ଦେଇ ବାହାରିଲି । ବାଟରେ ହଜାର ହଜାର ଟ୍ରକ୍ ରାସ୍ତା ଉପରେ ଠିଆହୋଇ ଥା'ନ୍ତି । କେତେ ଯାଗାରେ ଅଣ୍ଡା, ଚାଉଳଟ୍ରକକୁ ଦୁର୍ବୃତ୍ତମାନେ ଲୁଟି କରୁଥାନ୍ତି । ପୁଲିସ୍ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥିଲେ ମଧ, ଅବସ୍ଥାକୁ ସମ୍ଭାଳି ପାରୁ ନଥାଏ । ଚଣ୍ଡିଖୋଲରେ ପହଞ୍ଚିବାକୁ ମୋତେ ୪ ଘଣ୍ଟାଲାଗିଲା । ସେଠୁ ପାରାଦ୍ୱୀପ୍ ଗଲି । ପାରାଦ୍ୱୀପର ଅବସ୍ଥା ଶୋଚନୀୟ । ମୋତେ ଏସ୍.ଡି.ପି.ଓ ଏବଂ ଡି.ଆଇ.ଜି କେନ୍ଦ୍ରାଞ୍ଚଳ କହିଲେ, ୨୦୦ରୁ ଅଧିକ ଲୋକଙ୍କ ମୃତ୍ୟୁ ଦେହ ପଡ଼ିଛି । ଅବସ୍ଥା ଅସମ୍ଭାଳ । ସେଇ ଦିନ, ସନ୍ଧ୍ୟାରେ ଆନ୍ଧ୍ରପ୍ରଦେଶର କେତେକ ସାହାଯ୍ୟକାରୀ ଦଳ ପାରାଦ୍ୱୀପରେ ପହଞ୍ଚିଥିଲେ । ଜଗତସିଂହପୁର ଜିଲ୍ଲା ମହକୁମାକୁ କଟକ ଠାରୁ କିମ୍ବା କୁଜଙ୍ଗ ପଟୁ ଯାଇ ହେଉନଥାଏ । ରାସ୍ତା ଯାକ ବିରାଟ ବିରାଟ ଗଛ ପଡ଼ିଥାଏ ଏବଂ ସେ ଗଛକୁ କାଟି ସଫା କରିବା ସମ୍ଭବ ହେଉନଥାଏ । ରାତି ବାରଟା ପର୍ଯ୍ୟନ୍ତ ଆମେ କୁଜଙ୍ଗ ଠାରୁ ଆଠ କିଲୋମିଟର ଗଲୁ, ତାପରେ ଯାଇ ପାରିଲୁ ନାହିଁ । ମୁଁ ସେଦିନ କଟକ ଫେରିଲି । ପୁଣି ସକାଳ ନଅଟାରୁ କଟକ, ଓ.ଏମ୍.ପି ଛକରୁ ଆନ୍ଧ୍ର ପ୍ରଦେଶର ତିନୋଟି ପେଲୋଡ଼୍ ଏବଂ କୋଲଫିଲ୍ଡିର କାଟର ପିଲାର ସାହାଯ୍ୟରେ ରାସ୍ତା ସଫାକରି ଜଗତସିଂହପୁର ରାସ୍ତାର ୨୦ କିଲୋମିଟର ପାଖେ ରହିଗଲୁ । ସେ ଦିନ ରାତିଟି ରାସ୍ତାରେ ବିନା ଖିଆ ପିଆରେ ଗଲା । ରାତି ଯାକ ଚେଷ୍ଟା କରି ଗୋଟେ ବିରାଟ ଟାକୁଣ୍ଡା ଗଛ କାଟିପାରିଲୁନି । କାଟର ପିଲାର, ରାସ୍ତାକଡ଼ରେ ପୋତିହୋଇ ଯିବା ଯୋଗୁ କାମ କଲାନି । ପେଲୋଡ଼୍ ଗଛକୁ ଦୋହଲାଇ ପାରିଲାନି । ସ୍ଥାନୀୟ ଲୋକ ମଧ କେହି ଆସି ସାହାଯ୍ୟ ଦେଲେନି । ସେଇଠି ଆମେ ଚବିଶ ଘଣ୍ଟା ରାସ୍ତା ଉପରେ ରହିଲୁ । ପ୍ରାୟ ୧୦୦ଟି କାର୍ ଜିପ୍‌ରେ ପରିବାର ଧରି ଆସୁଥିବାଲୋକ ସେଇପରି ଭାବେ ଉପାସରେ ରହିଲେ । ଚବିଶ ଘଣ୍ଟା ପରେ ସେ ଗଛକୁ ସ୍ଥାନୀୟ ଲୋକଙ୍କ ସାହାଯ୍ୟରେ କଟାଇ ଆମେ ଜଗତ୍‌ସିଂହପୁର ଆଡ଼େ ବାହାରିଲୁ । ତିନି ତାରିଖ ସନ୍ଧ୍ୟା ସୁଦ୍ଧା ଛୋଟ ଗାଡ଼ି କଟକରୁ ଜଗତସିଂହପୁର ଯିବା ଆସିବା କଲା ଏବଂ ଚାରିତାରିଖରେ ସକାଳୁ ରିଲିଫ୍ ଗାଡ଼ି ଜଗତସିଂହପୁରରେ ପହଞ୍ଚିଲା । ସେତେବେଳକୁ ଏରସମା, କୁଜଙ୍ଗର ଭିତର ଅଞ୍ଚଳକୁ ରାସ୍ତା ଖୋଲି ନଥାଏ କିମ୍ବା କଟକ-ପାରାଦ୍ୱୀପ ରାସ୍ତା ଖୋଲି ନଥାଏ । ୫ତାରିଖ ସୁଦ୍ଧା ଏ ସମସ୍ତ ରାସ୍ତା ସଫା ହେଲା ଏବଂ ମୁଁ ଏରସମା, ବାଲିକୁଦା, କୁଜଙ୍ଗ ଅଞ୍ଚଳ ବୁଲି ଦେଖିଲା ପରେ ପୁଲିସସଦର ମହକୁମାକୁ ଖବର ଦେଲି । ଏରସମା ଗଲାବେଳେ ଏରସମା ପାଖା ପାଖି, ରାସ୍ତା ଉପରେ ମଣିଷ, ଗୋରୁ ଗାଈଙ୍କର ହଜାର ହଜାର ଶବ ପଡ଼ିଥାଏ । ଶବ ମାନଙ୍କୁ ଆଡ଼େଇ କରି ଥାନା ପର୍ଯ୍ୟନ୍ତ ଗଲି । ଏରସମା ଥାନାର କେତେକାଂଶ ଉଡ଼ିଯାଇଥାଏ । ନୂଆ ହୋଇ ଆରମ୍ଭ ହୋଇଥିବା ପକ୍କା ଘରର କେବଳ ଛାତ ପଡ଼ିଥାଏ । ସମୁଦ୍ର କୁଆର ମାଡ଼ିଆସିଲାବେଳେ ଶହ ଶହ ଲୋକ ଘରଦ୍ୱାର ଛାଡ଼ି ଥାନା ଘରେ ଆଶ୍ରୟ ନେଇଥାନ୍ତି । ସେଇଦିନ ରାତ୍ରିରେ ଜଣେ ମହିଳା ଥାନା ପରିସର ମଧରେ ଗୋଟିଏ ପୁତ୍ର ସନ୍ତାନକୁ ଜନ୍ମ ଦେଇଥିଲେ । ଥାନାବାଲା ଖୁସିରେ ତା ନାମ କୃଷ୍ଣ ଦେଇଥାନ୍ତି । ମୁଁ ପହଞ୍ଚିଲା ବେଳକୁ ଅବସ୍ଥା ଅସମ୍ଭାଳ । ଏରସମା ବି.ଡ଼ି.ଓ ଙ୍କ ପାଖେ ଯାହା ଖାଦ୍ୟ ପଦାର୍ଥ ଥିଲା, ସେ ସମସ୍ତ ସରିଯାଇଥାଏ । କେତେ ଜିନିଷ ମଧ ଲୋକମାନେ ବ୍ଲକ୍ ଅଫିସ ଭାଙ୍ଗି ନେଇଗଲେ । ଏରସମା

ବଜାରରେ ଯାହା ଦୋକାନରେ ଚାଉଳ ଇତ୍ୟାଦି ଥିଲା, ସେ ସବୁ ମଧ ଲୁଟି ହୋଇଯାଇଥାଏ । ଥାନା ପରିସରକୁ ଲାଗି ଶବ ମାନ ପଡ଼ିଥାନ୍ତି । ଥାନା ବଡ଼ବାବୁ, ସୁଇପରମାନଙ୍କୁ ଲଗାଇ କେତେକ ଶବକୁ ପରିସର ମଧରୁ ହଟାଇ ପୋଡ଼ିବାର ବନ୍ଦୋବସ୍ତ କରୁଥିଲେ । ସେମାନେ କହିଲେ କେବଳ ଏରସମା ବ୍ଲକରୁ ପ୍ରାୟ  ପନ୍ଦର କୋଡ଼ିଏ ହଜାର ଲୋକମରିଛନ୍ତି । ଖାଇବା ବିନା ବଞ୍ଚିଥିବା ଲୋକମାନେ ମରିବାକୁ ବସିଲେଣି । ମୁଁ ଏରସମା ବ୍ଲକରୁ ଫେରି, ଭୁବନେଶ୍ୱର ସହିତ ସଂପର୍କ ସ୍ଥାପନ କରିବାକୁ ଚେଷ୍ଟା କଲି । ବହୁତ କଷ୍ଟରେ ପୁଲିସ୍ ବେତାର ମାଧମରେ ଖବର ପଠାଇଲି ଏବଂ ମୁଖ୍ୟଶାସନ ସଚିବକୁ ଅନୁରୋଧ କଲି ଯେ, ଜଗତସିଂହପୁର ଜିଲ୍ଲାକୁ କେତେଜଣ ସିନିୟର ରେଭେନ୍ୟୁ ଅଫିସରଙ୍କୁ ପଠାଇବାକୁ । ଜଗତସିଂହପୁରରେ ରହିବାକୁ ଟିକିଏ ଯାଗା  ନଥାଏ କିମ୍ବା ତମ୍ବୁ ପକାଇବା ପାଇଁ ସ୍ଥାନ ଟିକିଏ ନଥାଏ । ସରକିଟ୍ ହାଉସ୍‌ର ପ୍ରତ୍ୟେକ ରୁମ୍‌ରେ ଆଣ୍ଠୁଏ ପାଣି । ରାତ୍ରିଟି ସେଇ ଆଣ୍ଠୁଏ ପାଣିଭିତରେ ପଡ଼ିଥିବା ଭଙ୍ଗା ଖଟ ଉପରେ କଟାଇଲି । ରୋଷେଇ କରି ଖାଇବା ଅବସ୍ଥା ସେତେବେଳେ ନଥିଲା । ନିଆଁ ଲଗାଇବାକୁ କାଠ ନଥାଏ କିମ୍ବା ଷ୍ଟୋଭ ଲଗାଇବା ପାଇଁ କିରୋସିନ୍ ନଥାଏ । ସାଙ୍ଗରେ କଟକରୁ ଗଲାବେଳେ ନେଇଥିବା ଚୁଡ଼ାଗଣ୍ଡିକ ଖାଇବାରେ ସାହାଯ୍ୟ କରୁଥାଏ । ପ୍ରତ୍ୟେକ ଦିନ ଲୋକମାନଙ୍କ ଅବସ୍ଥା ଖରାପ ଆଡ଼କୁ ଗଲାବେଳେ, ସେହି ପରିମାଣରେ ରିଲିଫ୍ ଆସି ପାରୁନଥାଏ । ଲୋକ ଅଭାବରୁ ମରିପଡ଼ିଥିବା ମଡ଼ାଗୁଡ଼ିକୁ ମଧ ହଟାଇ ଦିଆଯାଇ ପାରୁନଥାଏ । ପାଞ୍ଚ ତାରିଖ ପରେ, ରିଲିଫ୍ ଗାଡ଼ି ପହଞ୍ଚିଲା । ଅବସ୍ଥା ସମ୍ଭାଳି ହେଲା । କଲେକ୍ଟର, ଏ.ଡି.ଏମ୍.ଙ୍କୁ ଛାଡ଼ି ଦେଲେ, ଅନ୍ୟ ସିନିୟର ଅଫିସର ସେପର୍ଯ୍ୟନ୍ତ ଆସିନଥାନ୍ତି । ଆଇନ୍ ଶୃଙ୍ଖଳା ପରିସ୍ଥିତି, ରିଲିଫ ଅପରେସନ୍, ରାସ୍ତାସଫା, ମରିପଡ଼ିଥିବା ମଣିଷ ଏବଂ ପଶୁପକ୍ଷୀଙ୍କ ଶବକୁ ପରିଷ୍କାର କରିବା, ଚୋରାମାଲ ଉଦ୍ଧାର ସବୁ କାର୍ଯ୍ୟକୁ ମୋତେ ଦେଖିବାକୁ ପଡୁଥାଏ । ଏହାଛଡ଼ା ରାଜନୈତିକ ନେତାମାନଙ୍କର ଦାବୀ ଦିନକୁ ଦିନ ବଢୁଥାଏ ।

କେବଳ ପୁଲିସ ଷ୍ଟେସନରୁ ସିଧାସଳଖ କଟକ ପୁଲିସ ସଦର ମହକୁମା ସହିତ ବହୁ କଷ୍ଟରେ ବେତାର ମାଧମରେ କଥା ହେଉଥିଲୁ । ଟେଲିଫୋନ ପ୍ରଭୃତି କିଛି କାମ କରୁନଥାଏ । ଏରସମା, କୁଜଙ୍ଗ, ପାରାଦ୍ୱୀପ, ସବୁଅଞ୍ଚଳ ଏବଂ ତାର ଭିତର ଅଞ୍ଚଳ ବୁଲିଲାପରେ ପ୍ରଳୟଙ୍କରୀ ବାତ୍ୟାର କରାଳ ରୂପ ବିଷୟରେ ପ୍ରତ୍ୟକ୍ଷଜ୍ଞାନ ପାଇଥିଲି । ଆଠ ଦଶ ଦିନ ପରେ, କେତେକ ସିନିୟର ରେଭିନ୍ୟୁ ଅଫିସରମାନେ ପହଞ୍ଚିଲାପରେ, ଏରସମା, କୁଜଙ୍ଗ ଅଞ୍ଚଳର ଅବସ୍ଥା ସୁଧୁରିବାକୁ ଆରମ୍ଭ କଲା । ରାସ୍ତା-ଘାଟ ଖୋଲିଲାପରେ, ବହୁ ବେସରକାରୀ ଅନୁଷ୍ଠାନ, ସାହାଯ୍ୟକାରୀ ସଂସ୍ଥା ଏମାନେ ମଧ ବହୁ ପରିମାଣରେ ସାହାଯ୍ୟ ଦେବାକୁ ଆରମ୍ଭ କଲେ ।

ବାତ୍ୟା ପରେ ପରେ ପାରାଦ୍ୱୀପ ଗଡ଼ ପାଖେ, ତତ୍‌କାଳୀନ କେନ୍ଦ୍ରାଞ୍ଚଳ ଡି.ଆଇ.ଜି. ଶ୍ରୀ ଗୌରାଙ୍ଗ କିଙ୍କର ଦାସଙ୍କ ସହାୟତା ଏବଂ ତତ୍ତ୍ୱାବଧାନରେ ପୁଲିସ ତରଫରୁ ରନ୍ଧା ଖାଦ୍ୟ ବାତ୍ୟା ପ୍ରପୀଡ଼ିତ ଲୋକମାନଙ୍କୁ ଦିଆଯାଇଥିଲା । ପରେ ପରେ ମୋ ତତ୍ତ୍ୱାବଧାନରେ ଜଗତସିଂହପୁର ଜିଲ୍ଲାର ବାଲିକୁଦା ଥାନା ଅନନ୍ତପୁର ଗ୍ରାମରେ ''ପୁଲିସ୍  କରୁଣା'' ଖୋଲାଯାଇ ପ୍ରତ୍ୟେକ ଦିନ ଛ, ସାତ ହଜାର ପ୍ରପୀଡ଼ିତ ଲୋକଙ୍କୁ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଇଥିଲା । କେବଳ ବାଲିକୁଦା ଅଞ୍ଚଳରେ ନୁହେଁ, କଟକ ସଦର ଅଞ୍ଚଳର ନିଆଳୀଥାନା ପାଖ ବଗଲଗଡ଼ ଗାଁରେ ମଧ ''ପୁଲିସ୍ କରୁଣା'' ତରଫରୁ ପ୍ରତ୍ୟେକଦିନ ଆଠ ଦଶହଜାର ଲୋକଙ୍କ ପାଇଁ

ରନ୍ଧାଖାଦ୍ୟ ପ୍ରସ୍ତୁତ ହୋଇ ଦିଆଯାଉଥିଲା । ଜଗତସିଂହପୁର ଜିଲ୍ଲାରେ ଆଇନ୍ ଶୃଙ୍ଖଳା ଅବସ୍ଥା ସ୍ୱାଭାବିକ୍ ହେବାପର୍ଯ୍ୟନ୍ତ ମୋତେ ସେଠାରେ ରହିବାକୁ ପଡ଼ିଥିଲା । ପ୍ରାୟ ୨୫ ଦିନ ରହିଲା ପରେ ମୁଁ ଫେରିଥିଲି । କଟକ ଫେରିଲା ପରେ, ମୋ ଅଫିସ ଏବଂ ଘରର ଅବସ୍ଥା ଯାହା ସେଥିରେ କାମ କରିବା ଏବଂ ରହିବା କଷ୍ଟକର ହେଲା । ଅଫିସ୍‌ରେ ଛାତ ନଥାଏ । କାଗଜ ପତ୍ର କୌଣସି ମତେ ରକ୍ଷା ପାଇଯାଇଥିଲେ ମଧ ବହୁକ୍ଷତିଗ୍ରସ୍ତ ହୋଇଥିଲା । କ୍ୱାଟରର ରୋଷେଇ ଘର ଠାରୁ ବାହାର ପର୍ଯ୍ୟନ୍ତ ଛାତ ନଥାଏ । ବିରାଟ ବିରାଟ ଦୁଇଟି ଗଛ ପଡ଼ି ପଛପଟକୁ ଯାଇ ହେଉନଥାଏ । ସରକାରଙ୍କ ନିକଟରେ ସମ୍ବଳ ଏବଂ ଆଗ୍ରହ ଅଭାବରୁ ପି.ଡବ୍.ଲ୍ୟୁ ବିଭାଗ ଘରମଧରୁ ଗଛକାଟି ବାହାର କରିବାକୁ ମାସ ମାସ ଲାଗିଗଲା । ବହୁ ସରକାରୀ ଅଫିସର ନିଜ ହାତରୁ ପଇସା ଦେଇ ଘର ପରିଷ୍କାର କଲେ । ମୁଁ ଫେରିବା ପର୍ଯ୍ୟନ୍ତ ମୋ ସରକାରୀ କ୍ୱାଟରର ଅବସ୍ଥାରେ କିଛି ଉନ୍ନତି ହୋଇନଥିଲା । ଗାଁରୁ ଲୋକ ଆଣି, କ୍ୱାଟରଟିକୁ ପରିଷ୍କାର କଲାପରେ, ସରକାରୀ କଂଟ୍ରାକ୍ଟର ଆସ୍‌ବେଷ୍ଟସ୍ ସିଟ୍ ଆଣି ଛାତ ପକାଇଲା । ଘର ମରାମତିପାଇଁ ଦୁଇ ମାସ ମଧରେ ଦୁଇଟି କଂଟ୍ରାକ୍ଟର ଯାଇଥିଲେ ମଧ କାମ ମୁଁ ଅବସର ନେବା ପର୍ଯ୍ୟନ୍ତ ସଂପୂର୍ଣ୍ଣ ହୋଇନଥିଲା । ଅଫିସ୍ ଅବସ୍ଥା ତାହାଠାରୁ ବଳି । କାମ ଚାଲିଛି ସରିବାକୁ ଆଉ କେତେବର୍ଷ ଲାଗିବ ।

ମାନବିକ ଅଧିକାର ସୁରକ୍ଷା ପ୍ରକୋଷ୍ଠରେ ଥିବା ସମୟରେ ମୁଁ କେତେ ଗୁଡ଼ିଏ ସେମିନାର ନାରୀ ନିର୍ଯ୍ୟାତନା, ଯୌତୁକ ଜନିତ ନିର୍ଯ୍ୟାତନା ଏବଂ ଏପରି ଅପରାଧ ବିରୁଦ୍ଧରେ ସଚେତନା ସୃଷ୍ଟିକରିବା ପାଇଁ କଟକ, ଭୁବନେଶ୍ୱର, ବରହମ୍ପୁର ଠାରେ ଆୟୋଜନ କରିଥିଲି । କେବଳ ସେତିକି ନୁହେଁ, ଓଡ଼ିଶା ପାଇଁ ଯୌତୁକ ବିରୋଧି ରୁଲ୍, ପ୍ରତ୍ୟେକ ଜିଲ୍ଲାରେ ମାନବିକ ଅଧିକାର ପ୍ରକୋଷ୍ଠ ପ୍ରତିଷ୍ଠା ଦିଗରେ ମଧ ଚେଷ୍ଟା କରିଥିଲି ।

ମେ ମାସ ୨୦୦୦ରେ, ଡକ୍ଟର ବି.ବି. ପଣ୍ଡା ପୁଲିସ୍ ଡି.ଜି. ଭାବେ ଅବସର ଗ୍ରହଣ କଲେ । ତାଙ୍କ ସ୍ଥାନରେ ମିଃ ଏସ.କେ. ଚାଟାର୍ଜି ଡି.ଜି. ହୋଇ ଆସିଲେ । ମିଃ ଦୀଲିପ୍ କୁମାର ମହାପାତ୍ର ଡି.ଜି. ପଦକୁ ଫେରିବାକୁ ଆଶା କରିଥିଲେ ମଧ ତାହା ସମ୍ଭବ ହେଲାନି । ମାର୍ଚ୍ଚମାସରେ ଓଡ଼ିଶା ବିଧାନ ସଭାକୁ ନିର୍ବାଚନ ପରେ ନବିନ୍ ପଟ୍ଟନାୟକ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ ଏବଂ ପୁଲିସ୍ ବିଭାଗରେ ସାମାନ୍ୟ ପରିବର୍ତ୍ତନ ଘଟିଥିଲା ।

ଅଗଷ୍ଟ ମାସ ୩୧ ତାରିଖ ଦିନ ମୁଁ ୩୨ ବର୍ଷ ଚାରିମାସ ପୁଲିସ୍ ଚାକିରୀ ସାରି ଷାଠିଏ ବର୍ଷରେ ଅବସର ଗ୍ରହଣ କଲି । କୁହାଯାଏ - ''Behind every sucessful man, there is a women'' ମୁଁ ଦୀର୍ଘ ପୁଲିସ ଜୀବନରେ ବହୁଘାତ ପ୍ରତିଘାତ ଦେଇ ଗତି କରିଥିଲି । ପୁଲିସ୍‌ରେ କିମ୍ବା ଚାକିରୀକ୍ଷେତ୍ରରେ ମୋର କେହି ଗଡ଼ ଫାଦର ନଥିଲେ । ମୋର ଦୀର୍ଘ ପୁଲିସ୍ ଜୀବନରେ ଯଦି ମୁଁ କିଛି ସାଫଲ୍ୟ ହାସଲ କରିଥାଏ କିମ୍ବା କୃତକାର୍ଯ୍ୟ ହୋଇପାରିଥାଏ, ତା ହେଲେ ଏଥିପାଇଁ ମୋର ଯେତିକି ଅବଦାନ ଅଛି ତା ଠାରୁ ଅଧିକ ଅବଦାନଥିଲା ମୋ ସ୍ତ୍ରୀ ନୀରଦପ୍ରଭାଙ୍କର ।



